ଉତ୍କଳୀୟ ପ୍ରାଚ୍ୟ ଗ୍ରନ୍ଥମାଳା (ଓଡ଼ିଆ) - ୫୨

# ଧନଞ୍ଜୟ ଗ୍ରନ୍ଥାବଳୀ

(ପ୍ରଥମ ଭାଗ)

ସଂସ୍କୃତି ନିର୍ଦ୍ଦେଶାଳୟ, ଓଡିଶା

ଭୁବନେଶ୍ୱର

ଉତ୍କଳୀୟ ପ୍ରାଚ୍ୟ ଗ୍ରନ୍ଥମାଳା (ଓଡ଼ିଆ)– ୫୨

# ଧନଞ୍ଜୟ ଗ୍ରନ୍ଥାବଳୀ

(ପ୍ରଥମ ଭାଗ)

ସମ୍ପାଦକ :

**ଶ୍ରୀ ଦୁଃଖିଶ୍ୟାମ ପଟ୍ଟନାୟକ**

Orissan Oriental Text Series (Oriya)—52

# DHANANJAY GRANTHABALI

(Part—1)

*Edited by ;*

SRI DUKHISHYAM PATTNAYAK

**ଶ୍ରୀ ନରେନ୍ଦ୍ର କୁମାର ମିଶ୍ର,** ଆଇ.ଏ.ଏସ୍.
ନିର୍ଦ୍ଦେଶକ, ସଂସ୍କୃତି ବିଭାଗ
ଓଡ଼ିଶା, ଭୁବନେଶ୍ୱର

# ଅଗ୍ରଲେଖ

ସଂସ୍କୃତ ଓ ଓଡ଼ିଆ ଭାଷାରେ ଓଡ଼ିଶାର ପ୍ରାଚୀନ କବି ତଥା ପଣ୍ଡିତମାନଙ୍କ ଦ୍ୱାରା ରଚିତ ହୋଇଥିବା ଉପାଦେୟ କୃତି ସମୂହକୁ ପ୍ରକାଶିତ କରି ଓଡ଼ିଶାର ସମୃଦ୍ଧ ସାହିତ୍ୟିକ ବିଭବକୁ ଜନସାଧାରଣରେ ପରିବେଷଣ କରିବାପାଇଁ ରାଜ୍ୟ ସଂସ୍କୃତି ବିଭାଗ ଉଦ୍ୟମ କରି ଆସୁଛି । ଅଦ୍ୟାବଧି ସଂସ୍କୃତି ନିର୍ଦ୍ଦେଶାଳୟ ପକ୍ଷରୁ ଶତାଧିକ ସଂସ୍କୃତ ଓ ଓଡ଼ିଆ ଗ୍ରନ୍ଥ ଯଥାକ୍ରମେ Orissan Oriental Text Series ତଥା 'ଉତ୍କଳୀୟ ପ୍ରାଚ୍ୟ ଗ୍ରନ୍ଥମାଳା' ନାମରେ ପ୍ରକାଶିତ ହୋଇଅଛି । ଏହାଛଡ଼ା ସାରଳାଦାସଙ୍କ ମହାଭାରତ; ଜୟଦେବକୃତ ଗୀତ ଗୋବିନ୍ଦ, ଚଉତିଶା ଓ ଭଜନ ସଙ୍କଳନାଦିର ପୁନର୍ମୁଦ୍ରଣ କାର୍ଯ୍ୟ କରାଯାଉଛି । ଓଡ଼ିଆ ସାହିତ୍ୟର ପ୍ରାଚୀନ ଓ ମଧ୍ୟଯୁଗୀୟ ବରେଣ୍ୟ କବିମାନଙ୍କର ପ୍ରକାଶିତ ଓ ଅପ୍ରକାଶିତ ସମସ୍ତ ରଚନା ଏକତ୍ର କରି ଗ୍ରନ୍ଥାବଳୀ ଆକାରରେ ପ୍ରକାଶ କରିବାର ଯୋଜନା ଅନେକ ବର୍ଷ ପୂର୍ବରୁ ଆରମ୍ଭ ହୋଇଥିଲା । ଇତିମଧ୍ୟରେ ଭକ୍ତକବି ଅଭିମନ୍ୟୁ, ରାଜକବି ବ୍ରଜରାଜ ସିଂହ, ପ୍ରଥମ ଗୀତାଭିନୟକାର ଜଗନ୍ନାଥ ପାଣି, ଭକ୍ତିଯୁଗୀୟ ପ୍ରତିଭାଶାଳୀ କବି ଘନକୃଷ୍ଣ ଦାସ ପ୍ରଭୃତିଙ୍କର ସାରସ୍ୱତ କୃତିସମ୍ବଳିତ ଗ୍ରନ୍ଥାବଳୀ ନିର୍ଦ୍ଦେଶାଳୟ ତରଫରୁ ପ୍ରକାଶ ଲାଭ କରିଛି । ପ୍ରସ୍ତୁତ ଧନଞ୍ଜୟ ଭଞ୍ଜ ଗ୍ରନ୍ଥାବଳୀ (ପ୍ରଥମ ଭାଗ) ଉକ୍ତ ଯୋଜନାର ଅନ୍ୟତମ ପ୍ରଚେଷ୍ଟା । ଏଥିରେ ରାଜକବିଙ୍କର ପ୍ରଖ୍ୟାତ କୃତି ଶ୍ରୀରାମ ବିଳାସ ଓ ଅନଙ୍ଗରେଖା କାବ୍ୟଦ୍ୱୟ ଉପସ୍ଥାପିତ ହୋଇଛି ।

କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ପିତାମହ ଓ ଘୁମୁସର ରାଜା ଧନଞ୍ଜୟ ଭଞ୍ଜ ସପ୍ତଦଶ ଶତକର ପ୍ରଖ୍ୟାତ ସାହିତ୍ୟସେବୀ ଭାବରେ ଓଡ଼ିଶାର ସୁଧୀ ସମାଜରେ ସୁପରିଚିତ । ମହାକାବ୍ୟ ଓ ଗୀତିକବିତାଦି ତାଙ୍କର ରଚନାବଳୀ ଏକତ୍ର ମୁଦ୍ରିତ ଓ ପ୍ରକାଶିତ ହୋଇ ପାଠକମଣ୍ଡଳୀର ହସ୍ତଗତ ହୋଇପାରିନାହିଁ । ଅବଶିଷ୍ଟ ରଚନା ସମୂହ ସଙ୍କଳିତ ହୋଇ ପରବର୍ତ୍ତୀ ସଂସ୍କରଣରେ ପରିବେଷିତ ହେବାପାଇଁ ଉଦ୍ୟମ ଅବ୍ୟାହତ ରହିଛି । ଶଂସିତ ସଂସ୍କରଣ ଗବେଷକ ଓ ପ୍ରାଚୀନ ସାହିତ୍ୟପ୍ରେମୀ ଜନସାଧାରଣଙ୍କଠାରେ ଆଦୃତ ହେବ ବୋଲି ବିଶ୍ୱାସ ।

# ଶ୍ରୀରାମ ବିଳାସ

## ପ୍ରଥମ ଛାନ୍ଦ

### ରାଗ – ମଙ୍ଗଳ ଗୁଜ୍ଜରୀ

ବନ୍ଦଇ ଜଗତନାଥ ଅନାଦି କାରଣ ।
ସ୍ଥିତି ସୃଷ୍ଟି ପ୍ରଳୟର ଭୟ ନିବାରଣ ଯେ ॥ ୧ ॥

ଯୋଗି-ହୃଦ-କମଳ-ପ୍ରକାଶ-ଦିନକର ।
ଇନ୍ଦ୍ରନୀଳମଣି-ରୁଚି-ରୁଚିର-ଆକାର ଯେ ॥ ୨ ॥

ରବିବଂଶ-ଅବତଂସ-ସୁମନା-ମଣ୍ଡନ ।
ଖର ଖର ଆଦି ଦୈତ୍ୟ ସମୂହ ଖଣ୍ଡନ ଯେ ॥୩॥

ଦଶଶିର ବଂଶ ବଂଶ ଗହନ ଦହନ ।
ମହୀ ମହୀସ୍ଥଳୀ ଶୋକ ବାରି ନିବାରଣ ଯେ ॥୪॥

କୁମୁଦ କୁମୁଦ ମୋଦକାରୀ ସମମୂର୍ତ୍ତି ।
ସୁଗ୍ରୀବ ସୁଗ୍ରୀବ ଠାରେ ବିଦିତ ଯା କୀର୍ତ୍ତି ଯେ ॥୫॥

ସୁଲକ୍ଷଣ ଲକ୍ଷ୍ମଣ ଯାହାର ଅନୁଚର ।
ସୁଭରତ ଭରତ ଯାହାର ପ୍ରୀତିକର ଯେ ॥୬॥

ଶତ୍ରୁଘ୍ନ ଶତ୍ରୁଘ୍ନ ଯାର ଆଜ୍ଞାକାରୀ ।
ଅସୁର ଅସୁର ହାରି ଅଯୋଧ୍ୟା ବିହାରୀ ଯେ ॥୭॥

ଘନରସେ ଘନର ସେ ସ୍ୱଚ୍ଛନ୍ଦେ ବିହରି ।
ବେଦ ଉଦ୍ଧାରଣ କଲି ମୀନ ରୂପ ଧରି ଯେ ॥୮॥

ମନ୍ଥର ମନ୍ଦରୋତ୍ତମ ବସି ପୃଷ୍ଠୋପରି ।
କଠିନ କମଠ ରୂପେ ସାଗରେ ବିହରି ଯେ ॥୯॥

---

୪।୨ ଖ-୦ମହୀସ୍ଥଳୀ୦
୫।୧ ଗ- ସମମୂର୍ତ୍ତି
୬।୧ କ- ସୁଲକ୍ଷ୦ ୦ଜାର ( ? )
୭।୨ ଖ- ୦ବେହାରି ହେ
୮।୧ କ- ୦ଛ ଛନ୍ଦେ୦ ଖ- ୦ସ୍ୱଚ୍ଛନ୍ଦେ୦
୯।୧ କ- ମନ୍ଥରତ୍ତମ ବହୁ ପୃଷ୍ଠ୦
ଖ-ଗ- ମନ୍ଥଡ଼ତମ ବହୁ ପୃଷ୍ଠ ପରି

ବରାହ ବପୁଧରେ ନାଶି ହିରଣ୍ୟାକ୍ଷ ।
ଦନ୍ତେ ଧରି ଅବନୀକି କଲ ହେଲେ ମୋକ୍ଷ ଯେ ॥୧୦॥

ନରହରି ନରହରି ବନ୍ଦିତ ଚରଣ ।
ପ୍ରଖର ନଖରେ କଲ ଦିତିଜ ଦାରଣ ହେ ॥୧୧॥

ବଳୀ ବଳ ଛଳେ ହେଲ ବାମନ ମୂରତି ।
ସୁର ପୁର ପାଳନାରେ ରଖିଲ ଖ୍ୟାତି ଯେ ॥୧୨॥

ଧରି ପରଶୁ ହାତରେ କ୍ଷତ୍ରି ଅନ୍ତଃକାରୀ ।
ଭୃଗୁ କୁଳେ ଜାତକୁ ଲଭିଲ ଦେହ ଧରି ହେ ॥୧୩॥

ରାମପାଳ ରାମ ପାଳନାରେ ଏକ ଚେତା ।
ହଳ ଯେନ ଆକର୍ଷିଲ ତପନ ଦୁହିତା ଯେ ॥୧୪॥

ଗୋପରଙ୍ଗେ ଗୋପରଙ୍ଗେ ହୋଇ ଅନୁରତ ।
ଯଦୁକୁଳେ ଜାତ ହୋଇ ହେଲ ନନ୍ଦ ସୁତ ହେ ॥୧୫॥

କରବାଳେ କରବାଳେ ମ୍ଲେଚ୍ଛ ଛେଦକାରୀ ।
ଧର୍ମକୁ ସ୍ଥାପିଲ ତୁମ୍ଭେ କଲ୍କି ରୂପ ଧରି ଯେ ॥୧୬॥

ରାମ ରାମରୂପୀ ତୁମ୍ଭେ ଦଶବିଧ ରୂପ ।
ଉତ୍ପତ୍ତି ପ୍ରଳୟ ସ୍ଥିତି କାରଣ ସ୍ୱରୂପ ଯେ ॥୧୭॥

ତୁମ୍ଭେ ନାରାୟଣ ହରି ତୁମ୍ଭେ କୁଣଧାରୀ ।
ତୁମ୍ଭେ ଇନ୍ଦିରା ସାବିତ୍ରୀ ତ୍ରିଗୁଣ-କୁମାରୀ ହେ ॥୧୮॥

ତୁମ୍ଭେ ନୀଳାଚଳବାସୀ ଗୋକୁଳ ବିଳାସୀ ।
ଏବେ ଦଶରଥ ସୁତ ନାମ ରେଖାଣି ଯେ ॥୧୯॥

ତୁମ୍ଭର ଲୀଳା ଚରିତ କହିତ ମୋ ମନ ।
ଅଙ୍କଦଅ ମୋତେ ତୁମ୍ଭେ ଜାନକୀ ରମଣ ହେ ॥୨୦॥

---

(୧୦) ଙ- ବସ୍ତ୍ରହ ବରାହ
(୧୧) ଚ- ଦାରଣେ, ଛ- ଦଉଗା
(୧୨) ଗ- ବଳୀ ଛଳେ ବଳ ଛଳେଂ
(୧୨) ଚ- ସୁରପାଳଂ
(୧୩) ଖ-ଗ- କ୍ଷତ୍ର ଅନ୍ତକାରି
(୧୩) ଚ- ଦେବ ହର ହେ
(୧୪) ଚ- ଅକର୍ଷୀଲ ଦୁହିତା ଯେ
ଚ- ଅକର୍ଷିଲ, ଛ- ଅକର୍ଷିଲ
(୧୫) ଚ- ଗୋପରାରେ ଗୋପରାରେଂ ଂଅନୁମତ
ଖ-ଗ- ଗୋପରାଙ୍କେ ଗୋପରାଙ୍କେ
(୧୫) ଚ- ଜାତକୁ ଲଭିଲ
(୧୬) ଖ-ଖ- ଥାପିଲ
(୧୭) ଖ-ଗ- ଦଶବଧ (୧୭) ଗ- ସ୍ୱରୂପ
(୧୮) ଗ- ନାରାଏଣ
(୧୯) ଖ-ଗ- ନୀଳାଚଳ-ବାସୀ (୧୯) ଗ- ସ୍ୱେବେ

ଧରାଭାର ନ ସହିଲା ବିଶ୍ରବା ସୁତର ।
ଧାତାର ଛାମୁରେ ସେ ରୋଦନ୍ତି ସମାବର ହେ ।।୨୧।।

ଦିଗପାଳେ ଦିଗ ତେଜି କଲେକ ଗମନ ।
ଋଷି ବିପ୍ରମାନେ ଯେ ହୋଇଲେ ତପେ ହୀନ ଯେ ।।୨୨।।

ସୁକେଶୀ ବଂଶରେ କ୍ଷୀଣ ହୋଇଲା ମୋ ତନୁ ।
କେ ସହିପାରିବ ଘୋର ଦାନବଙ୍କ ମନ୍ୟୁ ଯେ ।।୨୩।।

ଦଶଗ୍ରୀବ ହସ୍ତ ବଧ୍ୱଂଶିବା କୁଶଧର ।
ଏତେ କହି ତୂନ ହେଲା ବିରଞ୍ଚି ଛାମୁର ହେ ।।୨୪।।

ଅବନ ବଚନ ଶୁଣି ପଙ୍କଜ ନନ୍ଦନ ।
କ୍ଷୀରସିନ୍ଧୁ ତଟରେ ହେଲେ ଦେବଙ୍କୁ ଘେନିଣ ହୋ ।।୨୫।।

ନାନା ପରକାରେ ସ୍ତୁତି କଲେ ବେଦମତେ ।
ସଂଯମୀ ଇନ୍ଦ୍ର ସୁରଗଣ ଘେନ ଏକଚିତ୍ତେ ହେ ।।୨୬।।

ଶୁଭିଲା ଅଦେହ ବାଣୀ ଜଳଦ ଗମ୍ଭୀର ।
ମନୁ ଚିନ୍ତା ଛାଡ଼ ତୁମେ ସକଳ ଅମର ହେ ।।୨୭।।

ଦଶରଥ ଘରେ ରାମ ରୂପେ ଅବତରି ।
ତ୍ରିଦଶ ତୋଷିବୁ ଆମ୍ଭେ ରାବଣ ସଂହାରି ହେ ।।୨୮।।

ତୁମ୍ଭେମାନେ ଜାତ ହୁଅ ଅବନ ପୁରରେ ।
ନନ୍ଦ ବୋଲପାଉ ଅଂଶେ ଋକ୍ଷ ବାନରରେ ହେ ।।୨୯।।

ଏସନ ବଚନ ପୁଣି ଗଲେ ବେଦପନ୍ତ ।
ସମସ୍ତ ଦେବ ସଙ୍ଗତେ ଆନନ୍ଦିତ ମନ୍ତ ହେ ।।୩୦।।

ନୀଳାଚଳ ପତି ରାମଚନ୍ଦ୍ର ପାଦ ଧ୍ୟାୟି ।
ନୃପ ଧନଞ୍ଜୟ ଭଜ ଏହି ରସ କହି ହେ ।।୩୧।।

ଶ୍ରୀରାମ ବିଳାସ ଏ ପ୍ରଥମ ଛାନ୍ଦ ଶେଷ ।
ଶୁଣିଣ ସୁଜନମାନେ ହୋଇବା ସନ୍ତୋଷ ଯେ ।।୩୨।।

●

---

୨୧।୧ କ-ଖ-ଗ- ବସବା॰

୨୩।୧ ଖ- ବଂଶରେ କ୍ଷୀଣ ହୋଇଲା॰

୨୪।୧ ଖ- ॰ତୂନ ହୋଇ॰

୨୬।୨ କ- ପୋଷରେ ନାହିଁ

୨୭।୧ କ- ॰ଗମ୍ଭୀର

୨୮।୨ କ- ॰ରାବଣକୁ ମାର ହେ ।

୩୦।୧ ଖ-ଗ- ସ୍ନେହନ

୩୧।୧ ଗ- ନୀଳାଚଳ   ୩୧।୨ ଗ- ନୃପ ଧନଞ୍ଜୟ ଭକ୍ତ ଏହୁ

୩୨।୧ କ ॰ସ୍ନେ,   ଖ- ଏହୁ

# ଦ୍ୱିତୀୟ ଛାନ୍ଦ

## ରାଗ—ମଙ୍ଗଳ*

ଏଥୁ ଅନନ୍ତରେ ଶୁଣ ଅପୂର୍ବ ଚରିତ ।
ଯାହାଶୁଣି ସାଧୁଜନେ ଲଭିବ ଉଷତ । ||୧||

ଅନାଦି ଈଶ୍ୱର ଦଶରଥ ଘରେ ଜନ୍ମ ।
ରାମ ଲକ୍ଷ୍ମଣ ଭରତ ଶତ୍ରୁଘ୍ନ ନାମ ||୨||

ନୀଳାଚଳ ପତି ଶେଷ ଶଙ୍ଖ ସୁଦର୍ଶନ ।
ଧରାଭାର ନିବାରଣେ ହେଲେ ଏ କାରଣ ||୩||

କଉଶଲ୍ୟା କକେୟୀ ସୁମିତ୍ରା ତିନି ରାଣୀ ।
ଏହାଙ୍କ ଗର୍ଭରୁ ଜନ୍ମ ଲଭିଲେକ ପୁଣି ||୪||

ବାଳକାଳେ ନାନା ଲୀଳା କଲେ ଅଯୋଧ୍ୟାର ।
ମାତା ପିତା ଚରଣ ସେବାରେ ତତପର ||୫||

ସର୍ବବିଦ୍ୟା ବଶିଷ୍ଠ ଠାବରୁ ଶିକ୍ଷା କଲେ ।
ଅରି ନୃପ ଦର୍ପହାରି କରନ୍ତି ସେହିକାଳେ ||୬||

ଏଥୁ ଅନନ୍ତରେ କେତେ କାଳ ଅବଶେଷ ।
ତପୋବନୁ ବିଶ୍ୱାମିତ୍ର ହୋଇଲେ ପ୍ରବେଶ ||୭||

ଅଯୋଧ୍ୟାରେ ମିଳିଲେ ସେ ଗାଧିର ନନ୍ଦନ ।
ଦେଖି ପୁର ଜନମାନେ ଲଭିଲେ ଉଛନ୍ନ ହେ ||୮||

ଶୁଣି ଦଶରଥ ରାଜା ଆସି ଭେଟିଗଲେ ।
ଷଡ଼ର୍ଘ୍ୟେ ମୁନିଙ୍କି ଆସନରେ ବସାଇଲେ ||୯||

ଦଣ୍ଡ ପ୍ରଣମିତ କରି ହୋଇ କୃତ-କୃତ୍ୟ ।
କି କାରଣେ ଏଥକୁ ଆଗତ ଗାଧିସୁତ ||୧୦||

ବୋଲନ୍ତି ସେ ମୁନିବର ଶୁଣ ନୃପବର ।
କରୁଥିଲୁଁ ଆମ୍ଭେ ଯାଗ କାମ୍ୟକ ବନର ||୧୧||

---

* କ- ରାଗ—କଳସା
୧।୧ କ- ଏଥୁ ଅନ୍ତେ
୨।୨ କ- ଲକ୍ଷ୍ୟଣ ଯେ ଭୃତଂ ଖ- ଠଲଖଣ ଚ- ଭରଥ
୩।୧ କ- ହେଲ ବାରେ ଜନ୍ମ ଖ-ଗ- ନୀଳାଞ୍ଚଳ
୪।୨ ଗ- ଲଭିଲେ ଏ
୮।୧ କ- ରାଧିର, ଖ-ଗ- ମିଳନ୍ତେ ଗାଧୀର
୮।୨ କ- ଜନେ ମନେ
୧୦।୧ କ- ଦଣ୍ଡ ପ୍ରଳମ୍ବ କରଣ ହୋଇଲେ କୃତ କୃତ
୧୦।୨ କ-ଖ-ଗ- ଗାଧିସୁତ
୧୧।୨ କ- କାମୁକ, ଗ- କାମ୍ୟେକ

ସୁନ୍ଦ ଉପସୁନ୍ଦ ସୁତ ମାରୀଚ ସୁବାହୁ ।
ପ୍ରତ୍ୟକ୍ଷେ ଅଛନ୍ତି ସେହୁ ଦେବଗଣ ରାହୁ ॥୧୨॥

ଆମ୍ଭ ଯାଗ ଭଗ୍ନ ସେ କରନ୍ତେ ମହାସୁର ।
ରାମ ବୋଲି ଏକ ବାଣୀ ଶୁଭିଲା ଶୂନ୍ୟର ॥୧୩॥

ଶୁଣି ପଳାଇଣ ଗଲେ ଦାନବ ସକଳ ।
ସିଂହ ଧ୍ୱନି ଶୁଣି ଯେହ୍ନେ ଗଜେ କରକୁଳ ॥୧୪॥

ଏସନ ଶୁଣିଣ ଆମ୍ଭେ ବିସ୍ମରିଲୁ ବସି ।
ଧାତା ବୋଲେ ଜାତକୁ ଲଭିଲେ ହୃଷିକେଶି ॥୧୫॥

ସୂର୍ଯ୍ୟବଂଶେ ଅଯୋଧ୍ୟାରେ ଦଶରଥ ପୁରେ ।
ଏମନ୍ତ ଜାଣିଣ ଆମ୍ଭେ ମିଳିଲୁ ସତ୍ୱରେ ॥୧୬॥

ଆମ୍ଭଙ୍କୁ ତୁ ଦେବୁ ରାମ କିଛି ନ ବିଚାର ।
ଦାନବଙ୍କ ମାରଣ କରିବ ଦେବ ହରି ॥୧୭॥

ଆମ୍ଭ ଯାଗ ରକ୍ଷା ହେବ ଶୁଣ ହେ ନୃପତି ।
ରହିବ ତୋ ପୁତ୍ର ଯଶ ଏ ନବ ଧରଣୀ ॥୧୮॥

ଯେବେ ତୁ ମତେ ନ ଦେବୁ ଏହୁ ରଘୁବୀର ।
କରିବି ତୋହର ପୁର ଜାଣ ଭସ୍ମସାର ॥୧୯॥

ପୃଥ୍ୱୀଭାର ଉଶ୍ୱାସିବା ପାଇଁ ଜାତ ରାମ ।
ତୋର ସୁତ ବୋଲି ମନେ ନ ଲଭ ତୁ ଭ୍ରମ ॥୨୦॥

ଶୁଣି କଉଶିକ ବାଣୀ ରାଜା ଦଶରଥ ।
କୁଳଣ ଛୁଡ଼ଣ ପଡ଼ିଲେକ ତାର ମାଥ ॥୨୧॥

ତେସନ ପ୍ରାସ୍ୱେକ ହୋଇ ରହିଲ ନୃପତି ।
ଏମନ୍ତେ ମିଳିଲେ ଯେ ବଶିଷ୍ଠ ମହାଯତି ॥୨୨॥

ବୋଲନ୍ତି ସେ ମୋର ବାଣୀ ଶୁଣ ନୃପବର ।
ଦିଅ ରାମ ଗାଧିସୁତ ନେଉ ଧାତିକାର ॥୨୩॥

ନ ଲଭ ମନରେ ତୁ ହୋ ଦୁଃସହ ସଂଶୟ ।
ଦେବତା ଦାନବେ କାହିଁ ରାମକୁ ତୋ ଭୟ ॥୨୪॥

---

୧୨।୧ କ- ସୁନ୍ଦ ଉପସୁନ୍ଦ ସୁତ, ଙ-ଚ- ସୁନ୍ଦ ଉପଦ୍ବୁନ୍ଦଂ
୧୨।୨ ଖ-ଗ- ପ୍ରତକ୍ଷେ
୧୩।୨ କ- ରାମବାଣୀ ବୋଲିଣ
୧୪।୧ କ- ୦ଦାନେବ, ୧୪।୨ ଖ- ୦ଧ୍ୱନଂ ଭିରେଂ
୧୬।୨ ଖ-ଗ- ଦାନବଙ୍କ
୧୯।୧ ଖ- ଏବେ ରୁ ହୋ ମତେ ଯେ ନ ଦେବୁ
୨୦।୨ କ- ଭର୍ମ, ଖ- ୦ନ ଲଭ ରୁଂ
୨୧।୨ ଖ- କୁଳଣ କ ଛୁଡ଼ଣ ପଡ଼ିଲଂ
୨୨।୧ କ-ଗ- ତେସନ ପ୍ରାଏକ, ଖ- ତେସନେଜ୍ଞାଂପ୍ରାଏ
୨୨।୨ ଖ- ଏ ସମେଏ ମିଳିଲେ
୨୪।୧ କ- ହେଉ ମନରେ ତୁ ହୋ
୨୪।୨ ଖ- ୦ଦାନବେ ନାହିଂ

ଶୁଣି ସୀତ୍କାର କଲେ ଅଯୋଧ୍ୟା ନୃପତି ।
ମୁନିଙ୍କ ସମୀପେ ରାମ କଲେକ ତତ୍‌ଭକ୍ତି ॥୨୫॥

ବୋଇଲନ୍ତି ତୁ ନିଅ କଉଶିକ ରାମ ସଙ୍ଗ ।
କେ ତୋର ବଚନ କରି ପାରିବାକୁ ଭଙ୍ଗ ॥୨୬॥

ପିତାର ବଚନ ଯହୁଁ ଶୁଣିଲେ ଶ୍ରୀରାମ ।
ମନେ ଆନନ୍ଦିତ ହେଲେ ହେବ ଦେବ କାମ ॥୨୭॥

ସଙ୍ଗତେ ଲକ୍ଷ୍ମଣ ଘେନି ହେଲେକ ବାହାର ।
ଧନୁଶର ଧରଣି କ ପଛେ ମନୋହର ॥୨୮॥

ନାନା ଆଭରଣ ଶୋହେ ନୀଳମଣି ଅଙ୍ଗ ।
ନୟନେ ଦେଖିଲେ ଚିତ୍ତ ହୋଇବ ଅନଙ୍ଗ ॥୨୯॥

ଶିରେ କରୀଟ କୁଣ୍ଡଳ କର୍ଣ୍ଣେ ଶୋଭାପାଏ ।
ପୀତବସ୍ତ୍ର ପରିଧାନେ ଶୋଭା ଦେବରାୟେ ॥୩୦॥

ଅଗ୍ରତେ ଅଛନ୍ତି ତାଙ୍କ ବିଶ୍ୱାମିତ୍ର ମୁନି ।
ଯେହ୍ନେ ଧାତା ସଙ୍ଗେ ଗମେ ହରିହର ବେନି ॥୩୧॥

ସରଯୂ କୂଳରେ ଯାଇ ପ୍ରବେଶ ହୋଇଲେ ।
ନାବ ଆଣ କଣ୍ଡେଆର ବୋଲିଣ ବୋଇଲେ ॥୩୨॥

ମୁନି ସଙ୍ଗେ ସରଯୂ ହୋଇଲେ ବେଗେ ପାର ।
ରବି ଅସ୍ତ ହୋନ୍ତେ ସେହ୍ନି ବନେ ବାସ କରି ॥୩୩॥

ସେଠାବରେ ଅସ୍ତ୍ର ଶସ୍ତ୍ର ବିଶ୍ୱାମିତ୍ର ଦେଲେ ।
ଜୟା ବିଜୟା ଯେମନ୍ତ ବେନି ସମର୍ପିଲେ ॥୩୪॥

ଏମନ୍ତରେ ହେଲା ଆସି ନିଶି ଅବସାନ ।
ତାମ୍ରଚୂଡ଼ମାନେ ତହିଁ କଲେ ଘନସ୍ୱନ ହେ ॥୩୫॥

ପ୍ରାଚୀ ନାରୀ ବଦନ ହୋଇଲା ଉଲ୍ଲସିତ ।
ବିରସ ଭଜିଲା ଶଶୀ କୁମୁଦ ମୁଦ୍ରିତ ॥୩୬॥

---

୨୫।୨ ଖ- ମୁନିରଂ
୨୬।୧ କ- ୦ ରାମ କଉଶିକଂ
୨୮।୧ ଖ- ହୋଇଲେଂ
୨୮।୨ ଖ- ୦ଯେହ୍ନ କାକପକ୍ଷିଂ
୨୯।୨ ଖ- ୦ଆନନ୍ଦ
୩୦।୨ କ- ୦ପରିଧନେଂ ୦ଦେବରାଏ, ଖ- ୦ପଦ୍ଧିରଣେଂ
୩୧।୨ ଗ- କର୍ଣ୍ଣଧାର
୩୩।୨ ଖ- ୦ସେହି ସ୍ଥାନେଂ
୩୪।୧ କ-ଖ- ୦ ଶସ୍ତ୍ର ଅସ୍ତ୍ରଂ
୩୬। କ- ପାଠ ନାହିଁ

ଚକ୍ରବାକ-ବାକ ଯେ ହୋଇଲେ ଅନ୍ତ ନାନ୍ଦୀ ।
ରାଜାଙ୍କ ଦୁଆରେ ସ୍ତୁତି ଆରମ୍ଭିଲେ ବନ୍ଦୀ ।।୩୭।।
ହରଷ ଭଜିଲେ ଜଳେ ପଙ୍କଜ-ଆନନ ।
ଅଙ୍କଗତ ଭୃଙ୍ଗ ଛାଡ଼ିଦେଲେକ ବଦନ ।।୩୮।।
ଅଭିସାରୀ ଅଭିସାର ହୋଇ ମନେ ଦୁଃଖୀ ।
କେହୁ ପ୍ରିୟା ପାରୁଶରେ ପେଷିଲେକ ସଖୀ ।।୩୯।।
ଏମନ୍ତ ଜାଣିଣ ରାମ ତେଜି ନିଦ୍ରାଭାବ ।
ନିତ୍ୟକର୍ମ ବିଧି ଯେ ସାରିଲେ ଦେବଦେବ ।।୪୦।।
ବୋଲନ୍ତ ସେ ବିଶ୍ୱାମିତ୍ର ଶୁଣ ହେ ଶ୍ରୀରାମ ।
ଏହି ବନେ ତାଡ଼କା ସେ କରିଛି ଆଶ୍ରମ ।।୪୧।।
ଏମନ୍ତ ବୋଲିଣ ତହୁଁ କଲେକ ଗମନ ।
ଦେଖନ୍ତି ବିବିଧ ସ୍ଥାନ ନାନା ତରୁମାନ ।।୪୨।।
ବୋଲନ୍ତ ସେ ଗାଧିସୁତ ଶୁଣ ରାମଚନ୍ଦ୍ର ।
ଏ ବନେ ଅଛି ରାକ୍ଷସୀ ଅଟେ ବଡ଼ ମନ୍ଦ ।।୪୩।।
ଋଷି ବିପ୍ରମାନଙ୍କୁ ସେ କରଇ ଆହାର ।
ଏଣୁକରି ନାହିଁ ଏଥେ କାହାର ସଞ୍ଚାର ।।୪୪।।
ଦୁର୍ଜୟ ଅଟଇ ଏହୁ ସର୍ବଦେବଙ୍କର ।
ନାନା କାମରୂପକୁ ଧରଇ ନିରନ୍ତର ।।୪୫।।
ଏମନ୍ତ ଶୁଣିଣ ରାମ ଧନୁ ଆମଞ୍ଚିଲେ ।
ଗୁଣ ଟଙ୍କାର କରିଣ ଆନନ୍ଦ ହୋଇଲେ ।।୪୬।।
କୋଟିବଜ୍ର ଏକାବେଳେ ପଡ଼ିଲାକ ଛୁଡ଼ି ।
ଶୁଭିଲାକ ପ୍ରଳୟର ମେଘ ଘଡ଼ଘଡ଼ି ।।୪୭।।
ଶୁଣିଣ ତାଡ଼କା ମନେ ଲଭିଲା ଉଛନ୍ନ ।
ହସ୍ତେ ଘେନି ପାଦପ ସେ ଧାଇଁଲା ବହନ ।।୪୮।।
ନୀଳ ଜଳଧାର ପ୍ରାୟେ ଦିଶୁଅଛି ତନୁ ।
ଗିରି କୂଟ ସମାନ ଦିଶଇ ବେନି ହନୁ ।।୪୯।।

---

୩୭।୧ କ- ପୋଥିରେ 'ଚକ୍ରବାକ-ବାକ ଯେ' ନାହିଁ
୩୮।୨ କ- ପୋଥିରେ 'ଅଙ୍କଗତ ଭୃଙ୍ଗ ନାହିଁ
୩୯।୧ କ- ଅଭିସାରୀ ଅଭିସାରର ତେଜି
କ- ୦ପେଷିଲେକ
୩୯।୨ ଖ- ୦ପାରୁଶେ ପେସିଲେ ପ୍ରିୟ ସଖୀ
୪୦।୨ ଖ- ନିତ୍ୟକର୍ମ ଯେ ବିଧି୦
୪୧।୨ କ- ଏହୁ ବନେ ତାଡେକାଟି କରିଛି ବିଶ୍ରାମ
୪୨।୨ ଖ- ୦ତରୁଗଣ ଯେ
୪୩।୧ ଖ- ୦ଗାଧି ସୁତ୦
୪୪।୧ ଖ- ୦ଏ୦
୪୫।୨ କ- ୦ରୂପକୁ ଧରନ୍ତ୦ ଖ- ୦ରୂପକୁ ଦେଖାଇ
୪୬।୨ ଖ- ଗୁଣ୍ଡେ ଟଙ୍କାର କରି୦
୪୮।୧ ଖ- ୦ତାଡ଼କା୦
୪୯।୧ କ- ଗିରିକୁଣ୍ଡ୦

ପାତାଳ ପ୍ରାୟେକ ଦଶେ ବକ୍ରିତ ବଦନ ।
ଘୋଷେ ପୁଣ ପୁଣ ରଡ଼ ଘୁଡ଼େ ଘନଘନ ।।୫୦।।
ଦେଖିଣ ଶ୍ରୀରାମ କିଛି ଶଙ୍କା ହିଁ ନ କଲେ ।
ଖେଷ୍ଣ ଶର ଯୋଡ଼ି ଉରସ୍ଥଳେ ପ୍ରହାରଲେ ।।୫୧।।
ବାଜନ୍ତେ ସାୟକ କ୍ଷିତି ପଡ଼ିଲା ରାକ୍ଷସୀ ।
ଗର୍ଜନେ ପୂରିଲା ତାର ସକଳ ପ୍ରଦେଶୀ ।।୫୨।।
କମ୍ପିଲେ ବିମାନେ ଥାଇ ନଭଚରଗଣ ।
ରଡ଼ ଶୁଣି ମୃଗ ମୃଗୀ ଲଭିଲେ ନିଧନ ।।୫୩।।
ତକ୍ଷଣେ ରାକ୍ଷସୀ ରୂପ ତେଜିଣ ସୁନ୍ଦରୀ ।
ପୂର୍ବ ଦକ୍ଷକନ୍ୟା ହୋଇଲା ତାହାର ।।୫୪।।
ଶ୍ରୀରାମଙ୍କୁ ପ୍ରଦକ୍ଷିଣ କରି ସ୍ୱର୍ଗ ଗଲା ।
ଦେଖି ଗାଧିସୁତ ମନେ ଆନନ୍ଦ ଲଭିଲା ।।୫୫।।
କୋଳକରି ଶ୍ରୀରାମଙ୍କୁ ମୂର୍ଦ୍ଧନ ସୁଂଘିଲେ ।
ଅତି ଆନନ୍ଦେଣ ମୁନି କଲ୍ୟାଣ ବାଞ୍ଛିଲେ ।।୫୬।।
ସହରଷ କରଦେଲେ ଶସ୍ତ୍ର ଅସ୍ତ୍ର ମନ୍ତ୍ର ।
ବୋଲନ୍ତି ସେ ଆଦ୍ୟମୂଳ ନାଶ ଦୈତ୍ୟ ଗୋତ୍ର ।।୫୭।।
ପୁଷ୍ପ ବୃଷ୍ଟି କଲେ ଦେବ ଶ୍ରୀରାମ ଶିରର ।
ସଧୀର ସଧୀର ହୋଇ ବହିଲା ସମୀର ।।୫୮।।
ନିଜ କିରଣକୁ ବେଗେ ଲଭିଲା ହୁତାଶ ।
ପ୍ରକାଶ ହୋଇଲେ ଦିଗ ତେଜି ମନ ତ୍ରାସ ।।୫୯।।
ଆନନ୍ଦିତ ହେଲେ ସର୍ବେ ତହିଁ ସୁରଗଣ ।
ଯେଣୁ ସେ ଦେଖିଲେ ନେତ୍ରେ ତାଡ଼କା ମରଣ ।।୬୦।।
ଶ୍ରୀରାମ ଚରଣ ବେନି ଚିନ୍ତି ନିରନ୍ତର ।
ଭଣେ ନୃପ ଧନଞ୍ଜୟ ଶୁଣ ସାଧୁବର ।।୬୧।।
ଶ୍ରୀରାମ ବିଳାସ ଏହୁ ଛାନ୍ଦ ଯେ ବିଶ୍ୱାସ ।
ଅତିହିଁ ହରଷ ଏ ହୃଦର ରମଣୀୟ ।।୬୨।।

●

---

୫୦।୧ କ-ଗ- ବିଧୁତ ବଦନ
୫୧।୧ କ- ତୀକ୍ଷ ଶରଂ ଉର ସ୍ଥଳଂ, ଖ- ତୀକ୍ଷଶରଂ
ଗ- ଉରସ୍ଥାନେଂ
୫୨।୧ କ-ଗ- ବାଜନ୍ତୁଂ ୫୨।୨ କ-ଗ- ଚିତ୍ରଶବ୍ଦଂ
୫୩।୨ ଖ- ରବଶ୍ରୁଣିଂ
୫୪।୧ କ- ସ୍ୱର୍ଗେଂ, ୫୪।୨ ଖ- ଗାଧିସୁତଂ ହୋଇଲେ
୫୬।୧ ଗ- 'ମୂର୍ଦ୍ଧନ ସୁଂଘିଲେ' ନାହିଁ ।
୫୬।୨ ଖ- ଅତିହିଁ ଆନନ୍ଦେ···କଲ୍ୟାଣ ହିଁ କଲେ
୫୭।୧ କ- ଶସ୍ତ୍ର ଅସ୍ତ୍ର ମନ୍ତ୍ର,
ଖ- ସର୍ବ ଅସ୍ତ୍ର ମନ୍ତ୍ର ଗ- ଶସ୍ତ୍ର ଆସ୍ତ୍ରମନ୍ତ୍ର
୫୭।୨ ଖ- ବୋଲନ୍ତି ହେ ଆଦ୍ୟମୂଳ, ଗ- ଆଦ୍ୟମୂଳ
୫୮।୧ ଖ- କଲେ ଶୁଭେଂ
୬୦।୨ ଖ- ତାଡ଼କା ନିଧନ ହେ
୬୧।୧ କ- ବେନିଚିନ୍ତାଂ
୬୨।୧ ଖ- ନେ ଦୃଢ଼ସ୍ୱ
୬୨।୨ ଖ- ହରଷେ ଏହୁ ହୃଦଂ

# ତୃତୀୟ ଛାନ୍ଦ

## (ରାଗ—ସଙ୍ଗମ ତଅଣ ବାଣୀରେ ଗାଇବ)*

ଏଥୁ ଅନନ୍ତରେ ଗାଧି ରାଜ ନନ୍ଦନ ।
ବୋଲନ୍ତି ଶ୍ରୀରାମ ଯିବା ଏ ତପୋବନ ॥୧॥

ଦେଖିବା ଆମ୍ଭ ଆଶ୍ରମ ଋଷି ମଣ୍ଡଳୀ ।
ତୋରେ ଉଶ୍ବାସ ହୋଇବ ମହୀସ୍ଥଳୀ ॥୨॥

ଋଷିବର ବାଣୀ ଶୁଣି ରଘୁନନ୍ଦନ ।
ଅନୁଜ ସଙ୍ଗତେ ଯେନ କଲେ ଗମନ ॥୩॥

ଦେଖନ୍ତି ବିଚିତ୍ର ବନ ଅତି ସୁନ୍ଦର ।
ଫୁଟି ଲୋଟୁଛନ୍ତି ବଲ୍ଲୀ ଲତା ନିକର ॥୪॥

ଉଡ଼ନ୍ତି ଜଡ଼ନ୍ତି ମଧୁପାନେ ମଧୁପ ।
କାହିଁ-ପ୍ରିୟା ରତି ରଙ୍ଗେ ଅତି ଲୋଲୁପ ॥୫॥

କରନ୍ତି କୋକିଳ କୁଳ ନାଦ ପ୍ରଚଣ୍ଡ ।
ରସାଳ ମଧ୍ୟରେ କାହିଁ ହୁଅନ୍ତି ରୁଣ୍ଡ ॥୬॥

କାହିଁ ଯୂଥ ଯୂଥ ହୋଇ କସ୍ତୁରୀଗଣ ।
କେବଣ ଠାବରେ ଦିଶେ ପୁଷ୍ପ ଅରୁଣ ॥୭॥

ବୋଲନ୍ତି ଶ୍ରୀରାମ ଶୁଣ କୁଳନନ୍ଦନ ।
ଦେଖ ବାବୁ ଏହୁ ବନ କାନ୍ତା ଶୋଭନ ॥୮॥

ମନୋହର ମୃଗୀ କେକି କଳାପକେଶୀ ।
ଖଞ୍ଜନ ନୟନ ପିକ ମଧୁରଭାଷୀ ॥୯॥

ବିଚିତ୍ର ତିଳକ କରେ ମନ ଉତ୍ସୁକ ।
ବିଚ୍ଛେଦୀ ଜନର ହରେ ଧୃତି ବିବେକ ॥୧୦॥

ବିପୁଳ ପୁଚ୍ଛ ସ୍ତନରେ ଅତି ରଞ୍ଜନ ।
ଗୃରୁତର ପତ୍ରାବଳୀ ଯେନ ଆଚ୍ଛନ୍ନ ॥୧୧॥

---

*ସଂଜମ ତଅଣ ବାଣୀରେ ଗାଇବ
୧।୧ ଖ- ୦ଗ୍ରାଧୀ୦
୨।୨ କ-ଗ- ୦ତୋହେ୦
୪।୨ ଖ- ୦ଲୋଟୁଛନ୍ତି ତହିଁ ବଲ୍ଲୀ୦
୫।୧ କ- ଜଡ଼ନ୍ତି୦
୫।୨ ଗ- ୦ଅତି ମୋହିତ
୭।୧ ଖ- କାହିଁ ଗଜ ଯୂଥ
୮।୧ ଖ- ୦ନନ୍ଦା ନନ୍ଦନ
୮।୨ କ-ଗ- ଦେଖିବାକୁ୦ ୦କାନ୍ତି ଶୋଭନ
୯।୧ ଖ- କେହ୍ନି୦
୧୦।୨ ଖ- ବିଚ୍ଛେଦରେ ନରହରେ ଧୃତି ବିବେକ
୧୧।୧ ଖ- ୦ସ୍ତକରେ୦

ଦ୍ୱିଜଗଣେ ହରେ ମୁନିଗଣ ଧଇର୍ଯ୍ୟ ।
ପୁଷ୍ପ ଛୁଟ ହାସେ କରେ ମନ ଚଉର୍ଯ୍ୟ ॥୧୨॥

ବନ୍ଧୁଜୀବ-ପୁଷ୍ପାଧରେ ଧରେ ରୁଚିର ।
ରମ ତିଳ କୁସୁମ ନାସିକା ସୁନ୍ଦର ॥୧୩॥

ପାଟଳ କୁସୁମ ଶ୍ରବଣରେ ରଞ୍ଜନ ।
ଯୁବା ଜନ ମନ ହେଲେ କରେ ଗଞ୍ଜନ ॥୧୪॥

ଟେକ ବଲ୍ଲରୀ ଭୁଜ କି ଏହୁ ରହିଛି ।
ମନେ କି ବସନ୍ତ କାନ୍ତ ସଙ୍ଗକୁ ଇଚ୍ଛି ॥୧୫॥

ପଲ୍ଲବ ପାଣିରେ ଦିଶେ ଅତି ଲଳିତ ।
ଗନ୍ଧଫଳ ଅଙ୍ଗୁଳିରେ ହରୁଛି ଚିତ୍ତ ॥୧୬॥

ଜାତି ଦଳ ତୀକ୍ଷ୍ଣ ନଖେ ଦାରେ ହୃଦୟ ।
ଦେଖନ୍ତେ ଅତନୁ ରସ କରେ ଉଦୟ ॥୧୭॥

ଦିଶୁଅଛି କର୍ଣ୍ଣିକାରେ ଅତି ଶୋଭନ ।
ସୁବର୍ଣ୍ଣ ବର୍ଣ୍ଣରେ ହରେ ମନ ନୟନ ॥୧୮॥

ପୁଣ ଏ ଦିଶୁଛି ସୁର ପୁର ସଦୃଶ ।
ଗନ୍ଧର୍ବ ସୁମନାଗଣ ଯହିଁ ବିଶେଷ ॥୧୯॥

ବହୁତ ନେତ୍ରରେ ଏହୁ ଦିଶେ ମଞ୍ଜୁଳ ।
ଉନ୍ମତ୍ତ ବରଣେ କରି ଦିଶେ ପାଟଳ ॥୨୦॥

ନାଗେଶ୍ୱରରେ ଶୋଭିତ ହୋଇଛି ପୁଣ ।
ଗଣିକାଗଣରେ କରି ଦିଶେ ରଞ୍ଜନ ॥୨୧॥

ପୁନ୍ନାଗ ଶୋଭାରେ କରେ ରୁଚି ପ୍ରକାଶ ।
ବିଚିତ୍ର ସୂଚିରେ କରେ ଅତି ବିଶେଷ ॥୨୨॥

କୁକୁଭ ହୋଇଛି ଏଥେ ସୁବାସକାରୀ ।
ସୁର ତରଙ୍ଗିଣୀ ପାଶେ ଅଛି ବିସ୍ତାରି ॥୨୩॥

---

୧୨।୧ କ- ୦ଧଇର୍ଯ୍ୟ
୧୩।୧ କ- ବଧୂଜୀବ ପୁଷ୍ପାଧରେ
ଖ- ବନ୍ଧୁ ଜବା ବୃଷ୍ଟୀ ଧରେ୦
ଗ- ବଧୂ ଜୀବ ପୁଷ୍ପାଧାରେ
୧୫।୧ କ-ଗ- ୦ବଲ୍ଲୀ ଶ୍ରୀ ଭୁଜ କି୦
୧୫।୨ କ-ଗ- ୦ସଙ୍ଗ ଇଚ୍ଛୁରି

୧୬।୧ କ- ବଲଭ ପାଣିରେ୦
୨୦।୧ କ-ଗ- ବହୁତମ ନେତ୍ରେ୦
୨୨।୧ କ-ଗ- ପୃଷ୍ଠାଙ୍ଗ୦ ୦ରଚିଭଳାସ
୨୨।୨ ଖ- ଶୁଚିରେ ଦିଶେ
୨୩।୨ ଗ-ସୁର ନର ଜଣି ।

ମୂନ ପୃଷ୍ଠଭରେ ହୋଇଛନ୍ତି ଶୋଭିତ ।
ଗଜାନନ ଦାନବାରି ଭରେ ବଜିତ ॥୨୪॥

ଇନ୍ଦ୍ରାଣୀ ଦେବ କୁସୁମେ ହୋଇଛି ଶୋଭା ।
ଏଣେ ଦେବରାଜ ଦେବ କରଇ ଲୋଭା ॥୨୫॥

ମନୋହର ସ୍ୟନ୍ଦନ ଗଣରେ ପୂରିତ ।
ଅପସର ରସେ ହରେ ସକଳ ଚିତ୍ତ ॥୨୬॥

ପୁଣ ଏ ଦିଶୁଛି ନଭ ସମାନ ଛବି ।
ନାନା ପକ୍ଷୀଗଣେ ଯେଣୁ ଅଛନ୍ତି ସେବି ॥୨୭॥

ପତଙ୍ଗ ଶୋଭାରେ ଏହୁ ହରେ ନୟନ ।
ଶିଳୀମୁଖଗଣ ଅବକାଶର ସ୍ଥାନ ॥୨୮॥

ଚିତ୍ର ଶ୍ରୀଖଣ୍ଡ ଲୀଳାରେ ଅତି ଲଳିତ ।
ମୃଗ ଲକ୍ଷଣରେ ହୋଇଅଛି ବିଚିତ୍ର ॥୨୯॥

ଗନ୍ଧର୍ବଗଣ ପ୍ରଚୁରେ ହୋଇଛି ପୂର୍ଣ୍ଣ ।
ପୁଣ ସେହୁ ହୋଇଛି ରସାତଳ ସମାନ ॥୩୦॥

ନାନା ମଣିଗଣଙ୍କର ଯହିଁ ପ୍ରକାଶ ।
ଅନନ୍ତ ଭୁଜଙ୍ଗର ସେହୁ କେଳି ଆଶ୍ରୟ ॥୩୧॥

ବଳି ହର ପ୍ରତାପରେ ଅତି ଦୁସ୍ତର ।
ଗୁଣ ଏ ହରୁଛି ଦେଖ ଶୋଭାସିନ୍ଧୁର ॥୩୨॥

ତମିର ଆଚ୍ଛନ୍ନେ ହୋଇଅଛି ଗହନ ।
ଘନ ପୁଷ୍ପ ପୁରେ ପୂରି ହରୁଛି ମନ ॥୩୩॥

ଯହିଁ ଅଲକ୍ଷିତ ଅହିମ କର ଗତି ।
ପ୍ରବାଳ ଲତାରେ ଯାର ଅଛି ସଙ୍ଗତି ॥୩୪॥

ହରି ନିବାସରେ ଏହୁ ଅତି ରୁଚିର ।
ତରଙ୍ଗିଣୀ ଗଣ ଯହିଁ କରେ ପ୍ରଚୁର ॥୩୫॥

ହବ୍ୟାହ ବରାହ ଲୀଳା ଯହିଁ ବିସ୍ତାର ।
ବହୁତ ହରିର ଯେଣୁ ସେହୁ ଆକାର ॥୩୬॥

---

୨୫।୨ ଖ- ଦେବରାଜତ କରଇଂ ( ? )
୨୬।୧ ଖ- ୦ସ୍ୟନ୍ଦନଂ
୨୭।୨ କ-ଗ- ନାନା ତାରଗଣେ
୨୮।୨ କ-ଗ- ଛନ ମୁଖ ଅବକାଶ ଏ ଅବସ୍ଥାନ

୩୧।୧ କ ୦ପ୍ରପସ
୩୧।୨ ଖ- ୦ସ୍ୱାବାସ ଗ- ୦ଅଭ୍ୟାସ
୩୨।୨ ଖ- ପୁଣଂ ଗ- ୦ଶୋଭାସିନ୍ଧୁର
୩୩।୨ ଗ- ୦ହରଉଛି ମନ

ବାଜରଜ ଶଙ୍ଖ ପୁଷ୍ପମାନଙ୍କେ ଶୋଭ ।
ଯେହ୍ନେ ହରେ ଚନ୍ଦ୍ରସୂରକରକୁ ପ୍ରଭ ॥୩୭॥

ଦେଖ ଦେଖ ଶୋଭାବନ ବନ ଲକ୍ଷଣ ।
ନାନା ପ୍ରକୃତିଗଣେ ଏଥି କରନ୍ତି ରଣ ॥୩୮॥

ଏମନ୍ତ ପ୍ରକାରେ କଉତୁକ ବଚନେ ।
ପ୍ରବେଶ ହେଲେକ ସିଦ୍ଧ ଆଶ୍ରମ ସ୍ଥାନେ ॥୩୯॥

ବୋଲନ୍ତି ସେ ବିଶ୍ୱାମିତ୍ର ଶୁଣ ଶ୍ରୀରାମ ।
ଆସ ବାବୁ ଦେଖିବ ଆମ୍ଭର ଆଶ୍ରମ ॥୪୦॥

ଶୁଣି ବିଶ୍ୱାମିତ୍ର ବାଣୀ ରଘୁତିଳକ ।
ବସିଲେ ଋଷିମଣ୍ଡଳୀ ଜନେ ଜନେକ ॥୪୧॥

ଦେଖି ସର୍ବ ଋଷି ତାଙ୍କୁ କଲ୍ୟାଣ କଲେ ।
ଷଡ଼ର୍ଘ୍ୟ ପୂଜନ ଦ୍ରବ୍ୟ ଆସନ ଦେଲେ ॥୪୨॥

ଦ୍ରବ୍ୟ ଫଳମୂଳମାନ ଦେଲେକ ଆଣି ।
ଭୁଞ୍ଜିଣ ସନ୍ତୋଷ ହେଲେ କୋଦଣ୍ଡପାଣି ॥୪୩॥

ବିଶ୍ୱାମିତ୍ର ସଙ୍ଗେ ତହିଁ ସୁଖେ ରହିଲେ ।
ଅତି ହିଁ ଆନନ୍ଦେ ସେ ରଜନୀ ବଞ୍ଚିଲେ ॥୪୪॥

ଏହୁ ଶ୍ରୀରାମ ବିଳାସ ତୃଷ୍ଣାସୁ ଛାନ୍ଦ ।
ଶୁଣିଣ ସୁଜନ ଜନେ ହୁଅ ଆନନ୍ଦ ॥୪୫॥

ଏହୁ ରଘୁନାଥ ପାଦ କମଳ ଚିନ୍ତି ।
ଭଣେ ଏ ଚରିତ୍ର ଧନଞ୍ଜୟ ନୃପତି ॥୪୬॥

●

---

୩୬।୧ ଭ- ଦ୍ରବ୍ୟ ବସ୍ତ୍ର ଫଳ ପଦ୍ମିବେ।
ଘ- ଦ୍ରବ୍ୟ ବସ୍ତ୍ର ଲଡ ପଦ୍ମିରେ।
୩୮।୧ ଭ- ।ଶୋଭାବନ ବନ।
।ଶୋଭାବର ବେଢ।
୩୮।୨ ଖ- ନାନା ପକ୍ଷୀଗଣେ।
୩୯।୨ ଭ- ଋଷିଙ୍କ ଅଶ୍ରମ ଖ-ଗ- ଶିଷ୍ୟ ଆଶ୍ରମ।
୪୦।୨ ଭ-ଗ ।ଦେଖିବା।
୪୧।୧ ଖ- ।ରଘୁତିଳେକ ଗ- ।ରଘୁକୁଳେକ
୪୧।୨ ଙ- ।ଜନେ ଜନେକ
୪୬।୨ ଭ- ।ଧନଞ୍ଜୟ। ଗ- ।ଧନଞ୍ଜୟ।

# ଚତୁର୍ଥ ଛାନ୍ଦ

## (ରାଗ—ମଙ୍ଗଳ ବରାଡ଼ୀ)

ଏଥୁ ଅନନ୍ତରେ ରଜନୀ ଆସି ହୋଏ ପ୍ରଭାତ ।
ବନାନ୍ତରେ ମଞ୍ଜୁ ଶୁଭିଲା ତାମ୍ରଚୂଡ଼ର ରୁତ ॥୧॥

ନାନା ପକ୍ଷୀ କୋଳାହଳରେ ପୂରେ ସକଳ ଆଶା ।
ହିମକର କର ଲୁଚିଲା ଦେଖି ବିଚ୍ଛେଦ ଦଶା ॥୨॥

ଚକ୍ର ଚକ୍ରବାକୀ ଆନନ୍ଦ ପ୍ରାଚୀ ଅରୁଣ ଦଶେ ।
ପୁଷ୍ପ ବିକାଶ ଗନ୍ଧ ଯେବେ ଗନ୍ଧବାହ ପ୍ରକାଶେ ॥୩॥

ଦର ମୁକୁଳିତ କୁମୁଦ କୋଳ ତେଜି ଭ୍ରମର ।
ନଳିନୀ ନଳିନୀ ବେହାରେ ହୋଏ ଅତି ସତ୍ୱର ॥୪॥

ପ୍ରାଚୀ ନାରୀ ରତ ସମାନ ଦୂର କରଣ କରେ ।
ଲେପିଲା ଅଙ୍ଗରେ କୁଙ୍କୁମ ରାଗ ଅତି ସ୍ନେହରେ ॥୫॥

କମଳିନୀ ଚିତ୍ତ ଆନନ୍ଦ ହେଲା ଏଣୁ ବିସ୍ତାର ।
ଯେଣୁ ହିମ ଭାବ ଲେତେକ କରେ କଲା ତା ଦୂର ॥୬॥

ହବା କାନ୍ତାକୁ ଆଲିଙ୍ଗନ କଲା ସହସ୍ର କରେ ।
ଦେଖିଣ ଯେ ଶଶୀ ପଶିଲା ଅସ୍ତ ଗିରି ଗହ୍ୱରେ ॥୭॥

କୁମୁଦିନୀର ଶିରେ ପାଦ ଅତି କ୍ରୋଧରେ ଦେଲା ।
ରକ୍ଷକ ଭ୍ରମରଇଁ ହୁଁକାର ବାଣୀ ମନେ ନ କଲା ॥୮॥

ଇନ୍ଦୀବର ଲତା କାମିନୀ ଭୃଙ୍ଗମାଳ କବରୀ ।
କରେ କ ଧରି ଆକର୍ଷିଲା ରବି ବିଧୂର ଧରି ॥୯॥

ଏସନ ଦେଖି ଭୟ ପାଇ ତମ କନ୍ଦରେ ଗଲା ।
କେତେ ହିଁ ଛିନ୍ନଭିନ୍ନ ହୋଇ ଲତାନ୍ତରେ ରହିଲା ॥୧୦॥

---

୧। ଗ- ତାମ୍ରଚୂଡ଼ ଆରତ
୨। ଖ- ସକଳ ଆସା
୨। କ-ଗ- ବିଚ୍ଛେଦ ଦଶି, ଖ- ହିଦେଖି ଆଶା
୩। କ- ରୁଚ ଅରୁଣ ଦଶେ ।
୪। ଖ- ବିକଶିତ କୁମୁଦ
୫। ଖ- କରଣ ହରେ
ଗ- ମୁକୁଳିତ କୁସୁମ
୫। ଖ- ଲେପିଲେ ବା ଅଙ୍ଗେ
୬। ଖ- ଯେଣୁ ହିଁ ମଳିନ
୭। ଙ- ଦେଖିଲା କେ ଶଶି ଖସି ଲା ଅସ୍ତଗିରି ଶିଖରେ
୮। କ- ଶିରି ପାଦ, ଙ- ଶିରେ ପାଦ
ଗ- ରଣିର ପାଦ
୮। ଖ- ରକ୍ଷକ ଭ୍ରମରଂ, ଗ- ବର୍ଜିତ ଭ୍ରମରଇଁ
୯। ଖ- କାମିନୀ କବରୀ
ଗ- ଭୃଙ୍ଗମାନଙ୍କୁ ଧରି
୧୦। ଖ- ତେ ତହିଁ ଛିନ୍ନ ଭିନ୍ନ

କିବା ତମ ଭେଦ ବିଦାର ଭଳି ଭଲରେ ଦର ।
ଉଦୟ ଅଚଳ ଗିରିରୁ ଅଛ ବେଗେ ପ୍ରସାର ॥୧୧॥

ତେଣୁ କରି ଅଛ ଲୋହିତ ତାର ଶ୍ରୋଣିତ କି ଏ
ମୃଗ ଭୟେ ମୃଗ ଲାଞ୍ଛନ ଗଲ୍ଲ ଅଛ ସଭୟେ ॥୧୨॥

ଦିବ୍ୟମଣି ଦିନମଣିକି ପ୍ରାଚୀ ନାସା ଶେଖର ।
କିବା ଉଦୟାଚଳ ଶିର ଜବା କୁସୁମ ସାର ॥୧୩॥

କିବା ସୁରରାଜ ମସ୍ତକ ସ୍ୱେଦ୍ଦୁ କନକ ଛତ୍ର ।
ଏ କି କୁନ୍ଦୁଦନ ଫଳକ ଏଣେ ଅଛି ଦଶଇ ॥୧୪॥

ଏମନ୍ତ ପ୍ରକାଶ କ୍ଷମରେ ହେଲେ ଗ୍ରସ୍ତା ରମଣ ।
ଅଶେଷ ପ୍ରକାରେ କଲେ ସେ ତମ କୁଳ ବାରଣ ॥୧୫॥

ଦେବଙ୍କ ଆଳୟେ ଶାରଙ୍ଗ ଧ୍ୱନି ହେଲା ବିସ୍ତାର ।
ସ୍ନାନ ସାରି ଅର୍ଘ୍ୟ ସୂର୍ଯ୍ୟଙ୍କୁ ଦେଲେ ମୁନି ନିକର ॥୧୬॥

ଶଯ୍ୟା ତେଜି ରାମ ଲକ୍ଷ୍ମଣ ନିତ୍ୟ କର୍ମ ସାରଣ ।
ବୋଲନ୍ତି ଶୁଣ ଗାଧି ସୁତ କର ଯାଗ ବିଧାନ ॥୧୭॥

ଶୁଣି ଆନନ୍ଦେ ବିଶ୍ୱାମିତ୍ର ଋଷି ଗଣନ୍ତ ବର ।
କରନ୍ତି ଯାଗ ବିଧି ତହିଁ ବେଦ ଧ୍ୱନି ବିସ୍ତାର ॥୧୮॥

ରକ୍ଷାକରନ୍ତି ରାମ ଲକ୍ଷ୍ମଣ ସନ୍ଧି କୋଦଣ୍ଡେ ଶର ।
ନଭେ ଦିଶିଲା ଉତପାତ ଅତି ଘୋର ଆକାର ॥୧୯॥

ଘନ ଗର୍ଜନ ଧ୍ୱନି କରି କଲେ ଶ୍ରୋଣିତ ବୃଷ୍ଟି ।
ଗଗନ-ବିଚ୍ଛିନ୍ନ ହୋଇଣ ପଡ଼େ ନିର୍ଘାତ କୋଟି ॥୨୦॥

ଏହି ସମୟେ ଘୋର ଧ୍ୱନି ପୂରେ ଗଗନ ତଳ ।
ଦିଶିଲେ ନାନା ବର୍ଣ୍ଣ ରୂପ ହୋଇ ଦନୁଜକୁଳ ॥୨୧॥

---

୧୧।୧ ଗ- ୦ଭଲରେ ଦର ଦର
୧୧।୨ କ-ଗ- ୦ଅଚଳ ଦଶିରୁ ଅଛ ବେଗେ୦
୧୨।୧ କ-ଗ- ୦ଛର ଶ୍ରୋଣିତେ୦
୧୩।୧ ଖ- ଦ୍ୟୁମଣି୦
୧୩।୨ କ-ଗ- ୦ଉଦୟ ଅଚଳ୦ ୦କୁସୁମଶର
୧୪।୧ ଖ- ୦ଗ୍ରସ୍ତା କି୦
୧୫।୧ କ-ଗ- ୦କ୍ଷମରେ୦
୧୫।୨ କ- ୦ଚଳେ ସେ ତମକୁ୦ ଦାରଣ (?)
୧୬।୧ କ- ଆଳେ୦ ଖ- ୦ଆଳଏ୦
୧୭।୧ କ-ଗ- ୦ସେଯ୍ୟା, ଲକ୍ଷଣ ଖ- ୦ସେଜ୍ୟା୦
୧୭।୨ କ-ଖ-ଗ- ଗାଧୀ
୧୯।୧ କ-ଗ- ୦ଲକ୍ଷଣ୦
୨୦।୧ ଘନ ଗର୍ଜ୍ଜନ ଧ୍ୱନି
୨୦।୨ ଖ- କ-ଖ - ବିଛିନ୍ନ
୨୧।୧ ଖ- ୦ଗଗନତଳେ
୨୧।୨ ଖ- ୦ବର୍ଣ୍ଣେ ରୂପ୦ ୦କୁଳେ

ସୁବାହୁ ମାରୁତ ଏ ବେନି ଅସ୍ତ୍ରସର ଝୋଇଣ ।
ଧାମନ୍ତି ଘୋର ନାଦ କରି ଦେଖି ଭୂଦେବଗଣେ ॥୨୨॥

ବୃକ୍ଷ ପାଷାଣ ବୃଷ୍ଟିଘାତେ କଲେ ଅଦୃଶ୍ୟ ମଣ୍ଡା ।
ଆରତେ ଡାକେ ଋଷିଗଣ ରାମ କର ହେ ତ୍ରାହି ॥୨୩॥

ଶୁଣି ରଘୁନାଥ କୋଦଣ୍ଡେ କରି ଆମନ୍ତ୍ର ପୁଣି ।
କରନ୍ତେ ସେ ଅସ୍ତ୍ର ସନ୍ଧାନ ତାହା ମାରୁତ ଜାଣି ॥୨୪॥

ବନ ଗ୍ଭଡ଼ଣ ପଳାବନ୍ତେ ଅସ୍ତ୍ର ବେଗେ ଉଡ଼ିଲା ।
ମାନବାସ୍ତ୍ର ବେଗେ ତାହାକୁ ଶତ ଯୋଜନେ ନେଲା ॥୨୫॥

ସମୁଦ୍ର ମଧ୍ୟେ ପକାଇଲା ନାହିଁ ଜ୍ଞାନ ତାହାର ।
ତାହା ଦେଖି ବେଗେ ଧାଇଁଲା ରୋଷେ ସୁବାହୁ ବୀର ॥୨୬॥

ଦେଖି ରଘୁନାଥ ଆଗ୍ନେୟ ଅସ୍ତ୍ର ପେଷେ ବହନ ।
ତେଣୁ ହୋଇଲା ଭସ୍ମସାର ସେହୁ ଅତି ପିଶୁନ ॥୨୭॥

ଶ୍ରେଷ୍ଠ ଶ୍ରେଷ୍ଠ ରକ୍ଷି ଯେମାନେ ଥିଲେ ତାହାକୁ ପୁଣି ।
ସୁମିତ୍ରା ସୁତ ଶରଘାତେ ସେ ଗଲେ ସଞ୍ଜୀବନ୍ତ ॥୨୮॥

ଦେଖି ଦେବେ ପୁଷ୍ପ ବରଷି କଲେ ଜୟ ଜୟ ଧ୍ୱନି ।
ଅତିହିଁ ଆନନ୍ଦ ହୋଇଲେ ବିଶ୍ୱାମିତ୍ର ସେ ମୁନି ॥୨୯॥

ରାମଙ୍କୁ ସନ୍ତୋଷେ ଆଶିଷ ଦେଲେ ସକଳ ଋଷି ।
କିନ୍ନର ସ୍ମରଣ ଆନନ୍ଦେ ଦେବ ଦୁନ୍ଦୁଭି ବାଜି ॥୩୦॥

ନୃତ୍ୟନ୍ତି ଅପସରଗଣ ଚକ୍ଷି ହୋଇ ଆନନ୍ଦ ।
ମେରୁ ପୃଷ୍ଠରେ ସଭା କରି ବସେ ଅମର ବୃନ୍ଦ ॥୩୧॥

---

୨୨।୨ କ- ୦'ଦେଖି ଭୂଦେବ' ପୋଥରେ ନାହିଁ
୨୩।୧ ଖ- ୦ବୃକ୍ଷାଘାତେ କଲେ
୨୩।୨ ଚ-ଗ- ୦କରବା ତ୍ରାହି
୨୪।୨ ଗ- ୦ଅସ୍ତ୍ର ଦେଇ
୨୫।୧ ଖ- ବଳ ୦ଅସ୍ତ୍ର
୨୫।୨ ଙ- ମାନବା ଅସ୍ତ୍ରବେ
୨୬।୨ ଖ- ୦ଦେଖିକରି
୨୭।୧ ଚ-ଗ- ଏହା ଦେଖିଣ ରଘୁନାଥ ଅସ୍ତ୍ର
ଗ- ୦ଅଗ୍ନେୟ ଅସ୍ତ୍ର
୨୭।୨ ଚ-ଗ- ଭସ୍ମ ଶରୀର
୨୮।୧ ଘ- ଶ୍ରେଷ୍ଠ ହୋଇ ଯେମାନେ
୨୮।୨ ଖ- ସୁମିତ୍ରା ୦ପକେଇ ଦେଇ
୨୯।୨ ଗ- ୦ବିଶ୍ୱାମିତ୍ରେଶ୍ୱ
୩୦।୧ ଖ-ରାମଙ୍କୁ ଆନନ୍ଦେ
୩୦।୨ ଚ-ଘ- ଦୁନ୍ଦୁଭି ଗ- ଦୁନ୍ଦୁଭି
୩୧।୧ ଖ- ୦ହୋଇ ଅତି ଆନନ୍ଦ
୩୧।୨ ଖ- ୦କରି ଦେବେ

ଋଷି ଟଣ ଯାଗ ସମ୍ପୂର୍ଣ୍ଣ କରି ହେଲେ ଆନନ୍ଦ ।
ବୋଲନ୍ତି ତୁ ରଘୁନନ୍ଦନ ଅଟୁ ଜଗତବନ୍ଦ ।।୩୨।।

ତୋହୋ ବିନୁ ଦନୁ ନନ୍ଦନ ଆନେ ନୁହନ୍ତି ନାଶ ।
ଅବନୀ ଭାର ନିବାରଣେ ତୁ ଯେ ମନୁଷ୍ୟ ବେଶ ।।୩୩।।

ଏଥୁ ଅନ୍ତରେ ବିଶ୍ୱାମିତ୍ର ରାମ କୋଳରେ ଧରି ।
ଦିବ୍ୟ ଅସ୍ତ୍ରକୁ ପୁଣ ଦେଲେ ମନ୍ତ୍ର ସହିତ କରି ।।୩୪।।

ଆଧାନ ସନ୍ଧାନ ସଂଗ୍ରହ ବୀଜ ସକଳ ଯେତେ ।
ରାମ ଲକ୍ଷ୍ମଣଙ୍କୁ ଦେଲେ ଯେ ଅତି ଆନନ୍ଦ ଚିତ୍ତେ ।।୩୫।।

ବିଶ୍ୱାମିତ୍ରଙ୍କର ଆଶ୍ରମେ ହୋଇ ଅତି ହରଷ ।
ରଘୁନନ୍ଦନ ତହିଁ ରହିଲେ ଦଶରଥଙ୍କ ଶିଷ୍ୟ ।।୩୬।।

ଶ୍ରୀରାମ ବିଳାସ ଚତୁର୍ଥ ଛାନ୍ଦ ଏହୁ ସମ୍ପୂର୍ଣ୍ଣ ।
ଯାଗ ରକ୍ଷଣ ନାମ ଏହା ଶୁଣି ହୁଅ ସୁମନ ।।୩୭।।

ରଘୁବର ପାଦ ଯୁଗଳ କରି ମନରେ ଧ୍ୟାନ ।
ଭଣନ୍ତି ନୃପ ଧନଞ୍ଜୟ ହୋଇ ହରଷ ମନ । ।।୩୮।।

---

୩୨।୧ ଖ- ଭରଣ ହୋଇ ହେଲେ
୩୩।୧ କ-ଗ- ବନ୍ଦ ନନ୍ଦନ ଆନେ ନୁହନ୍ତି ଦାସ
ଖ- ଦୂନ ନନ୍ଦନ
୩୩।୨ ଖ- ରୂପେ ମନୁଷ୍ୟ ବେଶ
୩୪।୨ ଖ- ଦ୍ରିବ୍ୟ ଅସ୍ତ୍ରକୁ ପୁଣ
୩୫।୧ କ-ଗ- ଅଧ୍ୟାନ
୩୫।୨ କ-ଗ- ଲକ୍ଷଣଙ୍କୁ
୩୬।୨ ଖ- ଦଶରଥଙ୍କ ସିଶ ।
୩୭।୧ କ- ସମ୍ପର୍ନ ଖ- ଏହୁ ଛନ୍ଦ ସୁଜନ
୩୮।୨ କ- ଧନୁର୍ଜୟ ଗ- ଧନର୍ଜୟ

# ପଞ୍ଚମ ଛାନ୍ଦ

## (ରାଗ ଚୋଖି)

ଏମନ୍ତେ ତ୍ରିଯାମା ଶେଷ ଜାଣି ଦଶରଥ ଶିଷ୍ୟ
ଶଯ୍ୟା ତେଜି ଉଠି ରଘୁନନ୍ଦନ ବସି,
ଆତ୍ମାରେ ଆତ୍ମାକୁ ଧ୍ୟାନ କରଣେ ନିବେଶି ମନ
ଇନ୍ଦ୍ରିୟ ନିଗ୍ରହ କଲେ ସେ ହୃଷୀକେଶି ।
ନୟନ ଭ୍ରୂଲତା ମଧ୍ୟରେ,
ନିବେଶି ଚନ୍ଦ୍ର ଜ୍ୟୋତିକି ଧ୍ୟାନ ନିର୍ଭରେ ॥୧॥

ଏଥୁ ଅନ୍ତେ ରଘୁମଣି ଧରଣ ଲକ୍ଷ୍ମଣ ପାଣି
ମନ୍ଦାକିନୀ ଜଳେ ଯାଇ ସ୍ନାହାନ କରି,
କରଣ ସନ୍ଧ୍ୟା ତର୍ପଣ ତୋଷି ଦେବ୍ୟ ପିତୃଗଣ
ବାହୁଡ଼ି ବିଜୟ କଲେ କୋଦଣ୍ଡଧାରୀ ।
ବୋଲନ୍ତି ସେ ଗାଧି ନନ୍ଦନ,
ଶୁଣ ମୋର ଏକବାଣୀ ରଘୁନନ୍ଦନ ॥୨॥

ମିଥିଳା ଜନକ ପୁର ହେଉଅଛି ସ୍ୱୟମ୍ବର
ଶିବ ଧନୁ ଦୃଢ଼ ହୋଇଅଛି ତହିଁରେ,
ସକଳ ନୃପତିଗଣ ବରିଅଛି ନୃପଗଣ
ଦେଖିବା କିସ ବିଧାନ ଯିବା ସେ ପୁରେ ।
ଶୁଣି ମୁନିବର ବଚନ,
ବୋଲନ୍ତି ଶ୍ରୀରାମ ତୁମ୍ଭ ଆଜ୍ଞା ଯେସନ ॥୩॥

---

୧।୧ କ-ଗ- ଦଶରଥ ସୁତ
୧।୨ କ-ଗ- ଶେଯ୍ୟାଂ
୧।୪ କ-ଗ- ୦ହୃଷିକେଶ
୨।୨ କ-ଗ- ୦ସ୍ନାହାନ କରି
୨।୩ ଗ- ୦ସ୍କନ୍ଧ ବନ୍ଦନ ତୋଷି ଦ୍ୱିଜଂ
୨।୫ କ-ଖ- ଗାଧୀ
୩।୧ କ- ୦ହୋଇଅଛି ସମ୍ବେମ୍ବର
ଖ- ୦ଜନେକପୁର ହୋଇଅଛି
୩।୨ କ-ଖ- ୦ହୋଡ଼ଂ
୩।୩ କ- ୦ବରି ଅଛନ୍ତି ପରସ୍ତ
୩।୪ କ-ଗ- ଦେଖିବା କି ସେ

ସନ୍ତୋଷେ ଗାଧି ନନ୍ଦନ    ଘେନ ଶ୍ରୀରାମ ଲକ୍ଷ୍ମଣ

ଗଉତମ ଆଶ୍ରମକୁ କଲେ ଗମନ,

ଦେଖନ୍ତି ବିବିଧ ତରୁ    ଫଳ ପୁଷ୍ପ ଭରେ ସ୍ଥିରୁ

ମଧୂ ପୁଷ୍ପରାଗେ ଏ ଅବନୀ ଶୋଭନ ।

ଉଡ଼ନ୍ତି ଷଟ୍‌ପଦ ମଣ୍ଡଳୀ,

ଯୁଗ ଯୁଗ ହୋଇ କରେ କୁରଙ୍ଗ କେଳି ।।୪।।

କେବଣ ବ୍ରତତି ତତି    ପୁଷ୍ପ ଭରେ ଲୋଟେ କ୍ଷିତି

ପୁଂସ୍କୋକିଳ କାହିଁ କରୁଅଛନ୍ତି ରୁତ,

କେଉଁ ତରୁ ପ୍ରବାଳରେ    ଲାଗିଅଛି ବଲ୍ଲୀପରେ

ଚଞ୍ଚଳ କରଇ ମୁନିଜନଙ୍କ ଚିତ୍ତ ।

ଗନ୍ଧେ ପୂରେ ସକଳ ଆଶା,

କେଉଁଠାରେ ମଧୂ ନୀର କରେ ବରଷା ।।୫।।

ହରି ହରିଣ ସେ ମେଳ    ଶିଖଣ୍ଡୀ କୁଣ୍ଡଳୀ କୁଳ

ଯେ ଯାହା ବଇରି ଭାବ ତେଜିଣଛନ୍ତି,

ମୁନି ତପ ପ୍ରଭାବରେ    ନ ଧରି କ୍ରୋଧ ମନରେ

ମିତ୍ର ଭାବ ଘେନି ସର୍ବେ ଲୀଳା କରନ୍ତି ।

ଦର୍ଭଚୟ ଅତି ରଞ୍ଜନ,

ଇଙ୍ଗୁ ଧି ନିବାରେ ଶୋଭାପାଏ ସେ ବନ ।।୬।।

ପୁଣ ପୁନାଗ ଜମ୍ବୀର    ପନସ ଧାତ୍ରୀ ମାଲୂର

ନାରଙ୍ଗ ବୀଜପୂର ଲକୁଚ ଶୋଭା

ମଞ୍ଜୁ ବଞ୍ଜୁଳ ବାସନ୍ତୀ    ଫୁଲ୍ଲ କୁସୁମେ ବାସନ୍ତି

ମଧୂ ମଧୁରେ ମଧୁପ ହୋଇଛି ଲୋଭା ।

ନାରିକେଳ ପୂଗେ ଶୋଭନ,

ପୁଞ୍ଜି ପୁଞ୍ଜି ଦାଡ଼ିମ୍ବ କାହିଁରେ ରଞ୍ଜନ ।।୭।।

ରସାଳ ତାଳ ହେନ୍ତାଳ    ତମାଳ ମାଳ ମୁକୁଳ

ସରଳ ପିଆଳ ମାଳ ଅତି ମଞ୍ଜୁଳ,

କୁରୁବକ କୁରୁଣ୍ଟକ    ଶଙ୍କିକ ହଲ୍ଲିକ ବକ

ଶିରୀଷକ ମରୁବକ ଅଟେ ଉତ୍କୋଳ ।

ତେଜନ୍ତି କୁସୁମ ନିଚୟ,

ଦେଖନ୍ତେ ନୟନେ କାମ କରେ ଉଦୟ ।।୮।।

---

୪।୧ କ-ଖ ସ୍ଥାଧୀ
୪।୪ ଖ- ମଧୂ ପୁଂସ ପରାଗେଂ
୪।୬ ଖ- ଯୂଥି ଯୂଥଂ
୫।୩ ଗ- କେହୁ ତରୁ ପ୍ରବାଳରେ ଯଗିଅଛୁ ବଲ୍ଲୀଠାରେ
୫।୫ କ-ଗ ୦ସକଳେ ଆସି
୫।୬ କ-ଗ ୦କରେ ବରଷି
୬।୨ କ-ଗ ଯେ ଯାହାର ଭଏ୍ବ ହଷ୍ଟ ତେଜ ଅଛନ୍ତି
୬।୩ କ-ଗ ମୁନି ତମ ପ୍ରଭାତରେ
୭।୧ ଖ- ପୁଙ୍ଗ ପୁନାଙ୍ଗ ଜମ୍ବିଲ
୮।୧ ଖ- ୦ତାଳ ତମାଳ ବକୁଳ
୮।୩ କ-ଖ-ଗ- ସଲକ

କାହିଁ ଶୋଭିତ ନଳିନୀ ଶୋଭିତ ଫୁଲ ନଳିନୀ
କ୍ରୀଡ଼ନ୍ତି କଳହଂସିନୀ ଯେହ୍ନେ ମରାଳ,
ଡାକନ୍ତି ଡାହୁକ କୁଳ ଚକ୍ର ଚକ୍ରବାକୀ ମେଳ
ଟିଟିଭକ କାରଣ୍ଡବ ଧ୍ୱନି ଚହଳ ।
ସାର ସାରସରେ ସାରସ,
କମଳେ କମଳେ ଭୃଙ୍ଗ କରୁଛନ୍ତି ରସ ।।୯।।

କେବଣ ବଲ୍ଲୀ ତହିଁ ମାନିନୀ ପ୍ରାୟେ ଦିଶଇ
ସ୍ତବକ ମୁଖରେ ସେହୁ ହୋଇଛି ନତ,
ମଧୁପକାନ୍ତ ବିନୟ ନ ଶୁଣୁଅଛି ହୃଦୟ
ଚଳ ପଲ୍ଲବ ପାଣିରେ କରେ ବାରିତ ।
ମଧୁ ନୀର ଅଶ୍ରୁ ସନ୍ତତ,
ତେଜୁଅଛି ଅନୁକ୍ଷଣେ ଯେହ୍ନେ ବିନତ ।।୧୦।।

କାହିଁ ଉତ୍କୋଳ ମଧୁପ ହୋଇଣଛନ୍ତି ଲୋଲୁପ
ଚୁମ୍ବନ୍ତି କୁସୁମ ମଧୁ ରସରେ ମାତ୍ତି,
ବ୍ରତତି ତତି ସୁନ୍ଦର ଲୋଟନ୍ତି ମହୀ ଉପର
ତେଜନ୍ତି ମନ୍ଦ ମରୁତେ କୁସୁମପନ୍ତି,
ମନସିଜ ବିଜୟେ ଜାଣି,
ବିଞ୍ଚନ୍ତି କି ମୋତିଚୟ ବାର ରମଣୀ ।।୧୧।।

କାହିଁ ମଧୁ ନୀର ପୂର ପୁର ଦିଶେ ମନୋହର
ହରଇ ହରଷ ସୁର ମୁନି ଗଣର,
ନୟନେ କଲେ ଲୋକନ ଦହଇ ମୀନ କେତନ
ହରଇ ଚଞ୍ଚଳ କରି ମାନସ ପୁର ।
ଦେଖି କେଉଁ ବିଯୋଗୀ ଜନ,
ନ ତେଜି ରଖିବ ତାର ପ୍ରିୟ ଜୀବନ ।।୧୨।।

---

୯।୧ କ-ଗ- ନଳିଣୀ
ଖ- ଶୋଭିତ ଫୁଲ ନଳିଣୀ 'ନାହିଁ'
୯।୩ କ- ୦ଚକ୍ର ଚକ୍ରବାକ୦
୦ବାହୁକ କୁଳ
୧୦।୧ କ- ୦ମାନିନୀ
୧୦।୨ ଖ୦ ହୋଇଛୁ ରତ
୧୦।୩ କ-ଖ-ଗ- ମଧୁପକାନ୍ତ୦
୧୧।୫ ଖ- ବିଜଏ
୧୧।୬ କ-ଗ- ୦ବାର ରମଣୀ
ଖ- ୦ବିଞ୍ଚନ୍ତି
୧୨।୨ ଖ- ୦ମୁନିସୁର
୧୨।୪ କ-ଖ- ଚଞ୍ଚଳ କରେ ମାନସ ପୁର।ହରଇ
୧୨।୬ କ- ୦ପ୍ରୀତ ଜୀବନ
ଖ- ୦ପ୍ରୀତ ବଦନ

କେଉଣ ପ୍ରଦେଶେ ତହିଁ ଅଛନ୍ତି ଶିଖଣ୍ଡୀ ରହି
ନୃତ୍ୟନ୍ତି ଘେନି ସଙ୍ଗରେ ପ୍ରିୟାମଣ୍ଡଳୀ,
ଢଳାଇଣ ପୁଚ୍ଛ ଘର ହୋଇଛନ୍ତି ମତ୍ତଭର
ନ ଭଜେ ପାଶେ ତାଙ୍କର ଥିଲେ କୁଣ୍ଡଳୀ ।
ଋଷିବର ତପ ପ୍ରଭାବ,
ପ୍ରକାଶ ହୋଇଛି ତା ଦେଖିଲେ ରାଘବ ।।୧୩।।

ପଚ୍ଚରନ୍ତି ଆହେ ମୁନି ବଚନ ତ ଏହୁ ବଣୀ
ନାନା ଜନ୍ତୁମାନେ ତେଜି ଅଛନ୍ତି ହିଂସା,
ଏ ଅଟଇ କେଉଁ ବନ କହ ହେ ଗାଧି ନନ୍ଦନ
ପ୍ରସନ୍ନ ହୋଇଛି ଏଣେ ସକଳ ଆଶା ।
କରୁଅଛି ଚିତ୍ତ ଆନନ୍ଦ,
ଫଳ ପୁଷ୍ପ ଭରେ ଶୋଭା ଦଶେ ମାନନ୍ଦ ।।୧୪।।

ବୋଲନ୍ତି ସେ ବିଶ୍ୱାମିତ୍ର ଶୁଣ ରାଘବ ବଚନ
ଏଥି ଏକ ପ୍ରଦେଶେ ଗୌତମ ଆଶ୍ରମ,
ସ୍ୱର୍ଗହୁଁ ସେ ମନୋରମ କରଛି ଋଷିସତ୍ତମ
ତାହା ଦେଖିବାକୁ ବିଜେ କର ଶ୍ରୀରାମ ।
ଶୁଣି ଗାଧିସୁତର ବାଣୀ,
ହରଷ ହୋଇଲେ ମନେ କୋଦଣ୍ଡ ପାଣି ।।୧୫।।

ସଙ୍ଗତେ ଘେନି ଅନୁଜ କଲେ ବିଜେ ରଘୁରାଜ
ବେଢ଼ିଣ ଅଛନ୍ତି ମୁନିଗଣ ପାଖରେ,
ଅତି ଶୋଭା ଶୋଭାକର ଦେଖିଲେ ମୁନି କୁଟିର
ନ କରନ୍ତି ପକ୍ଷୀରୁତ ସେହୁ ଠାବରେ ।
ନାହିଁ ପଶୁଗଣଙ୍କ ରଙ୍ଗ,
ମୁନିବର ଶାପେ ହୋଇଛନ୍ତି ବିରଙ୍ଗ ।।୧୬।।

---

୧୩।୩ ଖ– ୦ମଦଭର
୧୩।୬ କ-ଗ- ୦ରାଘେବ
୧୪।୧ କ-ଗ- ୦ହେ ଷେଂ
୧୪।୨ ଖ- ୦ମାନ କର ଅଛନ୍ତ ହିଂସା (?)
୧୪।୩ କ-ଖ- ଗ୍ଧାଧୀ
୧୪।୫ ଗ- କରୁଅଛୁ

୧୫।୧ କ-ଗ- ୦ରାଘେବଂ
୧୫।୩ କ-ଖ- କରୁଛୁ
୧୫।୫ କ-ଖ- ୦ଗ୍ଧାଧୀସୁତ
୧୬।୪ ଖ- ୦ପଡ (କ୍ଷି)ରୁତଂ
୧୬।୬ ଖ- ୦ପାଶେଂ

ବୋଲନ୍ତି ରଘୁ ଉତ୍ତମ　　　କହ ହେ ମୁନି ସତ୍ତମ
କମ୍ପାଇ ଏମାନେ ପଶୁପକ୍ଷୀ ବହ୍ନିନ,
ନ କରେ ତପନ ବାଧା　　　ଶୁଣି ତ ମୋର ଶରଧା
ଆଜ୍ଞା ହେଉ ତୋଷମନେ ଗାଧି ନନ୍ଦନ ।
ରାମ ବାଣୀ ଶୁଣିଣ ମୁନି,
କହନ୍ତି ପୂର୍ବ ଚରିତ ହୃଦରେ ଗୁଣି ॥୧୭॥

ଶୁଣ ବାବୁ ରଘୁମଣି　　　ପୂର୍ବର ଏହୁ କାହାଣୀ
ଏକଦିନେ ଧାତା ଏକାନ୍ତରେ ବସିଣ,
ବିଚାରନ୍ତି କ କାରଣ　　　ପଡ଼ିଲା ରେଣୁ ନୟନ
ଚନ୍ଦ୍ର ଲୋକପାଳ କଲେ ମହୀପତନ ।
ଲୋଚନେ ସହିତେଣ ମିଶି,
ତକ୍ଷଣେ ଜାତ ହୋଇଲା ଏକ ସୁକେଶୀ ॥୧୮॥

କୋଟି ଚନ୍ଦ୍ରଜିତ ମୁଖ　　　ବଢ଼ାଏ ଅନଙ୍ଗ ସୁଖ
ଭ୍ରୂଲତା କାମ କମାଣ ନେତ୍ର ଶାୟକ,
ପିକ ମୃଦୁଳ ବଚନ　　　ଉଚ ସଞ୍ଚ ଘନସ୍ତନ
କରଇ ଅନଙ୍ଗ ରସେ ବିପୁଳ ସୁଖ ।
ତନୁ ଶୋଭା ବିଜୁଳି କାନ୍ତି,
ନୀଳ କୁଟିଳ ଚିକୁର ଭ୍ରମର ପନ୍ତି ॥୧୯॥

ଏହି ସମୟରେ ତହିଁ　　　ପ୍ରବେଶ ଶରୀର ସାଇଁ
କନ୍ଥା ଅନ୍ତରେ ପ୍ରବେଶ ହୋଏ ସବିତା,
ଦେଖି ରମଣୀ ବଦନ　　　ହେଲେ ବେନି ମୋହମାନ
ଚିତ୍ତ ଜାଣି ତାହାଙ୍କୁ ବୋଇଲେ ବିଧାତା ।
ଏକ ଯାମେ ବ୍ରହ୍ମାଣ୍ଡ ଯେହୁ,
ବୁଲି ଯେ ଆସିବ କନ୍ୟା ନେବ ହେ ସେହୁ ॥୨୦॥

---

୧୭।୪ କ-ଖ- ୦ଗ୍ଧାଧି୦
୧୭।୬ କ-ପୁବ
୧୮।୧ କ- ୦ସୁବର୦
୧୮।୪ ଖ-ଚନ୍ଦ୍ରଲେ କୋପ ବା କଲେ
୧୮।୫ ଗ- ଏତେକ
୧୯।୨ କ- ୦ଶାଏକ
୧୯।୪ କ-ଖ-ଗ-୦ଶୋକ
୨୦।୨ କ-ଖ- କନ୍ଥୁ ଅନ୍ତରେ୦
୨୦।୬ କ- ନେମ ହେ
ଖ- ନବ ଯେ

ଶୁଣି ଶଚୀଶ ମନ୍ଦିର ଆରୋହି ରଥ ସତ୍ୱର
ବ୍ରହ୍ମାଣ୍ଡ ବୁଲିବାକୁ ସେ କଲେ ଗମନ,
ପୁଣି ଲୋକକାନ୍ତ ତହିଁ ଗଉତମ ମୁଖ ଚାହିଁ
ବୋଲନ୍ତ ଋଷିଙ୍କି ତୁମେ ଯାଅ ବହନ ।
ବୁଲ ପୃଥ୍ୱୀ ନଅ ରମଣୀ,
ଶୁଣି ଧାତା ବାଣୀ ଉଠେ ତପୀଙ୍କ ମଣି ॥୨୧॥

ଲୋକକାନ୍ତ ପାଦେ ନମି ପ୍ରଦକ୍ଷିଣ କଲେ ମୁନି
ବୋଲନ୍ତ ତୋହର ତହୁଁ ବ୍ରହ୍ମାଣ୍ଡ ଜାତ,
ତୁମ୍ଭେ ସେ ସକଳ ଧାତା ତୁମ୍ଭେ ସେ ଜଗତପିତା
ତୁମ୍ଭେ ତ ସକଳ କଥା ଜାଣ ନିଯୁତ ।
ହସି ମୁନି ମୁଖକୁ ଚାହିଁ,
ବୋଲନ୍ତ ସ୍ୱୟମ୍ଭୁ କନ୍ୟା ନଅ ଯେ ତୁହି ॥୨୨॥

ରମଣୀ ରଚନ ମୁନି ଘେନକର ସ୍ତୁତି ଭଣି
ନିଜ ଆଶ୍ରମକୁ ବେଗେ କଲେ ଗମନ,
ପ୍ରବେଶ ଇନ୍ଦ୍ର ମନ୍ଦିର ପ୍ରବେଶ କେତେ କାଳର
ନମିଲେ ଆସିଣ ଲୋକକାନ୍ତ ଚରଣ ।
ହସିକର ବଧାତା ଭଣି,
ତୁମ୍ଭେ ନ ଆସୁ ଗୌତମ ନେଲ ରମଣୀ ॥୨୩॥

ବିରସ ମନରେ ହୋଇ ଶ୍ରେଷ ବହି ଶଚୀ ସାଇଁ
ଆପଣା ଗବକୁ ମନେ କରେ ଧିକ୍କାର,
ପାଶେ ଡାକ ପଞ୍ଚଶର କହନ୍ତ ବାଣୀ ମଧୁର
କର ତୁ ଗୌତମ ବାମା ଚିତ୍ତ ଅଥିର ।
ଶୁଣି ସୁରରାଜ ବଚନ,
ଭେଦିଲ ରମଣୀ ଅଙ୍ଗେ କୁସୁମ ବାଣ ॥୨୪॥

---

୨୧।୪ ଖ- ୦ଋଷି ହେ ତୁମ୍ଭେ୦
୨୨।୧ ଖ- ୦ପ୍ରଦକ୍ଷିଣେ୦
୨୨।୪ କ-ଗ- ତୁମ୍ଭେ ସେ୦
୨୩।୩ ଖ- ଏମନ୍ତେ କେତେବେଳର ପ୍ରବେଶ ଇନ୍ଦ୍ର ମନ୍ଦିର
୨୩।୬ ଖ- ତୁମ୍ଭେ ନ ଆସୁଁ
୨୪।୪ ଗ- କର ଗୌତମ ବାମାର୦

କପଟେ ଦେବଙ୍କ ବର ପ୍ରବେଶ ହେଲେ ସତ୍ୱର
ଋଷିବର ତପସ୍ୟାର ସମୟ ଜାଣି,
ହୋଇ ଗଉତମ ରୂପ କାମରେ ହୋଇ ଲୋଲୁପ
ମଧୁର କରଣ ତାକୁ କହନ୍ତି ପୁଣି ।
ଆସ ପ୍ରିୟେ ପ୍ରାଣର ଦାତା,
ଦେଖି ଉର୍ବଶୀକି ହେଲି କାମେ ମୋହିତା ।।୨୫।।
ହରଷେ ହରଷେ ବେନି ହୋଇ ପୁଣ ଅନ୍ୟୋଅନ୍ୟ
ରତି-ନାୟକ ଉତ୍ସବ କଲେ ଉଦତ,
ଖସିଲା ଅମୋଘ ରେତ ପୁରନ୍ଦର ଚଳଚିତ୍ତ
ନ ସମ୍ଭରି ବାସ ସେ ବାହାର ତ୍ୱରିତ ।
ପଥେ ତାକୁ ଦେଖିଣ ମୁନି,
ଶଙ୍କା ଚିତ୍ତ ହୋଇ ପଚାରନ୍ତି ସେ ପୁଣି ।।୨୬।।
କେହୁ ତୁ କାହିଁ ପ୍ରବେଶ ଧରିଅଛୁ ମୋର ବେଶ
ନିଶ୍ଚୟେ କହ ତୁ ମୋତେ ନୋହିଲେ ତୋତେ,
କରିବି ମୁଁ ଭସ୍ମ ଶିର ସନ୍ଦେହ ନାହିଁ ପାମର
ଶୁଣିଣ ହାସିତ ଲଭେ ମଘବା ଚିତ୍ତେ ।
ପାଦେ ନମି କହେ ବଚନ,
ମୁଁ କାମ କିଙ୍କର ଜାଣ ସୁର ରାଜନ ।।୨୭।।
କଲି ମୁହିଁ ପାପାଚାର ହରିଲି ପତ୍ନୀ ତୁମ୍ଭର
ଦୋଷ କ୍ଷମା କର ମୋର ବ୍ରହ୍ମା ନନ୍ଦନ,
ଏ ବଚନ ଶୁଣି ତହିଁ ପ୍ରଜ୍ୱଳିତ ତପୀସାଇଁ
ବୋଲନ୍ତି ମୋ ଶାପ ଘେନ ସୁର ରାଜନ ।
କଶ୍ୟପର ଅଷ୍ଟ ନନ୍ଦନ,
ବ୍ରାହ୍ମଣୀ ଯୋନିରେ ତୋର ବଳିଲା ମନ ।।୨୮।।

---

୨୫।୧ କ-ଗ- କପଟଂ ହେଲଂ
୨୫।୨ କ- ୦ତପସ୍ୟାକୁଂ
ଖ - ୦ସମଏଂ
୨୫।୩ କ- ଗୌତମ ସ୍ୱରୂପ କାମରେ ଅତି ଜଜଲୁପ
ଖ- ୦ଅତି ଲୋଲୁଧ
୨୫।୫ କ-ଗ- ୦ପ୍ରାଣର ଧାତା
ଖ - ଆସପ୍ରିୟ୍ୱା
୨୫।୬ ଖ- ୦କାମେ ମୁ ମତା (ଣ୍ଟି)
୨୬।୧ ଗ- ୦ହୋଇଣ ସେ ଅନ୍ୟାଅନ୍ନ
୨୬।୨ କ-ଗ- ରତିନାଏକ ଉଚ୍ଛେଦ କଲେ ଉଛତ
ଖ- ୦ଉର୍ଧତ
୨୬।୪ ଙ- ୦ସମ୍ଭାଲି୦
୨୬।୬ କ-ଗ- ସେ ପଚାରନ୍ତି ପୁଣି
୨୭।୧ କ-ଙ- କେହୁ ରୁ କାହୁଁ ପ୍ରବେଶଂ
୨୭।୨ ଙ- ନଚୟେ
୨୭।୩ ଖ- ଭସ୍ମସାର
୨୭।୪ କ-ଗ- ଶୁଣିଣଂ ଭ୍ରାସିତ ଚତେଂ
୨୮।୧ କ- ୦କଲିମୁ ମୁହିଁ ପାମର
ଗ- କଲି ତ ମୁହିଁ ପାମର
୨୮।୨ କ- ୦କ୍ଷେମା କର
୨୮।୪ କ-ଗ- ବୋଲନ୍ତି ହେଂ

ହେଲୁ ତୁ ଯୋନି ଲାଳସ ଧର୍ମ ତୋର କଲୁ ନାଶ
ଏଣୁ ତୋର ଦେହେ ହେଉ ସହସ୍ର ଯୋନି,
ଅଣ୍ଡ ଛିଡ଼ିପଡ଼ୁ ତୋର ପ୍ରାଭବ ପାଅ ପାମର
ଏତେ ବୋଲି କ୍ରୋଧଭରେ ଗଲେ ସେ ମୁନି ।
ଆଶ୍ରମରେ ପ୍ରବେଶ ହୋଇ,
ଦେଖିଲେ ସୁନ୍ଦରୀମଣି ଥରସ ଚହିଁ ।।୨୯।।

କମ୍ପଇ ତନୁ ଲତିକା ମରୁତେ ଯେସନେ ଲତିକା
ବର୍ଣ୍ଣହି ବଦନ ଗାତ୍ର ଦଶେ ପାଣ୍ଡୁର,
ମୁଖେ ଦଶନ ବସନ ନ ଆସେ ମୁଖେ ବଚନ
ତେଜେ ନୟନୁ ଜୀବନ ଅତି ସତ୍ତ୍ୱର ।
ଏମନ୍ତ ଦେଖିଣ ତା ଗତି,
ବୋଲେ ମୁନି ପାଷାଣ ତୁ ହୁଅ ଯୁବତି ।।୩୦।।

ପୁଣି ବୋଲେ ଗଉତମ ମୋହର ଏହୁ ଆଶ୍ରମ
ଆଜ୍ଞ୍ ଏ ହୋଇବ ପଶୁପକ୍ଷୀ ବର୍ଜିତ,
ନ ଫଳିବ ବୃକ୍ଷେ ଫଳ ନ ଥିବ ଏ ସ୍ଥାନେ ଜଳ
ନିରାହାର ହୋଇ ତୁହି ଥାଅ ସନ୍ତତ ।
ସୁରକର ଘୋର ବରଷା,
ହେମନ୍ତ ଶିଶିର ସହିଥାଅ ସୁକେଶା ।।୩୧।।

ଘୋର ଶାପ ଶୁଣିକରି କାତର ହୋଇ ସୁନ୍ଦରୀ
ଚରଣେ ପଡ଼ି ତାଙ୍କର କହେ ବିନତି,
ମୋର କିଛି ଦୋଷ ନାହିଁ ଶୁଣିମା ଦେବ ଗୋସାଇଁ
ହରିଛି ମତେ କପଟେ ଏ ଶଚୀପତି ।
ଶାପ ପ୍ରତିକାର ମୋ କର,
ଶୁଣି କୃପା ହୋଇ କହେ ସେ ମୁନିବର ।।୩୨।।

---

୨୯।୧ ଙ- ୦କଲୁ ମୋର ପତ୍ନୀ ନାଶ
ଙ-୦ ଧର୍ମ ତୋ ହୋଇଲା ନାଶ
୩୦।୨ ଗ- ବର୍ଣ୍ଣହି
୩୧।୧ ଚ-ଛ- ପୁଣ
୩୧।୫ ଚ-ଛ- ଘନ ବରଷି
ଙ- ୦ଘୋର ବରଷା୦
୩୨।୨ ଚ-ଛ- ୦ସୁକେଶି
୩୨।୨ ଖ- ୦ପଡ଼ିଣ ତାଙ୍କ୦
ଗ- ୦କରେ ବିନତି
୩୨।୪ ଚ-ଛ- ୦ଶଚୀ ସାଇଁ
ଙ- ୦ହରିଲା ବାଟେ ମୋତେ୦

ବୋଲନ୍ତି ସେ ବ୍ରହ୍ମବେତ୍ତା ଶୁଣସି ଆରେ ବନିତା
ରାମ ରାମ ନାମ ଜପ କର ଅନାଶ,
ରାବଣ ବଧ କାରଣ ଜନ୍ମିବେ ଶ୍ରୀ ନାରାୟଣ
ଦଶରଥ ଘରେ ହେବେ କୌଶଲ୍ୟା ଶିଷ୍ୟ ।
ଅନୁଜ ସଙ୍ଗତେ ଶ୍ରୀରାମ,
କେତେଯୁଗେ ମିଳବେ ସେ ଏହୁ ଆଶ୍ରମ ।।୩୩।।
ଯେବେ ତା ଚରଣ ରେଣୁ ଲଗିବ ତୋରେ ସୁତନୁ
ତେବେ ତୋ ସକଳ ପାପ ହେବ ବିଧ୍ୱଂସ,
ହୋଇବୁ ତୁ ଦିବ୍ୟ ବେଶ ପୂଜିବୁ ତୁ ରଘୁଶିଷ୍ୟ
ତେବେ ତୁ ମିଳବୁ ଆସି ମୋହର ପାଶ ।
ଏସନ ଯେ ବୋଲ ଗୌତମ,
ସେହୁଦିନୁ କଲେ ହେମବନ୍ତେ ଆଶ୍ରମ ।।୩୪।।
ସେ ଦିନୁ ତୋ ପାଦରଜ ବାଞ୍ଛାକରି ରଘୁରାଜ
ଅଛି ଏ ଆଶ୍ରମେ ଗଉତମ ବନିତା,
ତାରେ ହୁଅ କୃପାଚେତା ହୁଅ ଶାପ ମୋକ୍ଷ ଦାତା
ଏତେ ବୋଲ ଧରି କର ସେ ଉର୍ଦ୍ଧ୍ୱରେତା ।
ପ୍ରବେଶ ଅହଲ୍ୟା ପାଶରୁ,
ବୋଲନ୍ତି ଏହୁ ପାଷାଣ ରମଣୀବରୁ ।।୩୫।।
ଶୁଣି ସେ ହରଷ ହୋଇ ଶିଳାରେ ଚରଣ ଦେଇ
ଥିର କରି ଦିଅନ୍ତେ ସେ ଦେବ ଶ୍ରୀରାମ,
ଛାଡ଼ିଲା ଉପଳ ରୂପ ହୋଇଲା ସେ ପୂର୍ବରୂପ
ନମ୍ର ମୁଖେ ରହିଲା ସେ ରାମାଉତ୍ତମ ।
ରାମ ତାଙ୍କ ପାଦ ଛୁଇଁଣ,
ପ୍ରଣାମ କରଣ ଊଭା ହୋଇଲେ ବହନ ।।୩୬।।

---

୩୩।୩ କ- ୦ନାରାଏଣ
୩୩।୪ ଖ- ୦କୌଶଲ୍ୟା ସୂତ
୩୪।୧ ଖ- ୦ତୋହର ତନୁ
୩୪।୩ ଖ- ୦ହୋଇଣ ତୁ୦
୩୪।୪ କ- ରତେ ତୁ୦
ଖ- ୦ତୁ ମୋର ପାଶ
୩୪।୫ ଖ- ଏମନ୍ତ ସେ୦
୩୪।୬ ଖ- ହିମବନ୍ତେ
୩୫।୨ କ- ୦ଏ ଆଶ୍ରମେ ଗୌତମ (?)
ଗ- ୦ଏହୁ ଆଶ୍ରମେ ଗୌତମ
୩୫।୩ କ- ୦ହେଉ ଶାପର ମୋକ୍ଷତା
୩୫।୪ କ- ୦ଉଦାରେଣ
୩୫।୫ କ- ଅହଲ୍ୟ
୩୬।୧ ଖ- ଶିରରେ ଚରଣ
୩୬।୨ ଖ- ୦ଯେବେ ଶ୍ରୀରାମ୦
୩୬।୩ ଖ- ଛାଡ଼ି ଉପଳ ସ୍ୱରୂପ୦ ଦିବ୍ୟରୂପ
୩୬।୪ ଖ- ଲମ୍ବ୦
୩୬।୬ କ ଗ- ୦ପଦ ନ ଲଭିଲେ
ଖ- ୦ଅତ

ନବ ଜଳଧର ତନୁ      ନିନ୍ଦଇ କୋଟି ଅତନୁ
କଟୀ ତଟେ ଶୋଭା ଦିଶେ ପୀତ ଅମ୍ବର,
ନୟନ ଅମ୍ବୁଜ ଜିଣି      ଧନୁଶର ଶୋହେ ପାଣି
ଅନୁଜ ସହିତେ ଶୋଭା ସେ ରଘୁବୀର ।
ଗଉତମ ବଚନ ଶୁଣି,
ଦେଖି ବସ୍ତୁ ବୋଲ ନମେ ବର ରମଣୀ ।।୩୭।।

ଷଡ଼ ଅର୍ଘ୍ୟେ ପୂଜା କରି      ଗଲେ ହେମବନ୍ତ ଗିରି
ଏମନ୍ତେ ରଜନୀ ଆସି ହେଲା ପ୍ରବେଶ,
ବାରୁଣୀ ନାମ୍ନୀ ଶମ୍ବରି      ମଣ୍ଡିଲେ ଅତିଥିଙ୍କର
ସହସ୍ର କରରେ କଲେ ତାଙ୍କୁ ଆଶ୍ୱାସ ।
ପକ୍ୱ ଫଳ ସମାନ ରୁଚ,
ବନ୍ଧବାରୁ ଅନ୍ତ ନ ଲଭିଲେ ବିରଞ୍ଚ ।।୩୮।।

ପଦ୍ମିନୀ ହେଲେ ବିରସ      ବିରସ ଦେଖି ଦିନେଶ
ପ୍ରକାଶ ହେଲେ ନିଶୀଶ ପ୍ରାଚୀ ଦିଗରେ,
ସନ୍ଧ୍ୟା ଅରୁଣେ ପୂରିତ      ହୋଇଲେ ଦିଗ ପୂରିତ
ଖଣ୍ଡ ଖଣ୍ଡ ହୋଇ ଦିଶେ ଘନ ନଭରେ ।
ନାନା ପକ୍ଷୀ ପ୍ରକଟ ସ୍ୱନ,
କରଣ ଗମିଲେ ଯେଝା ସ୍ଥାନେ ବହନ ।।୩୯।।

ସନ୍ଧ୍ୟା ସାରି ରଘୁମଣି      ଋଷିଙ୍କ ସଙ୍ଗତେ ଘେନି
ଫଳମୂଳ ଭୋଜନ ଯେ କଲେକ ତହିଁ,
ବଞ୍ଚିଲେ ସେ ଘୋର ନିଶା      ଆଚ୍ଛାଦ ହୋଇଲେ ଆଶା
ଶୟନ କଲେକ ଋଷି ସଙ୍ଗତେ ଯାଇ ।
ଶେଷ ହେଲା ପଞ୍ଚମ ଛାନ୍ଦ,
ଶୁଣିଣ ବଢ଼ିବ ରସିକଙ୍କ ଆନନ୍ଦ ।।୪୦।।

---

୩୭।୫ କ- ଗୌତମ
ଖ- ସୁନ୍ତି
୩୮।୩ ଖ- ୦ଗିରର୦
୩୮।୫ କ-ଗ- ତାଙ୍କୁ ଫଳ୦
୩୮।୬ ଖ- ବନ୍ଧବାରୁ ଅତ୦
୩୯।୧ କ- ୦ବିରସ ଦେଖି ଜନେଶ
ଖ- ୦ବିରସ ଦେଖି ଜନେଶ (?)
ଗ- ଦେଖି ବିରସ ଦେଖି
୩୯।୨ ଖ- ପ୍ରକାଶ ହେଲେ ଦମିଶ
ଗ- ଦିନେଶ ପ୍ରକାଶ ହେଲେ ପ୍ରାଚୀ ଦିଗରେ
୩୯।୩ ଗ- ସ୍ୱନ ଅଚ୍ଛୁଟେ୦
୩୯।୪ କ-ଗ- ୦ଦେନ କ ଷରେ
ଖ- ୦ହୋଇବ ସେ୦
୪୦।୩ କ-ଖ- ଘୋର ଦଶି୦ ୦ଆସି
୪୦।୪ କ- ଶୋଷୁନ୦
୪୦।୬ କ-ଖ- ୦ରସିକଙ୍କର ଆନନ୍ଦ

ସେ ରଘୁପତି ଚରଣ          କରଣ ପ୍ରାତଃ ସ୍ମରଣ
ନୃପ ଧନଞ୍ଜୟ ଚିତ୍ତ ହୋଏ ହରଷ,
କହିଲେ ଏ ଗୀତ ରସ          ନ ଘେନ ସୁଜନେ ଦୋଷ
ପଦେ ପଦେ ଏଥି ଅଛି ବିବିଧ ରସ ।
ସେ'ଟି ନୀଳାଚଳ ବିହାରୀ,
ରାବଣ ବଧରେ ହେଲେ କୋଦଣ୍ଡଧାରୀ ।।୪୧।।

●

## ଷଷ୍ଠ ଛାନ୍ଦ

### (ରାଗ—ମଙ୍ଗଳ ଧନାଶ୍ରୀ)

ବୋଲନ୍ତି ସେ ମୁନିବର । ଶୁଣ ହେ କୋଦଣ୍ଡ ଧର ।
ମିଥିଳା ଜନକ ପୁର । ହୋଇଅଛି ସ୍ୱୟମ୍ବର ଏ ।।୧।।

ସକଳ ନୃପତି ତହିଁ । ଅଛନ୍ତି ସଂବର ହୋଇ ।
ଶିବଧନୁ ଯେ ଭାଙ୍ଗିବ । ଜାନକୀ ବିଭା ହୋଇବ ଏ ।।୨।।

କରିଛି ଏ ସତ୍ୟ ରାଜା । ଦେବ ତାହାରେ ତନୁଜା ।
ଯିବା ତହିଁକି ଶ୍ରୀରାମ । ଦେଖିବା ନର ଉତ୍ତମ ଏ ।।୩।।

ଅଜଗ ଧନୁ ଦେଖିବା । ନେତ୍ର ସଫଳ କରିବା ।
ଅତହିଁ ବଚନ ଏହୁ । ବିଜେକର ମହାବାହୁ ଏ ।।୪।।

ଶୁଣି ବିଶ୍ୱାମିତ୍ର ବାଣୀ । ଆନନ୍ଦେ ସେ ରଘୁମଣି ।
ଅନୁଜ ଘେନି ସଙ୍ଗରେ । ପଥ ଗମନ୍ତି ସତ୍ୱରେ ଏ ।।୫।।

---

୪୧।୨ କ-ଖ- ଧନର୍ଜ୍ୟ
୪୧।୩ କ-ଗ- ସୁଜନେ ନ ଧର ରୋଷ
୪୧।୫ କ- ୦ନୀଳାଞ୍ଚଳ୦
ଖ- ୦ବେହାର

---

୧।୨ କ- ୦ଜନଙ୍କ୦ ୦ସ୍ୱୟମ୍ବର ହେ
ଗ- ୦ଜନେକ୦
୨।୧ ଖ- ୦ସମ୍ବର୦
୨।୨ କ- •ଭାଞ୍ଜିବ୦
୩।୧ କ-ଗ- ୦କରଣ ରାଜା
୪।୧ କ- ଅଜଗ
ଖ- ଅନଗ
୫।୧ ଖ- ୦ଆନନ୍ଦେଣ୦
୫।୨ କ- ପଥ ଗମନ୦
ଖ- ପଥ ଗମେ ସତ୍ୱର୦ (?)

ସଙ୍ଗେ ଘେନି ଋଷିଗଣ । ଚଳିଲେ ଗାଧି ନନ୍ଦନ ।
ଜାହ୍ନବୀ ତୀରେ ପ୍ରବେଶ । ଦେଖିଲେ ହୋଇ ହରଷ ଏ ।।୬।।

କ୍ରୀଡ଼ନ୍ତି ନାନା ବିହଙ୍ଗ । ଚକ୍ରବାକୀ କାହ୍ନି ସଙ୍ଗ ।
ବିକଚ କମଳ କୂଳ । ଖେଳନ୍ତି ରାଜ ମରାଳ ଏ ।।୭।।

ଚାରୁ ତରଙ୍ଗେ ଚଞ୍ଚଳ । ଶୋଭନ୍ତି ମକର କୁଳ ।
ଏହୁ ସୁର ତରଙ୍ଗିଣୀ । ଗୃହୁ ଶଇବଳ ବେଣୀ ଏ ।।୮।।

କାନ୍ତ ସାଗର ସଙ୍ଗମେ । ଏଣୁ କି ସତ୍ୱରେ ଗମେ ।
ମଞ୍ଜୁଳ ହଂସକ ଧ୍ୱନି । କୁଚ ଚକ୍ରରେ ଶୋଭିନୀ ଏ ।।୯।।

ନୀର ବାରଜ ନୟନୀ । ଫେନ ହାସରେ ଶୋଭିନୀ ।
ମୃଣାଳ ବାହୁ ରଞ୍ଜନୀ । ଗୃହୁ କୋକନଦ ପାଣି ଏ ।।୧୦।।

ଭଙ୍ଗ ତ୍ରିବଳି ଶୋଭିତା । ମୀନ ଧ୍ୱଜେ ଆକୁଳିତା ।
ପରାଗ ବସନେ ଶୋଭା । କରେ କେଶ ଶତ୍ରୁ ଲୋଭା ଏ ।।୧୧।।

ପ୍ରଫୁଲ୍ଲ ପଙ୍କଜ ମୁଖ । ବଢାଏ ଅତନୁ ସୁଖ ।
ପୁଳିନ ଗୃହୁ ଜଘନୀ । ଆବର୍ତ୍ତ ନାଭି ଶୋଭିନୀ ଏ ।।୧୨।।

ଏସନ ଗଙ୍ଗାକୁ ଗୃହିଁ । ହସି କହେ ରଘୁସାଇଁ ।
ଶୁଣ ହେ ଗାଧି ନନ୍ଦନ । ଦେଖ ଏ ନଦୀ ଶୋଭନ ଏ ।।୧୩।।

ତାଙ୍କ ଏବେ କେରୁଆଳ । ତରି ଯିବା ମହାଜଳ ।
ନାବିକକୁ ବେଗେ ଆଣି । ପାରହେଲେ ଋଷିଶ୍ରେଣୀ ଏ ।।୧୪।।
ପଛେ ରଘୁ କୁଳମଣି । ନାବିକକୁ କହେ ବାଣୀ ।
ଆଣ ତୋର ନାବ ବେଗ । ଆମ୍ଭେ ଯିବୁ ଋଷି ସଙ୍ଗ ଏ ।।୧୫।।

ଶୁଣି ଶ୍ରୀରାମ ଉତ୍ତର । ବୋଲଇ ସେହୁ ଧୀବର ।
ତୁମ୍ଭେ ରହ ରଘୁବୀର । ଧୋଇବି ତୋର ପୟର ଏ ।।୧୬।।

---

୬।୧ କ-ଖ- ଗ୍ୱାଧୀ
୬।୨ କ- ଜାନଭିଂ
ଖ- ଦେଖି ହୋଇଲେଂ
୮।୨ କ-ଖ- ୦ତରଙ୍ଗଣୀଂ
ଗ- ୦ଶୈଳବେଣି ଏ
୯।୨ କ- ୦ସୋଭନ
ଖ- ମନ୍ଥୁରଂ
ଗ- ୦ନୟନଂ ଶୋଭନ

୧୦।୨ କ-ଗ- ମୃନାଲ
୧୧।୧ କ-ଗ- ଭଗଢ ବଲିଂ
ଖ- ରଙ୍ଗ ତ୍ରିବଲିଂ
୧୨।୨ କ-ଗ- ଜଘନୀ ଆବ୍ରତ
ଖ- ୦ବ୍ରତନାଭି ଶୋଭନ ଏ (?)
୧୩।୨ କ-ଖ- ଗ୍ୱାଧୀ
୧୪।୧ ଖ- ୦ପାରହେବାଂ

ଏ ନାବ ମୋର ଜୀବିକା । ଏ ପୁଣି ହେଲେ ନାୟିକା ।
ମୁଁ ପୁଣି କରିବି କସ । ହେବ ମୋ କୁଟୁମ୍ବ ନାଶ ଏ ।।୧୭।।

ତୋର ଏ ଚରଣ ରେଣୁ । ପାଷାଣେ ଲଗିଲା ଯେଣୁ ।
ହୋଇଲା ସେ ଦିବ୍ୟ ନାରୀ । ଗଲା ଗଉତମ ପୁରୀ ଏ ।।୧୮।।

ଦାରୁ ପାଷାଣ ଅନ୍ତର । ନାହିଁ ତେଣୁ ରଘୁବୀର ।
ଏଣୁ ମନେ ମୋର ଭୟେ । ହୋଇଛୁ ଶୁଣିମା ରାୟେ ଏ ।।୧୯।।

ଏମନ୍ତ ତା ବାଣୀ ଶୁଣି । ହସିଣ ସେ ରଘୁମଣି ।
ବୋଲନ୍ତି ଧୁଅ ଚରଣ । ଯେବେ ତୋ ହେବ କାରଣ ଏ ।।୨୦।।

ଧନ୍ୟ ଧନ୍ୟ ତୁ ନାବିକ । ବୋଲନ୍ତି ସେ ଦେବଲୋକ ।
ଯେଉଁ ପାଦ ପଦ୍ମ ଭବ । ପ୍ରକ୍ଷାଳନେ କଲା ଶିବ ଏ ।।୨୧।।

କାରୁଣ୍ୟେ ଜଳକୁ ଯେନ । ଧୋଇଅଛୁ ପଦ୍ମଯୋନ ।
ସେ ଜଳ ହର ଶିରର । ଧରି ଲଭିଲା ନିସ୍ତାର ଏ ।।୨୨।।

ସେ ପାଦ ତୁ ଯେ ଧୋଇଲୁ । ତା ତହୁଁ ଅଧିକ ହେଲୁ ।
ଏସନ ସେ ଦିବ୍ୟ ବାଣୀ । ଶୁଭିଲା ଆକାଶେ ଜାଣି ଏ ।।୨୩।।*

ନାବ ଚଢ଼ି ରଘୁବୀର । ହୋଇଲେ ଜାହ୍ନବୀ ପାର ।
ଋଷିଗଣ ସଙ୍ଗତରେ । ମିଳଲେ ମିଥିଳା ପୁରେ ଏ ।।୨୪।।*

ସେନ ସଙ୍ଗେ ବିଶ୍ୱାମିତ୍ର । ଦେଖେ ନଗର ବିଚିତ୍ର ।
ପନ୍ତି ପନ୍ତି ମେଡ଼ମାନ । ଶିରେ ପତକା ଶୋଭନ ଏ ।।୨୫।।

ବିଚିତ୍ର ଚିତ୍ର ବଡ଼ଭୀ । ଅଛି ନଭତଳ ସେବି ।
ସୁଧା ଲେପନେ ସୁନ୍ଦର । ହିମକରେ କରେ ଛାର ଏ ।।୨୬।।

ଗଜଦନ୍ତ ଭିତ୍ତି ଶୋହେ । ଦେଖନ୍ତେ ନୟନ ମୋହେ ।
ବିଚିତ୍ର ମଣି ଗବାକ୍ଷ । କାନ୍ତା କାନ୍ତ ଭେଟ ଦକ୍ଷ ଏ ।।୨୭।।

---

୧୭।୧ କ-ଗ- ଏ ପୁଣି ନୋହୁଂ
୧୮।୧ କ-ଖ- ତୋର ଚରଣ ଯେଂ
୧୯।୨ ଖ- ଏଣୁ ମୋହ୍ୱ ମନେଂ
୨୦।୧ ଖ- ଏସନଂ
୨୦।୨ ଖ- ଯେସଣେ ତୋ ହେବଂ
୨୧।୨ କ-ଖ- ପଖାଳନେଂ
୨୨।୨ ଖ- ଂସେ ନାବିକଂ
*୨୩ ଓ ୨୪ ପଦ 'ଖ' ପୋଥିରେ ନାହିଁ
୨୪।୧ କ- ଜାନଭି

୨୫।୧ କ- ଦେଖ
ଗ- ଦେଖି
୨୫।୨ କ- ମେଡ଼
୨୬।୧ କ-ଗ- ନବତନ
୨୬।୨ କ-ଗ- ଂକରଗ୍ଗର
ଖ- ଂକରେ ଯାର ଏ
୨୭।୨ କ-ଖ- ଂଦକ୍ଷ ଏ

ଦେଖି ସେ ପୁର ସ୍ତ୍ରୀସମ | ବୋଲନ୍ତି ସେ ଅନୁସମ |
ବିଶ୍ୱାମିତ୍ର ମୁନିବର | ଗମନ ଶୁଣି ସତ୍ୱର ଏ ||୨୮||

ସ୍ୱର ଜନକ ଛାମୁର | ବନ୍ଦେ ଶିରେ ଦେଇ କର |
ପ୍ରବେଶ ଗାଧି ନନ୍ଦନ | ଶୁର୍ଣ୍ଣମା ଦେଇ ଭଜନ ଏ ||୨୯||

ସଙ୍ଗେ ଛନ୍ତି ବେନି ବୀର | ନ ଜାଣୁ କାହା କୁମର |
କି ବା ଦେବ ସତ ବେଶ | ସେନି ଆସିଛନ୍ତି ମୁନି ଏ ||୩୦||

ଏଥି ଅନ୍ତେ ପୁର ଜନ | ଦେଖନ୍ତି ରାମ ବଦନ |
ଏକ ଆରକେ ଉତ୍ସୁକ | ଧାମନ୍ତି ଦର୍ଶନେ ଲୋକ ଏ ||୩୧||

କେ ବୋଲେ ଦେଖ ସଙ୍ଗାତ | ଏ ବେନି ଯାହାର ସୁତ |
ଧନ୍ୟ ତାଙ୍କର ଜୀବନ | ଏ ଲୋକେ ମେତ୍ର ରଞ୍ଜନ ଏ ||୩୨||

ଉତ୍ସୁକେ ପୁର ଯୁବତ | ତେଜିଲେ ମନର ଭୀତ |
ଗୁରୁ ଗୌରବ ନ ଗଣି | ବାହାର ହେଲେ ତରୁଣୀ ଏ ||୩୩||

କେ ବୋଲେ ଏ କି ମଦନ | ଧରିଅଛି ଧନୁର୍ବାଣ |
କନ୍ୟାଙ୍କ ମନ ଚଞ୍ଚଳ | ତେଜିବା ଗୋ କୁଳ ଶୀଳ ଏ ||୩୪||

ସେବିବା ଏହା ଚରଣ | କରିବେ କି ନାରାୟଣ |
କୋଟି ଜନ୍ମ ତପ ଫଳ | ଥିଲେ ବରିବେ ସଫଳ ଏ ||୩୫||

ଏହାଙ୍କୁ ଜାନକୀ ବର | କରନ୍ତୁ ସେ ତ୍ରିପୁର ହର |
ଆମ୍ଭ ଭାଗ୍ୟ ଥିବ ଯେବେ | ଏ ମୁଖ ଦେଖିବା ତେବେ ଏ ||୩୬||

କେ ବୋଲଇ ଶୁଣ ସଖି | ଜାଣି ତୁ ଜାନକୀ ଦୁଃଖୀ |
ପୁଣି ସେ କଠୋର ଧନୁ | ଏ ତ ସୁକୁମାର ତନୁ ଏ ||୩୭||

---

୨୮।୧ କ- ୦ସେ ଅନୁ ସମ
୨୯।୧ କ-ଗ- କରେ ଶିରେ୦
୨୯।୨ କ-ଖ- ସ୍ୱାର୍ଥୀ୦ ହୋଇ୦
୩୦। ୨ କ-ଗ- ୦ଦେବସୁର୦
୩୧।୧-୨ କ- ଓ ଗ-ରେ ନାହିଁ
୩୧।୨ ଖ- ଉଛକ
୩୨।୧-୨ କ- ଓ ଗ- ଏ ବେନି ଯାହାର ଜାତ
ଧନ୍ୟ ତାହାଙ୍କ ଜୀବତ
ଲହନ୍ତି କଥା ସୁଜନ,
ସେ କେବେ ସେତ୍ର ରଞ୍ଜନ ଏ
୩୩।୧ କ- ଉତ୍ସୁକେ
ଖ- ଉତ୍ସୁକେ ଗୁରୁ୦ଁ୦ମନରେ୦
ଗ- ଉତ୍ସୁକେ
୩୩।୨ ଖ- ୦ନମାନ୦
୩୪।୧ ଖ- ୦ନଏ୦
୩୪।୨ ଖ- ୦ଚପଳ ତେଜିବା ଏ୦
୩୫।୧ କ- ନାରାଏଣ
୩୫।୨ ଖ- ୦କରିବା ସଫଳ ଗୋ୦
୩୬।୨ ଖ- ୦ତେବେ ଗୋ
୩୭।୨ କ-ଗ- ସ୍ନେହ୦
ଖ- ୦ତନୁ ଗୋ୦

ଏ କେଉଁ ଚାପ ଭାଙ୍ଗିବ । ଜନକ ଦୁଃଖେ ଭାଳିବ ।
ମୋ ମନେ ହେଉଛି ଶଙ୍କା । ସଭାଜନେ କଲେ ଦଶା ଏ ॥୩୮॥

ମହା ମହୀଶ୍ୱର ଗଣ । ଭଙ୍ଗଗଲେ ଦେଖି ପୁଣ ।
ଲଙ୍କା ନୃପତି ଯେବେ । ବଳୀର ନନ୍ଦନ ବାଣ ଏ ॥୩୯॥

ଧନୁକୁ ଦେଖି ଡରିଲେ । ସୁରାସୁର ଲାଜେ ଗଲେ ।
କମଠ ପୃଷ୍ଠ କଠିନ । ଧନୁରେ କେ ଦେବ ଗୁଣ ଏ ॥୪୦॥

ଏତେ ବୋଲେ ପୁରଜନ । ରାମଙ୍କୁ ଗୁଣ୍ଡି ଅଜ୍ଞାନ ।
ଯେ ଯେଉଁ ଠାବରେ ଥିଲେ । ତାହେ ଚଳି ନ ପାରିଲେ ଏ ॥୪୧॥

ଏହି ସମୟେ ତତ୍ପର । ଆସେ ଜନକ ନୃପତି ।
ସଙ୍ଗେ ପାତ୍ର ପୁରୋହିତ । ନନ୍ଦନ ସାମନ୍ତେ ସୁତ ଏ ॥୪୨॥

ଭ୍ରାତ କୁଶଧ୍ୱଜ ସଙ୍ଗେ । ନମିଲେ ଋଷିଙ୍କି ରଙ୍ଗେ ।
ପାଦ୍ୟୋଦି ସେବନ ଗଲେ । ପୁରେ ପରବେଶ ହେଲେ ଏ ॥୪୩॥

ଧନୁର୍ଦ୍ଧ୍ୟ ପୂଜା କରିଣ । ଦେଲେ ଦିବ୍ୟ ସିଂହାସନ ।
ବୋଲନ୍ତି ହେ ବିଶ୍ୱାମିତ୍ର । ଏ ବେନି କାହାର ପୁତ୍ର ଏ ॥୪୪॥

ବୋଲନ୍ତି ଗାଧି ନନ୍ଦନ । ଶୁଣ ଜନକ ରାଜନ ।
ଅଯୋଧ୍ୟା ନାମେ ନଗର । ଦଶରଥ ନୃପବର ଏ ॥୪୫॥

ଏ ରାମ ତା ଜ୍ୟେଷ୍ଠ ସୁତ । ଏହୁ ଲକ୍ଷ୍ମଣ କନିଷ୍ଠ ।
ତାଡ଼କା ବାଟେ ମାରିଲେ । ଆମ୍ଭର ଯାଗ ରଖିଲେ ଏ ॥୪୬॥

ମାରିଚ ସୁବାହୁ ଜଣି । ଅନେକ ଦୈତ୍ୟ ଆରେଣି ।
କଲ ହେଲେ ଏହୁ ନାଶ । ନିର୍ଭୟ କଲ ଏ ଦେଶ ଏ ॥୪୭॥

---

୩୮।୧ କ- ୦କେଉଁ୦ ୦ଜନେକ୦
ଖ- ଦୁଃଖ ଭାଳିବ
୩୮।୨ ଖ- ସଭା ପଣ ଠାବେ (?)
୩୮।୨ ଗ- ୦ହେଉଛି୦
୪୦।୧ ଖ- ୦ଡରିଲେ୦ ୦ସୁରାସୁର ଗଲେ ଲାଜ ପାଇ
୪୦।୨ ଖ- ୦ଗୁଣ ଯୋ
୪୧।୨ ଖ- ୦ପାରିଲେ ଯୋ
୪୨।୧ କ- ସେହି ସମୟେ
ଖ- ୦ଜନେକ
୪୨।୨ ଙ- ନନ୍ଦନ ସାମନ୍ତେ
୪୩।୧ ଙ- ଭ୍ରାତ
୪୩।୨ କ-ଗ- ୦କଲେ
୪୪।୨ କ-ଗ- ବୋଲନ୍ତି ସେ
୪୫।୧ କ-ଙ- ସ୍ୱାଧୀ
୪୬।୧ ଙ- ୦ତାହାର ପୁତ୍ର୦ ୦ଲକ୍ଷ୍ମଣ ଶ୍ରେଷ୍ଠ
୪୬।୨ ଜ- ତାଡ଼କାକୁ୦
୪୭।୨ କ-ଗ- ଦେଶ ଏ କଲ୦
ଖ- ୦ନିର୍ଭୟ କଲ

ଆସୁଁ ପଥେ ଗଜଗମ । ଆଶ୍ରମେ ଏହୁ ଶ୍ରୀରାମ ।
ଅହଲ୍ୟା ମୁକତ କଲ । ପାଷାଣ ଦେହୁଁ ଟାରଲ ॥୪୮॥

ଶୁଣିଲେ ଭୂମ ନବର । ହୋଇଅଛୁ ସ୍ୱୟମ୍ବର ।
ଧନୁ ଦେଖିବାକୁ ପୁଣି । ଆସିଛନ୍ତି ରଘୁମଣି ଏ ॥୪୯॥

ଶୁଣି ଜନକ ହରଷ । ହୋଇଣ ଅତି ସନ୍ତୋଷ ।
ଷୋଡ଼ଶୋପଚାରେ ରାମଙ୍କୁ ପୂଜି । ରାଜ ଉପଚାର ହେଜି ଏ ॥୫୦॥

ଆରାମ ନିକଟେ ପୁର । ରଚନ୍ତେ ଅତି ମନୋହର ।
ତହିଁ ଶ୍ରୀରାମ ଲକ୍ଷ୍ମଣ । କଲେ ସେ ବସା ବିଧାନ ଏ ॥୫୧॥

ନୀଳାଚଳ ପତି ପାଦ । ଘୋର ଭବ ତାପ ଛେଦ ।
ଅନିଶେ ମସ୍ତକେ ବେନି । ଧନଞ୍ଜୟ ନୃପ ଭଣି ଏ ॥୫୨॥

ଶ୍ରୀରାମ ଚନ୍ଦ୍ର ବିଳାସ । ଛାନ୍ଦ ଏହୁ ଷଷ୍ଠ ଶେଷ ।
ପୁର ପ୍ରବେଶ ଏ ଛାନ୍ଦ । ସୁଜନେ ଆନନ୍ଦ କନ୍ଦ ଏ ॥୫୩॥

●

---

୪୮।୨ କ- ଅହଲା
୪୯।୧ ଖ-ଙ- ୦ହୋଇଅଛୁ
ଗ- ୦ସ୍ୱୟମ୍ବର୦
୫୦।୧ କ-ଖ- ଜନେକ
ଙ- ୦ଜନକ ନରେଶ୦
୫୧।୨ କ- ୦ଲକ୍ଷଣ୦ ୦ବସା ବିଶ୍ରାମ
୫୨।୧ କ- ନୀଳାଞ୍ଚଳ୦ ୦ଯେତୁ ଘୋର୦
୫୨।୨ କ- ୦ଧନୁର୍ଜୟ୦
ଖ- ୦ଧନର୍ଜୟ୦
୫୩।୨ ଖ- ସୁଜନ

# ସପ୍ତମ ଛାନ୍ଦ

(ବାରମାସୀ ବାଣୀରେ ଗାଇବ)*

ଏଥୁ ଅନନ୍ତରେ ପ୍ରିୟ ସହଚରୀ କହଇ ଶୁଣ ନୃପଜେମା,
ଉପବନେ କେଳି ବେଶ ବେଗେ ହୁଅ ପ୍ରବେଶ ହୋଇବ ନିଯାମା ।
ମିତଣି, ତୁ ନବରସିକା ଅବଳା ।
ପୃଥୁ ନିତମ୍ବିନୀ ଭାଷେ ଯଉବନୀ ଶିରୀଷ କୋମଳା ସୁଶୀଳା ॥୧॥

ପ୍ରିୟବନ୍ଧୀ ବାଣୀ ଶୁଣି ରାମାମଣି ମଣ୍ଡନରେ ମନ ବଳାଇ,
ଅଳପ ହସି ନୟନ କୋଣ ଢାଳି ସଇରନ୍ଧ୍ରୀ ମୁଖ ଚାହିଁଲା ।
ଜାଣି ସେ, ଘେନି ସକଳ ଉପସ୍କର ।
ରତ୍ନପୀଠ ପରେ ବସାଇ ଫେଡ଼ିଲା ନୀଳ କୁଟିଳ କଚଭାର ॥୨॥

ଗଜଦନ୍ତର ପ୍ରସାଧନୀ ଘେନିଣ ଧୀର କରି କେଶ ସାମଳି,
ମଧ୍ୟ ଦେଶରୁ ବେନି ଭାଗ କରଣ ବେଣୀ ରଚିଲା ସେ ଚତୁରୀ ।
ସୁହେମ, ପଟ୍ଟିକାରେ ମଧ୍ୟ ସାଜିଲା ।
ନବ ମୋତି ଗୁନ୍ଥି ପନ୍ତି ପନ୍ତି କରି ପୁଞ୍ଜି ପୁଞ୍ଜି କରି ଖଞ୍ଜିଲା ॥୩॥

ବେଣୀ ଶିଖରେ ଶିଖର ଝୁମି ଆଣି ଦେଲା ପୁଣି ପ୍ରିୟ ମିତଣି,
କିବା ଅନ୍ଧକାର ପୂରେ ବନ୍ଦୀ ହୋଇ ରହିଲା ନବୀନ ହରିଣୀ ।
ଚତୁରୀ, ଖଞ୍ଜିଲେ ରତନ ସିମନ୍ତି ।
ନାନା ଗ୍ରହଗଣ ଏକମେଳ ହୋଇ ଗଗନେ କି ଶୋଭା ପାବନ୍ତି ॥୪॥

ତଥି ଅଧୋଭାଗେ କେବଣ ତରୁଣୀ ଚନ୍ଦ୍ରରଞ୍ଜନ ଝୁମ୍ପି ଖଞ୍ଜେ,
ଦେଖିବା ମାତ୍ରକେ ନୟନେ ତ୍ରିପୁର ହର ଧଇର୍ଯ୍ୟ ହେଲେ ଗଞ୍ଜେ ।
କୁଟିଳ, ଅଳକାପନ୍ତିର କପୋଳେ ।
ରତନ ଝିଲିମିଲି ମାଳା ଖଞ୍ଜିଲେ ଉପମା ନାହିଁ ତ୍ରିନିପୁରେ ॥୫॥

---

* କ-ଖ- ଦୃତାଇ ବାରମାସୀ ବାଣୀରେ ଗାଇବ
୧।୪ ଖ- ୦ପୃଥ୍ୱୀ୦
୨।୧ ଖ- ପ୍ରିୟସଖୀ୦ ୦ଚଇ ବଳାଇ
୨।୨ କ-ଗ- ୦ସଧୀରେଣ ମୁଖ୦
ଖ- ୦ସଇଧର ମୁଖ୦
୨।୪ କ-ଗ- ୦କରଭାର
୩।୧ କ-ଖ-ଗ- ପ୍ରସାଦନୀ
୪।୧ କ-ଖ- ୦ରୁପିଆଣି ଦେଲା୦ (?)
୪।୨ କ- ୦ହରଣୀ
ଖ- ୦ନବୀନ ତର (ରୁ) ଣୀ
୪।୩ ଖ- ୦ରଞ୍ଜିଲେ୦
୪।୪ ଗ- ୦ପାଆନ୍ତି
୫।୧ କ-ଗ- ୦ଚନ୍ଦ୍ର ଖଣ୍ଡକ୦
୫।୨ କ-୦ମାତ୍ରକେ ତ୍ରିପୁରର ଧଇର୍ଯ୍ୟ ହେଲେ ସେହୁ ଭଙ୍ଗେ
ଗ- ୦ମାତ୍ରକେ ତ୍ରିପୁରର ଭର ଧଇର୍ଯ୍ୟ ହେଲେ ସେହୁ ଭଞ୍ଜେ
୫।୩ କ-ଗ- ୦ପନ୍ତିର ଉପରେ
୫।୪ କ-ଗ- ରତନ ଝଳ ମୀନମାଳା୦

ପୁଣି ତାରତର ମୋତି ଜାଲ ଆଣି ମସ୍ତକେ କେହୁ ଆଚ୍ଛାଦନ୍ତି,
କିବା ନବୀନ ଜଳଧର ଭେଦଣ ଉଡୁଗଣେ ଶୋଭା ପାବନ୍ତି ।
କର୍ଣ୍ଣରେ, ମାଳ ଅବତଂସ ଖଞ୍ଜନ୍ତି ।
କିବା ନବଦଳ କନକ ପାଟଳ କୁସୁମ ଭ୍ରମରେ ଚୁମ୍ବନ୍ତି ॥୬॥

ଉପିଲ୍ଲ ମର୍କତର ନବ ବେଣ୍ଟୁଳା ଖଞ୍ଜିଲେ କେବଣ ଚତୁରୀ,
ଦିବ୍ୟ ମଣିଗଣେ ରୁଚିର ତାଟଙ୍କ ରଞ୍ଚିଲେ କର୍ଣ୍ଣପୁଟେ ଧରି ।
କିବା ସେ ତ୍ରିଭୁବନ ଜୟୀ କାମର ।
ଯୁବା ମନ କରୀ ବନ୍ଧନରେ କରି ରହିଛି ବେନି ପାଶେ ତାର ॥୭॥

କି ଅବା ତ୍ରିପୁରାରି ତପ ଧ୍ୱଂସନ କରିବାକୁ ହୋଇ ଉଦିତ,
ସାଜଛି ରମଣୀ ରମଣୀୟ ମୁଖ ସ୍ୟନ୍ଦନ ବେନି ଚକ୍ରଯୁତ ।
କି ଅବା, ପୂର୍ଣ୍ଣଶଶିକି ଦେନିକର ।
ଯୁବା ଜନ ଧୃତି ଧ୍ୱଂସ ନିଭ ପୋତେ ବେନି ଗୁରୁଛନ୍ତି ଆବୋର ॥୮॥

ବିକଶିତ ପୁଣ୍ଡରୀକ ସୁରୁଚିର ବଜ୍ରେ ଘଟିତ ଫୁଲ ବେନି,
ଜାନକୀ ବଦନ ଗୃହେଁ ମନ୍ଦେ ହସି ଖଞ୍ଜିଲା କେବଣ ସଜନୀ ।
କର୍ଣ୍ଣକୁ, ଲଭି ସେ ହେଲେ ଅତି ରୁଚି ।
ରମଣୀ ବଦନେ ଜିତ ହୋଇ କି ଏ ଶରଣ ବେନି ହେମରୁଚି ॥୯॥

ହରିଣ ନୟନୀ ନୟନେ ଅଞ୍ଜନ ରଞ୍ଜିଲା କେବଣ ଚତୁରୀ,
ସରୁ କରି ବେନି ଲଞ୍ଚୀ କର୍ଣ୍ଣପାଏ ରଚନରେ ଅତି ଚାତୁରୀ ।
ଏମନ୍ତ, ଶୋଭା ଟସ ଦିଶିଲା ନୟନ ।
ବେନି ପୁଚ୍ଛ ଭର ନିମ୍ନାଇ କି ପଦ୍ମେ ବସିଛନ୍ତି ବେନି ଖଞ୍ଜନ ॥୧୦॥

---

୬।୧ କ-ଗ- °ତାରର
୬।୨ କ-ଗ- °ଉଡ଼ଗଣେ
ଖ- °ଉଡ଼ଗଣେ
୭।୧ ଖ- ଉପିଲ୍ଲ°
୭।୪ ଖ- ଯୁବାଜନଙ୍କର° °ରହିଛି°
୮।୧ ଖ- °ଉଦିତ
୮।୨ ଗ- °ସ୍ୟନ୍ଦନ
ଖ- °ସ୍ୟନ୍ଦନ ବେନି ଚକ୍ରେଂଯୁତ
୮।୪ ଗ- ଯୁବା ଜନ ଜନ ଧୃତ ଧ୍ୱଂସ ପୋତେ°
ଖ- ଧ୍ୱଂସନ ଉପ୍ପାତେ° (?)
୯।୨ କ-ଗ- °ମନ୍ଦ ହସି°
୯।୩ କ ଖ- ଶୋଭା ହେଲା ଅତି ରୁଚିର
୯।୪ ଖ- °ହୋଇ ବେନି ରୁଚି
୧୦।୧ କ-ଗ- °ରଞ୍ଜିଲ°
୧୦।୨ କ-ଗ- °ରଚନରେ°
ଖ- °ଅଞ୍ଜନେ°
୧୦।୩ ଖ- ଯେମନ୍ତ°

କି ଅବା ଯୁବା ଧୃତି ଧ୍ୱଂସ କାରଣେ ବେନି ଧୂମକେତୁ ଉଦିତ,
କିବା ଭ୍ରୂଲତା କାମଧନୁ ରୁଚିର ବେନି ହୁଲେ ଗୁଣ ଶୋଭିତ ।
କୁଟିଳ, କଣ୍ଠାକ୍ଷର କି ବେନି ଅନ୍ତ ।
ଦିଶେ ଦ୍ରବ୍ୟ କରି କିବା କାମ ଗୁଣ ଥୋଇଛି ଡେରି ବେନି କୁନ୍ତ ॥୧୧॥

କି ଅବା ନୟନ ଲଙ୍ଘି ବେନି ଶ୍ରୁତି ଶିର ଛୁଇଁ କରେ ନିୟମ,
ମଦନ ଯୁବା ଜନ ନାଶ ବୋଲୁଛି ମୋର ନାହିଁ କିଛି ଅଧର୍ମ ।
ଏମନ୍ତ, ବୋଲି କି ଲଙ୍ଘି କର୍ଣ୍ଣପାଶେ ।
କହୁଛି ରମଣୀ ରତନକୁ ଯାଇ କିବା ମନେ ଏହିମନ୍ତ ଆଶ୍ୱାସେ ॥୧୨॥

ଚଟୁଳ ଶତ୍ରୁ ମୋତିବର ସୁହେମ ତିଳ କୁସୁମ ନାସା ପରେ,
କେବଣ ସଜନୀ ଆଣିଣ ଖଞ୍ଜିଲା ମଣ୍ଡିଣ ଅତି ସ୍ନେହଭରେ ।
ବୋଲଇ, ଧନ୍ୟ ଧନ୍ୟ ଏ ମୋତି ସଖି ।
କେତେ ପୁଣ୍ୟ ବଶେ ତୋର ନାସା ଅଗ୍ର ଛୁଇଁଲା ଆଗୋ ଚନ୍ଦ୍ରମୁଖି ॥୧୩॥

ନବଦହ ହେମ ତିଳ ପ୍ରସୂନରେ ତୁଷାର ବିନ୍ଦୁ କି ଶୋଭନ,
କିବା ଅନଙ୍ଗ ତୂଣୀରରେ ଶାୟକ ହୀରପୁଞ୍ଜେ ଅତି ରଞ୍ଜନ ।
ଆରକି, ପୂର୍ବେ ମାଣିକ୍ୟ ଦ୍ରବ୍ୟ ଗୁଣ ।
ମୂର୍ତ୍ତିଚନ୍ଦ୍ର ମଧ୍ୟେ ଆସିକି ରହିଲା ଭୂମି-ନନ୍ଦନ ହୋଇ ବଣା ॥୧୪॥*

କି ଅବା ଯୋଗୀବର ଧୃତି ଧ୍ୱଂସନେ ଚନ୍ଦ୍ରକୋଳେ ଉଦେ ମିହିର,
କରିବ ଅତନୁ ଅତନୁ ସାହସ ଏ ଉତପାତ ମହାଘୋର ।
ପୁଣି କି, କରିବ ରାଘବ ଆନନ୍ଦ ।
ଯେଣୁ ତା ନାମ ଚନ୍ଦ୍ରବଂଶ ମିହିର ଏଣୁ ସେ ହେବ ସୁଖକନ୍ଦ ॥୧୫॥

---

୧୧।୧ କ- ଂଧୂମକେତୁଂ
୧୧।୨ କ- ଂକାମଧେନୁଂ
ଖ- ଂଭଇଛି ବେନିଂ
୧୧।୪ କ-ଗ- ଂକାମବାଣ ଥୋଇଅଛିଂ
ଖ- ଦିସେ ଦିସେ କରି
୧୨।୧ କ-ଗ- ଜାତ ବେନି ଶ୍ରୁତିଂ
୧୨।୨ କ-ଗ- ଂକିଛିନାହିଂ
୧୨।୪ ଖ- ଂସ୍ନେହେ ଆଶ୍ୱାସେ
ଖ- ଂକି ବମନେ ଏହିଂ

*'କ' ପୋଥିରେ ଏ ପଦଟି ନାହିଁ
୧୪।୧ କ- ଂନବଦାହମସ୍ତଂ ଂତୁଷାର ବିନ୍ଦୁକଂ
୧୪।୨ ଖ- ଂହୀରମୁଖେଂ
୧୪।୪ ଗ- ଂଉର୍ମିନନ୍ଦନଂ
୧୫।୨ କ- ଂସାହସ ନଟସ୍ୱେଂ
ଗ- ଂସାହସ ନଷ୍ଟସ୍ୱେଂ
୧୫।୩ ଖ- ଂଏ ପୁଣି; କରିବ ଆନନ୍ଦ ରାଘବ
୧୫।୪ କ-ଗ- ଂହେବ ସୁଖକନ୍ଦ

ପମାର ମାରେ ଗୋଳଣ କସ୍ତୂରିକା ବିନ୍ଦୁ ଲଲାଟରେ ରଞ୍ଚିଲେ,
ଗୃହ ପାରୁଶେ ଯେତୁକ କରି ରମଣୀ ସିନ୍ଦୂର ଗାର ଆଣିଦେଲେ ।
ଏକଥା, ଅଟଇ ଅତି ଚମତ୍କାର ।
ଚନ୍ଦ୍ର ତହିଁ ଅଙ୍କ ପୋଛି କରି ଯେଣୁ ବହିଛି ହୃଦରେ ମିହିର ।।୧୬।।

କି ଅବା ସିଂହିକା ନନ୍ଦନ ଅରୁଣ ମଣ୍ଡଳ ମଧ୍ୟକୁ ଗ୍ରାସିଛି,
ଗୃହ ପାରୁଶ ଯେଣୁକରି ଛୁଡ଼ିଲା ତେଣୁ ଅଦଭୁତ ହୋଇଛି ।
କି ଅବା, ସାନ୍ଦ୍ରତମ ପାନ କରିଛି ।
ସ୍ୱଚ୍ଛ ଶରୀର ପ୍ରକାଶରୁ ତପନ ଗର୍ଭେ ପ୍ରତିବିମ୍ବ ଦିଶୁଛି ।।୧୭।।

ବେନି ଗଣ୍ଡରେ ମୃଗମଦ ଘେନିଣ ମକରୀ ସଜନୀ ଲେଖିଲେ,
ମଣି କି ମଦନ ଲଲାଟ ଫଳକେ ମୀନ ଗୃମରନ୍ତ ଖଞ୍ଜିଲେ ।
କି ଏହୁ, ଚିହ୍ନ ତା ମକର କେତନ ।
ସୁଜାଣରମଣୀ ଫଳକେ ଲେଖିଲେ ଭୁବନ ଜୟେ କରି ମନ ।।୧୮।।

ମୃଗମଦ ଭୃଙ୍ଗରାଜ ରସେ ଦଳି ଖଡ଼ିକା ମୁନରେ ଘେନିଲା,
ସୀତଯ୍ୟା ଚିବୁକ ଧରି କେବଳ ରାମା ଭ୍ରମରୀକା ଲେଖିଲା ।
ମୋ ମନେ, କରୁଛି ଏମନ୍ତ ବିଚାର ।
ଅଧର ବନ୍ଧୁଲୀ ପାନେ ଆଶେ କି ଏ ରହି ଉଡ଼ୁଛି ଭୃଙ୍ଗବର ।।୧୯।।

ସ୍ଫଟିକ ଦନ୍ତପନ୍ତି ଅତି ସୁନ୍ଦର ତାମ୍ବୁଳ ଯୋଗେ ଅରୁଣିତ,
କିବା ପଦ୍ମରାଗ ସମ୍ପୁଟକେ ଧାତା ମୋତି ଗଣେ କଲା ରଞ୍ଜିତ ।
ଗଳାରେ, ଦେଲା ବିବିଧ ରତ୍ନମାଳ ।
କିବା ଅନଙ୍ଗ ଜଗତ ଜୟ ଶଙ୍ଖ ମଣିଗଣ ଦିଶେ ଉଜ୍ଜ୍ୱଳ ।।୨୦।।

ନଭଗଞ୍ଜନ ଦଳିତାଞ୍ଜନ ଘନ କାଞ୍ଚୁଲି କେଉଁ ସଖି ଆଣି,
ସୀତଯ୍ୟା ତନୁ ଦେଶରେ ଆଚ୍ଛାଦଣ ବୋଲଇ ଶୁଣରେ ସଜନୀ ।
ବାଳାରେ, ତୋ ନିନ୍ଦୁଲତା ଶମ୍ପା ମଣି ।
ନବ ଜଳଦ କି ଆଲିଙ୍ଗନ କଲା ତେସନ ରମଣୀୟ ମଣି ।।୨୧।।

---

୧୬।୧ ଗ- ପଦ୍ମର କରଦଲ୍ଲିତା୦ ୦ରଞ୍ଜିଲେ
୧୬।୨ ଖ- ସରକର୦
ଗ- ୦ଗାର ଆର୍ଣ୍ଣିଦେଲେ୦
୧୭।୨ ଗ- ଛୁଡ଼ିଲା
୧୭।୩ ଗ- କରୁଛି
୧୮।୧ କ- ୦ଲିହିଲେ
୧୮।୨ ଖ- ୦ହାଟକ ଫଳକେ
୧୯।୧ କ-ଗ- ମୃଗମଦ ମୃଗରାଜ୦
୧୯।୪ ଖ- ୦ଆସେ କଏ୦
୨୦।୧ କ-ଗ- ୦ତାମ୍ବୋଳ୦
୨୦।୨ ଖ- ୦କଲା ରଞ୍ଜନ
୨୦।୩ ଖ- ୦ଦେଲେ ବିବିଧ୦
୨୧।୧ କ-ଗ- ନବୀନ ଘନ୦
୨୧।୩ କ- ଲତା ସପାମଣି

କେବଣ ସଖି ହସିକର ବୋଲଇ ବାଳା ତୋ ସ୍ତନ ବେନି ହର,
ଗଜାଜନ ଯୋଡ଼ ହୋଇ କି ଲୁଚିଲ ଆନନ୍ଦେ କରି ମହାଦର ।
ରମଣି, ମୋ ମନେ ଏମନ୍ତ ମଣୁଛି ।
କି ସୁର ଭୂଧର ବେନିକି ଆଚ୍ଛାଦି ତମ ପ୍ରକାଶ ହୋଇଅଛି ॥୨୨॥

ରତନ ନାୟକ ହବ୍ୟ ମୋତି ହାର ହୃଦେ କେବଣ ସଖି ଦେଲା,
ନୀଳମଣି ଭେଦ ଭୂମି ଜାହ୍ନବୀ ଯେ ବେନିଧାର ହୋଇ ରହିଲା ।
କି ଅବା, ସଜଳ ଘନେ ବକପନ୍ତି ।
କି ଅବା କଳିନ୍ଦ ନନ୍ଦିନୀ ମଧ୍ୟରେ କଳହଂସମାଳ ଖେଳନ୍ତି ॥୨୩॥

ପୁଳ୍ଳର ପାଟ ସଙ୍ଗେ ମିଶିଣ ମୋତି ଝୁମ୍ପା ପୃଷ୍ଠେ ଶୋଭନ,
ସିତେତର ପକ୍ଷେ ଗଗନ ମଣ୍ଡଳେ ଉଦିତ କି ଏ ତାରାଗଣ ।
ଉରଜ, ଉରେ ଖଞ୍ଜିଲେ ନିଷ୍କଗଣ ।
ହେମ ଗିରିବର ଆଚ୍ଛାଦିତ ଘନ ଶକ୍ର କୋଦଣ୍ଡ ଶୋଭିବନ ॥୨୪॥
ନାନାରତ୍ନ ମିଶି ହଚନ ବାହୁଟି ବାହୁ ଯୁଗରେ ଶୋଭା ଦଶେ,
ହେମ ଲତିକାରେ ରତନ ପ୍ରସୂନ ଧାତା ନିର୍ମାଣ କଲା କି ସେ ।
ମର୍କତ, ବଳୟ ଦେଲେ ନବବାଳୀ ।
ବିକଚ କୋକନଦ ମୂଳେ ବସିଣ ଲୋଭେ କି' ଛନ୍ତି ଭୃଙ୍ଗମାଳୀ ॥୨୫॥
ମଣିବନ୍ଧେ ମଣିଚୂଡ଼ ଶୋଭିବନ ଉପମାମାନ ଦିଶୁଥାଇ,
ଅନଙ୍ଗ ତରଙ୍ଗିଣୀର କଲ୍ଲୋଳେ କି ନାନା ନୀରଜ ବିରାଜଇ ।
ମୁଦ୍ରିକା, ଅଙ୍ଗୁଳିଗଣେ ବିରାଜନ୍ତି ।
ନଖ ମୋତି ମୁଖେ ଫୁଖେ ନାମ ଲେଖି କାମ ଶାୟକ କି ଶୋଭନ୍ତି ॥୨୬॥
ନୀଳ ବସନ କୁଞ୍ଚା କରି ସଜନୀ କଟୀଦେଶରେ ଆଚ୍ଛାଦିଲେ,
ନାନାରତ୍ନ କ୍ଷୁଦ୍ର କଙ୍କିଣୀ ରଞ୍ଜିତ ରସନା କଳାପ ଖଞ୍ଜିଲେ ।
କି କାମ, ତ୍ରିଭୁବନ ଜୟ କାର ।
ହାଟକ ରମ୍ଭା ବେନ ସ୍ତନେ ଶୋଭିତ ହେମ ମଣି ଗଣେ ତୋରଣ ॥୨୭॥

---

୨୨।୧ ଖ- ୦ହସି ପୂର୍ଣି୦ ୦ବେନ ସ୍ତନହର
୨୨।୨ କ-ଗ- ଗଜାଜନ ଯୋଡ଼୦ (?)
ଖ- ଗଜାଜନ ଓଢ଼ୀ୦ (?)
୨୩।୨ ଖ- ୦ଭୂମି ଭେଦକ ଯାହ୍ନବି୦ ୦ବହିଲ
୨୪।୧ କ- ୦ପୃଷ୍ଟେ ଶୋଭନ
ଖ- ଗୁଳ୍ଳପାଟେ୦
୨୪।୨ କ- ତେତର କାଟେଓଷ୍ଟ
୨୪।୩ ଖ- ଉରପରେ ଖଞ୍ଜିଲେ୦
୨୫।୨ କ- ୦ଧାତା ନର୍ମାଣ୦

୨୬।୧ କ-ଗ- ୦ମଣିଚୂଡ଼୦
ଖ- ୦ଏ ଉପମା ମନେ ହୁଅଇ
୨୬।୨ କ- ଅଙ୍ଗର ତରଙ୍ଗିଣୀର କୋଳେ କି ଏ
ଗ- ଏ ଧାଡ଼ିଟି ନାହିଁ ।
୨୬।୪ କ-ଗ- ମୁଖେ ଫୁଖେ ଲେଖି
ଖ- ମୋତି ପୁଖେ ନାମ ଲେଖୀତ୦
୨୭।୨ କ- ନାନା କ୍ଷୁଦ୍ର ରତ୍ନ୦
ଗ- ନାନା ସୁକ୍ଷ୍ମ ରତ୍ନ୦
୨୭।୪ ଖ- ୦ବେନ ସ୍ତମ୍ଭେ୦

କି ଅବା ଯୁବା ଜନଙ୍କର ଦାରଣେ କାରଣେ କରି ଶମ୍ବରାରି,
କଟୀ ପଞ୍ଚାନନ ବର କି ବାନ୍ଧଣ ରଖିଛି ହେମ ସୂତ୍ରେ କରି ।
କି ଅବା, ହରକରର ଏ ଡମ୍ବରୁ ।
ସେହିପରି ରମଣୀ ଠାରେ ଧାତା ଆଣି ରଖିଲା ନାମ ଦେଇ ଝାରୁ ॥୨୮॥
ହରଷେ ମାଣିକ୍ୟ ହଂସକ ଚରଣେ ଖଞ୍ଜିଲା କେବଣ ମୃଗାକ୍ଷୀ,
ଫୁଟି କୋକନଦ ପାଶେ କି ତା ପାଶେ ଆସିପିଣ କୋକ ରହିଛି ।
କି ଅବା, ସ୍ଥଳ ସରସିଜ ସ୍ନେହର ।
କୁଚେ ଆଚ୍ଛାଦ ପାରୁଶେ କି ରହିଛି ଉଦୟ କାଳର ମିହିର ॥୨୯॥
ଚରଣ ପଲ୍ଲବ ପାରୁଶେ କେବଣ ଅବଳା ଯାବକ ଲେଖିଲା,
ବଟସ କରି ଶର୍ଜିତ କଲା ଯେଣୁ ଚରଣକୁ ତେଣୁ ଶୋଭିଲା ।
କିବା ସେ, ରୁଚିର ବନ୍ଧୁଜ ବରଣ ।
ଯୁବା ଜନ ମନ ହରି କରି ତହିଁ ରଖଇ ନେଇ ପଞ୍ଚବାଣ ॥୩୦॥
ଅଶୋକ କଳିକାକୃତ ଅଙ୍ଗୁଳିରେ ବଟସ ମୁଦ୍ରିକା ଶୋଭନ୍ତି,
ନଖ ଚନ୍ଦ୍ରମା ପାରୁଶେକ ହରଣ ଅଛନ୍ତି ତାର କାନ୍ତି ପନ୍ତି ।
ଆଜ ତ, ତିନିପୁରେ ନାହିଁ ଉପମା ।
ଯେମନ୍ତ ରମଣୀ ମଣିର ଚରଣ ଦିଶିଲା ଅତ୍ୟନ୍ତ ସୁଷମା ॥୩୧॥
ବେଣୀ ବନ୍ଧାଇଣ ଚତୁରୀ ସଜନୀ ସୁବର୍ଣ୍ଣେ ଘଟିତ ନଗ୍ନେଳ,
ମଇଥିଳୀ ଶିର ଉପରେଣ ଦେଲେ ଦିଶିଲା ଅତ୍ୟନ୍ତ ମଞ୍ଜୁଳ ।
କିବା ସେ, କାମ ଜୟ ହେମ ସ୍ୟନ୍ଦନ ।
ଦୀପି ଚର୍ମରେ ଘୋଡ଼ାଇ ରଖିଅଛି ହର-ଜଟେ ହରନନ୍ଦନ ॥୩୨॥
ଏଥୁ ଅନ୍ତରେ ସଖିଗଣ ସଙ୍ଗେ ବନି ବେଢ଼ାରେ ମନ କରି,
କଣ୍ଠ- ଗମନ ଧୀରେ ଧୀରେ ବିଜୟ କଲେକ ଭୁବନ ସୁନ୍ଦରୀ ।
ଗୃମର, ଖଣିଛନ୍ତି ଦାସୀ ନିକର ।
କାହାକରେ ଅଛି ଦିବ୍ୟ ଆତପତ୍ର ହଡ଼ପ ଘେନି କେ ବାହାର ॥୩୩॥

---

୨୮।୧ କ- ୦ଯୁବାଜନ କରଣ ବଦାରଣେ
୨୮।୨ କ- ପଞ୍ଚାନନ କରିକି ବାନ୍ଧିଣଂ
୨୮।୩ କ- ୦ହରଙ୍କର ଏହୁ ଡମ୍ବରୁ
୨୮।୪ କ- ୦ରମଣୀମଣି ଏ ଧାତା ରଖିଲେଂ
୨୯।୨ ଗ- ଆକ୍ଷେପିଣ
୨୯।୩ କ- ସରଣୀର
୨୯।୨-୪ 'ଗ' ପୋଥିରେ ନାହିଁ
୩୦।୩ ଖ- ୦ଚରଣ
୩୧।୨ ଖ- ୦ତାର କାନ୍ତିପନ୍ତି
୩୨।୨ କ- ମହୀସ୍ଥଳ
ଖ- ମସ୍ତଥିଳ
ଗ- ମସ୍ତସ୍ଥଳୀ
୩୨।୩ କ-କ- ଆସେ (?)
ଖ- ୦କାମ ଜୟଦେବ
୩୨।୪ ଖ- ୦ହରହିତେଂ
୩୩।୨ କ- କରଗମନଂ କଲା ତ୍ରିଭୁବନ ସୁନ୍ଦରୀ

ତରଳ ତରଳ ଆୟତ ଲୋଚନୀ କେ ବଞ୍ଚେ କୁସୁମ ପାଖୁଡ଼,
ମଣିମା ମଣିମା ବୋଲ ଡାକେ କେହୁ କେହୁ ଯାଆନ୍ତ ଆଗବଢ଼ି ।
କର୍ପୂର-ଗୁଣ୍ଡି କେ ମାର୍ଗରେ ବଞ୍ଚନ୍ତ ।
କୋମଳାଙ୍ଗୀ ତୋ କୋମଳ ପାଦବେନି ବୋଲି କେହୁ ସଖି ଜଣାନ୍ତ ।।୩୪।।

କେହୁ ଗାବନ୍ତ କେ ନୃତ୍ୟନ୍ତ ହସନ୍ତି କେହୁ ଧାମନ୍ତି ପନ୍ତି ପନ୍ତି,
କେ ବୀଣା ମର୍ଦ୍ଦଳ ପଞ୍ଚହ ଝର୍ଝର ଉପାଙ୍ଗ କେତେ ହିଁ ବାବନ୍ତି ।
କାହାର, କରେ ଶୋଭିତ କାଂସ୍ୟ ଘନ ।
କେହୁ ଧୀର କରି ଗାବନ୍ତି ସୁଷିର ନୃତ୍ୟ ରସରେ ଦେଇ ମନ ।।୩୫।।

ଏମନ୍ତ ପ୍ରକାରେ ନାନା କେଳି ରସେ ପ୍ରବେଶ ଉପବନେ ବାଳା,
ସଖିଙ୍କି ଗୃହିଁ କାମପୂଜା ସମ୍ଭାର ଆଣ ବୋଇଲେ ଗୁରୁଶୀଳା ।
ଆଜ୍ଞା ସେ, ଶିରେ ଘେନି ସର୍ବ ଆଳିକା ।
ସମସ୍ତ ସମ୍ଭାର ନେଇ ଯୋଗାଇଲେ ନାନା ପୁଷ୍ପେ ଗୁନ୍ଥି ମାଳିକା ।।୩୬।।

ନାଗେଶ୍ୱରର ବନକାର ମଧ୍ୟରେ ଶୋଭିତ ଗୁରୁ ରତ୍ନବେଦୀ,
ଭ୍ରମିବନ୍ଧ ସର୍ବଦରେ ଚରୁଅଛୁ ସମସ୍ତ ତରୁଗଣ ଭେଦି ।
ସେ ସ୍ଥାନେ, ଫୁଟି ପଡ଼ୁଛନ୍ତି ବାସନ୍ତୀ ।
ବାସନ୍ତି କାନନ ପୂରି ଉଡ଼େ ଲୋଭେ ମଧୁପ୍ରଚୟ ପନ୍ତ ପନ୍ତ ।।୩୭।।

ସେଠାରେ ପ୍ରବେଶ ହୋଇଲେ ସଖୀଙ୍କି ଘେନିଣ ଜନକ ନନ୍ଦନୀ,
ମହା ରଜନର ଅନଙ୍ଗ ପ୍ରତିମା ବସାଇଲେ ନେଇ ସଜନୀ ।
ହରଷେ, ପାଦ ପଖାଳି ନୃପଜେମା ।
ନାନା ଉପଚାର ବିଧିରେ ପୂଜିଲେ ହୋଇଣ ମନରେ ସକାମା ।।୩୮।।

---

୩୪।୧ କ- ତରଳ ଚଳ ଆସ୍ତୃତ, ପାଖୋଡ
୩୪।୨ ଖ- କେହୁ ଡ଼ାକେ,
୩୪।୩ କ- କପୁର
୩୫।୨ କ- ଝର୍ଝୀର ହ୍ରପାଗ,
ଖ- ଝର ଉପାଙ୍ଗ କେ ତହିଁ,
୩୫।୪ କ- ସୁସ୍ୱୀର
ଖ- ସୁଷିର
ଗ- ସୁସ୍ୱର

୩୭।୧ ଗ- ଉପବନେ
୩୭।୨ ଖ- ପୁର ଲୋଭେ ମଧୁପା ଚରନ୍ତ,
୩୮।୧ କ- ଜନେକ ନନ୍ଦନୀ
ଖ- ଜନକ ନନ୍ଦନୀ
୩୮।୨ କ- ମାହା ରଜୁତର,
୩୮।୦ ରୁ ୩୮।୧-୦ ୨- ପୋଥିରେ ନାହିଁ

ତହୁଁ ବଳେ କର ମନ୍ଦର ନୟନା ସ୍ଫଟିକ ମଣ୍ଡପେ ପ୍ରବେଶ,
ସେ ସ୍ଥାନେ ହର ଗଉରୀଙ୍କ ପୂଜଣ ଉପବନ ଦେଖି ହରଷ ।
ବୁଲନ୍ତି, କଉତୁକ ପାଇ ଆଗମ ।
ଦେଖନ୍ତେ ନାନା ପକ୍ଷୀଙ୍କର ବେହାର ମନେ ପ୍ରକାଶ ହେଲା କାମ ।।୩୯।।

ଅନଙ୍ଗ ପୂଜନ ନାମ ଏହୁ ଛାନ୍ଦ ଶୁଣି ରସିକେ ହୁଅ ତୋଷ,
ଶ୍ରୀରାମ ବିଳାସ ସପତମ ଛାନ୍ଦ ଶୁଭେ ହୋଇଲା ଏହୁ ଶେଷ ।
ସେ ରାମ, ପଦ ପଙ୍କଜ ବେନି ଧ୍ୟାୟି ।
ନୃପତି ଧନଞ୍ଜୟ ଭଞ୍ଜ ଭଣିଲେ ସୁଜନ ରସିକଙ୍କ ପାଇଁ ।।୪୦।।

●

## ଅଷ୍ଟମ ଛାନ୍ଦ

### (ରାଗ—କନଡ଼ା)

ସଜନୀମାନଙ୍କୁ ଘେନ ମନ୍ଦାକ୍ଷୀ ଦେଖେ ଶୋଭନ ଉପବନ,
ପୁଷ୍ପ ତୋଳବାରେ ହୋଇ ଉଛନ୍ନ,
ବିକଶିତ ବଲ୍ଲୀଗଣରେ ବେଷ୍ଟିତ ଦେଖିବ ମେ ତରୁମାନରେ, ସୁନ୍ଦରୀ !
କେଉଁ ବଲ୍ଲଭୀର ଲଭ ଅଶ୍ଳେଷ । ଚୂତଦ୍ରୁମ ଅଙ୍କୁରତେ ପ୍ରକାଶ ।
ମଞ୍ଜୁଳ ବଞ୍ଜୁଳ ପୁଷ୍ପିତ କାନନ ମଧ୍ୟରେ ମଧୁପ ବଶରେ, ସୁନ୍ଦରୀ ।।୧।।
ତହୁଁ କେତେଦୂରେ ମନ୍ଦର ନୟନା ପ୍ରବେଶ କେଶର କାନନ,
ଭୃଙ୍ଗକୁଳ କରନ୍ତି ମଞ୍ଜୁ ସ୍ୱନ,
ମଧୁର ଝାରରେ ପୂରିତ ଅବନୀ କେଶର ପରାଗେ ଛନ୍ନରେ, ସୁନ୍ଦରୀ !
ମନ ନୟନ କରୁଛି ଆନନ୍ଦ । ବଢ଼ାଉଛି ଯୁବତୀ ପ୍ରେମବନ୍ଧ ।
ଚୁମ୍ବଇ ମଧୁପ ମଧୂପର ହୋଇ ପରାଗେ ହୋଇଣ ଅନ୍ଧରେ, ସୁନ୍ଦରୀ ! ।।୨।।

---

୪୦।୩ ଖ- ୦ନତୋ୍ ଧ୍ୟାଇ
୪୦।୪ କ- ୦ଧନଜୁଜୟ ନୃପ ଭଣିଲେ୦
ଖ- ୦ଧନଜ୍ଜୟ୦ ସୁଜନ ହିତେ ଗାଇ

---

୧।୧ ଖ- ୦ଦେଖେ ଉପନ ଶୋଭବନ
୧।୩ କ- ବିକଶିତ ବଲ୦ ସୁନ୍ଦେର
ଖ- ୦ସେ ସୁନ୍ଦର
୧।୪ କ- ଛତଦ୍ରୁମ
୧।୫ କ- ସୁନ୍ଦେର
୨।୧ କ- ୦ମନ୍ଦର ନୟନା
୨।୩ ଖ- ମଧୁଝାର ପୂରେ୦
୨।୪ କ-ଗ-୦ପ୍ରେମ ଆନନ୍ଦ (?)
୨।୫ ଖ-ଚୁମ୍ବନ୍ତି୦

ପୁଣି ପୁନ୍ନାଙ୍ଗ ବନରେ ମଦାଳସୀ ସଖୀଗଣେ ଘେନ ବହରେ,
ହୋଇ ଅତି ଆନନ୍ଦ ପ୍ରେମଭରେ,
କେ କାହାକୁ କରେ ପରିହାସ ବାଣୀ ଦେଖ ସଖୀ ସ୍ନେହଭରେରେ, ସୁନ୍ଦରୀ !
ଦେଖ ଦେଖ ସଖୀ ଏଣେ ପୁନ୍ନାଗ । ଏଥି ତେଜିଲ୍ କି ତୋ ଅନୁରାଗ ?
ଏଣୁ କରି ପୁଷ୍ପ ମକରନ୍ଦ ଛଳେ ରୋଦୁଛନ୍ତି ତୋର ଆଗରେ, ସୁନ୍ଦରୀ ।।୩।।
କେ ବୋଲଇ ପ୍ରିୟେ ଦେଖ ହେ ପ୍ରିୟକ ତୋ ଅନୁରାଗ ନାହିଁ ଶୋଭ,
କେଳି କଦମ୍ବେ ଦେଖ ଭୃଙ୍ଗ ଲୋଭ,
ରସାଳେ ରସାଳେ କୂଜନ୍ତ କୋକିଳ ଅତି ମୁକ୍ତ ଅତି ଶୋଭରେ, ସୁନ୍ଦରୀ !
କେହୁ ବୋଲଇ ସଖୀ ଦେଖ ଧବ । ତୋର ଏଥି କି ବଳୁନାହିଁ ଭାବ ?
ଏ ଦେବ ବଲ୍ଲଭରେ ତୋର ସରାଗ ଜାଣିଲ ନିଶ୍ଚୟେ ହେବରେ, ସୁନ୍ଦରୀ ।।୪।।
ଏମନ୍ତେ ରମଣୀ ରମଣୀ ରତନ ରମଣୀୟ ବନେ ବହରେ,
ପ୍ରିୟ ସଖୀଙ୍କି ଘେନି ସଙ୍ଗତରେ,
କେହୁ ନାଚନ୍ତି କେ ଗାବନ୍ତି ହସନ୍ତି ଜାନକୀର ପ୍ରୀତି ଭରେ ସେ ସୁନ୍ଦରୀ ।
କେ କାହାକୁ କରନ୍ତି ଆଲିଙ୍ଗନ । କେହୁ ପଶନ୍ତି ଗହନ କାନନ ।
କେହୁ ମଦଭରେ ଯୁଗ ଯୁଗ ହୋଇ ଧାମନ୍ତି ହୋଇ ଉଛନ୍ନ ସେ, ସୁନ୍ଦରୀ ।।୫।।
ଏହି ସମୟରେ ପୁଷ୍ପ ତୋଳନରେ ମତି କରି ରଘୁନନ୍ଦନ,
ସଙ୍ଗେ ଘେନ ଅନୁଜ ଲକ୍ଷ୍ମଣ,
କାନନେ ପ୍ରବେଶ ହେଲେ ବେନି ଭାଇ ଯେସନେ ବସନ୍ତ ମଦନରେ, ସୁନ୍ଦରୀ !
ହସ୍ତେ ଧରିଛନ୍ତି ଶର କମାଣ । ପୀତ ବସନ କରିଣ ଗ୍ରହଣ,
ଉରେ ଲମ୍ବିତ ଶାର୍ଦ୍ଦୂଳ ନଖ ସଙ୍ଗେ ଦିବ୍ୟ ମୋତି ମାଳ ମାନରେ, ସୁନ୍ଦରୀ ।।୬।।

---

୩।୨ ଖ- ପୁଷ୍ପ ତୋଳନ୍ତି ଏକ ଆରକରେ
୩।୫ କ- ୦ରୋଦୁଅଛୁ
ଖ- କେଣୁକରି୦
୪।୧ କ- ୦ପ୍ରିୟ ସ୍ନେହକ୦ (?)
ଖ- ୦ଅନୁରାଗେ
ଗ- ୦ପ୍ରିୟ ଏକ୦ (?)
୪।୨ କ,ଗ - ପୋଥିରେ ନାହିଁ
୪।୩ ଖ - କୂଜତ
ଗ- ୦ରତନ କୂଜତ୦ ୦ଅଟମୋକ୍ଷ୦
୪।୪ କ,ଖ- କେହୁ ବୋଲନ୍ତି୦
୪।୫ କ,ଗ- ୦'ହେବରେ' ନାହିଁ
୫।୧ ଖ- ଏମନ୍ତେ ରମଣୀ ରମଣୀ ମଣିମଣୀସ୍ଥ ବହରେ
ଗ- ୦ରମଣ ଦୟ ବନେ ବହରେ୦
୫।୨ କ- ୦ସଙ୍ଗରେ
୫।୩ କ- ୦ଜାନେକରି୦
ଖ- ୦ପ୍ରୀତିଭରେରେ୦
୫।୪ କ- ପୋଥିରେ ୫ମ ପଦର ୩ୟ ଧାଡ଼ି ପରେ ଆଉ ଗୋଟିଏ ନୂତନ ପଦର କିୟଦଂଶ ହସ୍ତଲିଖିତ ଭାବରେ ମିଳୁଛି—
...କେ କାହାକୁ କରଇ ତହିଁ ପୁଷ୍ପର ଶରାସନ
...ନାଶି ପଞ୍ଚ ପୁଷ୍ପବାଣରେ ସୁନ୍ଦରୀ ।
ନବ ସୁବର୍ଣ୍ଣ ଜନକ ମଦନ । ଶର ପେଷି କରିଛନ୍ତି ଦହନ ।।
ଏତ ମୋହର ମାନସ ନୟନକୁ କରୁଛୁ ଆନନ୍ଦ ଘନ ଏ ସୁନ୍ଦରୀ ।
୫।୪ ଠାରୁ ୧୦।୫ ପର୍ଯ୍ୟନ୍ତ 'କ' ପୋଥିରେ ନାହିଁ,
୫।୪ ଠାରୁ ୧୨।୫ ପର୍ଯ୍ୟନ୍ତ 'ଗ' ପୋଥିରେ ନାହିଁ,
୬।୨- ଖ- ଲକ୍ଷ୍ୟଣ

ପଶନ୍ତି ଯାଇଣ ଲତା ବିତାନରେ ତୋଳନ୍ତି ବିବିଧ ସୁମନ,
ଭ୍ରମି ଦେଖନ୍ତି ବିଚିତ୍ର କାନନ,
ସୁସ୍ୱରମଧୁର କଳ ହଂସ ରୁତ ଶୁଣିଲେ ନୂପୁର ସ୍ୱନ ସେ ଶ୍ରୀରାମ ।
ଚକିତରେ ଚାହିଁଲେ ସର୍ବଦିଶ । ଅତି ଉତ୍ସୁକ ହୋଇଲା ମାନସ ।
ମନେ ବିଚାରନ୍ତି ଏ କିସ ନାଦ ମୋ ହୃଦୟ କରୁଛି ବଶ ହେ, ଲକ୍ଷ୍ମଣ ।।୭।।

ଏହି ସମୟରେ ଏକ ସହଚରୀ ଅଗ୍ରେ କୁସୁମ ତୋଳୁଥିଲା,
ରାମବାଣୀ ଶୁଣିଣ ଅନାଇଲା ।
ଧୈର୍ଯ୍ୟ ଅବଲମ୍ବି କରି ନ ପାରି ବୃକ୍ଷ ଧରିଣ ରହିଲା ସେ ସୁନ୍ଦରୀ
ମନେ ଚିନ୍ତଇ ଏ କାହୁଁ ଆଇଲା । ପୂର୍ବେ ନାହିଁ ତ ଏହାକୁ ଦେଖିଲା ।
ଏତେ ଚିନ୍ତିଣ ସୀତାଙ୍କର ଆଗରେ ସତ୍ୱରେ ପ୍ରବେଶ ହେଲା ସେ, ସୁନ୍ଦରୀ ।।୮।।

କରଯୋଡ଼ି କହେ ଶୁଣ ପ୍ରିୟସହି ନୃପଜା କୋମଳା ଅବଳା,
ତୁ ତ ସକଳ ଗୁଣରେ ସୁଶୀଳା,
ଏବନେ ଦେଖିଲି ମୁହିଁ କାମଦେବ କରେ ସଖା ସଙ୍ଗେ ଲୀଳାରେ, ସୁନ୍ଦରୀ !
ସଖୀ ବାଣୀ ଶୁଣିଣ ଚାରୁକେଶୀ । କାମ ଦରଶନେ ହେଲା ଲାଳସୀ ।
ବୋଲନ୍ତି ସଖୀ ତୁ କହିଲୁ ବିଚିତ୍ର କାହିଁଛି ସେ ରୂପରାଶିରେ, ସୁନ୍ଦରୀ ।।୯।।

ଏମନ୍ତ ଆଜ୍ଞା ଦେଇ ପ୍ରିୟ ସଜନୀ ବେନି ଘେନିଣ ନୃପବାଳୀ
ସେହି ସ୍ଥାନକୁ ଗଲା ବେଗେ ଚଳି,
ଦେଖିଲା ଲତାନ୍ତର ହୋଇ ଶ୍ରୀରାମ ବଦନ ଚନ୍ଦ୍ରମା ଝଳ ସେ ସୁନ୍ଦରୀ ।
ବେନି ନୟନ ହୋଇଲା ସ୍ଥକିତ । ମନେ ଚିନ୍ତଇ ଏ କିସ ବିଚିତ୍ର !
ଅତନୁ ତନୁ କେମନ୍ତରେ ଧରିଣ କ୍ଷିତିରେ ହେଲା ଆଗତ ସେ, ସୁନ୍ଦରୀ ।।୧୦।।

କଣ୍ଠେ ଭିଡ଼ିଅଛି ବେନି ତୂଣୀର ସ୍ୱର୍ଣ୍ଣ ହୀର ପୁଂଖେ ରଜତ,
କରେ କନକ କାର୍ମୁକ ଶୋଭିତ,
ଶ୍ରୀକରେ କଙ୍କ ପକ୍ଷର ବିରାଜୁଛି ତରଳ କରେ ମୋ ଚିତ୍ତ ଯେ, ସୁନ୍ଦରୀ ।
କିବା ବୋଲିବା ଅଶ୍ୱିନୀ କୁମାର । ଯେତ ବେନିଜନ ଏକ ସୁନ୍ଦର ।
ଏତ [ତହୁଁ] ଭିନ୍ନ ସ୍ୱରୂପ ଦିଶନ୍ତି ନୃପ କୁମାର ଆକାର ଏ, ସୁନ୍ଦରୀ ।।୧୧।।

---

୭।୪ ଖ- ଉତ୍କୁଣ୍ଠ
୧୧।୧ କ- କଣ୍ଠେ ଭିଡ଼ିଅଛି ବେନି ତୂଣୀର ସ୍ୱର୍ଣ୍ଣହୀର ପୁଙ୍ଖେ
ରଜତ
୧୧।୩ କ- ୦କଙ୍କପକ୍ଷ ବିରାଜୁଛି (?)
ଖ- ୦କୋକ ପକ୍ଷଂ ୦ତରଳଂ
୧୧।୪ କ- ୦ଅଶ୍ୱିନୀ ୦ବେନିଜନେ

ଶୁଣିଛଇ ଋଷି ଜନକ ମୁଖରୁ ନାହିଁ ଦେବଙ୍କର ନିମିଷ,
ଅବନୀକି ନ କରନ୍ତି ସ୍ପରଶ,
ଏଣୁ ଜାଣୁଥାଇଁ ଏ ନୃପନନ୍ଦନ ଦେବ କୁମାର ନିଶ୍ଚେ ମନୁଷ୍ୟ ସ୍ୱେ, ସୁନ୍ଦରୀ ।
ନର ରୂପ କପଟେ ଦେବ ହରି । ଅବନୀରେ ଅଛନ୍ତି ଅବତରି ।
ସଙ୍ଗତେ ଯେଣୁ ଅଛନ୍ତି ଋଷି ପୁରୀର ଅବନୀ ଭାର ନିବାରି ଏ, ସୁନ୍ଦରୀ ।।୧୨।।

ଦେଖ ଦେଖ ସଖି ଘନଶ୍ୟାମ ବର୍ଣ୍ଣ କୋଟି ମାରଜିତ ଲାବଣ୍ୟ,
ଦେଖି ହୋଇଲା ଧନ୍ୟ ମୋ ନୟନ,
ଆଜ ମୋ ଜନକ ପୁର ଧନ୍ୟ ହେଲା ଦେଖିବେ ଏହା ବଦନରେ, ସୁନ୍ଦରୀ !
ଧନ୍ୟ ଧନ୍ୟ ହେଲା ମୋର ଜୀବନ । ଧନ୍ୟ ଧନ୍ୟ ମୋହର ଆଜଦିନ ।
ଧରନ୍ତି ନାହିଁ କି ଏହା ପାଣି ମୁହିଁ ତାତ କଲା ମୂଢ଼ ପଣରେ, ସୁନ୍ଦରୀ ।।୧୩।।

ତୋ ମନେ ମଣୁ କି ସଖି ଏହୁ ହର ଧନୁ ଭାଙ୍ଗିବାକୁ ସମର୍ଥ,
ଯାହା ଦେଖି ଭାଙ୍ଗିଲେ ସାମରଥ,
ଏତ କୋମଳାଙ୍ଗ ବୟସେ କୋମଳ ହେବ କି ବାଞ୍ଛା ସ୍ୱଅର୍ଥରେ, ସୁନ୍ଦରୀ !
ମୋରେ ବିହି କି ହୋଇବ ସୁମୁଖ । ଧନୁ ଭାଙ୍ଗି ଏ ଫେଡ଼ିବେ ମୋ ଦୁଃଖ ?
ଗିରିଜା ମୋତେ କି ସନ୍ତୋଷ ହୋଇବ ଲଭିବି ମୁ ଏହା ସୁଖରେ, ସୁନ୍ଦରୀ ।।୧୪।।

ଯେତେ ନୃପଗଣ ସଭାରେ ଅଛନ୍ତି ଦେଖିଛ ତ ତୁମ୍ଭେ ମିତଣୀ,
ମୁଁ ତ ମଣୁଛି ଏ ବୀର ଅଗ୍ରଣୀ,
ଏହାର କୋଟି ଅଂଶର ହିଁ ଅଂଶକୁ ସମ ନୋହେ ବଜ୍ରପାଣିରେ, ସୁନ୍ଦରୀ !
ଦେଖ ଦେଖ ସିଂହ ପ୍ରାୟେ ଗମନ । କରେ ଶୋଭିତ ଦେଖ ଶରାସନ ।
ନିଶ୍ଚେ ଜାଣିଲି ମୁଁ ବୈକୁଣ୍ଠ ତେଜିଣ ଅଇଲେ କି ନାରାୟଣ ରେ, ସୁନ୍ଦରୀ ।।୧୫।।

---

୧୨।୧ କ- ୦ଜନେକ ମୁଖରୁ
ଖ- ଶୁଣିଥାଇଂ
୧୨।୨ କ- ସ୍ୱରସ
୧୨।୩ କ- ଏଣୁ ଜାଣୁ ତାଙ୍କଂ ୦ମାନୁସଂ
ଖ- ୦ମନଶ୍ୟ ଏ
୧୩।୧ କ- ଦେଖ ସଖି ଘନଶ୍ୟାମଂ ୦କୋଟି କୋଟି ଜିତ
ମୁଖ ଲାବଣ୍ୟ
୧୩।୨ କ- ଦେଖି ହେଲା ମୋ ଧନ୍ୟ ନୟନ ଜୀବନ
୧୩।୪ କ- ଧନ୍ୟ ଧନ୍ୟ ହେ
୧୩।୫ ଖ-୦ପାଣି ତା ତ କଲା ସେହୁଂ
୧୪।୧-୩ ଙ- ପୋଥିରେ ନାହିଁ
୧୪।୪ କ,ଗ- 'ହୋଇବ' ସ୍ଥାନରେ ହେବ ଓ 'ଭାଙ୍ଗି ଏ'
ସ୍ଥାନରେ 'ଭାଙ୍ଗି'
୧୪।୫ କ,ଗ- 'ମୁଁ' ନାହିଁ
୧୫।୨ କ- ପୋଥିରେ ନାହିଁ
୧୫।୩ କ- 'ହିଁ' ନାହିଁ,
୧୫।୫ କ- 'ତେଜିଣ' ସ୍ଥାନରେ 'ତେଜି'
ଖ- ଅଇଲେ ଯେ ନାରାୟଣ

ଏମନ୍ତେ ସଖୀଙ୍କ କହନ୍ତେ ବଚନ ଅଙ୍ଗ ବିକାରକୁ ଭଜିଲା,
ଗଣ୍ଡେ ସ୍ବେଦ ପୁଲକ ଆଚ୍ଛାଦିଲା,
ସୁସ୍ବର ବଚନ ଗଦଗଦ ହେଲା ଅଧର ବିମ୍ବ ଶୁଖିଲା ସେ, ସୁନ୍ଦରୀ ।
ଘନେ କମ୍ପିତ ଉରଜ ଯୁଗଳ । ଘନ ଦେଖି କି ନାଚେ ଶିଖୀବଳ ।
ବିବର୍ଣ୍ଣ ଭଜିଲା ତା ଅଙ୍ଗ ଲତିକା କଣ୍ଟୁ ଖରେ ସ୍ବେଦ ଜଳରେ, ସୁନ୍ଦରୀ ।।୧୬।।

ସଖୀଙ୍କ କହନ୍ତେ କହେ ଅନୁଆନ ପୁଣି ବେଦନ କରେ ବାଳା,
ଧୈର୍ଯ୍ୟ ଛେଦିଲା କାମ ଅନର୍ଗଳା ।
ଶିଥିଳ ହେଲା ସର୍ବ ଅଙ୍ଗ ତାହାର ଖସିଲା କଟୀ ମେଖଳାରେ, ସୁନ୍ଦରୀ !
ଏସନ ସ୍ବରୂପ ଦେଖି ତାହାର ପ୍ରିୟସଖୀ କହେ ଗୃଢ଼ ଉତ୍ତର
ତୁ ନବ ଯୁବତୀ ସମେ ନାହିଁ ଖ୍ୟାତ ନାହିଁ ତୋ ପ୍ରାଣ ଈଶ୍ବରରେ, ସୁନ୍ଦରୀ ।।୧୭।।

ତୁହିଁକୁ ଏସନ ଅଧୈର୍ଯ୍ୟ ରମଣୀ ଧୈର୍ଯ୍ୟଂକୁ କର ଅବଲମ୍ବ,
ଏହା ଦେଖି ହସନ୍ତୁ ଆମ୍ଭ ଦମ୍ଭ ,
ହରଗଜଙ୍କ ପ୍ରସନ୍ନରେ ହେବେ ଏ ତୋର ଶୁଭ ଆରମ୍ଭରେ, ସୁନ୍ଦରୀ !
ଏସନକେ ପ୍ରକାରେ ତାକୁ କହି । ଆଶ୍ବାସନା କଲେକ ପ୍ରାଣସହି ।
ଏହି ସମୟରେ ଲତା ଆଢ଼େ କଳ ମଳୟ ପବନ ବହି ହେ, ସୁଜନେ ।।୧୮।।

ଶ୍ରୀରାମ ନୟନ ଭୃଙ୍ଗ ଉଡ଼ି ସୀତା ବଦନ କମଳେ ପଡ଼ିଲା,
ମଧୁରସେ ଲୋଭୀ ହୋଇ ଜଡ଼ିଲା,
ଯେସନେ ଚକୋର ଚନ୍ଦ୍ରସୁଧା ପିଇ ଆନନ୍ଦ ରସେ ବୁଡ଼ିଲାରେ ,ସୁନ୍ଦରୀ !
ରଘୁବର ନେତ୍ର ହେଲା ଶଫରୀ । ସୀତା ଲାବଣ୍ୟ ରସରେ ବିହରି ।
ସେ ସମୟ ସଙ୍ଖ୍ୟ ଯୁଗ ଶତେ ଗୁରୁ କବି ବର୍ଣ୍ଣିତା' ନ ପାରି ହେ ସୁଜନେ ।।୧୯।।

ସୀତା ରାମ ବେନି ଜନ ନେହ ଭେଟ ନାମ ଅଷ୍ଟମ ଛାନ୍ଦ ଏହୁ
ଯୁଗଯୁଗ ରସିକ ପ୍ରୀତି ହେଉ ।
ଶ୍ରୀରାମ ବିଳାସ ଛାନ୍ଦ ହୋଇଲାକ ଲୋକେ ଏ ପ୍ରଚୁର ହେଉ ଏ, ସୁଜନେ
ଯେହୁ ପ୍ରୀତିପଣ କାରଣେ । ନୃପ ଧନଞ୍ଜୟ ଭଞ୍ଜ ଶରଣ ।
ଏ ଭବ ସାଗର ତାରଣ ତରଣୀ ଶୁଣନ୍ତୁ ପଣ୍ଡିତ ଜନ, ହେ ସୁଜନେ ।।୨୦।।

---

୧୬।୦ ଗ- ପୋଥିରେ ନାହିଁ
୧୬। ୫ କ- ୦ସ୍ବକଣ୍ଠ୦
୧୭।୪ ଙ- ଏସନକ ସ୍ବରୂପ ଦେଖି ତାର୦
୧୭।୫ କ,ଗ ୦ନାହିଁ ନାମେ ଖ୍ୟାତ୦
୧୮।୧-୩ ଧାଡ଼ି 'କ' ପୋଥିରେ ନାହିଁ
୧୮।୪ କ,ଗ- କରଇ
୧୮।୫ ୦ହେ, ସୁନ୍ଦରୀ
୧୯। ୪ କ- ୦ହେଲା ସଫରି
୧୯।୫ କ,ଗ- ସେହି ସମୟ୦ ୦ବର୍ଣ୍ଣି ନ ପାରିବେ୦ (?)
୨୦।୧ ଖ- ୦ନବମ ଅଷ୍ଟମ୦
୨୦।୪ କ- ଧନୁର୍ଜୟ
ଖ- ଧନର୍ଜୟ
୨୦।୫ ଖ- ଭବ ସାଗରରୁ ତର ହେ ରସିକ୦

# ନବମ ଛାନ୍ଦ

## (ରାଗ—କାଳୀ)

ଦେଖି ଜାନକୀ ବଦନ ରାମ ମଦନେ ଚଳଚିତ୍ତ,
କମ୍ପିଲ୍ ତନୁ କରର ଧନୁ ଖସି ଅବନୀ ଗତ ।
କେଶର ତରୁ ଆଉଜ କରି ରହିଲେ ରଘୁମଣି,
ପୁଣି ଧଇର୍ଯ୍ୟ କରି ଲକ୍ଷ୍ମଣ ଗୃହାନ୍ତୁ ପୁଣପୁଣି ।।୧।।

ମନେ ଚିନ୍ତନ୍ତି କି ଅଦଭୁତ ଅବନୀଗତ ଆସି,
ଜଗତ ଜନ ଜନନୀ ଏହୁ କିବା ପଙ୍କଜବାସୀ ।
କି ଏ ଦାମିନୀ ହର ରମଣୀ କିବା ଏ ଶାନ୍ତ କାନ୍ତି,
କିବା ଏ ରତି କିବା ଯେ ଶଚୀ କି ମୋର ଭ୍ରମ ମତି ।।୨।।

ସଜନୀଗଣ ସଙ୍ଗତେ ଅଛୁ ଏ ରାଜକୁଳ ଜେମା,
କରିଛୁ ସଖୀ ସଙ୍ଗେ ବେହାର ଧନ୍ୟ ଏ ଅଭିରାମା ।
ଜଗତ ନାରୀ ଭିତରେ ଧାତା ଅଗ୍ରଣୀ ଏହା କଲ୍,
ସୃଷ୍ଟି ରଚନା ଗୁଡ଼ ସକଳ ଏ ବାଳା ନିର୍ମାଣିଲ୍ ।।୩।।

ଧନ୍ୟ ରମଣୀ କୁଟିଳ ବେଣୀ ନିନ୍ଦେ ଭ୍ରସଳଶ୍ରେଣୀ,
କି ଅବା କାମଦେବର ଜୟ ମାଳ କେତନ ଜାଣି ।
କି ଅବା ମୁଖଚନ୍ଦ୍ରକୁ ଗ୍ରାସି ରହିଛି ଘୋର ତମ,
ଶେଷେ ଏ ପୁଚ୍ଛ ଲମ୍ବାଇଅଛି ଦିଶଇ ଅନୁପମ ।।୪।।

କି ଅବା ନିଜ ପତି ଆଶାରେ ଅଛି ରଜନୀ ରହି,
ତାରକା ସପତ୍ନୀଙ୍କ ପାଶ ନ ଯିବ ନିଶାସାଇଁ ।
କି ଅବା ଯୂବା ନୟନ ଅନ୍ଧ କାମ ତିମିର ଏହୁ,
କି ଅବା ଯୁବା ନେତ୍ର ଚାତକ ଅମୃତଦାମୀ ସେହୁ ୍ ।।୫।।

---

୧।୧ କ-ଗ- ୦ଜାନେକୀ୦
୧।୨ କ- ୦ଅବନୀତଳ
୨।୪ କ- ୦କି କି ମୋର୦
୩।୨ ଖ- ୦ସଖୀ ରୂଳ୍ୟେ୦
୩।୩ ଗ- ଜ୍ୟତ ଧାତା ଭିତରେ ନାରୀ୦
୪।୪ ଖ- ଶେଷେଣ ପୁଛ୦
୫।୩ ଖ ୦ତମିର୦

କି ଅବା ରତ୍ନନାଥ ରଥର ନୀଳ ଘୁମର ଶୋଭା,
ଦେଖିଲେ ହର ହାରବ ଧୃତି ଜଗତ ଜନ ଲୋଭା ।
କି ଏ କାଳନ୍ଦୀ ତରଙ୍ଗ ଶ୍ରେଣୀ ପ୍ରାପ୍ତେକ ମନୋହର,
ସୀମନ୍ତେ ଶୋଭା ସିନ୍ଦୂର ରେଖ ପାଶେ କି ସୂତା ତାର ।।୬।।

କିବା ଅଞ୍ଜନାଚଳ କନ୍ଦର ଦାଗ ବାହାର ରେଖ,
କି ନୀଳମଣି ଭୂମିରେ ଶୋହେ ମାଣିକ୍ୟ ଦଣ୍ଡ ଛବି ।
ଶିରେ ଶୋଭିତ ନାଗଗମଣି ଖଚିତ ମାରତଣ୍ଡ,
କି ଶାଳଧନୁ ପରେ ସାଜିଛି ମଦନ ଗୁଳକାଣ୍ଡ ।।୭।।

ନୀଳ କୁଟିଳ ଚୂର୍ଣ୍ଣ କୁନ୍ତଳ ତହିଁ ପାର୍ଶ୍ୱରେ ସାଜେ,
କି ଭୃଙ୍ଗ ଗୁଣ କାମ କୋଦଣ୍ଡେ ଜଗତ ଜୟେ ରାଜେ ।
କିବା ଲଲାଟ ପଟ ସୁନ୍ଦର ଅଷ୍ଟମୀ କଳାନିଧି,
ଭ୍ରୂଲତା ଅର୍ଦ୍ଧ କଳଙ୍କ ଶୋଭା ରଞ୍ଜିଲା ଗୁଡ଼ ବିଧି ।।୮।।

କପୋଳପାଳି ଅତି ମଞ୍ଜୁଳ କି କାମଦେବ ଫର,
କିବା ମୁକୁର ଖଣ୍ଡ ସାଜିଣ ଥୋଇଲା ଲୋକକାନ୍ତ ।
କିବା ଏ କାମଦେବର ଜାଣ ସଖା ନିର୍ମଳ ଶଶୀ,
ମୁଖ ପଙ୍କଜ ଶୋଭାକୁ ହାରିଅଛି ଶରଣ ପଶି ।।୯।।

ଧନ୍ୟ ଏ ନେତ୍ର ଲାବଣ୍ୟ ପାନ୍ଥ ମଦନ ବାଣ କିବା,
କି ଇନ୍ଦୀବର ଚନ୍ଦ୍ର ସ୍ନେହରେ କରଣ ଅଛି ସେବା ।
କିବା ଚଞ୍ଚଳ ହରିଣ ଏହୁ ଅଛି ଶଶାଙ୍କ କୋଳେ,
ଯେଣୁ ଚଞ୍ଚଳ ଦୃଷ୍ଟି ନୟନ ଯୁଗଳ ତାର ଖେଳେ ।।୧୦।।

କିବା ଅମୀୟ ବିନ୍ଦୁ ଉପରେ ଭ୍ରମର ଚୁମ୍ବୁଅଛି,
ଉଡ଼ି ନପାରି ଲାଗି ରହିଛି ବୃନ୍ତେ ପିଛୁଡ଼ା ପକ୍ଷୀ ।
କି ଅବା ପଦ୍ମ ମଧ୍ୟରେ ବସି ଖେଳେ ଖଞ୍ଜନ ବେନି,
ଏ କାମଦେବ ଶୁଭ ସୂଚକ ବୋଲୁଛି ପଦ୍ମଯୋନି ।।୧୧।।

---

୬।୧- ଙ-ଗ- କିବା ଏ ରତନ ଅର ନାଥ
୬।୨ ଗ- ହର ହୋଇବ
୬।୩ ଖ- କି ସେ କାଳନ୍ଦୀ
୬।୪ ଙ-ଗ- ସିନ୍ଦୂର ଛବି
ଖ- ସୁତ ତାର
୭।୧ ଙ-ଗ ଅଞ୍ଜନା ଚଳ କନ୍ଦର ହାର (?)
୭।୨ ଙ-ଗ- କି ନୀଳ ଅଛି
୭।୪ ଖ- ଶୁଳକାଣ୍ଡ
୮।୨ ଙ-ଗ- କି ଭୃଙ୍ଗ ରୂପ
୮।୪ ଙ-ଗ- ଅର୍ଦ୍ଧ କମଳ କିଶୋର ରଚି ଗୁଡ଼ିଲା ବିଧି
୯।୨ ଗ- ଲୋକକାନ୍ତ
୧୦।୧ ଖ- ମଦନ ବାଣୀ
୧୧।୧ ଙ- ଅମିତା ବିନ୍ଦୁ
୧୧।୪ ଙ- ଏ କାମଦେବ ସୂଚକ ବୋଲି
ଖ- ବୋଲିଛି

କି ଅବା କାମଧେନୁ ପାଶରେ ରଖିଛି ନିଜ ଧ୍ୱଜ,
ସମ୍ଭାର କରି ଭଙ୍ଗିବ ଏହୁ ତ୍ରିପୁର ହର ଧୈର୍ଯ୍ୟ ।
କି ଅବା କ୍ଷୀର ସାଗରୁ ଜାତ ହୋଇଛି ହଳାହଳ,
ଯୁବା ଧଇର୍ଯ୍ୟ ତୃଣ ଦହନ ଏହୁ ସେ କାଳାନଳ ।।୧୨।।

କି ଅବା ଚନ୍ଦ୍ର ମଧ୍ୟରେ ବେନି ଚକୋର ସୁଧା-ଲୋଭି,
କିବା ଲାବଣ୍ୟ ଜଳେ ଫୁଟିତ ପଙ୍କଜ ବେନି ଶୋଭି ।
କି ଅବା ଏହୁ ସୁନାମ ମଣି ହେମ ଟଙ୍କେ ଶୋହେ,
ଦେଖିଲେ ଶମ୍ଭୁ ସ୍ୱୟମ୍ଭୂ ଧୈର୍ଯ୍ୟ ହେଲେ ମାନବେ ମୋହେ ।।୧୩।।

ଧନ୍ୟ ନାସିକା ଅତି ଶୋଭିତ ତିଳ ପ୍ରସୂନ ଜିଣି,
କିବା ଅନଙ୍ଗ ଦହନ କାଳେ ତୂଣୀର ଧାତା ଆଣି ।
ରମଣୀବର ନାସିକା କରି ରଚନା କଲା ବସି,
ଶ୍ୱାସ ସମୀର ଅତି ସୁଗନ୍ଧ ତେଣୁ ଏ ଚରେ କାଶି ।।୧୪।।

କୁସୁମ ଶର ଥୋଇଣ ଅଛି ଜଗତ ବଶ ପାଇଁ,
ମୋ ମନେ ଏହୁ କଥା ଆଭାସେ ସୁନ୍ଦରୀ ନାସା ଗୁହ୍ମାଁ ।
କି ଅବା ବେନି ନାଳିକ ଶର ନଳୀ ଏ ମଦନର,
କି ହେମଦଣ୍ଡ ଭେଦି ଥୋଇଛି ଯତ୍ନେ କୁସୁମ ଶର ।।୧୫।।

କିବା ଶ୍ରବଣ ଅତି ରଞ୍ଜନ ଅନଙ୍ଗ ଖଟ ଦୋଳି,
କି ଅବା ଯୁବା ଦ୍ୱିରଦ ବନ୍ଧ ଅଟଇ ପାଶବଳୀ ।
କି ଅବା ହେମ ପାଟଳ ପୁଷ୍ପ ଥୋଇଛି କୁଶଧର,
ଏବେ ଅନଙ୍ଗ ଶିବ ଜିଣିବ କରିଣ ଏହା ଶର ।।୧୬।।

ବନ୍ଧୂକଜିତ ଅଧରାଧର ଅମୀୟ ତରଙ୍ଗିଣୀ,
କିବା ବିଦ୍ରୁମ ନବ ବଲ୍ଲରୀ ରଞ୍ଜିଛି ଧାତା ଆଣି ।
ପାଶେ ଖଞ୍ଜିତ କଲି ନିର୍ମଳ ମୋତି ନିଚୟ ତହିଁ,
ସନ୍ଧ୍ୟା ଅରୁଣ ଘନଭେଦ କି ଦଶଇ ତାରା ସାଇଁ ।।୧୭।।

---

୧୨।୨ କ- 'ଏହୁ' ନାହିଁ
୧୨।୩ ଖ- ହଳାହଳ
୧୨।୪ କ- ଧୈର୍ଯ୍ୟ (?)
୧୩।୩ କ-ଗ- ୦ସୁମଣି ମଣି୦
୧୩।୪ କ- ୦ମାନ ନେବ ମୋରେ
୧୪।୨ କ-ଖ-ଗ- ୦ତୃଣୀର
୧୪।୩- ଖ- ୦ରଚନା୦
୧୪।୪ କ- ୦ଅତି ସୁନ୍ଦର୦
ଖ- ୦ଜେଣୁ ଏ
୧୬।୨ ଖ- ୦ଦ୍ୱିରଦ ବନ୍ଧ
୧୬।୪ କ- ୦ଶିବ ଜଗିବ୦
୧୭।୧ କ- ଅଧରାଧର
ଖ- ଅଧରାଥର
୧୭।୨ କ-ଗ- କିବା ଅବହୁ୦ (କି ଅବା ଏହୁ ?)

ଧନ୍ୟ ଏ ଗୃରୁ ଚିବୁକ ଶୋଭା ମଧ୍ୟରେ ନିମ୍ନ ଶୋହେ,
ମୁଷ୍ଟି ଘଟନା କାଳେ ଧାତାର ଅଙ୍ଗୁଳି ଚିହ୍ନ କି ଏ ।
ଭଲ ଏ ରାମା ବଦନ ଶୋଭା ଜଗତେଯାକେ ନାହିଁ,
ଏହାକୁ ଗୃହ୍ନିଁକି ପ୍ରତିଦିନ କ୍ଷୀଣ ରଜନୀ ସାଇଁ ॥୧୮॥

ଏ କାମଦେବ ଗୃରୁ ମୁକୁର ମୋ ମନେ ଏହେଲ ଭାସେ,
ଅଙ୍ଗ ବହୁନେ ନ ଦିଶେ କାମ ଅଛଇ ଏହା ପାଶେ ।
ପ୍ରକାଶ ତାର ଭ୍ରୂଲତା ଧନୁ ନାସା ତୂଣୀରେ ଘେନ,
ନୟନ ବାଣ ଗଣ୍ଡ ଫଳକ ଶ୍ରବଣ ପାଶ ବେନ ॥୧୯॥

ରାମା ବଦନ ସମାନ ମତି କରି ସେ ନିଶାପତି,
କନ୍ଦର୍ପ ଠାରେ ଭୁଲା ଚଢ଼ନ୍ତେ ହାରଣ କଲ ଖିତି ।
ତେଣୁ ବିଧାତା ସରୋଷ ହୋଇ ମୁଖରେ କାଳି ଦେଲ,
ସେହୁ କାଳିମା ଚନ୍ଦ୍ର ମଧ୍ୟରେ କଳଙ୍କ ହୋଇ ହେଲ ॥୨୦॥

ପଙ୍କରୁ ଜାତ ନାମ ପଙ୍କଜ ହୋଇଲ ତାର ଯେଣୁ,
ରାମା ବଦନେ କମଳେ ହାରି ଶରଣ ପାଦେ ତେଣୁ ।
ରାତ ଦିବସେ ପ୍ରକାଶ ଏହି ଦିବା ପ୍ରକାଶ ସେହି,
ଜାଣିଲ ଏଣୁ ସମାନ ନୋହିଁ ଶିଶିରେ ହୋଇ ଦହି ॥୨୧॥

ଏବେ ମୋ ମନେ ଏଣେ ମଣୁଛି ଏହା ବଦନ ଗୁହିଁ,
ଦିବସେ ଶଶୀ ବିରୂପ ହୋଇ ଚରମାଚଳେ ଯାଇଁ ।
ଏଣୁ ତ୍ରୈଲୋକ୍ୟେ ମୁଖ ଉପମା ଆଉ ତ ନ ଦିଶିଲ,
ମୋର ନୟନ ମନ ହରଣ ଯେଣୁ ଏ ଶୋଭା ନେଲ ॥୨୨॥

ଏ କି ଅନଙ୍ଗ ଜଗତ ଜନ ଧୃତି ଧ୍ୱଂସନ କମ୍ବୁ,
ସାଜିଛି ଅତି ଯତ୍ନରେ ଏହା ଦେଖି ଭାଙ୍ଗିଛି ଶମ୍ଭୁ ।
ଯେଣୁ ଏ ତିନ ରେଖାରେ ଶୋଭାକର ଧାରଣା ଚିହ୍ନ,
ରମଣୀମଣି କଣ୍ଠ ଶୋଭନ ହରୁଛି ମୁନି ମନ ॥୨୩॥

---

୧୮।୪ ଖ- କ୍ଷୀନ୍ନ
୧୯।୩ କ-ଖ-ଗ- ତୂଣୀର
୧୯।୪- କ-ଗ- ୦ଖଣ୍ଡ ଫଳକ୦
ଖ- ୦ଗଣ୍ଡ ପଙ୍କଜ
୨୦।୨ ଗ- ମାତି
୨୦।୩ କ- ଚଢ଼ନ୍ତେ ହାର ନ
ଖ- ଝଡ଼ାନ୍ତେ ହର ନ
୨୦।୪ କ-ଗ- ୦କାଳିକା୦
୨୧।୦ କ- ୦ସେସରେ୦
ଗ- ୦ସମୀରେ୦
୨୨।୧ କ- ୦ସ୍ୱେହେ ମଣୁଛି୦
୨୨।୩ ଗ- ଏଣୁଟି ସେକେ୦
୨୩।୧ ଗ- ଯେକ୦ ଧ୍ୱଂସନ କରୁ
୨୩।୨ କ-ଗ- ୦ଷ୍ଟିଗିବ ସରୁ
୨୩।୩ କ- ସ୍ୱେଣୁ ଏ୦
ଖ- ଏଣୁ ଏ୦

ଧନ୍ୟ ଏ ବାହୁ ଲତିକା ଶୋଭା କିବା ଅନଙ୍ଗ ପାଶୀ,
ହେମ ମୃଣାଳ ଚମ୍ପକ ଦାମ ଗଞ୍ଜେ ଏ ଶୋଭାରାଶି ।
କିବା ଏ କାମନଦୀ ସୁନ୍ଦରୀ ଗୃହୁତରଙ୍ଗ ମାଳ,
ପ୍ରମଦ ଶାଣେ ରସାଣି ଅଛି ତେଣୁ ଦିଶୁଛି ଝଳ ॥୨୪॥

ପାଣି ପଲ୍ଲବ ଅତି ରୁଚିର ନିନ୍ଦଇ କୋକନଦ,
କିବା କନକ ଲତାରେ ଶୋଭା ଦିଶେ ମାଣିକ୍ୟଛନ୍ଦ ।
କି ଅବା କାମ ପଦ୍ମରାଗର ତୂଣୀର ବେନି ଶୋହେ,
ଅଙ୍ଗୁଳି ହେମ ନିର୍ମିତ ଶର ହୀର ପୁଷ୍ପରେ ଶୋହେ ॥୨୫॥

ଅତି ତୀକ୍ଷଣ ଜାଗ୍ରି ଦଳକୁ ନିନ୍ଦଇ ନଖ ଅଗ୍ର,
ସାଜିଛି କାମ ଶର ନିଚୟ ହେଲେ କଣିମ ଉଗ୍ର ।
ପ୍ରତି ପବରେ ସୁନ୍ଦର ଦିଶେ ଏହା ଅଙ୍ଗୁଳି ରାଜି,
ହେମ ଲତିକା ପଙ୍କଜ ଗନ୍ଧଫଳୀରେ ଅଛି ସାଜି ॥୨୬॥

ଧନ୍ୟ ରମଣୀ ମଣିର କୁଚ ସଘନ ଶୋଭାବନ,
କିବା କନ୍ଦୁକ ବେନି କାମର ଦିଶେ ଶୋଭିତମାନ ।
କି ଅବା ନବ ହାଟକ ପୂର୍ଣ୍ଣ କୁମ୍ଭ ଏ ଅତନୁର,
କି କାମ ଭୟେ ଅତି କାତରେ ହୋଇଲେ ବେନିହାର ॥୨୭॥

ଲାବଣ୍ୟରସ ସରସିବରେ ଶୋଭିତ ଚକ୍ରବେନି,
ସଂସାର ଚକ୍ର ଭ୍ରମାଉଅଛି ରାମା ହୃଦରେ ଘେନି ।
କି ଅବା ବେନି ହେମ ସଂପୁଟେ ଯୁବା ମୋହିବା ପାଇଁ,
ଥୋଇଛି ମୋହ ଔଷଧିମାନ ପୂରାଇ ରତି ସାଇଁ ॥୨୮॥

କିବା କନକ ଲତିକା ବହିଅଛଇ ବେନି ମେରୁ,
ବ୍ରହ୍ମ ଧଇର୍ଯ୍ୟ ହୋଇବ ଧ୍ୱଂସ ଏସନ ଉତ୍ପାତରୁ ।
କି ଅବା କାମ ଦ୍ୱିରଦ ବେନି ଶୋଭିତ କୁମ୍ଭସ୍ଥଳ,
କି ଲୀଳା ଲତା ଅତି ମଞ୍ଜୁଳ ଶୋଭିତ ବେନିଫଳ ॥୨୯॥

---

୨୪।୧ ଖ- ୦ଅନଙ୍ଗ ପଶି
୨୪।୪ ଖ- ପ୍ରମାଦଶାଣେ୦
୨୫।୨ ଖ- ୦ମାଣିକ୍ୟ ଛନ୍ଦ
୨୫।୩- କ-ଗ- ତୂଣୀର
୨୫।୪ କ-ଗ- ୦ଶର ହୀରକ ପୁଂଖେ୦
ଖ- ଅଙ୍ଗୁଳି ତମ୦
୨୬।୨ କ- ୦ନିଷ୍ଟଏ୦
ଗ- ୦ନିଷ୍ଟସ୍ୱେ୦
୨୬।୩ ଙ- ୦ସୁନ୍ଦର ଦିଶେ୦
୨୭।୩ କ-ଗ- ୦ଘଟକ ବର୍ଣ୍ଣ୦
ଖ- ୦ନବ ତାଟକ୦
୨୮।୩ ଗ- ହେମବେନି ସଂପୁଟେ
୨୮।୪ କ-ଗ- ୦ପୂରେଇ
୨୯।୨ କ-ଗ- ଅତ ଧଇର୍ଯ୍ୟ୦

ଗୁରୁ ମଞ୍ଜୁଳ ହେମ କମଳ କୁଟ୍ମଳ ବେନି କି ଏ,
ଲୋଭେ ରୋମାବଳି ବେନି ଭ୍ରମର ଚୁମ୍ବୁକ ଶୋଭାପାଏ ।
କି ଅବା ବେନି ହେମ କଟୋରା ଅବନି ମୁଖ କରି,
ରାମା ହୃଦରେ ରଖିଅଛି ଯତ୍ନରେ ଶମ୍ବରାରି ।।୩୦।।

କି ଅବା ଉପବନେ ବିଚିତ୍ର ହେମଲତିକା ପରି,
ଫଳିତେ ରହିଅଛଇ ବେନି ଶ୍ରୀଫଳ ଶୋଭାଧରି ।
କି ଅବା ପୂର୍ଣ୍ଣ ଶଶାଙ୍କ ବେନି ହୃଦେ ବିଦିତ ହେଲା,
ଏହୁ ବିଚିତ୍ର ଦେଖନ୍ତେ କାମ ତମ ପ୍ରକାଶ କଲା ।।୩୧।।

ଧନ୍ୟ ରୋମାଳି କି ଅଳି ମାଳ କୁଚ କୋରକ ପାଶେ,
ଜଗି ରହିଛି ପ୍ରକାଶ ପାଇଁ ସୁଗନ୍ଧ ନେବା ଆଶେ ।
କି ଅବା ବେନି ଚକ୍ରଧାରଣେ କନ୍ଦର୍ପ ଅଠାକାଠି,
ନିର୍ମାଣ କଲା ଅନେକ ଯୁଗ ବସିଣ ପରମେଷ୍ଠୀ ।।୩୨।।

କିବା ରମଣୀମଣିର ବେଣୀ ତନୁ ଝଲାରୁ କରି,
ଫୁଟି ଦିଶୁଛି ଉଦରେ ଆସି ଦିଶଇ ତେଣୁ କାଳି ।
କି ଅବା କାଳସର୍ପ ତା କୁଚ ଗିରି କନ୍ଦରୁ ଆସେ
ନାଭି ସରରୁ ଅମୃତପାନ କରିବା ପ୍ରତିଆଶେ ।।୩୩।।

କି ଅବା କାମ ଶମ୍ଭୁନୟନ ଅନଳେ ଦଗଧ ହୋଇ,
ନାଭି କୂପରେ ପଶିଲା ଆସି ତାପ ଶାନ୍ତିର ପାଇଁ ।
ତନୁ ଅନଳ ଲଭି କି ତାର ବିକାଶ ଧୂମଲେଖା,
ରୋମ ଲତିକା କପଟେ ରାମା ଉଦରେ ଦେଲା ଦେଖା ।।୩୪।।

ଧନ୍ୟ ତ୍ରିବଳି କି ଏ ତ୍ରିବଳୀ ବଳରେ ଶୋଭା ଦିଶେ,
ଧର ଉମ୍ବରୁ ଉମ୍ବରୁ-କାଞ୍ଚୀ ଆସନ କଲା କି ସେ ।
କି ବା ତ୍ରିପଥ-ଗାମିନୀ ଧାର ଗଗନେ ଶୋଭା ପାଏ,
ନବ ଯୌବନ ଗମନ ପାଇଁ ହେମ ସୋପାନ କି ଏ ।।୩୫।।

---

୩୦।୧ ଖ- ଂକୁଟ୍ମଳଂ (?)
ଗ- ଂକୁଣ୍ଡଳଂ
୩୦।୨ କ-ଖ-ଗ- ଂଚମ୍ପୁକଂ
୩୦।୩ ଗ- ହେମ ବେନି କଟୋରାଂ
୩୦।୪ କ-ଗ ଂହୃଦରେ ରଖିଛୁ ଯତ୍ନରେଂ
୩୧।୨ ଖ- ଫଳତେଂ
୩୧।୩ କ-ଗ- ଂବିଚିତ୍ର ହେଲା
୩୧।୪ ଖ- ଂକାମ ତପଂ
୩୨।୨ କ-ଗ ଂସୁଗନ୍ଧ ନେମା ଆଶେ
୩୨।୪ କ-ଗ- ଂଅନଙ୍ଗ ଯୁଗଂ
୩୩।୩ କ-ଗ- ଂକାଳ ସର୍ପଣୀ କୁଚଂ
୩୩।୪ କ-ଗ- ନାଭି ଶରସୁଂ
୩୪।୪ କ-ଗ- ଂଲିବକ ତାରଂ ହେଲେ ଲେଖା
ଖ- ଲବକ ତାରଂ ଂଧୂମଲେଖା
୩୫।୧ କ-ଗ- ଂବଳି ତେଣେ ଶୋ ଦିଶେ
୩୫।୨ କ-ଗ- ଂଆସନ ଦିଶେ
କ-ଖ-ଗ- ରୁଦ୍ରମୁ କରି,

ଧନ୍ୟ ଏ କଟୀ ଶୋଭିତ ଶାଟୀ ଧାଟୀ କୁଞ୍ଚିତେ ଭଲ,
କିବା ମହାବାନର ଲୁଲଣେ ସାଜିଛି ସନ୍ଧିମାଳା ।
ଏ ମଧ୍ୟା ଶୋଭା ଦେଖି କେଶରୀ ହାରଣ ବନେ ଗଲ,
ଉମ୍ବରୁ ହାର ସଭୟ ହୋଇ ହରକୁ ଆଶ୍ରେ କଲ ॥୩୬॥

ରମା ନିର୍ମାଣ କାଳେ କି ଧାତା ମନେ ବିସ୍ମୟ କରି,
କେଣେ ସୁ-ମଧ୍ୟା କରିବ ବୋଲି ବିସ୍ମର ନେଇକାରୀ ।
ଆପଣା କର କୁଶ ମୁଦ୍ରିକା ଘେନଣ କଲା ମଧ୍ୟା,
ହର ଭୟେ କି କର ଗୁରୁଜ ଥୋଇଲ କାମ ଓଷ୍ଠା ॥୩୭॥

ଧନ୍ୟ ଜଘନ ଅତି ଶୋଭନ ନୟନ ବନ୍ଦୀଘର,
ଲାବଣ୍ୟନଦୀ ପୁଲିନ କି ଏ ନିର୍ମାଣ କଲା ମାର ।
କି ତାର ମନ୍ତ୍ର ସାଧନ ପୀଠି ରଖିଛି ଗୋପ୍ୟ କରି,
ଏ ସ୍ଥାନେ ମନ୍ତ୍ର ସିଦ୍ଧି କି କରି ଜଣିମ ତ୍ରିପୁରାରି ॥୩୮॥

ଶୋଭିତ ଭଲ ନିତମ୍ବ ବିମ୍ବ ବିଜୟୀ କାମଚକ୍ର,
ଯାହାକୁ ପାଇ ଅନଙ୍ଗ ବଶ କରେ ସଂସାର ଚକ୍ର ।
ଉଲଟ ହେମ ରମ୍ଭା ନିନ୍ଦିତ ସୁନ୍ଦରୀ ଊରୁ ବେନି,
କି ଅବା ସୁଧା ଧାର ରଚନା କଲାକି ପଦ୍ମଯୋନି ॥୩୯॥

ଗୁରୁ ମାଂସଳ ଅତି କୋମଳ କମଠ ପୃଷ୍ଠଭ୍ରାନ୍ତ,
କିବା ଏ ସ୍ଥଳ କମଳ ବେନି ଅଧୋମୁଖରେ ଛନ୍ତି ।
ଦିବ୍ୟ ଅଙ୍ଗୁଳି ଗୁଚ୍ଛ ଆବଳି ନିନ୍ଦେ ମଞ୍ଜୁଳ କଢ଼ି,
ମୁଖେ ବିଜିତ ଶଶିର କଳା ରହିଛି ପାଦେ ପଡ଼ି ॥୪୦॥

---

୩୬।୧ ଖ- ୦ଘଟୀ କୁଚତେ୦
ଗ- ୦ଏକଶଣୀ୦ ୦ଧଟି କୁଞ୍ଚିତ ଭଲ
୩୬।୨ ଖ- କିବା ମହାବାଜର ଲୁଲଣେ
୩୬।୩ କ-ଗ- ଏ ମଦ୍ଧୀ ଶୋଭା
୩୭।୧ କ-ଗ- ୦ଛଳେ ବିଧାତା୦
୩୭।୨ ଗ- ମୁଁ ମଧ୍ୟା୦
୩୭।୩ କ-ଗ- ୦କୁମୁଦ୍ରିକା ଘେନ ଓଷ୍ଠା କଲ ମଧ୍ୟା
ଖ- ଗଲ ମଧ୍ୟା
୩୭।୪ କ-ଗ- କି କରୁ୦
ଖ- ୦କାକର
୩୮।୩ କ-ଗ- ୦ମନ ସାଧନା ପୀଠ
୩୮।୪ କ-ଗ- ଜଣିମା
୩୯।୧ କ-ଗ ୦ନିତମ୍ବ କିବା୦
୩୯।୨ କ-ଗ- ୦ବଶ କରେ୦
ଖ- ୦ଶଣାଙ୍କ ଚକ୍ର୦
୩୯।୪ କ-ଗ- ୦ସୁଧାଧାର ଚଷଲା୦
୪୦।୪ କ-ଗ- ମୁଖେ ବର୍ଜିତ୦
ଖ- ୦ବଜିତ ଶଶିର୦

ଚରଣ ତଳ ଅତି ମଞ୍ଜୁଳ ନଦେ ବଦ୍ରୁମ ଶୋଭା,
ଯାବକ ରସ ନୋହୁଛୁ ଲକ୍ଷି ଧନ୍ୟ ଏହାର ପ୍ରଭା ।
ଯାହାକୁ ନେତ୍ରେ ଚୁମ୍ବିବା ମାତ୍ରେ ଆନନ୍ଦ ହୋଏ ଜାତ,
ତ୍ରୈଲୋକ୍ୟ ଅନୁରାଗ ହରଣ ରଖିଲା ଏହୁ ପାତ ।।୪୧।।

ତ୍ରିପୁର ହର ରପୁ କାମର ଜଗତ ଜୟୁ ଶିରୀ,
ଅତନୁ ତନୁ ଲଭିବା ପାଇଁ ଅଛୁ ଏ ଅବତରି ।
କିବା ଲାବଣ୍ୟ ସାଗର ମନ୍ଥି କରଣ କାମ ରାୟେ,
ଏହୁ ଲକ୍ଷ୍ମୀ କ ଉଦୟେ କରି ଜଗତ କଲା ଜୟେ ।।୪୨।।

ଏମନ୍ତ ମନେ ମନେ ଗୁଣିଣ ଅଧୀର ରଘୁପତି,
ଜଗତଜାତ କାମଶାୟକେ ବଢ଼ିଲା ମନେ ଭୀତି ।
ଏହି ସମୟେ ବୋଲନ୍ତି ଦେଖି ଜନେକ ନୃପବାଳୀ,
ଏ କେଉଁ ନୃପ କୁମାର ତୁ ଗୋ ବୁଝି ଆସସି ଆଳି ।।୪୩।।

ନୃପତିବର ନନ୍ଦନୀ ଆଜ୍ଞା ଘେନଣ ସହଚରୀ,
ବ୍ରତଗ୍ରାଚିତ କୁସୁମ ତୋଳ କପଟେ ଗଲା ଚଳି ।
ଶ୍ରୀରାମ ପାଶେ ହୋଇ ପ୍ରବେଶ କହେ କୋମଳବାଣୀ,
ପୁରୁଷବର ଅତି ସୁନ୍ଦର କରେ କୋଦଣ୍ଡପାଣି ।।୪୪।।

କି ଅବା ତୁମ୍ଭେ କୁସୁମ ଶର କିବା ଦକ୍ଷଙ୍କ ବର,
କି ଅବା ତୁମ୍ଭେ କୁଳିଶଧାରୀ କି ଅବା ଜଳେଶ୍ୱର ।
କି ଅବା ତୁମ୍ଭେ ଶାରଙ୍ଗଧର କି ଅବା ଶୂଳଧାରୀ,
କପଟ ବେଶେ ଏହୁ କାନନେ କି କେ ବେହାର କରି ।।୪୫।।

ଶୁଣି ରମଣୀ ସୁଚତୁର ବାଣୀ ସିଂହାଣ ରଘୁପତି,
ଲକ୍ଷ୍ମଣ ମୁଖ କଞ୍ଜତେ ଚୁମ୍ବି ଇଙ୍ଗିତେ ଆଜ୍ଞା ଦ୍ୟନ୍ତି ।
ଜାଣି ସୌମିତ୍ରି କହେ ବଚନ ଶୁଣରେ କୃଶୋଦରି,
ଏହୁ ଯେ ରାମ ଅତି ହି ରାମ କୋଦଣ୍ଡ କାଣ୍ଡଧାରୀ ।।୪୬।।

---

୪୨।୧ ଖ- ୦ଜୟୁ ଗିରି
୪୨।୪ କ,ଗ- ୦ଲକ୍ଷ୍ମୀ ଉଦୟେ୦ ୦କଲା ଉଦୟେ
ଙ- ୦ଜଲା ଜଏ
୪୩।୧ କ- ଅଧିର
୪୪।୧ କ,ଗ- ନନ୍ଦନୀ
୪୪।୪ ୦ସୁନ୍ଦର କି କେ୦
୪୫।୪ କ,ଗ- ୦ବିହାର
ଖ- ୦ ବେହାର କାରି
୪୬।୧ ଖ- ୦ହସିଣ ରଘୁପତି୦
୪୬।୨ କ,ଗ- ୦ଚୁମ୍ବି ଇଙ୍ଗିତେ୦
୪୬।୩ ଖ- ଘୁଣି ସୁମିତ୍ରୀ୦
୪୬।୪ କ,ଗ- ୦କୋଦଣ୍ଡ ଦଣ୍ଡଧାରୀ

ନୋହୁ ସେ ଦେବ ଦେବଙ୍କ ବର କଲୁଁ ଭୁ ପ୍ରଶ୍ନ ଯାହା,
ଆମ୍ଭ ଜନକ ଅଯୋଧ୍ୟା ଦେଶ ନୃପତି କୁଳ ନାହା ।
ତାଙ୍କର ଜ୍ୟେଷ୍ଠ ନନ୍ଦନ ଏହୁ ରୂପେ ମଦନ ଜାଣ,
ଧନୁ ଉତ୍ସବ ଶୁଣି ଏ ପୁରେ ପ୍ରବେଶ ହେଲୁ ପୁଣ ।।୪୭।।

ବୋଲେ ଚତୁରୀ ଏ ଯେ କୁମର ଦହ କନକ କାନ୍ତି,
ଏହାଙ୍କ ନାମ କହିବା ଶ୍ୟାମ ଫିଟୁ ମୋ ମନ ଭ୍ରାନ୍ତି ।
ଶୁଣି ରମଣୀ ସୁଗ୍ଧରୁ ବାଣୀ ବୋଲନ୍ତି ରଘୁପତି,
ଏ ମୋ ଅନୁଜ ନାମ ଲକ୍ଷ୍ମଣ ଶୁଣରେ କୁନ୍ଦଦନ୍ତୀ ।।୪୮।।

ଆସିଛୁ କଉଶିକ ସଙ୍ଗତେ ଦେଖିବୁ ଧନୁବର,
କେମନ୍ତେ ରୂପେ କେତେକ ବଳ ରଖି ଯେ ଅଛୁ ହର ।
ଶୁଣିଣ ରାମ ବଚନ ବାଳୀ ଗଲା ସେଠାରୁ ଚଳି,
କହଇ ହସି ସଙ୍ଗ ମଣାଇଁ ଶୁଣ ଜନକ ବାଳୀ ।।୪୯।।

ଅଯୋଧ୍ୟାପୁର ରାଜନନ୍ଦନ ଅଟଇ ସେହୁ ରାମ,
ଯାହାକୁ ଦେଖି ଭ୍ରମ ହୋଇଲୁ ମଣିଷ ଦେବ କାମ ।
ଯେବେ ତୋହର ପୂର୍ବ ଜନ୍ମରେ ହରରେ ସେବା ଥିବ,
ସେ ହର ଧନୁ ଭାଙ୍ଗିବ ରାମ ତୋହର ପତି ହେବ ।।୫୦।।

ତାହାର ଯେବେ କୋଟିଏ ଜନ୍ମେ ତପସ୍ୟା ଥିବ ସଖି,
ତେବେ ତୋହର ବଦନ ଚନ୍ଦ୍ର ଚୁମ୍ବିବ ଚନ୍ଦ୍ରମୁଖି ।
ଜାଣିଲି ତୁହି ଅତି ହିଁ ଭାଗ୍ୟବନ୍ତୀ ଅଟୁରେ ରାମା,
ଯେଣୁ ତୋହର ରାମେ ମାନସ ହୋଇଛୁ ପୂର୍ଣ୍ଣକାମା ।।୫୧।।

ଏସନ ସଖୀ ବଚନ ଶୁଣି ଶିଶୁ ହରିଣନେତ୍ରା,
କନ୍ଦର୍ପ ଶରେ ପୀଡ଼ିତ ହୋଇ ଚଲା ସେ ହେମ-ଗାତ୍ରା ।
ଅତି କଷ୍ଟରେ ସଦନେ ବାଳା ହୋଇଲା ପରବେଶ,
ଅତି ସ୍ନେହରେ ରାମ ସମୀପେ ନବେଶିଗଲା ଆଶ ।।୫୨।।

---

୪୭।୧ କ,ଗ– ପଚ୍ଛୁ ସେ ଦେବଂ ୦କଲ୍ ପ୍ରସନ୍ନ ଯାହା
୪୭।୨ କ,ଗ- ଆମ୍ଭ ଜନମଂ
୪୮ ଓ ୪୯। କ,ଗରେ ୪୮।୪ ର 'ଏ ମୋ ଅନୁଜ ନାମ ନା' ପର୍ଯ୍ୟନ୍ତ ଅଛୁ,ତାପରେ ୪୯ ପଦର ବାଳୀ ଠାରୁ ଆରମ୍ଭ ହୋଇଛୁ ।
ପଦ କ ଓ ଗରେ ନାହିଁ,

୪୯।୧ ଖ- ଦେଖିବୁଂ
୫୦।୩ କ,ଗ–୦ଜନ୍ମର
୫୧।୧ ଖ- ତାହାରଂ
୫୧।୩ ଖ - ଭାଗ୍ୟବନ୍ତ
୫୨।୨ କ,ଗ- ୦ହୋଇ ହେଲା ସେଂ

ରଘୁନନ୍ଦନ ଯେନ ଲକ୍ଷ୍ମଣ କୌଶିକ ପାଶେ ମିଳ,
ସୀତାୟୀ ଠାରେ ମନ ନିବେଶି ହେଲେ ସେ ରସଶାଳୀ ।
ଏ ରାମଚନ୍ଦ୍ର ବିଳାସ ଗୀତ ଛାନ୍ଦ ନବମ ଶେଷ,
ଜାନକୀ ପ୍ରତିଅଙ୍ଗ ବର୍ଣ୍ଣନେ ହୋଇଛି ଅତି ରସ ।।୫୩।।

ସେ ରଘୁପତି ପାଦରେ ମତି ଦେଇଣ ଅନୁକ୍ଷଣ,
ନୃପତି ଧନଞ୍ଜୟ ଭଣିଲେ ଶୁଣ ରସିକ ଜନ ।
ପ୍ରତି ପଦରେ ରସ ପୂରିତ ରସିକ ଜନ ପ୍ରାଣ
ଯୁବା ଯୁବତୀ ଶୁଣନ୍ତେ ଏହା ଭେଦବ ପଞ୍ଚବାଣ ।।୫୪।।

●

# ଦଶମ ଛାନ୍ଦ

## (ରାଗ—କାମୋଦୀ )

ଚନ୍ଦ୍ରମାମୁଖୀ ସଖୀଗଣ ସଙ୍ଗତେ ଯେହ୍ନ ପ୍ରବେଶ ଦିବ୍ୟ ମନ୍ଦିରର,
ବୋଲଇ ପ୍ରିୟ ସହି ଶୁଣ ମୋର ଚରିତ ନୋହୁଛି ମୋତେ ତ ଗୋଚରରେ,
ପ୍ରାଣସଖି !
କହୁଛୁ ଏହାଶୁଣି ମୋତେ । ମୋ ବୋଲ କର ତୁ ସମ୍ମତେ ।
କମ୍ପାଇଁ ହିମକର ଦହୁଛନ୍ତି ମୋ ଶରୀର ପୂର୍ବେ ତ ନଥିଲା ଯୁଗତେ ରେ ।।୧।।

ଦେଖ ଜଗତ ଘ୍ରାଣ ଦହୁଛି ମୋର ପ୍ରାଣ କୁସୁମ ଗନ୍ଧେ ନୟ ରୁଚିର,
ଶୀତଳ ପୁଃ ତେଜ ଅନ୍ତରେ ଯେହ୍ନ ରବି ମୋତେ ହେଉଛି ତାପ କରରେ,
ପ୍ରାଣସଖି !
ମୋ ମନ ଅତି ଚଞ୍ଚଳିତ । କହ ଏ କିସ ବିପରୀତ ।
ସୂଚୀ ସମାନ ମୋତେ କୁସୁମ ରେଣୁମାନ ଅଙ୍ଗକୁ କରନ୍ତି ପୀଡ଼ିତରେ ।।୨।।

---

୫୩।୨ ଭ,ଘ ୦ସରସ ମାଳ — ଖ- ଧନର୍ଜୟ
୫୪।୨ କ,ଗ- ଧନୁର୍ଜୟ — ୫୪।୪ ଖ- ନାହିଁ

୨।୨ ଭ,ଘ- ୦ତେଣୁ ହେଉଛୁ — ୨।୫ ଡ- ସୂକ୍ଷ୍ମ ସମାନ୦
ଖ- ୦ଯେହ୍ନ ରକ୍ଷୀମୋତେ୦

ଏ ଯେ ଚନ୍ଦ୍ର ବଦନ ପୂର୍ବେ ଅତି ରଞ୍ଜନ ସ୍ନେହେ ଦେଉଥାଇ ମୋ ତନୁରେ,
ଏବେ ଦେଖନ୍ତେ ହୁତବହ ସମାନ ଦିଶେ ହୋଇଛି କିସ ପ୍ରକାରରରେ,
ପ୍ରାଣସଖି !

ଜଗତ ହେଲା ବିପରୀତ । ଚିତ୍ତ-ଯୁତ କୁଳଟ ମତ ।
ମଧୁର ମଧୁକର ଧ୍ୱନି ନୋହେ ମଧୁର ଏତ ଦହୁଛି ମୋର ଚିତ୍ତରେ ।।୩।।

ଏ ନବ ମୋତି ହାର ତନୁକୁ ହେଲା ଭର ସଦନ ମଣୁଅଛି କାର,
ସୂକ୍ଷ୍ମୀନ ଝୀନ ବାସ ହୋଇଲା ଜାଣ ବଡ଼ ଶିଖିତ ମାଳା ଶ୍ରେଣୀ ପରିରେ,
ପ୍ରାଣସଖି !

ମୋର ଜୀବନେ ନାହିଁ ଆଶା । ଶୂନ୍ୟ ଦିଶୁଛି ସର୍ବ ଆଶା ।
ଦଇବ ବଧି ମୋରେ ହେଲା ଜାଣ ଅବଧି ହୋଇବ ଅବା କେତେ ଦଶାରେ ।।୪।।

ଶୁଣି ଜାନକୀ ବାଣୀ କହେ ପ୍ରାଣ ମିତଣୀ ଶୁଣଗୋ ନୃପଜା କୋମଳା,
ତୁହେଁ ଚିତ୍ତ ତରଳା ତୁ ଅଟୁ ନବବାଳା ଜାଣି ଯେ ନାହୁଁ କାମଜ୍ୱାଳାରେ,
ପ୍ରାଣସଖି !

ଦେଖିଛୁ ବନେ ଯେଉଁ ଜନ । ତାହା କି ଭେଲୁ ନାହୁଁ ମନ ।
ସେ ଦଶରଥ ସୁତ ହରିଛି ତୋର ଚିତ୍ତ ଯାହାକୁ ବୋଇଲୁ ମଦନରେ ।।୫।।

ଯେବେ ତା ମୁଖ ଦେଖି ହୋଇଛୁ ଯେଣୁ ସୁଖୀ ନ ହେଉଅଛୁ ପୂର୍ବସୁଖ,
ତେଣୁ ମନ ମଦନ କରିଅଛି ଉଚ୍ଛନ୍ନ ବଢ଼ାଉଅଛି ଏତେ ଦୁଃଖରେ,
ପ୍ରାଣସଖି !

ଚନ୍ଦ୍ରମା ହେଲା ତାପକାରୀ । ମୁଖ ବଇରୀ ଭାବ ଧରି ।
ମିତ୍ରକୁ ସହାଯାଇଁ ମିତ୍ର ସ୍ୱରୂପ ବହି ଯେଣୁ ତୋହୋରେ ଦହେ ହରିରେ ।।୬।।

ତୁ ନୃପବର ଜେମା ତାରେ ହେଲୁ ସକାମା ସେ ରାମଚନ୍ଦ୍ର ଜାଣ ଚନ୍ଦ୍ର,
ତୋହୃଦ ପାରବାର କରୁଅଛି ଆନନ୍ଦ ଯେଣୁ ବଢ଼ୁଛି ଅନୁବନ୍ଧରେ;
ପ୍ରାଣସଖି !

ନପାଇ ତାର ଦରଶନ । ଯେଣୁ ଏ ତୋତେ ଅନୁଆନ ।
ତୋତେ ଦେଖିଣ ଯେହ୍ନେ ହୋଇଥିବ ଏସନ ଏହା କରିଛି ପଞ୍ଚବାଣରେ ।।୭।।

---

୪।୪ ଖ- ୦ମୋ ଜୀବନେ ତେଜ ଆଶା୦
୬।୫ ମିତ୍ରକୁ ସହାପାଇ ମିତ୍ର ସ୍ୱରୂପ ବହି
୭।୨ ଜ,ଗ- ବୋଲୁଛୁ ଅନୁବନ୍ଧରେ
୭।୪ ଜ,ଗ- ୦ତୋତେ ଅନୁମାନ
ଯେଣୁ ତୋ ଚିତ୍ତ ହରିରେ (?)

ନିଷ୍ଟପ୍ତେ ତାକୁ ସଖି ଲଭିବୁ ମୋହ ମନେ ଏସନ ହେଉଛୁ ବିଚାର,
ପୂର୍ବ ପୁଣ୍ୟବଶରୁ ବିଧି ଆଣିଣ ତାକୁ କଲା ତୋ ନୟନ ଗୋଚରରେ;

ପ୍ରାଣସଖି !

ସେ ନୋହେ ଆନ ଜନ ସମ । ଦିଶଇ ପୁରୁଷ ଉତ୍ତମ ।
ତୋହର ଯେବେ କୋଟି ଜନ୍ମେ ତପସ୍ୟା ଥିବ ଲଭିବୁ ତା ଅଙ୍ଗ ସଙ୍ଗମରେ ।।୮।।

ସଖି ବଚନ ଶୁଣି ରମଣୀ ଶିରୋମଣି କହେ କୋମଳ କରି ବାଣୀ,
ଯାହା ତୁ ପ୍ରିୟସଖୀ କହିଲୁ ମୋରେ ଭଲା ସେହୁ ବା ଯୁବାଙ୍କ ଅଗ୍ରଣୀରେ,

ପ୍ରାଣସଖି !

ଦଇବ ହୋଇବ ସୁମୁଖ । ଦେଖିବି ଆଜ ତାର ମୁଖ ।
ଅମୂଲ୍ୟ ନିଧି କାହିଁ ମୋରେ ପ୍ରାପତ ସହି ନଯିବ ପରି ମୋର ଦୁଃଖରେ ।।୯।।

ମୋର ନେତ୍ର ଚକୋର ତା ମୁଖ ସୁଧାକର ପାନେ କି ହୋଇବ ଆନନ୍ଦ,
କରିବ ଶୂଳଧାରୀ ଏ ଦୁଃଖୁଁ ମୋତେ ପାରି ସେ ହେବ ମୋ ଆନନ୍ଦ କନ୍ଦରେ,

ପ୍ରାଣସଖି !

ସଂଶୟ ହୋଉଛୁ ମନର । ଧନୁ ଏ ଭାଙ୍ଗିବ ହରର ।
ଏ ଅତି ସୁକୁମାର ସେ ଧନୁ ଅତି ଘୋର କହିଲୁ ତୁ ତ ଅବିଚାରରେ ।।୧୦।।

ଏସନ ରାମାବାଣୀ ଶୁଣି କହେ ସଜନୀ ନକର ବିମନ ମିତଣି,
ହର ଗଉରୀ ବେନି କରିବେ ତୋରେ ଦୟା ଲଭିବୁ ସେ କୁମରମଣିରେ,

ମଦାଳସି !

ତୁ ନୋହୁ ସାମାନ୍ୟ ସୁନ୍ଦରୀ । ସେ ତୋର ରୂପ ଅନୁସରି ।
ବିଧାତା କରିଅଛୁ ବେନିଜନ ସଂଯୋଗ ନୂହିଁ ତୁ ମନଦୁଃଖ ଭାରରେ ।।୧୧।।

ପୂର୍ବେ ପିତା ଛାମୁରେ ତୁମ୍ଭର ଦେବ ମୁନି ନାରଦେ କହିଛନ୍ତି ଯାହା,
ତୋ ଆଗେ ମୁଁ କହିବି ଶୁଣରେ ଚନ୍ଦ୍ରମୁଖୀ ଏ ରାମ ହେବ ତୋର ନାହାରେ,

ମଦାଳସି !

ତୂ ଲକ୍ଷ୍ମୀ ଏହୁ ନାରାୟଣ । ହୋଇଛୁ ଅବନୀ କାରଣ ।
ଭାଙ୍ଗିବ ହର ଧନୁ ସେ ହେଲେ ମୃଦୁ ତନୁ ସଂଶୟ ନ ଘେନ ପରାଣରେ ।।୧୨।।

---

୮।୧ କ,ଗ- ୦ହୋଉଛୁ୦
୮।୫ କ,ଗ- ଯେବେ କୋଟିଏ୦
୯।୨ କ,ଗ- ୦ସେ ଯୁବା ଯୁବାଙ୍କ୦
୯।୪ ଖ- ଦଇବ ହୋଇକ୦
୯।୫ ଗ- ୦ନିଧି କାହୁଁ୦
୧୦।୫ କ,ଗ- ୦ଧନୁ ମହାଘୋର୦ ୦ଅବିଚାରରେ
୧୧।୨ କ,ଗ- ୦ତୋତେ ଦୟା୦
୧୧।୩ କ,ଖ- ପ୍ରାଣସଖି
୧୧।୪ ଖ- ସମାନ ସୁନ୍ଦର
୧୨।୪ ଖ,ଗ -୦ହେଉଛୁ୦
୧୨।୫ ଗ- ୦ଅସତ୍ୟ ନ ଘେନ୦

ଶୁଣିଣ ମହୀସ୍ଥଳୀ ହେଲା ଆନନ୍ଦ ଶାଳୀ ମାଳଞ୍ଚ ଲଭିଲା କି ଅଳି,
ତୃଷିତ ଗୃତକ କି ଲଭିଲା ଘନରସ ମାକନ୍ଦ ଲଭେ ପିକ ଆଳି ସେ,
ମଦାଳସି !
ଏସନ ହେଲେ ଆନନ୍ଦିତ । ଚନ୍ତ୍ରଲ ପୂର୍ବ ଜନ୍ମ ମତ ।
ଆନନ୍ଦ ଅଶ୍ରୁଜଳ ହୋଇଲା ପରବଳ ରାମ ପାଶେ ଗମିଲା ଶତ୍ରୁ ସେ ॥୧୩॥

ଏଥୁ ଅନ୍ତରେ ଶୁଣ ସୁଜନ କାମୀଜନ ସୀତପ୍ରିୟା ନ ଦେଖି ଶ୍ରୀରାମ,
ଶୁଖିଲା ଦନ୍ତବାସ କମ୍ପିଲା ଧୈର୍ଯ୍ୟଦେଶ ମନେ ପୀଡ଼ିଲା ଆସି କାମ ସେ,
ରଘୁମଣି !
ଗୃହାନ୍ତ ଚକିତରେ ଦଶା । ବଢ଼ିଛି ରମଣୀରେ ଆଶା ।
ଶିଥିଳ କର ଧନୁ କମ୍ପିତ ବେନି ଜାନୁ ମନେ ଚନ୍ଦ୍ରେ ସଉକେଶାରେ ॥୧୪॥

କୁସୁମ ରେଣୁ ଘନୁ କରଣ ସମ ମଣି ନୟନ କରେ ଆଚ୍ଛାଦିଲେ,
ପିକ ରୁତ କୁଳଶ ସମାନ ମଣି ରାମ ଚମକ କ୍ଷିତିରେ ପଡ଼ିଲେ ସେ,
ରଘୁମଣି !
ବୋଲନ୍ତି ଆହାରେ ମୃଗାକ୍ଷୀ । କେଣିକି ଗଲୁ କ୍ଷୀଣ କୁକ୍ଷୀ ।
ତୋ ବିନୁ ମୋର ପ୍ରାଣ ନେଲାଣି କାମବାଣ ତୋତେ କି ପାରିବି ମୂର୍ଚ୍ଛିରେ॥୧୫॥

ମୋ ହୃଦ ବନ ମନ ମୃଗକୁ ବନ୍ଦୀ କରି ନେଲୁ ତୋ ନୟନ ପାଶରେ,
ତୋ ରୂପ ଅଠାକାଠି ଲଗାଇ ବିମ୍ବଓଷ୍ଠୀ ନେତ୍ର ଖଞ୍ଜନ କଲୁ ଦୂରରେ,
ଶଶିମୁଖି !
ସନ୍ଧିଲେ ମୋତେ ତୁ ଗୃହିଁଲୁ । ସକଳ ସମ୍ପତ୍ତି ତୁ ଦେଲୁ ।
ଅନ୍ତର ହୋଇ ମୋତେ ଦେଲୁ ଘୋର ଆପଦେ ମଦନ ମୁଖେ ପକାଇଲୁରେ॥୧୬॥

ତୋଳୁଥିଲୁ କୁସୁମ ମୃଦୁ ପବନ ବହି ଲତା ଯେ ଅନ୍ତର ହୋଇଲା,
ମୋ ଭାଗ୍ୟ ଫଳ ସେହିକ୍ଷଣ ପ୍ରକାଶ ହେଲା ତୋ ମୁଖ ନୟନ ଦେଖିଲାରେ,
କୋମଳାଙ୍ଗି !
କହିବା ଗୃତୁଣ୍ଠି ତୋହର । ଢ଼ାଳିବା ନୟନ କୋଣର ।
ମୃଦୁ ମୃଦୁ ତୋ ହସ ପୂରିଛି ସୁଧାରସ ମୋ ହୃଦେ କରିଛି ମନ୍ଦିରରେ ॥୧୭॥

---

୧୩।୨ କ,ଗ- ୦ଲଭେ ପିକ ଅଳି ସେ
ଖ- ଗୃତକନୀ୦ ୦ଲଭିଲକି ଅଳସେ
୧୩।୪ ଖ- 'ଚନ୍ତ୍ରଲ ପୂର୍ବଜନ୍ମମତ' ନାହିଁ
୧୪।୧ କ,ଗ- ୦ସୁଜାଣ କାମୀଜନ୦
୧୪।୬ ଗ-୦ଶୁଭ୍ରକେଶାରେ
୧୫।୨ କ,ଗ- ୦ହାହାରେ୦ ୦ଏଣୀ ସାକ୍ଷୀ
୧୫।୫ ଖ- ତୋ ବିନୁ କରିଣ ଲେଲଣି ମୋର ପ୍ରାଣ
୧୬।୧ କ,ଗ- ୦ନେଲୁରେ୦
୧୬।୨ କ,ଗ- ୦ଖଞ୍ଜନ ନେଲୁ
୧୬।୧ କ,ଗ- ୦ମୃଗମଦ ନ ଗ୍ରହିଲତା

ମଞ୍ଜୀର ଧ୍ୱନି ତୋର କରେ ଶତ୍ରୁ କାତର ପୂରୁଛି ମୋର ଶ୍ରୁତି ପୁର,
ତେଣୁ ଏ ମଞ୍ଜୁବାଣୀ ନ ଯେନ ପ୍ରାଣମଣି ଲଭ ତୋ ଅନୁରାଗ ଭରରେ,

ନୃପବାଳା !

ଗଲୁ କେସନେ ବନୁ ଚଳି । ମୋ ପାଶେ ପେଷିଥିଲୁ ଆଳୀ ।
ମୋରେ ତୁ ପ୍ରେମଶାଳୀ ହୁଅରେ କୋମଳାଙ୍ଗୀ ନାଶୁଛି କାମ ମହାବଳୀରେ॥୧୮॥
ଏସନ ରଘୁବୀର ମନ ଅତି କାତର ଦେଖି ବୋଲନ୍ତି ସଉମିତ୍ରୀ,
ତୁମ୍ଭେ ଦେବଙ୍କ ବର ଶୁଣ କୋଦଣ୍ଡ ଧର ଲଭିବ ସେହୁ ହେମଗାତ୍ରୀ ହେ,

ରଘୁବୀର !

ଯୋଗେନ୍ଦ୍ର ଧନୁ ଭଗ୍ନ କର । ଲଭିବ ଜନକ କୁମାରୀ ।
ଜନପୁରେ କେ ଅଛି ଆମ୍ଭଙ୍କୁ ଜିଣିକର ନବ ଏ ତ୍ରିପୁର ସୁନ୍ଦରୀରେ ॥୧୯॥
ତ୍ରିପୁର ହର ଧନୁ ଅତି ହିଁ ବଳୀୟାର ପଣ ତା କଲା ରାଜରତି,
ଦେଖି ସ୍ୱଜଣ ଗଲେ ପୃଥିବୀ ମହାବୀରେ ଅର୍ଜୁନ ବଶ୍ରବାର ଶିଷି ହେ,

ରଘୁବୀର !

ତୁମ୍ଭେ ସଚରାଚର ଗୁରୁ । ଭର୍ଗିଣି ପାର ମହାମେରୁ ।
ଫେଡ଼ିବ ଜନକଙ୍କର ସଙ୍କଟ ହୃଦୟୁରୁ କହୁଣଛନ୍ତି ଏହା ଗୁରୁ ହେ ॥୨୦॥
ଏସନ ସଉମିତ୍ରୀ ବଚନ ଶୁଣି ଧୃତି ଲଭିଣ ରଘୁକୁଳମଣି,
ସୀତାୟୀ ରୂପ ଚିତ୍ର ହୃଦୟୁ ମଧ୍ୟେ ରଖି ଧରିଣ ଲକ୍ଷ୍ମଣର ପାଣି ସେ,

ରଘୁପତି !

ସଧୀର ଧୀର ଗତି କରି । ପ୍ରବେଶ ହେଲେ ବସା ପୁରୀ ।
ସନ୍ଧ୍ୟା ବନ୍ଦନ ସାରି ଚିନ୍ତି ନୃପ କୁମାରୀ ରଜନୀ ନେଲେ କଷ୍ଟେ କରି ସେ ॥୨୧॥
ଶ୍ରୀରାମ ଅଭିଳାଷ ଛାନ୍ଦ ଦଶମ ଶେଷ ସକଳ ରସର ଆକର,
ସୀତାରାମ ବରହ ଏହୁ ଛାନ୍ଦର ନାମ ଶୁଣ ହେ ରସିକ ନିକର ହେ,

ସାଧୁଜନେ !

ଯେ ରାମ ସୀତା ପାଦ ରେଣୁ । ସନ୍ତତ ମସ୍ତକରେ ଘେନି ।
ଅତି ହରଷ ମତି ହୋଇ ଭଞ୍ଜ ନୃପତି ରହସ୍ୟେ ଏହୁ ରସ ଭଣି ହେ ॥୨୨॥

●

---

୧୮।୫ କ,ଗ- ମୋହରେ ପ୍ରେମ୦
୧୯।୧ ୦ମନ ଶୁଣି କାତର୦
୧୯।୪ ଖ- ୦ଜନେକ ଝାମାରୀ
୧୯।୫ କ,ଗ- ତ୍ରିପୁରେ କେହୁଅଛି ଆମ୍ଭକୁ ଜିଣିକର ନେମ
୨୦।୨ କ,ଖ,ଗ- ୦ବଣଙ୍କା୦
୨୧।୧ କ,ଗ- ସଉମିତ୍ରୀ ବଚନ ଶୁଣି ଧୃତ ଲଭିଣ ଏସନ୦
୨୨।୨ କ,ଖ ଗ ୦ ମଧ୍ୟେ ରଖି୦

# ଏକାଦଶ ଛାନ୍ଦ

## (ମଥୁରା ଭଜେ ବାଣୀ)

ରଜନୀ ଶେଷ ଦେଖି ଗାଧିନନ୍ଦନ,
ସାରଣ ନିତ୍ୟକର୍ମ ନାନା ବିଧାନ ଯେ ।
ବୋଲନ୍ତି ଶୁଣ ବାବୁ ରଘୁନନ୍ଦନ,
ଦେଖିବା ଜନକ ରାଜନ ଆସ୍ଥାନ ଯେ ।।୧।।

ମିଳି ଅଛନ୍ତି ସର୍ବ ଭୂପତିଗଣ,
କରିଛନ୍ତି ରାଜଋଷି ଦୁଃସହ ପଣ ଯେ ।
ପୂର୍ବେ ତ୍ରିପୁର-ରିପୁ ବର ଦେଇଛି,
ଜନକ ଘରେ ଧନୁବର ରଖିଛି ଯେ ।।୨।।

ବୋଲିଛି ତାକୁ ତୋର ବଂଶରେ ରମା,
ଜାତ ହୋଇବ ଆସି ଗୃହରୁ ମଧ୍ୟମା ଯେ ।
ତାର ନିମନ୍ତେ ହରି ଜନ୍ମ ଲଭିବ,
ଏ ଧନୁ ଭାଙ୍ଗି ତାକୁ ବିଭା ହୋଇବ ଯେ ।।୩।।

ସେ ହନୁ ମିଥିଳାରେ ଅଛି ସେ ଧନୁ,
ଯାହା ଦେଖି କମ୍ପଇ ବୀରଙ୍କ ତନୁ ଯେ ।
ପଣ କରିଛି ଏବେ ତାହା ନୃପତି,
ଯେହୁ ଭାଙ୍ଗିବ ତାରେ ଦେବ ଦୋହିତି ଯେ ।।୪।।

ଶୁଣ ହେ ରାମ ଧନୁବର ମହିମା,
ଭାଙ୍ଗିଲି ସର୍ବ ଭୂପତିଙ୍କ ଗରିମା ଯେ
ତୁମ୍ଭେ ତପନ କୁଳ ନୃପ ପ୍ରଦୀପ,
ପ୍ରତାପେ ନାଶିଲ ଅସୁର କଳାପ ଯେ ।।୫।।

ଅବଶ୍ୟ ହର ଧନୁ ଭାଙ୍ଗିବ ଯେବେ,
ଦେବ ରାଜନ କାର୍ଯ୍ୟ ଲଭିବ ତେବେ ହେ ।
ଚାଲ ବହନ ଯିବା ଦେଖିବା ଭୂପ,
ସଭାରେ ଛନ୍ତି କେଉଁ କେଉଁ ମହୀପ ଯେ ।।୬।।

---

୧।୩ କ- ରଘୁ ଚନ୍ଦନ
୧।୪ କ,ଖ,ଗ- ଦେଖିବା ଜନେକଂ ଂଆସ୍ତାନ
୪।୨ କ,ଗ- ଂସ ବୀର ତନୁ ଯେ
୪।୪ ଗ ଂଦୁହିତୀ ଯେ
୫।୧ କ- ଂରାମ ହର ଧନୁଂ
୫।୨ କ-ଗ- ଭାଙ୍ଗିଣଂ

ଗାଧି ନନ୍ଦନ ବାଣୀ ଶୁଣି ଶ୍ରୀ ରାମ,
ଧନୁ ଧରି ବଳଯ଼େ ଯେସନେ କାମ ଯେ ।
କନ୍ଧେ ଅଛନ୍ତି ବେନି ତୂଣୀର ଭିଡ଼ି,
ଯେନି ଅଛନ୍ତି ଏକ ଶାୟକ କାଢ଼ି ଯେ ॥୭॥

ସଙ୍ଗତେ ଯେନି ସୁମିତ୍ରାର ନନ୍ଦନ,
ମୁନିଙ୍କ ସଙ୍ଗେ ଚଳେ ଜଗବନ୍ଦନ ଯେ ।
ଛୁଆ କେଶରୀ ଗତି ରଘୁନାୟକ,
ଦେଖିଲେ ହରେ ସିଦ୍ଧ ଜନ ବିବେକ ଯେ ॥୮॥

ମିଥିଳା ରାଜମାର୍ଗେ ଚଳନ୍ତେ ରାମ,
ଦେଖି ଯୁବତିଜନେ ହେଲେ ସମ୍ଭ୍ରମ ଯେ ।
ନିଜ ଜ୍ଞାନକୁ ଦୂର କରି ଅବଳା,
ଧାମେ ମହିଳା କାମେ ହୋଇ ଚଞ୍ଚଳା ଯେ ॥୯॥

କେଉଁ ରମଣୀମଣି ମଣି ମନ୍ଦିର,
ମଣିଣ ବିଷ ସମ ହେଲା ବାହାର ଯେ ।
ଗୁରୁ ଗୌରବ ଲଜ ନ ଘେନି ମନ,
ଅନ୍ତରେ ଦହିଲା ମକର କେତନ ଯେ ॥୧୦॥

କେହୁ ମଧ୍ୟରେ ବେଶ ହେଉଣ ଥିଲା,
ସଖୀ ବଚନ ଶୁଣି ବେଗେ ଧାଇଁଲା ଯେ ।
ଦେଖିଲା ନୟନେ ଶ୍ରୀରାମ ଶ୍ରୀମୁଖ,
ଛାଡ଼ିଲା କୋଟି କୋଟି ଜନ୍ମର ଦୁଃଖ ଯେ ॥୧୧॥

କେଉଁ ଅବଳା ଗଳାମାଳା ଧରିଣ,
ଭ୍ରମେ ଖଞ୍ଜିଲା ଆଣି ପାଦେ ଦେଶେଣ ଯେ ।
ସୀମନ୍ତ ବୋଲି କରେ ଘେନି ସିନ୍ଦୂର,
ଲେଖିଲା କୁଚ ଗିରି ବେନି ମଧ୍ୟର ଯେ ॥୧୨॥

---

୭।୨ ଭ-ଷ- ବଳଏ
୭।୩ କ,ଷ,ଗ- ତୂଣୀର
୮।୧ ଷ- ०ସୁମଇଷା०
୮।୪ ଷ- ०ସାଧୁଜନ०
୯।୨ ଖ- ०ଯୁବତୀମାନେ०
୧୨।୨ ଖ- ०କଣ୍ଠୀ ଦେଶେଣ
୧୨।୪ କ-ଗ- ଦେଖିଲ କୁଚ०

କର ବଳୟ କାଢ଼ି ଖଞ୍ଜିଲା ପାଦେ,
ଧାମନ୍ତେ ପାଦ ଶୋଭା କଙ୍କଣ ନାଦେ ଯେ ।
କେଉଁ ଚତୁରୀ ଚତୁଃସମ ଘେନଣ,
ଲିପି ହେଉଣ ଥିଲା ନଜ ଅଙ୍ଗେଣ ଯେ ॥୧୩॥

ପିନ୍ଧି ନ ପାରି ବାସ ଅଇଲା ବେଗେ,
ଅଧିକ ଲୋଟୁଅଛି ଅବନ ଭାଗେ ଯେ ।
ସଖିର କର ଧରି ଗୃଲେ ନ ଗୃଲେ,
ଶ୍ରୀ ରାମ ଦରଶନ କାମ ବାହ୍ୱଲେ ଯେ ॥୧୪॥

କେହୁ ରାମଙ୍କୁ ଦେଖି ନେତ୍ରେ ଠାରିଲା,
ମଦନ ମଣି ରାମ ସ୍ତମ୍ଭିତ ହେଲା ଯେ ।
ପୁଲକେ ପୂରିଅଛି କାହାର ତନୁ,
କର୍ମି ଅଥିର ହେଲା କାହାର ତନୁ ॥୧୫॥

କେ ବୋଲି ସଖୀ ମୋର ତୁହି ସେ ପ୍ରାଣ,
ଆଣି ଏ କାମରଣ ରଖ ମୋ ପ୍ରାଣ ଗୋ ।
ଧନ୍ୟ ଏହାର ରୂପ ତ୍ରୈଲୋକ୍ୟେ ନାହିଁ,
ଯୁବା ଯୁବତୀ ନାଶେ ଅଇଲା ଜୀଇ ଗୋ ॥୧୬॥

କେଉଁ ମୃଗାକ୍ଷୀ ବୋଲେ ଦେଖ ଗୋ ସଖୀ,
କାହୁଁ ଏ ଆସିଅଛି ପଙ୍କଜ ଆଖି ଗୋ ।
ଦେଖିବା ମାତ୍ରେ ହରୁଅଛି ଏ ଚିତ୍ତ,
ଦେବ ସକଳ ଚିତ୍ତ ହେବୁ ସଙ୍ଗାତ ଗୋ ॥୧୭॥

କେ ବୋଲେ ଧନ୍ୟ ବାହ୍ୱ ଏହୁ କୁମର,
କେମନ୍ତେ ଜାତ କଲୁ ତୋର ସଂସାର ଗୋ ।
ଧୈର୍ଯ୍ୟ ରଖି ଭଲା ପାରିଲୁ ତୁହି,
ଆତ୍ମ ମାରଣି ଅର୍ଥେ ଅଇଲା ମହୀ ଯେ ॥୧୮॥

---

୧୩।୩ କ,ଖ- ୦ଚତୁସମ୦
୧୩।୪ କ,ଗ- ଲିପି ଯେ ହେଉଥିଲ୦
ଖ- ଲେପି ହେଉଣ ଥିଲା
୧୪।୩- କ,ଗ- ସଖୀ କର ଧରିଣ୦
୧୫।୧ କ- କେଉଁ
ଗ- କେହୁ
କ,ଗ- ଅମୂର୍ତ୍ତି
୧୫।୪ ଖ- ୦ଯୌବନ ଜାନୁ
ଗ- ୦ଅସ୍ଥିର୦
୧୬।୨ କ,ଗ- ୦ଏ ପ୍ରାଣ
୧୭।୩ ଖ-୦ମାତ୍ରକେ ହେଁ ହରୁଛି୦
୧୭।୪ କ,ଖ- ୦ସଘାତ ଗୋ
ଗ- ୦ଚିତ୍ତ ହେବୁ ସଙ୍ଘାତ୦
୧୮।୩ ଗ- ଧଇର୍ଯ୍ୟ ଧରି୦

କେ ବୋଲେ ମୋହ ଜନ୍ମେ ନିପୁର ନାଶ୍ୱ,
ଗଡ଼ି ନ ଥିବ ନଷ୍ଟେ ସେ ଲୋକକାଶ୍ୱ ଯେ ।
ମୋହୋ ମନର୍ହି ହେଉଅଛି ଜଞ୍ଜନ,
ମୋତେ ଭେଟାଅ ପୁରୁଷଙ୍କ ରତନ ଯେ ।।୧୯।।

ଏମନ୍ତେ ପୁରବାଳା ଏକ ଆରେକ,
ରାମକୁ ଦେଖି ହାରିଛନ୍ତି ବିବେକ ଯେ ।
ଏଥୁ ଅନ୍ତରେ କଉଶିକ ସଙ୍ଗତେ,
ପ୍ରବେଶ ରାମ ରଙ୍ଗସଭା ଅଗ୍ରତେ ଯେ ।।୨୦।।

ଦେଖି ଜନକ ତାଙ୍କୁ ପାଛୋଟି ଆସି,
ଷଡ଼ର୍ଘ୍ୟେ ପୂଜି ହେଲେ ଅତି ସନ୍ତୋଷି ଯେ ।
ଦିବ୍ୟ ରତ୍ନ ଆସନେ ନେଇ ବସାଇ,
କୋମଳ ବଚନେ କହନ୍ତି ବିନୋୟି ଯେ ।।୨୧।।

ବୋଲନ୍ତି ଧନ୍ୟ ହେଲା ମିଥିଳା ପୁର,
ଧନ୍ୟ ହୋଇଲେ ମାତା ପିତା ମୋହର ଯେ ।
ଏ ଦଶରଥ ରାଜା ନନ୍ଦନ ବେନି,
ଘେନି ଆସିଛ ଯେଣୁ ଏ ବ୍ରହ୍ମମୁନି ହେ ।।୨୨।।

ଦେଖୁଅଛନ୍ତି ବର୍ମ ରାଜମଣ୍ଡଳୀ,
ଏକୁ ଆରେକ ମହାବଳେ ଅତୁଳ ଯେ ।
କରିଛି ଘୋର ପଣ ମନେ ମୋହର,
ଏହା କରି ତ ନାହିଁ କେବଣ ବୀର ଯେ ।।୨୩।।

ଏସନ ବାଣୀ କହେ ଜନେକ ରାଣ,
ଶୁଣ ସଭାରେ ତୁମ୍ଭେ ନୃପତି ଗଣ ଯେ ।
କୋମଳ କଳାବନ୍ତୀ ମୋର ନନ୍ଦିନୀ,
ଶରଦ ଶୀତକରଜିତ ବଦନୀ ଯେ ।।୨୪।।

---

୧୯।୧ କ,ଗ- ମୋର ପର ତ୍ରିପୁରେ ନାହିଁ
ଖ- ମୋହ ଜ°
୧୯।୨ କ,ଗ- ଘଡ଼ି ନଥିବ° °ଲୋକାରେଯେ
୧୯।୩ କ,ଗ- ମୋର ମନ°
୧୯।୪ କ- ଏହୁ ପୁରୁଷ ରତନରେ ଯେ
ଗ- °ଏ ପୁରୁଷ°
୨୧।୨ କ,ଖ,ଗ- °ଜନେକ°
୨୧।୩ କ,ଗ- °ବସାଇ ନେଇ
୨୧।୪ ଗ- °ପ୍ରସନ୍ନ କରାଇ ଯେ
୨୨।୨ କ,ଗ- °ହୋଇଲା°
୨୨।୪ କ,ଗ- ଘେନି ଆଣିଛ°
ଖ- °ରେ ବ୍ରହ୍ମମୁନି°
୨୪।୧ ଗ- °ଏସନ ବୋଲି କହେ°
କ,ଖ,ଗ- °ଜନେକ°
୨୪।୧- କ,ଖ- °ନନ୍ଦନୀ

ହେମ ଚମ୍ପକ ଗୋରା ନବତରୁଣୀ,
ଧନୁ ଭଙ୍ଗିଣ ନଅ ନୃପତିମଣି ହେ ।
ଶୁଣି ଜନକ ବାଣୀ ସକଳ ରାଜା,
ନମ୍ର ବଦନ କଲେ ଲଭିଣ ଲଜ୍ଜା ହେ ॥୧୫॥

କହନ୍ତି କଉଶିକ ଶୁଣ ଭୂପାଳ,
ଆଣ ଦେଖିବା ଧନୁ କେତେକ ବଳ ଯେ ।
ଏ ରଘୁବୀର ବୀରଙ୍କର ଅଗ୍ରଣୀ,
ଧନୁ ଦେଖିଣ ଆସିଅଛନ୍ତି ପୁଣି ହେ ॥୧୬॥

ଶୁଣି ଗାଧିନନ୍ଦନ ବଚନ ରାସ୍ତେ,
ଆଜ୍ଞା ଦେଲେକ ଡାକ ନିଜ ତନୟେ ଯେ ।
ଅଣାଅ ଧନୁ ସଭା ମଧ୍ୟକୁ ବେଗ,
ଦେଖିବେ ରାମ କରିଛନ୍ତି ସରାଗ ଯେ ॥୧୭॥

ନୃପ ଆଦେଶ ପାଇ କୁମର ଗଲ,
ଆଠଶ' ମାଲ ହାତେ ଧନୁ ଆଣିଲ ଯେ ।
ଲୌହ ମଞ୍ଜୁଷା ମଧ୍ୟେ ଅଛଇ ଧନୁ,
ଗର୍ଜନେ କମ୍ପୁ ଅଛୁ ବୀରଙ୍କ ତନୁ ଯେ ॥୧୮॥

ଦେଖି ଉଠିଲେ ତାହା ରଘୁନାୟକ,
ଲକ୍ଷ୍ମଣ ହସ୍ତେ ନିବେଶିଲେ ଶାୟକ ଯେ ।
ଦେଖିଲେ ଧନୁବର ମଞ୍ଜୁଷା ଫେଇ,
କି ଏ ବାସୁକି ଅଛୁ ମେରୁରେ ଶୋଇ ଯେ ॥୧୯॥

---

୧୫।୧ କ- ୦ଚମ୍ପେକ ଶୋଭି୦
୧୫।୩ କ- ଜନେକ୦
କ,ଗ- ନମ୍ର ହୋଇଣ ବଦନ କଲେକ ଲଜା ଯେ
୧୫।୪ ଖ- ଲମ୍ବ ବଦନ୦
୧୬।୧ କ,ଗ- ବୋଲନ୍ତି କଉଶିକ୦
୧୬।୨ କ,ଗ -ଆଗ ଦେଖିବା
୧୬।୩ କ,ଗ- ଏରଘୁବୀର୦
୧୭।୨ କ,ଖ- ୦ତନଏ
୧୭।୪ କ- ଦେଖିତ ରାମ୦
୧୮।୧ କ,ଖ- ୦ରାଏ
୧୮।୨ କ,ଖ- ୦ହାଥେ୦
ଗ- ୦ହାତେ୦
୧୮।୩ କ,ଖ- ୦ନଞ୍ଜୁସ୦
୧୯।୨ କ- ୦ନିବେଶୀ ଶାସ୍ତକ
ଗ୦ ହସ୍ତରେ ନିବେଶି୦
୧୯।୪ ଖ- କିବା ବାସୁକି୦
୧୯।୩ କ,ଖ- ୦ମଞ୍ଜୁସ୦

ଅବହେଳରେ ବାମ କରରେ ଧରି,
ଗୁଣ ଦେଇଣ ତାକୁ ଟଙ୍କାର କରି ଯେ ।
ଉଚ୍ଛୁଡ଼ ବେନଖଣ୍ଡ କରନ୍ତେ ଧନୁ,
ଶବଦେ କମ୍ପମାନ ବୀରଙ୍କ ତନୁ ଯେ ।।୩୦।।

ମୋହେ ପଡ଼ିଲେ ଶୁଣି ସକଳ ରାଯେ,
ଲଭିଲେ ଧରାଧର ଗଣ ସଭୟେ ଯେ ।
ଶୃଙ୍ଗମାନ ଭାଜିଣ ପଡ଼ିଲେ ତଳ,
କମ୍ପିଲା ତତକ୍ଷଣେ ମହୀମଣ୍ଡଳ ଯେ ।।୩୧।।

ଉଚ୍ଛୁଳି ସିନ୍ଧୁଜଳ ଲଙ୍ଘିଲା କୂଳ,
ସ୍ଥଳେ ପଡ଼ିଲେ ମୀନ ତେଜିଣ ଜଳ ସେ ।
ଶବଦେ ପୂରିଲା ସକଳ ରୋଦସୀ,
ହୋଇଲେ ଦିଗଦନ୍ତୀଗଣ ତ୍ରାସି ଯେ ।।୩୨।।

କଷ୍ଟେ ଚେତନା ଲଭି ଅବନୀପାଳେ,
ଲଜ୍ଜା ଭୟରୁ ମୋହ ସୁଖ ମଣିଲେ ଯେ ।
ଶୁଣି ଜାନକୀ ଚିତ୍ତ ହେଲା ଆନନ୍ଦ,
ଚକୋର ଲଭିଲା କି ପୂର୍ଣ୍ଣିମୀ ଚନ୍ଦ ଯେ ।।୩୩।।

ଚାତକ ଲଭିଲା କି ଅମୃତ ବିନ୍ଦୁ,
ରାକାପତି ଲଭିଲା ଯେସନେ ସିନ୍ଧୁ ଯେ ।
ମାକନ୍ଦ ଲଭିଲା କି ମଳୟ ବାତ,
ମାନସ ଲଭିଲା କି ମରାଳଜାତ ଯେ ।।୩୪।।

ଏସନ ହେଲା ବଇଦେହୀର ମନ,
ମନେ ରହିଲା ତାର ରଘୁନନ୍ଦନ ଯେ ।
ଯେସନ ବ୍ରହ୍ମଜ୍ଞାନ ଯୋଗୀର ମନେ,
ଯୋଗର ପ୍ରାନ୍ତେ ସେହୁ ରହେ ସଘନେ ଯେ ।।୩୫।।

---

୩୦।୪ ଖ- ୦କର୍ମେ ବୀରମାନଙ୍କ ଜନ୍ମ
୩୧।୧ କ- ୦ରାଏ
୩୧।୩ କ,ଗ- ୦ଶୃଙ୍ଗିଣ୦
୩୨।୨ ଖ- ୦ମୀନେ୦
୩୨।୪ ଖ- ହୋଇଲା୦
୩୩।୨ କ,ଗ- ୦ସୁଖ ମଣିଲେ ନାହିଁ
୩୪।୩ ଗ- ଷାକନ୍ଦ ଲଭିଲା୦
୩୫।୧ କ- ବଇଦେଇର୦

ଦେଖି ଆନନ୍ଦ ହେଲେ ଜନକ ରାୟେ,
ହୃଦ ସଂଶୟେ ତେଜି ହେଲେ ନିର୍ଭୟେ ଯେ ।
ପୂର୍ବେ ଈଶ୍ୱର ବୋଲି ମନେ ଚିନ୍ତିଣ,
ନିଶ୍ଚେ ଜାଣିଲେ ରାମ ଏ ନାରାୟଣ ଯେ ॥୩୬॥

ରାମ ବିଳାସ ଏକାଦଶମ ଛାନ୍ଦ,
କରୁ ରସିକ ହୃଦ ପଦ୍ମ ଆନନ୍ଦ ଯେ ।
ସେ ସୀତାପତି ରାମ ବେନି ଚରଣ,
ନୃପତି ଧନଞ୍ଜୟ ପଶେ ଶରଣ ଯେ ॥୩୭॥

●

# ଦ୍ୱାଦଶ ଛାନ୍ଦ

## (ସଜନୀ ଚଉତିଶା ବାଣୀ)

ଏଣୁ ସମୟେ ସହଚରୀଜନ । ବୋଲନ୍ତି ଶୁଣରେ ରାମା ରତନ ।
କେତେ ଜନ୍ମେ ତପ କଲୁ ସଜନୀ । ଧରିବେ ରଘୁନାଥ ଭୂମିପାଣି ।
କି ସଜନି ! ଆମ୍ଭ ଭାଗ୍ୟ ଦିଶିଲା । ଜନମ ଏବେ ସଫଳ ହୋଇଲା ॥୧॥

ଚମ୍ପାକଳିତ ତନୁ ଶୋଭା ମାଧୁରୀ । ନବ ଘନଜିତ କୋଦଣ୍ଡଧାରୀ ।
ବେନିଜନ ତନୁ ହୋଇଲେ ସଙ୍ଗ । ଦିଶିବ ସଖି ନାନା କାମରଙ୍ଗ ।
କି ସଜନି ! ଭଲା ଚତୁରାନନ । ଯନ୍ହିଁକି ଯେ ଯୋଗ୍ୟ କଲା ସର୍ଜନ ॥୨॥

ଥିବୁ ତୁ ରାମ ଅଙ୍କେ ବସି ସଖୀ । ଦେଖି ସଫଳ ହେବ ଆମ୍ଭ ଆଖି ।
ମହା ମରକତ ହେମେ ଶୋଭନ । ତେସନ ହୋଇ ଦିଶିବୁ ରଞ୍ଜନ ।
କି ସଜନି ! ଚନ୍ଦ୍ର ଚନ୍ଦ୍ରିକା ମତ । ବେନିଜନ ତନୁ ହେବ ଏକତ୍ର ॥୩॥

---

୩୬।୧ କ,ଗ- ୦ସାନନ୍ଦ ହେଲେ୦
କ,ଖ,ଗ- ୦ଜନେକ୦
୩୬।୨ କ- କରୁରସିକର ହୃଦ ପଦ୍ମ ଆନନ୍ଦ କନ୍ଦ ଯେ
ଖ- ୦ହୃଦେ୦
୩୬।୪ କ- ୦ଧନୁ ର୍ଜୟ୦
ଙ- ୦ଧନର୍ଜଏ୦

---

୧।୨ କ,ଗ- ୦ତପକରି୦
୧।୩ କ,ଗ- ୦ଆମ୍ଭର ଭାଗ୍ୟ
୨।୧ ଗ- ସଂପାଦତ୦
୨।୩ ଖ- ୦କାହିଁକ ଯେ ଯୋଗ୍ୟ୦
୩।୩ କ,ଗ- ୦ହେବ ଏକତ୍ରକ

ଜାଣିଲୁ ସଖି ତୋହର ତାହାର । ପ୍ରୀତି ଗୌରବ ଅଛୁ ସମାବର ।
ମିଛେ ହେଁ ଉପବନରେ ଆମ୍ଭନ୍ତ । ବଞ୍ଚାଇ କଥା କହିଲୁ ସଙ୍ଗାତ ।
କ ସଜନ ! ତୋର ବୋଲେ ସପ୍ରତେ । କରଣ ଭଜୁଥିଲୁ ଆମ୍ଭ ଚତ୍ତେ ।।୪।।

ପୂର୍ବକଥା ତୁ ଆମ୍ଭଙ୍କୁ ନ କହି । କପଟ କରିଥିଲୁ ଗୃନ୍ଦମୁହିଁ ।
ତୁ ଅଟୁ ଇନ୍ଦିରା ସେ ଜନାର୍ଦ୍ଦନ । ଏମନ୍ତ ଆମ୍ଭେ ମଣୁଅଛୁ ମନ ।
କ ସଜନ ! ତୁ ଗୋ ଚତୁରାମଣି । ଆମ୍ଭଙ୍କୁ କମା ଭଣ୍ଡିଲୁ ମିତଣି ।।୫।।

ଏତେ ବୋଲଣ ହସିଣ ସଜନୀ । ବୋଲନ୍ତି ଶୁଣରେ ନାଗରୀମଣି ।
ଆମ୍ଭଙ୍କୁ ବଧାଇ ଦିଅ ମୃଗାକ୍ଷୀ । ପୂରିଲା ଏବେ ତୋ ମନର ବାଞ୍ଛା ।
କ ସଜନ ! ଦେଖ ଦେଖ ଶ୍ରୀରାମ । ଏ ତା କାମେ ଉପଗତ ହେଲା କାମ ।।୬।।

ହର କୋଦଣ୍ଡ କେ ଭଙ୍ଗିତ ପାରେ । ସଭରେ ବସିଥିଲେ ସର୍ବବୀରେ ।
ସବୁର ମୁଖରେ କାଳ ଲଗାଇ । ଭଙ୍ଗିଲା ଜାଣିଲୁ ଏ ରଘୁସାଇଁ ।
କ ସଜନ ! ନୋହେ ସମାନ ଜନ । ତୋ ତନୁ ଛୁଇଁତେ ଏ ସେ ଭର୍ଜନ ।।୭।।

ଏହି ସମୟେ ନୃପତି ଆଜ୍ଞାରେ । ମୃଦୁସୁନ୍ଦ୍ରୀ ମିଳ ଜେମା ଛାମୁରେ ।
ବୋଲଇ ଶୁଣ ସହଚରୀ ଗଣ । ଆଜ୍ଞା ଦେଲେକ ଜନକ ରାଜନ ।
କ ସଜନ ! ରାମ ବରିବ ବାଳା । ମାଳା ଦେନ ବଳେ କରୁ ସୁଶୀଳା ।।୮।।

ହର କୋଦଣ୍ଡ କଲା ବେନ ଖଣ୍ଡ । ବନ୍ଦିତ ହୋଇଲା ଭୁଜ ପ୍ରଚଣ୍ଡ ।
ଯାହାର କୁଳଗୁରୁ ମାରତଣ୍ଡ । କରରେ ଯେ ଜିତ କଲା ବ୍ରହ୍ମାଣ୍ଡ ।
କ ସଜନ ! ସେହୁ କୁଳ ମଣ୍ଡନୀ । ହୋଇବ ସେହୁ ଏବେ ଚନ୍ଦ୍ରାନନୀ ।।୯।।

ମୃଦୁସୁନ୍ଦ୍ରୀ ବାଣୀ କର୍ଣ୍ଣରେ ଶୁଣି । ଉତ୍ସୁକ ମାନସେ ଅବଳାମଣି ।
କରେ ଘେନଣ ହେମ ପଦ୍ମମାଳା । ଅବନୀକ ଗୃହିଁ ଗୃଲେ ସୁଶୀଳା ।
କ ସଜନ ! ପାଦଗତି ମନ୍ଥର । ମନ ଉତ୍ସୁକେ ଗମନ ସତ୍ୱର ।।୧୦।।

ମନେ ରାମ ରୂପ କରନ୍ତେ ଧ୍ୟାନ । ଅଙ୍ଗେ ଭେଦିଲା ମକର କେତନ ।
ପୁଲକ ପୂରିତ ସକଳ ଅଙ୍ଗ । କହନ୍ତେ ବାଣୀ ହେଲା ସ୍ୱରଭଙ୍ଗ ।
କ ସଜନ ! ତନୁଲତା କମ୍ପିତ । କପୋଳପାଳି ହେଲା ସ୍ୱେଦଯୁତ ।।୧୧।।

---

୪।୨- ୦ବସାଇ କଥା୦
୪।୩ କ,ଗ- ୦ତୋହର ବୋଲେ୦
୫।୨ ଖ- ୦ଏମନ୍ତ ମଣୁଅଛୁ ଆମ୍ଭେ ମନ କ
୬।୧ କ,ଗ- ବୋଲଇ ନାଗେଶ୍ୱ
୬।୨ କ,ଗ- ମୃଗାକ୍ଷି୦
୭।୩ ଖ- ୦ତନୁଛୁଇଁତ ଏ ଅଭର୍ଜନ
୮।୨ କ- ୦ଜନେକ୦
୮।୩ କ,ଗ- ୦ମାଳା ଘେନଣ ଯେ୦ (?)
୯।୧ କ,ଗ- ବନ୍ଦିତ....ପ୍ରଚଣ୍ଡନାହିଁ
୯।୨ ଖ- ୦ତେଜିତ୦
୯।୩ କ,ଗ- 'ସେହୁ-ମଣ୍ଡନୀ' ନାହିଁ
୧୦।୧ ଗ- ୦ମନେ ସେ ରମଣୀମଣି
୧୧।୩ ଖ- ୦ସେଦବୃନ୍ଦ
ଗ- ୦ତନୁଲତା ସଙ୍କିତ୦ ୦ସ୍ୱେଦଯୁକ୍ତ

ଆନନ୍ଦ ଅଶ୍ରୁ ନୟନେ ପୂରିତ । ଗମନ ପଥ ହୋଇଲା ବିଲେପିତ ।
ହେମ ରତ୍ନାଙ୍କିତ ଉଚ୍ଚ ସ୍ତମ୍ଭିତ । ଦେଇଛୁ ସଦାଚରି କରେ ହସ୍ତ ।
କି ସଜନ ! ଓଡ୍ର ଆଶ୍ଚର୍ଯ୍ୟ ଜନ । ରତ୍ନ ବିମାନ କଲେ ସମୀପେନ ।।୧୨।।

ରମଣୀ କଳ୍ପଲତା କୃଶୋଦରୀ । ମଧ୍ୟେ ବିଜେ କଲା ନୃପ କିଶୋରୀ ।
ଗୃହ ପାରୁଶେ ବେଢ଼ି ଦାସୀଗଣ । ଗୃମର ଖଦ୍ଦ ଆଳଟ ଘେନିଣ ।
କି ସଜନ ! ଧୀର ଧୀର ସେ ହୋଇ । ସଭାରେ ପରବେଶ ଚନ୍ଦମୁହିଁ ।।୧୩।।

ରଘୁପତି ମୁଖଚନ୍ଦ୍ର ନିରେଖି । ନେତ୍ର ଚକୋର ତା ହୋଇଲା ସୁଖୀ ।
ବିମାନୁ ଉତ୍ତରି ଅବନୀ ବାଳା । ଚଞ୍ଚଳାପନ୍ତି ଯେସନେ କରେ ଲୀଳା ।
କି ସଜନ ! ମତ୍ତ କରୀ ଗମନୀ । ଉସ୍ତ୍ରକ ମାନସ ହୋଇଲା ଭାବନୀ ।।୧୪।।

ବିକ୍ରମ କେଶରୀ ଅଗ୍ରେ ହରିଣୀ । ତେସନ ରାମଆଗେ ଗୁଣମଣି ।
ଜଳଧି ମନ୍ଥନୁ ହୋଇ ସମ୍ଭୂତ । ରମା ଯେସନେ ଅଚ୍ୟୁତ ଅଗ୍ରତ ।
କି ସଜନ ! ସେହିରୂପେ ଶୋଭନ । ସଭା ମଧ୍ୟରେ ଦିଶେ ବେନିଜନ ।।୧୫।।

ଦିବ୍ୟ କନକ ସରସିଜ ମାଳା । କରେ ଘେନିଣ ଶିରୀଷ କୋମଳା ।
ଲମ୍ବାଇଲା ରଘୁପତି କଣ୍ଠର । ଅତି ଆନନ୍ଦେ ଚଳି ଅନ୍ତଃପୁର ।
କି ସଜନ ! ଦେଖି ନୃପ ମଣ୍ଡଳୀ । ନ ସହି ଆରମ୍ଭ କଲେ ସେ କଳି ।।୧୬।।

ଉରଃସ୍ଥଳ ତେଜ ନିଶ୍ୱାସଚୟ । ଏକ ଆରକେ ଚଲେ ଘୋର ଭୟ ।
କେୟୂର କଙ୍କଣ କଲେକ ଦୂର । କବଚ ଅଙ୍ଗେ ଘେନିଣ ସତ୍ୱର ।
କି ସଜନ ! କେହୁ ଚଢ଼ିଲେ ଯାନ । କେହୁ ଆରୋହିଲେ ଦିବ୍ୟ ସ୍ୟନ୍ଦନ ।।୧୭।।

କେହୁ ମତ୍ତଗଜ ପିଠିରେ ଯାଇ । ନୃପତି ଗରବେ ସେ ସଜ ହୋଇ ।
ଧରିଛନ୍ତି ତୀର କମାଣ କରେ । ଶର ବୃଷ୍ଟି କଲେ ଅତି ସମ୍ଭାରେ ।
କି ସଜନ ! ଗୁପ୍ୟା ରମଣ ନେୟାନ୍ତି । ଦୋଡ଼ାଇଲେ ଶରେ ନୃପ ସନ୍ତତି ।।୧୮।।

ଦେଖି ତାହାଙ୍କ ପ୍ରାକ୍ରମ ଶ୍ରୀରାମ । ମନରେ କିଛି ପ୍ରକାଶିଲେ ତମ ।
କରେ କୋଦଣ୍ଡ ଘେନି ଦାଶରଥି । ଛେଦିଲେ ତାଙ୍କ ଆତପତ୍ର ଧାଡି ।
କି ସଜନ ! ପୁଣ ସନ୍ଧାଣ ଶର । କାଟି ପକାଇଲେ ଅନେକ ବୀର ।।୧୯।।

---

୧୨।୨ କ-ଗ- ଉରଥମ୍ଭିତଂ
୧୨।୩-କ,ଖ,ଗ-ସମୀପେଣ
୧୩।୩ ଗ- ୦ଚନ୍ଦ୍ରମୁହିଁ
୧୪।୧ କ-ଗ- ୦ଚନ୍ଦ୍ରମୁଖଂ
୧୫।୧ ଖ- ୦ଅଗ୍ରେ ହରଣୀଂ
୧୫।୨ କ- ୦ମଥାନୁଂ ୦ଅଷ୍ଟୁତଂ
୧୭।୧ କ-ଗ- କରତଳୁ ତେଜ ନିଶ୍ୱାସ ଚୟଂ
୧୮।୧ ଖ- ୦ପରବେଶେଂ
୧୮।୩ କ-ଗ- ୦ଦୋଡ଼ାଇଣ ନେଲେଂ
୧୯।୧ କ-ଗ- ୦ମନରେ କିଛୁଂ
୧୯।୨ ଖ- ୦ଆତପତ୍ରଧ୍ୱଜାକ
୧୯।୩ ଖ- ୦ପୁଣେ ସନ୍ଧିଛଂ

ଦେଖି ନୃପନ୍ତ କଲେ ଶରବୃଷ୍ଟି । ଅନ୍ଧକାରେ ପୂର୍ଣ୍ଣ କଲେ ସେ ସୃଷ୍ଟି ।
ତାହା ନ ସହିଲ ଲକ୍ଷ୍ମଣ ବୀର । ସୂର୍ଯ୍ୟ ଅସ୍ତ୍ର କରେ ଘେନ ସତ୍ୱର ।
କି ସଜନ ! ପେଷି କଲ ନିଧନ । ଦେଖି ଆନନ୍ଦ ହେଲେ ପୁରଜନ ॥୨୦॥

ଏସନ ପ୍ରକାରେ ଦେଖି ସମର । ଜନକ ରାଣ ହେଲେ ଖେଦଭର ।
ରାମପୃଷ୍ଠ ସାହା ପାଇଣ ସୈନ୍ୟ । ପେଷିଣ ବହନ ଦେଲେ ରାଜନ ।
କି ସଜନ ! ଦେଖି ରଘୁନାୟକ । କୋଦଣ୍ଡେ ବସାଇ ଦିବ୍ୟ ଶାୟକ ॥୨୧॥

ନରପନ୍ତଗଣ ଅଶ୍ୱମଣ୍ଡଳୀ । କାଟିଣ ପକାଇଲେ ମହାବଳୀ ।
କାଟି ପକାଇଲେ କାହାର ଶିର । ନାରାଚେ ଭେଦିଲେ କାହାର ଉର ।
କି ସଜନ ! କାହା କରରୁ ଧନୁ । କାଟି ପକାଇଲେ ବଢ଼ିଛି ମନୁ ॥୨୨॥

ଛିନ୍ନଭିନ୍ନ ହେଲେ ନୃପ ସକଳ । ପଳାଇଲେ ହୋଇ ପ୍ରାଣ ବିକଳ ।
ଅତ୍ୟନ୍ତ କ୍ରୋଧ ସୁମିତ୍ରା ନନ୍ଦନ । ଗୋଡ଼ାଇ ବାଣ ପେଷିଲେ ବହନ ।
କି ସଜନ ! ଯୋଗୀଜନ ପ୍ରମାଣ । ପଳାଇଲେ ନୃପଗଣ ଭାଙ୍ଗିଣ ॥୨୩॥

ଜନକ କଉଶିକ ବେନି ଋଷି । କହନ୍ତ ଆଶ୍ୱାସି ସୁମିତ୍ରା ଶିଷି ।
ଭାଙ୍ଗିଲ ଜନକୁ ନକର ବଧ । ଏମନ୍ତ ବୋଲି ଅଛନ୍ତି ବିବୁଧ ।
କି ସଜନ ! କହି ଏସନ ବାଣୀ । ଆଣିଲେ ଲେଉଟାଇ ରଘୁମଣି ॥୨୪॥

ସନ୍ତୋଷ ହୋଇ ପୁରେ ପରବେଶ । ଅତି ଆନନ୍ଦ ହେଲେ ଗାଧି ଶିଷ୍ୟ ।
ଗଉରବ କରି ଜନକ ରାୟେ । ବୋଲନ୍ତି ଶ୍ରୀରାମ କର ବିଜୟେ ।
କି ସଜନ ! ସାର ଅଙ୍ଗ ମାର୍ଜନା । ମନୋହ କରି ହୁଅ ତୋଷମନା ॥୨୫॥

କାଳି କରିବା ସୀତସ୍ୱାତେରେ ବିଭା । ତୁମ୍ଭରେ ମୋ କୁଳ ପାଇଲା ଶୋଭା ।
ତୁମ୍ଭେ ନୃପ ଦଶରଥ ନନ୍ଦନ । ହୋଇଲ ତୁମ୍ଭ ବନ୍ଧୁରେ ସର୍ଜ୍ଜନ ।
କି ସଜନ ! କଲେ ଉମା ବିଳାସ । ହେଲା ପୂର୍ବଜନ୍ମ ତପ ପ୍ରକାଶ ॥୨୬॥

---

୨୦।୨ ଭ-ଗ- ଲକ୍ଷଣ।
୨୦।୩ ଭ- °ତନ୍ଧନ°
୨୧।୧ ଭ-ଗ- °ଜନେକ ରାଣ°
ଖ- °ଜନକ ରାଜନ°
୨୧।୨ ଭ-ଗ- °ପୃଷ୍ଠ ସାହା ପାଇଣ°
ଖ- °ପୃଷ୍ଠ ସହ ପାଇଣ°
୨୨।୨ ଭ-ଗ- °ଅନେକ ଶିର° °କାହାର ଶିର°
ଖ- °ଭେଦେ ସେ କାହାର ଉର°

୨୩।୧ କ- °ଛିନ୍ନଭିନ୍ନ°
୨୩।୨ କ- °ପେଷିଲ°
ଖ- °ପେଷିଲ°
ଖ- °ସୁମିତ୍ର ନନ୍ଦନ°
୨୩।୩ ଖ- ନାହିଁ
୨୪।୧ କ-ଗ- °ଜନେକ°
୨୪।୧ ୨ ଖ- ନାହିଁ

ଜନକ ବଚନ ଶୁଣି ଶ୍ରୀରାମ । ବୋଲନ୍ତି ନୋହେ ଆମ୍ଭ କୁଳଧର୍ମ ।
ତାତ ନ ଜାଣି କେସନରେ ମୁହିଁ । ବିଭା ହୋଇବ ଶୁଣିମା ଗୋସାଇଁ ।
କ ସଜନ ! ରାମ ବଚନ ଶୁଣି । ବୋଲନ୍ତି କଉଶିକ ମହାମୁନି ।।୨୭।।

ପେଷିବା ଦୂତ ଯାଉ ଅଯୋଧ୍ୟାକୁ । ଯାଇ ଜଣାଉ ସେ ଦଶରଥଙ୍କୁ ।
ନୃପ ତିଳକ ଆସନ୍ତୁ ଏଠାର । ବିଭା କରନ୍ତୁ ତାଙ୍କର କୁମର ।
କ ସଜନ ! ଶୁଣି ଜନକ ରାଏ । ଦେଖି ଲେଖିଣ ଦୂତ ପଠିଆଏ ।।୨୮।।

ଯାଇ ଦୂତ ନୃପ ଛାମୁରେ ହେଲେ । ଶିରରେ କର ଦେଇ ଜଣାଇଲେ ।
ହର କୋଦଣ୍ଡ କୁମର ତୁମ୍ଭର । ଭାଙ୍ଗି ସ୍ୱୟମ୍ବରେ ମିଥିଳା ପୁର ।
ହେ ଦେବ ପ୍ରଭୁ ! ରାଜନନ୍ଦିନୀ ସୀତା । ରାମ ପାଦେ ଦେଇ ଛାଡ଼ିବ ଚିନ୍ତା ।।୨୯।।

ତୁମ୍ଭ ଛାମୁକୁ ଲେଖିଛନ୍ତି ରାଏ । ନୃପମଣି ବେଗେ କର ବିଜୟେ ।
ତେବେ ହୋଇବ ଜାନକୀର ବିଭା । ତୁମ୍ଭ ବନ୍ଧୁଗଣେ ପାଇବ ଶୋଭା ।
ସେ ରାଜନ ଶୁଣି ଦୂତ ବଚନ । ଅତି ଆନନ୍ଦ ହେଲେ ନୃପରାଣ ।।୩୦।।

ମନେ ବିଚାରେ ରଘୁକୁଳ ନାଥ । ସେ ଧନୁ ଭାଙ୍ଗିଲେ ହେବ ସମର୍ଥ ।
ଯାହା କହିଲେ ବ୍ରହ୍ମାର ନନ୍ଦନ । ରାମ ମନୁଷ୍ୟ ନୋହେ ନାରାୟଣ ।
ସେ ବୋଲନ୍ତି, ହେଲା ସେ କଥା ସତ । ଏଣୁ ଜାଣିଲି ମୁହିଁ ଭାଗ୍ୟବନ୍ତ ।।୩୧।।

ଏତେ ବୋଲଣ୍ଟେ ନୃପତି ଶେଖର । ଦୂତକୁ ଦେଲେ ଅନେକ ସମ୍ଭାର ।
ପାତ୍ର ପୁରୋହିତେ କହେ ବଚନ । ଭାଙ୍ଗିଲା ରାମ ଶିବ ଶରାସନ ।
ମନ୍ତ୍ରୀବର ! କର ସର୍ବସମ୍ଭାର । କାଲି ସେ ଯିବା ମିଥିଳା ନଗର ।।୩୨।।

ସୀତାଙ୍କୁ ବିଭା ହୋଇବ ରାମ । ଧନ୍ୟ ହୋଇଲା ମୋ ଅଯୋଧ୍ୟା ଗ୍ରାମ ।
ସମୃଦ୍ଧି ପାଇଲି ଜନକ ରାଜା । ସର୍ବ ନୃପେ ଯାକୁ କରନ୍ତି ପୂଜା ।
ମନ୍ତ୍ରୀବର ! ଯାର କୁଳର କୀର୍ତ୍ତି । ପୂରିଅଛି ଏ ଅଶେଷ ଧରଣୀ ।।୩୩।।

---

୨୭।୧ କ-ଗ- ଜନେକ୦
୨୭।୨ କ-ଗ- ତାତ ନ ଜାଣି କେସନରେ ମୁହିଁ୦
ବିଭା ହୋଇବ କେସନରେ ମୁହିଁକି
ଖ- ପିତା ନ ଜାଣି
୨୮।୨ କ-ଗ- ନୃପତି ବେଗ ଆସନ୍ତୁ୦
୨୮।୩ ଖ- ନାହିଁ
୨୯।୧-୨ ଖ- ପୋଥିରେ ନାହିଁ
୨୯।୧ କ- ସ୍ୱୟମ୍ବରେ୦
୩୦।୧ କ- ୦ବିଜଏ
୩୦।୨ କ- ୦ଜାନେକୀର୦
ଖ- ୦ତୁମେ ବନ୍ଧୁ୦
୩୧।୨ କ- ନାରାଏଣ ହେ
ଖ- ୦ମନୁଶ୍ୟ୦
୩୧।୩ ଖ- ୦ହୋଇଲା ସେକଥା୦ (?)
୩୨।୧ କ-ଗ- ୦ବୋଲିଏ୦
୩୨।୨ କ-ଗ- ୦କହନ୍ତି ବଚନ୦
୩୨।୩ କ-ଗ- ୦କ ସଜନୀ !୦
ଖ- ୦କର ଖର୍ବ ସମ୍ଭାର (?)୦
ଗ- ୦ନଗର
୩୩।୧ ୦ହୋଇବେ ରାମ୦
୩୩।୨ କ- ସମୃଦ୍ଧି୦
ଖ- ସମୃଦ୍ଧ୦
କ-ଖ- ସର୍ବ ନୃପତି ଯାହାକୁ୦
୩୩।୩ କ- କ ସଜନ ! ତାର କୁଳର କୀର୍ତ୍ତି୦

ଏଥେକ କହି ନୃପତି ଶେଖର | ସାଜିଲେ ସୈନ୍ୟ ସକଳ ସମ୍ଭାର |
କଉଶଲ୍ୟା କଇକେୟୀ ସୁମିତ୍ରା | ନୃପ ବଲ୍ଲଭ ନୃପତି ଦୋହିତା |
ସେ ରାଜନ ଘେନି ସକଳ ନାରୀ | ସମ୍ଭାରେ ପ୍ରବେଶ ମିଥିଳା ପୁରୀ ||୩୪||

ଶୁଣିଣ ଦଶରଥ ଆଗମନ | ପାଛୋଟି ନେଲେ ଜନକ ରାଜନ |
ଦିବ୍ୟ ମନ୍ଦିରେ ନେଇ ବସା ଦେଲେ | ଅନେକ ଉନୋସ୍ତି ହୋଇ କହିଲେ |
ସେ ନୃପତି ! ରାମ ଲକ୍ଷ୍ମଣ ବେନି | ତାତ ପାଦେ ଲଗାଇଲେ ମୂର୍ଦ୍ଧନି ||୩୫||

ମାତାଙ୍କ ଚରଣେ କଲେ ବିନତି | ମିଳିଲେ ପାଶେ କଉଶିକ ଯତି |
ବୋଲନ୍ତି ଶୁଣ ଆହେ ଦଶରଥ | ଏ ରାମ ଜାଣ ତୁ ତ୍ରୈଲୋକ୍ୟ ନାଥ |
ହେ ରାଜନ ! ମାରି ଅସୁରଗଣ | ଯଜ୍ଞଟେ ତ୍ରାତ ଘେନିଣ ଲକ୍ଷ୍ମଣ ||୩୬||

ମନ୍ଦିସ୍ତେ କଲା ଏ ସୁରମନ୍ତ୍ରୀ | ପାଷାଣୁ ତାରିଲା ଅହଲ୍ୟା ବାଳୀ |
କଲା ଏ ଶିବଧନୁ ବେନିଖଣ୍ଡ | ଯାହା ଦେଖି ଭଜିଲା ଦଶମୁଣ୍ଡ |
ହେ ରାଜନ ! କହି ଏସନ ଋଷି | ସମର୍ପି ନେଇ ଦେଲେ ବେନି ଶିଷି ||୩୭||

ଶ୍ରୀରାମବିଳାସ ଛାନ୍ଦ ଦ୍ୱାଦଶ | ଶୁଣି ସୁଜନ ଜନେ ହୁଅ ତୋଷ |
ଶତ ଉଲ୍ଲାସିତ ଏହାର ନାମ | ପଦପଦକେ ଭକ୍ତ ମୁକ୍ତିଧାମ |
ହେ ସୁଜନେ ! ସେହୁ ଶ୍ରୀରାମ ଧ୍ୟାୟି | ନୃପତି ଧନଞ୍ଜୟ ଭଞ୍ଜ କହି ||୩୮||

●

---

୩୪।୧ କ-ଗ- ୦ସାଜିଲେ ସକଳ ସୈନ୍ୟ୦
୩୪।୨ କ- କକେକୟା, କଉସୂଲ୍ୟା୦
ଖ- କଉସୁଲ୍ୟ କଏକୟା୦
ଗ- କଇକେୟା କଉଶୂଲ୍ୟା୦
୩୫।୧- କ-ଗ- ୦ଜନେକ୦
୩୫।୨ କ-ଗ- ୦ନେଇ ବସାଇଲେ୦
୩୫।୩ କ-ଗ- ୦ଲକ୍ଷଣ୦
କ-ଖ- ୦ମୁର୍ଦ୍ଧନ

୩୬।୩ କ- ୦ଘେନ ଭ୍ରାଥ ଲଇକ୍ଷଣ
ଗ- ଘେନ ଭ୍ରାତ ଲଇକ୍ଷଣ
୩୭।୧ କ- ୦ସ୍ତେ ସୁର୦ ୦ଅହଲ୍ୟ ବାଲୀ
ଖ- ୦କଲ ଭୂସୂର୦ ୦ତାରଲେ୦
୩୭।୨ କ-ଗ- ୦ଭାଗିଲ ଦଶମୂଣ୍ଡ ହେ
୩୮।୧ ଖ- ଦ୍ୱାଦଶ ଛାନ୍ଦ ଶ୍ରୀରାମ ବିଳାସ
୩୮।୨ ଗ- ପାଦପାଦକେ୦
୩୮।୩ କ-ଖ- ୦ଧନର୍ଜୟ୦

# ତ୍ରୟୋଦଶ ଛାନ୍ଦ

(‘ମଣୋହ୍ଲ ବଢ଼ାଇ ଜନେକ ରାଏ’ + — ବାଣୀରେ ଗାଇବ)

ବଶିଷ୍ଠ କଉଶିକ ଏ ବେନି ଜନ । ବୋଲନ୍ତି ଶୁଣ ଜନକ ରାଣ ॥୧॥
ଶ୍ରୀରାମ ବିଭା ବିଧି ବିଧାନ କର । ମିଳିଲେ ରଘୁବଂଶର ବୀର ॥୨॥
ଶୁଣିଣ ରାଜର୍ଷି ଆନନ୍ଦ ହୋଇ । ଆଜ୍ଞା ସେ ଦେଲା ବନ୍ଧାଣି ରଇ ॥୩॥
କରିବା ରତନରେ ମଣ୍ଡପ ସଜ । ଶ୍ରୀରାମ ବିଭା ହୋଇବ ଆଜ ॥୪॥
ମଣ୍ଡଣି କର ବେଗେ ବିବିଧ ପୁର । ଖଞ୍ଜା ଚାମର ଅତି ରୁଚିର ॥୫॥
ଲମ୍ବାଅ ମୋତିମାଳ ସୁମନ ଦାମ । ଖଞ୍ଜି ବିତାନ ଅତି ଉତ୍ତମ ॥୬॥
ସୁବର୍ଣ୍ଣ ସ୍ତମ୍ଭେ କର ନବ ମଣ୍ଡଣି । ସିଞ୍ଚ କର୍ପୂର ପଙ୍କର ପାଣି ॥୭॥
ଲୋକେ ଆଦେଶ ବେଗେ ଦେଇ ନୃପତି । ତୁରିତେ ଅନ୍ତଃପୁରେ ମିଳନ୍ତି ॥୮॥
କହନ୍ତି ଯାଇ ପଟ୍ଟମହିଷୀ ଠାଇ । ସୀତାଙ୍କୁ ବେଶ କରିବା ସନ୍ଧି ॥୯॥
ଶୁଣି ମହିଷୀ ନୃପ ତିଳକ ବାଣୀ । ଦାସୀନ୍ତ ଡାକ କହନ୍ତି ପୁଣି ॥୧୦॥
ସୀତାଙ୍କୁ ବେଶ ତୁମ୍ଭେ କର ସତ୍ୱର । ଆଜ୍ଞା ଯେ ଦେଲେ ନୃପତି ବର ॥୧୧॥
ଶୁଣିଣ ମୃଦୁସୁନ୍ଦ୍ରୀ ବେଗେଣ ଗଲା । ସୀତାଙ୍କ ପୁରେ ପ୍ରବେଶ ହେଲା ॥୧୨॥
ସଖୀଙ୍କି ରାଇ ସେହୁ କହଇ ବାଣୀ । ବେଶ କରିବା ନୃପ ନନ୍ଦନୀ ॥୧୩॥
ବିଭାର ବେଳ ଏବେ ହେବ ଉଚ୍ଛୁର । ବିଳମ୍ବ ଏବେ ନୋହେ ବେଭାର ॥୧୪॥
ସୀତାଙ୍କୁ ବେଢ଼ି ତହିଁ ସକଳ ସଖୀ । ବେଶ କରନ୍ତି ମୁଖ ନିରେଖି ॥୧୫॥
ସାଞ୍ଜୋଇ ବେଗେ କେଶ ରଞ୍ଚିଲେ ବେଣୀ । ଖଞ୍ଜିଲେ ଦିବ୍ୟ ମୋତିର ଶ୍ରେଣୀ ॥୧୬॥
ସୁବର୍ଣ୍ଣର ପତ୍ରିକା ରଞ୍ଚିଲେ ବାଳୀ । ସଜଳ ହେଲେ କି ବିଧୁମଣ୍ଡଳୀ ॥୧୭॥

---

+ ଖ- ‘ମଣୋହ୍ଲ ଭଆଇ ଜନକ ରାଏ’—ସ୍ନେ ବାଣୀରେ
୧ କ- ୦ଜନେକ
  ଖ- ଜନକ ରାଜନ
୨ ଖ- ବିଧାକର (?)
୩ ଖ- ୦ଆଜ୍ଞା ଦେଲକ୦
୬ କ,ଗ- ୦ସୁବର୍ଣ୍ଣ ଦାମ୦ ୦ଖଞ୍ଜ୦
  ଖ- ୦ଅତ ଉପମ୦
୭ କ,ଗ- ୦ପଙ୍କର କର୍ପୂର୦
  ଖ- ୦ନବ ମଣ୍ଡଣି୦
୮ ଖ- ୦ଅନ୍ତପୁରେ୦
୯ ଖ- ୦ସୀତାଙ୍କୁ ବଶି୦
୧୦ କ,ଗ- ଶୁଣିଣ ନୃପତ ତିଳେକ୦
  ଖ- ଶୁଣିଣ ନୃପ ତିଳକ ୦ଦାସୀଙ୍କି୦ ୦ବାଣୀ
୧୧ ଖ- କୁମାରୀ ବେଶ୦
୧୩ ଖ- ସଖୀଙ୍କ ଡାକ୦
୧୪ ଖ- ବିବାହ ବେଳ୦
୧୫ ଖ- ସଂଯୋଇ କେଶ ବେଗେ ରଖିଲେ୦
୧୭ ଖ- ସୁବର୍ଣ୍ଣ ତ୍ରିତକାର କଲେ ବାଳୀ (?)

ଅଗ୍ରରେ ଦେଲେ ନେଇ ରତ୍ନର ଝୁମ୍ପା । ଦେଖନ୍ତେ ଯୁବା ହୃଦୟୁ କମ୍ପା ॥୧୮॥
କୁଟିଳ ନୀଳ ସୂକ୍ଷ୍ମ ଚୂର୍ଣ୍ଣ କୁନ୍ତଳ । ମୁଖ ପଦ୍ମେ କ ମଧୁପକୁଳ ॥୧୯॥
ନିର୍ମିତ ହେମ ନାଗବଲ୍ଲୀର ଦଳ । ରଖିଲେ ସଖୀ ଅତି ମଞ୍ଜୁଳ ॥୨୦॥
କି ଅବା ମୁଖ ଶଶୀ ଗ୍ରାସିବା ଆଶେ । ତମ କି ବସିଅଛି ତା ପାଶେ ॥୨୧॥
ଦନ୍ତ କି ଅବା ସେହୁ ଅଛି ଦେଖାଇ । ଏ ଉତପାତ ମାରଣ ପାଇଁ ॥୨୨॥
ନାସାରେ ଦେଲେ ସଖୀ ବର୍ତ୍ତୁଳ ମୋତି । ଅମୀୟୁ ତେଜେ କି ବା ସାଧୁତି ॥୨୩॥
ଦ୍ରବ୍ୟ ତାଟଙ୍କେ ଶୋଭା ଶ୍ରବଣ ପାଳ । ଶାଣ କି ସାଜେ ଅନଙ୍ଗବଳ ॥୨୪॥
କଟାକ୍ଷ ବାଣ ତହିଁ କରଣ ମୁନ । ଭେଦବ ତେଣେ ବିଯୋଗୀ ପ୍ରାଣ ॥୨୫॥
କଣ୍ଠେ ରଖିଲେ ନେଇ ବିବିଧ ମାଳା । ଏଣେ ଶୋଭିତ ସୀତମ୍ବା ଗଳା ॥୨୬॥
କି ଅବା କାମଦେବ ବଜାଇ କମ୍ବୁ । ସାଜିଲା ଦମ୍ଭ ପାଇବ ଶମ୍ଭୁ ॥୨୭॥
ବର୍ତ୍ତୁଳ ଉଚ୍ଚ ସଙ୍ଗ ଉରଜ ବେନି । ଆଚ୍ଛାଦେ ନୀଳ କାଞ୍ଚୁଲି ଘେନି ॥୨୮॥
କି ଅବା ଶଶୀ ବେନି ସହୁ ଉପୁର । ପଶିଲେ ନବଘନ ଉଦର ॥୨୯॥
ତଥି ଉପରେ ଶୋଭେ ମୋତିର ହାର । ଶମ୍ଭୁ ଶିରେ କ ଜାହ୍ନବୀ ଧାର ॥୩୦॥
କୋମଳ ସୁକୁମାର ଜାନକୀ ମାଣି । ଧଣ ବୋଲଇ କେଉଁ ମିତଣୀ ॥୩୧॥
ଶିଖଣ୍ଡ ମାଳା ଏହୁ ଅତି ରୁଚିର । ବଳୟୁ ମାଳେ ଲଭିବ ଶ୍ୱର ॥୩୨॥
ବୋଲ ଖଞ୍ଜିଲା ନେଇ ମୁମୋତି ଚୂଡ଼ । ଅଛନ୍ତି ନାନା ରତନେ ଜଡ଼ ॥୩୩॥
ମର୍କତ ସରଳ ଏକ ଏକ କୋଡ଼ । ରଖିଲା ତଥି ଅଗ୍ରେ ସଜାଡ଼ ॥୩୪॥
ଲମ୍ବଇ ତହିଁ ଯେ ମୋତି କେଶ କେଶ । ଦେଖନ୍ତେ ଭ୍ରମ ହୋଇବେ ଧାର ॥୩୫॥

---

୧୮ ଖ- ରତନ ଝୁମ୍ପା
୧୯ କ,ଗ- ନାହିଁ ୦ମୁଖ ପଦମ୍ବୀକ୦
୨୧ ଖ- 'ତମକ୦ ୦ପାଶେ'-ନାହିଁ
୨୨ ଖ- ୦ସେହୁ ଅବା୦
୨୩ କ,ଖ,ଗ- ୦ବ୍ରତୁଳ ମୋତ୦
କ- ୦କି ସୁଧା ବଧୀତ
ଖ- ୦କି ଶୁଦ୍ଧ ବଧିଣ
ଗ- ୦କିବା ସୁଧା ବର୍ଧିତି
୨୫।୨୬ କ,ଖ-ରେ ନାହିଁ
୨୭ ଖ- ବାଜଇ କମ୍ବ ୦ପଶ୍ୱବ ଶମ୍ଭୁ (?)
୨୮ ଖ- ୦ଆଛାଦେ ନୀଳ୦
୨୯ କ,ଗ- ପଶିଲେ ବଡାକ ଉଦର
୩୦ ଖ- ୦ଶମ୍ଭୁ ସମରେ୦
୩୧ ଖ- କୋମଳ ମନୋହର ଜାନକୀ ବାଣୀ୦
୩୨ ଖ- ଶିଖସମାଳୁ ଏହୁ୦ (?)
ଗ- ୦ଗିଣଣମାଳୁ୦ ୦ଲଭିବ ତାର୦
୩୩ କ,ଗ- ୦ରତ୍ନେଣ ଜଡ଼
ଖ- ଅଛନ୍ତି ନାନା
୩୪ କ,ଗ- ମକତ୦ ୦ରଖିଲା ତଥି୦
କ,ଖ,ଗ- ଏକଇ ଯୋଡ଼୦
୩୫ କ,ଗ- ୦ହୋଇବ ଧାର୦
ଖ- କେଶ୍ୱା କେଶ୍ୱା (?) ୦ହୋଇ

ବାହେ ବାହୁଟୀ ଅତି ରତନ ମୟେ । କରଇ କାମରସ ହୋଇ ଉଦୟେ ।।୩୬।।
ଉଷ୍ଣ କୁଷ୍ମଣ ତହିଁ ସୁଚେଳ ଚେଳ । ରଞ୍ଜିଲେ ନେଇ ସଖୀମଣ୍ଡଳ ।।୩୭।।
ତଥି ଉପରେ ଶୋଭା ମାରଗ କାଞ୍ଚୀ । ଦେଖିଲେ ଧାଣହେବେ ବିରଞ୍ଚି ।।୩୮।।
ପାଦେ ରଞ୍ଜିଲେ ନେଇ ମର୍କତ ବଳା । ନୂଆ ହୃଦୟୁ ବନ୍ଧୀ ଶୃଙ୍ଖଳା ।।୩୯।।
ଦକ୍ଷିଣ ତଥି ତଳେ କେବଣ ସଖୀ । ଯାବକ ଦେଲା ଅତି ସୁରେଖି ।।୪୦।।
କିବା ସିନ୍ଧୁର ଅସି କମଳ ପାଶେ । ରହିଛି ତାର ପ୍ରୀତିର ଆଶେ ।।୪୧।।
ଚରଣ ପଙ୍କଜକୁ କଲା ଶୋଭନ । ପଙ୍କଜ କାନ୍ତି ହେଲା ମଳିନ ।।୪୨।।
ବଞ୍ଜୁଳ କଡ଼ି ଶୋଭା ଦିଏ ଅଙ୍ଗୁଳି । ମୁଦ୍ରିକା ଗଣେ ଦିଶିଲା ଝଳ ।।୪୩।।
ଦିଶିଲା ସହଚରୀ ସୀତାଙ୍କୁ ଚାହିଁ । ନେତ୍ରେ ଅଞ୍ଜନ ରଞ୍ଜିଲା ନେଇ ।।୪୪।।
ନୟନ ଅଞ୍ଜନକୁ କଲା ଶୋଭିତ । ନେତ୍ରେ ଅଞ୍ଜନ ହେଲା ଟବସ ।।୪୫।।
ଶଳାକା ଯେନ ଲଞ୍ଜି ବହଳ ଭଲ । କି କାମ କୁନ୍ତ ଦଶେ ରଖିଲ ।।୪୬।।
ତିଳକ ଦେଇ କହେ କେବଣ ସଖୀ । ଏ କାମକାଣ୍ଡ ଚନ୍ଦ୍ରମା ମୁଖୀ ।।୪୭।।
ଜଣି ସୁରତ ରଙ୍ଗେ ରଘୁନାୟକ । ନିକଟେ ଧରଥାଅ ଶାୟକ ।।୪୮।।
ଅତି ସୁଚୀନ କ୍ଷୀଣ ରତନମୟେ । ଅଂଶୁକ ଶିରେ ଦେଲା ସଦୟେ ।।୪୯।।
ବେଶ ବଢ଼ାଇ ବୋଲେ ବିଜୟେ କର । ପାଶେ ଅଛନ୍ତି ଦାସୀନିକର ।।୫୦।।
ଖଣ୍ଡା ଚାମର କରେ ତାଳବୃନ୍ତ ଯେନ । ମଣିମା ବୋଲେ କେଉଁ ତରୁଣୀ ।।୫୧।।
ଏଥୁ ଅନ୍ତରେ ତହିଁ ଅଯୋଧ୍ୟା ପତି । ରାମକୁ ସଜ କଲେ ତଡ଼ିତି ।।୫୨।।
ଶିରେ ରଞ୍ଜିଲେ ନେଇ ଦିବ୍ୟ ମୁକୁଟ । ଝଟକେ ହୀରାମଣି ଅକୁଟ ।।୫୩।।
ଲମ୍ବିପଡ଼ୁଛି ତହିଁ ମୋତିର ଦାମ । ରତି ବିଭାରେ ଯେସନେ କାମ ।।୫୪।।

---

୩୬ କ,ଖ- ୦ରତ୍ନମୟେ (?)
ଖ- ୦ଉଦଏ
୩୭ କ,ଗ- ଉଚ କର୍ଷି ତହଁ ସୁଚେଲ ଚଳ
ଖ- ଉଚ୍ଚ କୁର୍ଞ୍ଚିଣ ତହିଁ ସୁଖ ନଚଳ । ରଞ୍ଜିଲେ ନେଇଂ
୩୮ ଗ- ପାଦେ ଖଞ୍ଜିଲେ
ଖ- ଶୃଖଳା
୪୨ କ,ଗ- ୦ଶୋଭାବନଂ
୪୩ କ- ବଞ୍ଜୁଳ ଶୋଭାବନ ଦିଏ ଅଙ୍ଗୁଳି
ଖ- ଶୋଭାବନ ଦଶେ ଅଙ୍ଗୁଳିଂ
୪୭ କ,ଗ- ତିଳେକ
ଖ- ଦେଇ ବୋଲେ
୪୮ କ,ଗ- ୦ସୁରତି ପଣେ ୦ସାୟେକ
୪୯ କ,ଗ- ଅତି ସୁଚନ ଚନ ଅସୁକଂ
ଖ- ସୁଖ ଖେନ ରତନମଏ ଅଶୁକଂ ୦ସଦଏଂ
କ,ଗ- ୦ଦେଲେ ବିଜୟେ
ଖ- ୦ବୋଲେ ବିମଏଂ
୫୧ ଗ- ୦କେହୁ ତରୁଣୀ
୫୩ କ,ଗ- ୦ହୀରାମଣିର ଭଟ
ଖ- ୦ହୀରାମଣି ରଟ

ମଣିକୁଣ୍ଡଳ ବେନି ଶୋଭିତ ଗଣ୍ଡ । ନୀଳ ଜଳଦେ କି ମାରତଣ୍ଡ ॥୫୫॥
ଏମନ୍ତେ ନାନାବିଧି ପ୍ରକାରେ ବେଶ । ହୋଇବାହାର ମନେ ହରଷ ॥୫୬॥
ସମସ୍ତ ଋଷିଗଣ ଅଛନ୍ତି ମିଳି । ବିବିଧ ବାଦ୍ୟେ ବ୍ରହ୍ମାଣ୍ଡ ଚଳି ॥୫୭॥
ଲାଗିଲା ଧାଡ଼ି ଧାଡ଼ି ଦହୁଡ଼ିମାନ । ଚନ୍ଦ୍ରାତପରେ ଗଗନ ଛନ୍ନ ॥୫୮॥
ଉଡ଼ନ୍ତି ବାଣଗଣ ଆକାଶ ଦେଶେ । କେ ସ୍ୱର୍ଗେ ରହି ଶଚିର ପାଶେ ॥୫୯॥
ଅର୍ଦ୍ଧ ସ୍ୱର୍ଗରେ ରହି ଅମର ପତି । ବୋଲନ୍ତି ସିଦ୍ଧ ଆମ୍ଭ ବିପତ୍ତି ॥୬୦॥
ଏବେ ହୋଇବ ଦଶ ବଦନ ନାଶ । କରଣ ଥିଲୁ ଆମ୍ଭେ ଏ ଆଶ ॥୬୧॥
ବରଷେ ଦେବ ପୁଷ୍ପ ଅମରବାଳୀ । ସୀତସ୍ଥା ପାଶେ ଆସିଣ ମିଳି ॥୬୨॥
ଅନନ୍ତରରେ ଦେଖ ବିଭର ରସ । ରାମକୁ ଦେଖି ହେଲେ ଅବଶ ॥୬୩॥
ଏମନ୍ତେ ଦଶରଥ କୁମର ସେନ । ବିଭର ସ୍ଥଳେ ହେଲେ ଭୂଜାନ ॥୬୪॥
ସିଂହ ଦୁଆରେ ଯାଇ ରହିଲା ରଥ । ଓହ୍ଲାଇ ବେଗେ ଅଯୋଧ୍ୟାନାଥ ॥୬୫॥
ଜନକ କୁମରେ ସେ ବରଣ କରି । ନେଲେ ପୁରକୁ ଶ୍ରୀହସ୍ତ ଧରି ॥୬୬॥
ମଣ୍ଡପେ ଯାଇ ବିଜେ କଲେକ ରାମ । ଲଜ୍ଜିତ ହୋଏ ଦେଖିଣ କାମ ॥୬୭॥
ଜନକ ଅନ୍ତଃପୁର ସୁନାରୀଗଣ । ଗବାକ୍ଷେ ରାମ ଦେଖନ୍ତି ପୁଣ ॥୬୮॥
ଏହି ସମୟେ ତହିଁ ନୃପତି ଆସି । ବରଣ ବିଧି କଲେକ ବସି ॥୬୯॥
ଲୁଣି ଚଉଁରା ପୂଜି ଜନକ ବାଳୀ । ବେଗେଣ ପୁରୁ ଅଇଲା ଚଳି ॥୭୦॥
ମଣିମା ମଣିମା ସେ ବୋଲନ୍ତି ବାଳୀ । ନ ଚଳେ ପଦ ଅନଙ୍ଗ ଦଳି ॥୭୧॥
ପାଶେ ଅଛନ୍ତି ବେଢ଼ି ଦାସୀ ନିକର । ମଣ୍ଡପ ତଳେ କଲେ ସତ୍ୱର ॥୭୨॥
ଲୁଣ ଆଞ୍ଜୋଳା ରାମ ଉରେ ପକାଇ । ମଧ୍ୟରେ ଗଲା ଆନନ୍ଦ ହୋଇ ॥୭୩॥
ରାମ ନୟନ ମନ ଗଲା ପାଶୋଟି । ପାଲଟି ଗୃହେଁ ସେ ବିମ୍ବଓଷ୍ଠୀ ॥୭୪॥
ଜାଣିଣ ମନ ତହିଁ ପ୍ରିୟ ସଜନୀ । ଜନକ କୋଳେ କଲେ ନନ୍ଦନୀ ॥୭୫॥

---

୫୫ ଖ- ୦ଜଳଦେଖି ମାରତଣ୍ଡ
ଗ- ୦ଜଳରେ କି ମାରତଣ୍ଡ
୫୬ କ,ଗ- ୦ପ୍ରକାରେ ରସା୦
୫୭ କ,ଗ- ବ୍ରହ୍ମାଣ୍ଡ ଉଚ୍ଛୁଳି
୫୯ ଖ- ୦ଉଡ଼ିଣ…ଦଶେ ୦ସ୍ୱର୍ଗେହୋଏ୦
୬୨ ଖ,ଗ- ୦ବସିଣ ମିଳି୦
୬୩ କ- ଅନ୍ତର ହୋଇ୦ ୦ହେଲେ ହରଷ
୬୪ କ- ୦ବିଭର ସ୍ଥଳେ ହେଲେ ଭୁଯାନ
୬୫ ଖ- ୦ଦ୍ୱାରରେ୦
୬୭ ଖ- ୦କରନ୍ତି ରାମା୦ ୦ଲମ୍ବିତ ହୋଇ୦
୬୮ ପ୍ରଥମ ପାଦରେ ଗୋଟିଏ ଅକ୍ଷର କମ୍ ଅଛି । ବୋଧହୁଏ 'ଅନ୍ତଃପୁର'ରେ ବିସର୍ଗର ଉଚ୍ଚାରଣରେ ସମଧିକ ପ୍ରଯତ୍ନ ଫଳରେ ଏହା ହୋଇଛି ।
୭୦ କ- ୦ଚମସ୍ଥ ପୂଜି୦
୭୩ କ,ଗ- ୦ଲବଣ ଆଞ୍ଜୋଳି୦
ଖ- ୦ଲୁଣ ଅଞ୍ଜଳି
୭୪ କ,ଗ- ୦ସେ ବିମ୍ବୋଷ୍ଠି (?)
୭୫ କ,ଗ- ୦ଜନେକ କୋଳେ ନନ୍ଦନୀ (?)
ଖ- ୦ଜନକ କୋଳ କଲେ୦

ଢାଳନ୍ତି ଗୁମର କେ ବଞ୍ଚେ ପ୍ରସୂନ । କର୍ପୂର ପୁରେ ପୁରେ ଗଗନ ॥୭୬॥
ବେଦ ବିଧାନ ମତେ ବ୍ରହ୍ମାନନ୍ଦନ । କଲେ ସେ ବେନି କୁଳ ବନ୍ଦନ ॥୭୭॥
ଶଙ୍ଖରେ ପାଣି ଦେଲେ ନୃପବର । ଧରଣ କନ୍ୟା କୁମର କର ॥୭୮॥
କୁଶେଣ ତହିଁ ଦ୍ୱିଜଗଣେ ବାନ୍ଧିଲେ । ଜନକ ଦଉତୁକ ହିଁ ଦେଲେ ॥୭୯॥
ଦ୍ୱିଜ ସଧବା ନାରୀ ଜଣେକ ଆଣି । ଫେଡ଼ିଲେ ବେନି ଜନଙ୍କ ପାଣି ॥୮୦॥
ଏମନ୍ତେ ବିଭବିଧି ବଢ଼ାଇ ସଦ୍ୟେ । ଆଜ୍ଞାନେ କଲେ ବେଗେ ବିଜୟେ ॥୮୧॥
ଲାଜାକୁ ତହିଁ ରାମ ସୀତାୟା ବେନି । ଅନଳେ ବେଗେ ଦହିଲେ ଘେନି ॥୮୨॥
ସପ୍ତ ପଦ ବିଧି କଲେ ଭୂସୁର । ଥୋଇଲେ ପାତଠାରେ ତଣ୍ଡୁଳ ॥୮୩॥
କୋମଳବନ୍ତ ସୀତା ପଦ କମଳ । ତରେ ଶୋଭିତ ଅତି ମଞ୍ଜୁଳ ॥୮୪॥
ଅଙ୍ଗୁଳ ରାମ ବେଗେ ଧଇଲେ କରେ । ପ୍ରତିଜ୍ଞା କାମ କଲ ସତ୍ୱରେ ॥୮୫॥
କମ୍ପିଲ ବେନି ତନୁ ଅତି ଅଧୀର । ମଦନବାଣେ ହେଲେ କାତର ॥୮୬॥
ଉତ୍ସୁକେ ବେନି ମନ ନୁହଇ ଥିର । ଲଜ୍ଜା ବାରଇ ଅତି ସତ୍ୱର ॥୮୭॥
ବଢ଼ାଇ ବିଭବିଧି ପୁର କାମିନୀ । ଚଳଲେ ବରକନ୍ୟାଙ୍କୁ ଘେନି ॥୮୮॥
ଏ ବିଧି ବିଭା ହୋଇ ଗୃହକୁମର । ମିଳିଲେ ଯାଇ ଯେ ଯାହାପୁର ॥୮୯॥
କଲେକ ପୁରେ ଯାଇ ପଞ୍ଚଶରମି । ଶ୍ରୀରାମ ସୀତା ନୟନ ମିଶି ॥୯୦॥
କୋଣେ ଗୃହାନ୍ତ ଏକ ଆରକେ ପୁଣି । ବଦନ ନମ୍ର କରି ଧରଣୀ ॥୯୧॥
ସାରଣ ଆଚମନ ହେଲେ ହରଷ । ଏମନ୍ତେ ନିଶି ହୋଇଲା ଶେଷ ॥୯୨॥
ଶ୍ରୀରାମ ବିଳାସ ଏ ଅତି ହରଷ । ଛାନ୍ଦ ତ୍ରୟୋଦଶରେ ରହସ୍ୟ ॥୯୩॥
ସେବଣ ରଘୁପତି ଚରଣ ଦ୍ୱନ୍ଦ୍ୱ । ନୃପତି ଧନଞ୍ଜୟ ଆନନ୍ଦ ॥୯୪॥

●

---

୭୬ କ- କେ ବଂଛନ୍ତ ପ୍ରସୂନଂ
ଖ- କେ ପ୍ରଣନ (?)
ଗ- ୦ବଚ୍ଛେ ପ୍ରସୂନଂ
୭୭ କ- କଲେକ କୁଳ ବେନ
୭୮ ଖ- ସଙ୍ଖେଣ ଗ- ୦କୁମରଙ୍କ କର
୭୯ କ,ଗ- କୁଶରେ ଦେନଣଂ
୮୦ ଖ- ୦ନାରୀ ଗୋଟିଏ
୮୧ କ- ୦ବେଗେ କଲେଂ
୮୨ କ- ୦ବେଗେ କରେ ଦହିଲେଂ
ଖ- ୦ଲଜ୍ୟାକୁ ରାମ,
୮୩ କ,ଗ- ଥୋଇଲେ ପାତଠାବେ ତଣ୍ଡୁଳ
୮୪ କ,ଗ- ଅଙ୍ଗୁଷ୍ଠି ବେଗେ ରାମଂ
୮୬ କ- ୦ହେଲେ ଅଥିର
ଖ- କଲ୍ପ ବେନଂ ୦ଅଧିର
୮୭ କ- ଉତ୍ସୁକ ବେନ ନନ ନୋହଇ ଥିର
୮୮ କ- ପୁର କାମେନୀ ୦କନ୍ୟାବରଙ୍କୁ
୮୯ କ- ଏ ବିଭା ବିଧି
ଖ- ୦ବିଭା ବଢ଼ାଇଂ
୯୧ କ,ଗ- ୦ବଦନ ଲମ୍ବଂ
ଖ- ୦ବଦନ ନମ୍ରଂ
୯୨ କ- ୦ଆଶ୍ଚୋବନଂ
ଖ- ଆଚବନ
ଗ- ୦ଆଶ୍ଚେବନ
୯୩ କ,ଗ- ୦ତ୍ରୟୋଦଶର ହରସ
ଖ- ୦ତ୍ରୟୋଦଶର ହଣ
୯୪ ଖ- ନୃପତ ଧନଯଁସ୍ୱ ସାନନ୍ଦ

# ଚତୁର୍ଦ୍ଦଶ ଛାନ୍ଦ

## (ରାଗ—ବଙ୍ଗଳାଶ୍ରୀ)

ଶୁଣ ସୁଜନେ ଏହୁ ଅତି ରହସ୍ୟ ଦଶରଥ ମହୀପତି ।
ଚନ୍ଦନ ପନର କର୍ପୂର କୁଙ୍କୁମ ରାଜନେ ଦେଲେ ତଡ଼ିତି ।।୧।।

ଜନକ ରାଜନ ଅତି ହରଷରେ ଦେଲେ ସମ୍ଭାର ବହୁତ ।
ଦ୍ରବ୍ୟ ମୋତିମାଳ ନାନା ରତ୍ନଗଣ ଯାହାକୁ ଯାହା ଉଚିତ ।।୨।।

ହସ୍ତୀ ତୁରଙ୍ଗ ରତ୍ନଦାନ ନକର ଦେଇ ନୋହଣ ସନ୍ତୋଷ ।
ବୋଲନ୍ତି ନୃପତିଲକ ସୁଖ ଚାହିଁ ହୋଇ ଅଳ୍ପ ହସହସ ।।୩।।

ମୁ କସ ତୁମ୍ଭଙ୍କୁ ଦେବାକୁ ଭଜନ ତୁମ୍ଭେ ରଘୁକୁଳ ବର ।
ନନ୍ଦନୀ ରାମଙ୍କୁ ଦେଇଣ ଭଜିଲୁ ଆଜହୁଁ ଆମ୍ଭେ ତୁମ୍ଭର ।।୪।।

ଶୁଣି ଜନକ ନୃପତିର ବଚନ ବୋଲନ୍ତି ଅଯୋଧ୍ୟା ପତି ।
ତୁମ୍ଭେ ରାଜର୍ଷି ମାନଙ୍କ ଅଗ୍ରଣୀ ମିଥିଳା ପୁର ନୃପତି ।।୫।।

ସନ୍ତୋଷ କରି ପୂର୍ବେ ହର ତୁମ୍ଭର ବଂଶେ ଦେଇଥିଲ ଧନୁ ।
ନୟନେ ଯାହାକୁ ଦେଖନ୍ତେ ନୃପତି କମ୍ପେ ନିରନ୍ତର ତନୁ ।।୬।।

ତୁମ୍ଭ ସମ୍ବନ୍ଧ ମୋର ଯେବେ ହୋଇଲା ମୁହିଁ ହେଲି ଧନ୍ୟ ଜାଣ ।
ଯାହା ବଂଶେ ଜନ୍ମି ଚକ୍ରବର୍ତ୍ତୀ ହୋଇ ରଖିଅଛୁ ସୁରଗଣ ।।୭।।

ଆଜ ହିଁ ମନୁଷ୍ୟମାନଙ୍କ ନୟନେ ନିମିଷ ହୋଇ ରହିଛି ।
ସୁରପୁରେ ଯାର କୀର୍ତ୍ତି ପ୍ରସରିଛି ତାକୁ କେ ପାରିବ ବାଛି ।।୮।।

ଏମନ୍ତ ପ୍ରକାରେ ଏକ ଆରକରେ କହିଣ ମୃଦୁ ବଚନ ।
ସମସ୍ତ ରାଜନ ଗଣ ହେଳା ବିଜେ କଲେ ମଣୋହି ଭୁବନ ।।୯।।

ଷଡ଼ରସ ନାନା ବିଧିରେ ମଣୋହି ସାରି ଆଚମନ କରି ।
କର୍ପୂର ବଡ଼ଆ ପାନ ଲଗିହୋଇ ବିଜେ କଲେ ଦଣ୍ଡଧାରୀ ।।୧୦।।

---

୧।୧ କ- 'ଅତି' ନାହିଁ
ଖ- ୦କର୍ପୂର ପନରଂ
୨।୨ କ- ୦ନାନା ମୋତିଗଣଂ
ଗ- ୦ଯେହୁ ଉଚିତ
୩।୨ କ- ନୃପ ତିଳେକଂ
ଖ- ୦ନୃପତିଙ୍କର
୪।୧ ଖ- କସ ଦେବାକୁ ସର୍ଜନ ତୁମ୍ଭଙ୍କୁଂ
ଗ- ୦ରଘୁକୁଳବର
୫।୧ କ,ଗ- ଶୁଣି ଜନେକଂ
୫।୨ କ,ଗ- ୦ମାନଙ୍କେ ଅଗ୍ରଣୀଂ
୬।୨ କ,ଗ- ଯାହାକୁ ନୟନେଂ
୭।୧ କ,ଗ- ୦ଯେବେ ମୋରଂ
୭।୧ କ,ଗ- ୦ଯେବେ ମୋରଂ
ଖ- ତୁମ୍ଭ ସମ୍ପଦଂ
୮।୨ କ- ୦ନିତିଂ
୧୦।୧ କ- ୦ଆଞ୍ଚୋବନଂ
ଖ- ୦ଆଚବନଂ

ଏଥୁ ଅନନ୍ତରେ ରବି ଅସ୍ତହୋଇ ମଣ୍ଡିଲା ଚରମାଚଳ ।
କୋଳାହଳ ଧ୍ୱନି କରି ଗଗନରେ ଚଳିଲେ ପକ୍ଷୀମଣ୍ଡଳ ।।୧୧।।

କ୍ରମେ କ୍ରମେ ଦର ମୁଦ୍ରିତ ହୋଇଲା ନଳିନୀ କାନ୍ତ ନ ଦେଖି ।
ମଧୁପାନ ଛାଡ଼ି ମଧୁପ ମଣ୍ଡଳୀ ମନରେ ହୋଇଲେ ଦୁଃଖୀ ।।୧୨।।

ଚକ୍ର ଚକ୍ରବାକ ବିରସ ହୋଇଲେ ଆଚ୍ଛାଦିଲା ସନ୍ଧ୍ୟାଘନ ।
ସଙ୍କେତ ନାୟିକା ନାୟକ ଗମନେ ମଣ୍ଡନେ ଉତ୍ସୁକ ମନ ।।୧୩।।

ବେଳକୁ ବେଳ ସନ୍ଧ୍ୟାରଙ୍ଗ ଛୁଟିଲା ତମ ସାନ୍ଦ୍ର ହୋଇ ବଢ଼ି ।
ଜଳେ ବିକଶିତ ହୋଇଲେ ଅଳପ ହୋଇଣ କୁମୁଦ କଢ଼ି ।।୧୪।।

ବିରହେ ଭ୍ରମର ଭ୍ରମେ ଚଉଦିଗେ ଚୁମ୍ବନେ ହୋଇ ଲାଳସୀ ।
ମକରନ୍ଦ ଗନ୍ଧ ସମୀରେ ଚଞ୍ଚଳ ହୋଇଲା ଉଦରେ ପଶି ।।୧୫।।

ଏଥୁ ଅନନ୍ତରେ ଉଦୟ ଅଚଳ ଶିରେ ଶୋହେ ନିଶାପତି ।
ନିଶିମାନ ତମ ସ୍ପରଶେ ନାଶିଲା ଦେଖାଇ ତା ଅତି ପ୍ରୀତି ।।୧୬।।

ତକ୍ଷଣେ କଲା ଦିଗଙ୍ଗନା ମାନଙ୍କୁ ଆନନ୍ଦ ଶୁହ୍ମନକର ।
ତପନ ତାପେ ତାପିତ କୁମୁଦକୁ ଦେଲା ଆଲିଙ୍ଗନ ଉର ।।୧୭।।

ଏଥୁ ଅନନ୍ତରେ ଶ୍ରୀରାମ ଆନନ୍ଦ ଧରିଣ ମନେ ଅପାର ।
ଦିବ୍ୟ ବେଶ ହୋଇ ମଧୁଶଯ୍ୟାକୁ ସେ ବିଜେ କଲେ ରଘୁବୀର ।।୧୮।।

ଏମନ୍ତେ ରଜନୀ ଦେଖି ପ୍ରିୟସଖୀ ସୀତୟାର ବେଶ ପାଇଁ ।
ନାନା ରତ୍ନଗଣ କେୟୂର କଙ୍କଣ କଲେକ ଅଗ୍ରତେ ନେଇ ।।୧୯।।

କେବଣ ସଜନୀ ହେମ କଙ୍କତିକା ସାଞ୍ଜୋଇ ବାନ୍ଧିଲା କେଶ ।
ଯେଉଁ ଶୋଭା ନେତ୍ରେ ଦେଖିଲେ ସ୍ୱୟମ୍ଭୁ ହରିହର ହେବେ ବଶ ।।୨୦।।

କର୍ଣ୍ଣ ଉପରକୁ କଣ୍ଟୁ ଆଉଜାଇ ରଞ୍ଜିଲା ଜୁଡ଼ା ତରୁଣୀ ।
ପନ୍ତ ପନ୍ତ କରି ରଞ୍ଜିଲା ପାଶରେ ମୋତିର ଶିଖର ଶ୍ରେଣୀ ।।୨୧।।

---

୧୨।୧ କ,ଖ,ଗ- ୦କାନନ ଦେଖି (?)
୧୩।୨ କ- ୦ନାଏକା ନାଏକ ଗମନେ୦
ଖ- ୦ନାୟିକା ନାୟକଗଣ ମନେ (?)
ମଣ୍ଡନେ ଅତି ଉତ୍ସୁକ
୧୫।୧ କ- ୦ଚଉଦିଶେ୦
୧୫।୨ ଖ- ୦ହୋଇଣ ଉଦରେ୦
୧୬।୧ କ- ୦ଉଦୟ ଅଞ୍ଚଳ୦
୧୭।୨ କ,ଗ- ୦ଆଲିଙ୍ଗନଭର
୨୦।୧ କ- ୦କଙ୍କତିକା କରି ସାଜୋଇ ବାନ୍ଧିଲା୦
ଖ- ୦ପାଯୋଇ ବାନ୍ଧିଲା୦
ଗ- ୦କଙ୍କତିକା କରି ସଜାଇ୦
୨୦।୨ କ,ଗ- କେଉଁ ଶୋଭା୦ ଦେଖିଲା ୦ହେବ୦
ଖ- ଯେ
୨୧।୧ ଗ- ୦ଜୁଡ଼ା ରମଣୀ

ଉଣ୍ଡି ଉପରେଣ ବାନ୍ଧିଲ ସଜାଡ଼ି ନବମାଳିକା ପାଖୁଡ଼ି |
ଦେଖିବା ମାତ୍ରକେ ଶ୍ରୀରାମ ନୟନ ଭୃଙ୍ଗ ନ ପାରିବ ଉଡ଼ି ||୨୨||

ସ୍ବଚ୍ଛ ନବ କୁରୁଣ୍ଟକ ତଉକସି ମାଳ ତଥିପରେ ଶୋଭା |
ନବଘନ ସ୍ନେହ ବେଶ କି ଥକିତ ଚଞ୍ଚଳା ହୋଇଛି ଶୋଭା ||୨୩||

ତଥି ତଳରେ ଶୋଭିତ ନୀଳଝିଣ୍ଟି ମୋହୁଛି ମନନୟନ |
ଅତି ସ୍ନେହରେ ପ୍ରିୟସଖୀ ରଞ୍ଜିଣ କହେ ମଧୁର ବଚନ ||୨୪||

ଆଜ ରତିରେ ଜିଣିବୁରେ ସଜନୀ ରଘୁକୁଳ ବର ତୁହି |
ତା ସୁଖ ନୟନେ ଦେଖିଲେ ଯେବେ ତୁ ଅନଙ୍ଗେ ନୋହିବୁ ଦହି ||୨୫||

ସୁବର୍ଣ୍ଣ ଚମ୍ପକ ପାଖୁଡ଼ା ମୂଳରେ ରଞ୍ଜି କେବଣ ଚତୁରୀ |
ହସିଣ ଆଉ ପ୍ରିୟସଖୀ ଗୁହ୍ନିଁଣ କହେ ବଚନ ସୁଚତୁରୀ ||୨୬||

ବୋଲେ ସେ ସଜନୀ ଆଜ ରଜନୀରେ ଧନ୍ୟ ମଣିଲି ଜୀବନ |
ଜୀବଦାନ ଆଜ ପାଇବ ମଦନ ଦେଖି ଜାନକୀ ବଦନ ||୨୭||

ପନ୍ତ ପନ୍ତ କରି ଖଞ୍ଜିଲି ନେଇ ସେ ସୁବର୍ଣ୍ଣ କେତକୀ ଦଳ |
ମାର ନୀଳମଣି କଳସେ କି ଶୋଭା ତଡ଼ିତ କେତନ କୁଳ ||୨୮||

ଲଲାଟ ପଟେ ଶୋହେ ଚୂର୍ଣ୍ଣ କୁନ୍ତଳ ଏ କର୍ଣ୍ଣ ସେ କର୍ଣ୍ଣ ସରି |
ବିକଚ ହେମ ପଦ୍ମ ବ୍ୟଗ୍ରେ ବସିଛି କି ଏହା କତିରେ ଅଳି ||୨୯||

ଝିଲମିଲ ମାଳ ଖଞ୍ଜିଲେ ସଜନୀ ତଥି ଉପରେ ଶୋଭନ |
ଅନ୍ତମିତ ମୋତି ବସାଇ ରୁଚିର ତାରା କି ଶୋହେ ଗଗନ ||୩୦||

ରତନେ ଜଡ଼ିତ ଦିବ୍ୟ ହୀରସାର ମଧ୍ୟେ ଅର୍ଦ୍ଧ ଚନ୍ଦ୍ର ଶୋଭା |
ରଞ୍ଜିଲେ ସଜନୀ ଅତି ଯତ୍ନକରି ଦେଖି ହେବେ ରାମ ଲୋଭା ||୩୧||

ବିଚିତ୍ର ଶିଖର ମଣିର ତାଟଙ୍କ ବେନି ଗଣ୍ଡେ ଶୋଭାକର |
ଅଦଭୁତ ଯୁବା ଧୃତି ଧ୍ୱଂସନେ ଏ ଚନ୍ଦ୍ରେ କି ବେନି ମିହିର ||୩୨||

ତିଳ ପ୍ରସୂନ ନିନ୍ଦିତ ନାସା ପୁଟେ ରାଜେ ମାଣିକବସଣି |
ନିଶାନାଥ କୋଳେ ଅଙ୍ଗିର କି ଶୋହେ ଯୁବା ଧୃତି ହାତ ଜାଣି ||୩୩||

---

୨୨। କ,ଗ- ଭଣ୍ଡି ଅଭରଣ ବାନ୍ଧ ସଜାଡ଼ିଣ୦
୨୩। ଖ- ୦ହୋଇଛି ଲୋଭା
୨୫। ଖ- ୦'ଯିଣିମୁ'୦
ଖ- 'ରେ' ନାହିଁ
୨୬। ଖ- ୦'ବଚନ'
୨୯। ଖ- ୦'ପଦ୍ମ ବେଶ ବସିଛନ୍ତି ଏହା କତିର ଅଳି
୩୦। ଖ- ଅପ୍ରମୋତି ପନ୍ତି୦
୩୧। ଖ- ୦ଜନକର୍ତ୍ତ୦ (?)
୩୨। ଖ- ୦'ଏ'୦ ନାହିଁ

୨୪ ପଦଠାରୁ ୩୩ ପଦ ପର୍ଯ୍ୟନ୍ତ 'କ' ଓ 'ଗ'ରେ ନାହିଁ କେବଳ 'ଖ'ରେ ଅଛି ।

ନାନା ରତନ ମାଳ କଣ୍ଠ ଦେଶରେ ଲମ୍ବାଇଲେ ନେଇ ଆଳୀ ।
ଧ୍ୱଂସିବ ମଦନ ରାଜାର ଧଇର୍ଯ୍ୟ ଆଜ ନଷ୍ଟେ ମହୀସ୍ଥଳୀ ।।୩୪।।

ଚନ୍ଦ୍ରମା ଚନ୍ଦନ ଯେନ ପ୍ରିୟସଖୀ ଶ୍ରୀଅଙ୍ଗ କଲେ ସାମଳ ।
ହେମ ଲତିକାକୁ ଆଚ୍ଛାଦ ରହିଲା ଶରଦ ମେଘ ପଟଳ ।।୩୫।।

ପୀନସ୍ତନ ପରେ କୁରଙ୍ଗ ମଦରେ ଲହିଲେକ ପତ୍ରାବଳୀ ।
ପୁଣ୍ଡରୀକ କୋଷ ଯୁଗ କି ଆଚ୍ଛାଦ ଅଛନ୍ତି ଅଳି ପଟଳୀ ।।୩୬।।

ମର୍କତ ବାହୁଟୀ ଭୁଜରେ ଖଞ୍ଜିଣ ବୋଲନ୍ତି ଚତୁରୀଗଣ ।
ଏ କାମ ପାଶ ସାକଲ୍ କି ସଜନୀ ରଣେ ଜିଣିମ ଈଶାନ ।।୩୭।।

ମଣିବନ୍ଧରେ ମଣି ଚୂଡ଼ି ଶୋଭିତ ଉପମା ଦେବାକୁ ନାହିଁ । ।
ଜଗତ୍ରୟ ଶୋଭା ଆଳୟ ବୋଲନ୍ତି ସୀତାୟା ପାଣିକି ଚାହିଁ ।।୩୮।।

ଚମ୍ପକଳୀଜିତ ଅଙ୍ଗୁଳି ଉପରେ ଶୋଭିତ ଦିବ୍ୟ ମୁଦ୍ରିକା ।
ତୀକ୍ଷ୍ଣ ନଖଗଣ କି କାମ ବିଶିଖ ସାଜନ୍ତି ରଣେ ବାଳିକା ।।୩୯।।

ସୁବର୍ଣ୍ଣ ପଦ୍ମିକା ଯେନ ଗୁନ୍ଥି ଅଛି ଚୀନ ଅଂଶୁକ ଅନ୍ତର ।
ଉଚ୍ଛି କୁଞ୍ଚିକର କଟି ବେଢ଼ାଇଲେ ରଞ୍ଜିଲେ କାଞ୍ଚୀ ସତ୍ୱର ।।୪୦।।

ହଂସ ଗମନୀ ପାଦେ ଶୋଭା ହଂସକ କରଇ ମଧୁର ଧ୍ୱନି ।
ଶ୍ରବଣେ ଶୁଣିଲା ମାନବେ ଯାହା ସେ ମୋହ ହେବ ଚିତ୍ତଯୋନି ।।୪୧।।

କର୍ପୂର ଧୂଳି ଚୀନ ଚେଳ ମସ୍ତକ ଉପରେଣ ଘୋଡ଼ାଇଲେ ।
କର୍ପୂର ବଡ଼ିଆ ସଜାଡ଼ି ସଜନୀ ଜାନକୀଙ୍କି ଭୁଞ୍ଜାଇଲେ ।।୪୨।।

ରଜନୀ ପ୍ରଥମ ଯାମର ଅନ୍ତରେ ସଜନୀ କି ସଙ୍ଗେ ଯେନ ।
ମଧୁଶଯ୍ୟା ପୁର ସନ୍ନିଧିକୁ ଧୀରେ ନେଲେ ମରାଳ ଗମନୀ ।।୪୩।।
ରତନ ମନ୍ଦିର ଅତି ମନୋହର ଚତୁଷ୍ଟି ସୁବର୍ଣ୍ଣମାନ ।
ଖଟିଛନ୍ତି ଦିବ୍ୟ ମୋତିଗଣେ ତୋରା ବିତାନ ଅତି ରଞ୍ଜନ ।।୪୪।।
ମଧ୍ୟେ ଖଟଦୋଳି ଅଛଇ ସଜାଡ଼ି ହଂସତୂଳୀ ତୂଳି ରୁଚିର ।
ସେବତୀ ପାଖୁଡ଼ା ଅତି ମନୋହର କର୍ପୂର ଚୂରେ ରୁଚିର ।।୪୫।।

---

୩୪।୧ କ,ଗ- ୦ଶଙ୍ଖକଣ୍ଠ ଦେଶରେ୦
୩୪।୨ କ- ୦ଧଇର୍ଯ୍ୟ୦
୩୫।୨ ଖ- ୦ସୁଛାଦ୦
୩୬।୨ କ,ଗ- ୦ଦଶନ୍ତି ଅଳି୦
୩୭।୧ କ- ମୃକତ୦
୩୯।୨ କ,ଖ- ୦ରଣେ କାଳିକା

୪୧।୨ କ,ଗ- ୦ଚିତ୍ତଜନ୍ମି
୪୨।୧ କ,ଗ- ୦ଉପରରେ୦
୪୩।୨ ଖ- ମଧୁସେଯ୍ୟାପୁର ସନ୍ନିଧିକୁ ବେଗେ୦
୪୪।୨ କ- ଖଞ୍ଜି ଚନ୍ଦ୍ରି୦
କ,ଖ,ଗ- ୦'ତୋରା'୦ ନାହିଁ
୪୫।୧ କ,ଗ- ୦ଖଟଇ ସଜାଡ଼ି୦

ସେ ପୁରେ ପ୍ରବେଶ ହୋଇଣ ଶ୍ରୀରାମ କରନ୍ତି ବସି ବସୁର ।
ଏତେବେଳ ଯାଏ ନଇଲା ସୁନ୍ଦରୀ ସେହୁ ମୋ ପ୍ରାଣ ଈଶ୍ୱର ।।୪୬।।

କେମନ୍ତ ରୂପ ସେ ହୋଇଥିବ ଆଜ ଦେଖିବ ମୋର ନୟନ ।
ନୟନ ବେନି ଏ ହୋଇବ କୃତାର୍ଥ ଦେଖି ତା ଚନ୍ଦ୍ର ବଦନ ।।୪୭।।

କି କି ପ୍ରକାରେ ସେ କହିବ ବଚନ ଶୁଣିବ ଶ୍ରବଣ ମୋର ।
ଶ୍ରବଣ ମାତ୍ରକେ ଜୀବନ ମୋହର ଲଭିବ ଅମୀୟ ପୁର ।।୪୮।।

ନିକି ମୃଦୁ ବାଣୀ ନ କହେ ମିତଣୀ ଏଥକୁ କରୁଛି ଶଙ୍କା ।
ଶଙ୍କା କରାଉଛି ମୋତେ ମନମଥ ଲଭିଲେ ପାଇବ ଦକା ।।୪୯।।

ଏମନ୍ତେ ଶ୍ରୀରାମ କରନ୍ତେ ବସୁର ସଖୀଗଣ ଭୁଲେ ବାଳା ।
ମନ୍ଥର ଗମନ କରନ୍ତେ ସୁସ୍ୱର ଶୁଭଇ କଟୀ ମେଖଳା ।।୫୦।।

ରଣ ରଣ ବୋଲି ଡାକେ ନିରନ୍ତରେ ମଞ୍ଜୀର ପାଦେ ତାହାର ।
ରଣରଣକ ଦାରୁଣ ରଣେ ଆଜ ହୋଇବ ମୋରେ କୋୟର ।।୫୧।।

ନ ଚଳ ଚଳଇ ମନ୍ଥର ଗମନା ସାତ୍ତ୍ୱିକେ ପୂରିତ ଅଙ୍ଗ ।
କହନ୍ତେ ବାଣୀ ତା ହୋଏ ସ୍ୱରଭଙ୍ଗ ଅଙ୍ଗେ ତର୍ଜଇ ଅନଙ୍ଗ ।।୫୨।।

ମନ୍ଦିର ଦ୍ୱାରରେ ପ୍ରବେଶ ହୋଇଲା ଦେହଳୀ ସେ ନ ଲଙ୍ଘିଲା ।
ସୁର ତରଙ୍ଗିଣୀ ସେତୁ ପାଇ ଯେହ୍ନେ ପ୍ରବାହ ମନ୍ଥର ହେଲା ।।୫୩।।

ସଜନୀମାନେ ବୋଲନ୍ତି ଶୁଣ ସଖୀ ନ କର ଗତି ମନ୍ଥର । ।
ଦେହଳୀ ବଳିଲେ ସିନା ଶ୍ରୀରାମର ଦେଖିବୁ ସୁଖ ସୋଦର ।।୫୪।।

ପ୍ରିୟସଖୀ ବାଣୀ ଶୁଣି ନମ୍ରମୁଖୀ କଷ୍ଟେ ଲଙ୍ଘିଲା ଦେହଳୀ ।
ଯାଅ ବୋଲି ପେଲି ଦେଇ ଶୀଘ୍ର ହୋଇ ଅନ୍ତର ହୋଇଲେ ଆଳୀ ।।୫୫।।

ମନ ଉତ୍ସୁକ ଲଜ୍ଜା କରେ ବାରଣ ଉଭୟ ସଙ୍କଟେ ପଡ଼ି ।
ଭିତ୍ତିକି ଅପସରି କରି ରହିଲା ମଦନ ଶାୟକେ ଜଡ଼ି ।।୫୬।।
ଦେଖିଣ ସୀତୟା ବଦନ ଶ୍ରୀରାମ ପଲଙ୍କୁ ଓହ୍ଲାଇ ଆସି ।
ବେନି କର ଧରି କହନ୍ତି ଆଶ୍ୱାସି ତୁ ମୋର ହୃଦୟବାସୀ ।।୫୭।।

---

୪୮।୧ ଖ- କି ପ୍ରକାରେ ସେହୁଂ
୪୯।୧ ଖ- ୦କରିଛୁ ଶଙ୍କା
୪୯।୨ କ,ଗ- ୦ମୋତେ ମନୋମଥଂ
୫୧।୨ କ,ଗ- ୦ମୋର କୋଏର
ଖ- ୦କୋଠର
୫୨।୧ କ,ଖ-୦ପୂରିଲ ଅଙ୍ଗ
୫୨।୨ କ- ୦ଅଙ୍ଗେ ତର୍ଜଇଂ
ଖ- ୦ଅଙ୍ଗେ ଭଜଇଂ
୫୩।୨ ଖ- ୦ପାଇ ଯେସ୍ତେଂ
୫୪।୨ କ,ଖ,ଗ- ୦'ସୋଦର' ପାଠ ମିଳୁଛି । 'ସୁନ୍ଦର' ବା 'ସହୁର' ମଧ୍ୟ ସମ୍ଭାବ୍ୟ ପାଠାନ୍ତର ।
୫୫।୧ କ,ଗ- ୦କଣ୍ଟେ ଲଙ୍ଘିଲାଂ
୫୬।୨ କ- ଗ୍ରତିକି ଅପସରଂ ଶାଏକଂ
ଖ- ୦ସାଏକେଂ
ଗ- ୦ସାସ୍ୱେକଂ
୫୭।୧ କ,ଗ- ୦ଓହ୍ଲାଇ ବସି

ଆଲିଙ୍ଗନ କରି ପଲଙ୍କ ଅଙ୍କରେ ବସାଇଣ ରଘୁମଣି ।
ବୋଲନ୍ତି ତ, ମୋର ପ୍ରାଣ ପ୍ରେୟତମା ମୁଁ ତୋର ଦାସ ସଜନି ।।୫୮।।

କହ ବାଣୀ ହର ବେଗେ କାମଜ୍ୱର ନ ଧର ବେଗେ ବଧୂର ।
ହର ପରଶନେ ଭଙ୍ଗି ଧନୁବର ହୋଇଲି ତୋର କୋପୂର ।।୫୯।।

ଏମନ୍ତ ଶ୍ରୀରାମ ବଚନ ମାଧୁରୀ ବିନୟ ଶୁଣିଣ ବାଳୀ ।
ହୃଦେ ଭେଦିଲା କାମଜୟୁ ନାରାଚ ପୁଲକ କପୋଳ ପାଳି ।।୬୦।।

ସ୍ୱେଦ ଜଳ କଣ ମୁଖେ ବିରାଜିଲା କମ୍ପିଲା ତନୁ ଲତିକା ।
ଶୁଖିଲା ଦଶନ ବସନ ତାହାର ନୃତ୍ୟ କଲା କୁଚ କେକା ।।୬୧।।

ରାମ ରାମମୁଖ ଚନ୍ଦ୍ର ସୁଧା ଆଶେ ନେତ୍ର ଚକୋର ଉଛନ୍ନ ।
ନ ରହି ଚଞ୍ଚଳ ହୋଇ ନିରନ୍ତର ବାରିଲେ ନୋହେ ବାରଣ ।।୬୨।।

ଶ୍ରୀରାମ ବିନୟ ବଚନେ ରମଣୀ ଚିତ୍ତ ଆମୋଦିତ ହୋଇ ।
ନାନା ପ୍ରକାରେ କେଳିରେ ମନ ହରି କହଇ ଅତି ବିନୋୟି ।।୬୩।।

ତୁମ୍ଭ ଚରଣ ଯୁଗରେ ମୁହିଁ ଏକା ଦାସୀ ହୋଇଥିବି ପୁଣି ।
ଏହି ବର ମୁଁ ମାଗଇ ମହାପ୍ରଭୁ ଶୁଣିମା କୋଦଣ୍ଡ ପାଣି ।।୬୪।।

ଶୁଣି ସୀତା ବାଣୀ ରଘୁକୁଳମଣି ସନମତ ତାକୁ କଲେ ।
ହୁତବହ ସାକ୍ଷୀ କରି ବେଦଜନେ ଆନନ୍ଦ ମନେ ହୋଇଲେ ।।୬୫।।

ପାହିଲା ରଜନୀ ତୂର୍ଯ୍ୟରେ ଶଙ୍ଖଧ୍ୱନି ଶଯ୍ୟା ତେଜି ରଘୁପତି । ।
ସଖାଗଣ ସଙ୍ଗେ ପ୍ରବେଶ ହୋଇଲେ ଅତି ହିଁ ହରଷ ମତି ।।୬୬।।

ଏଣେ ଦାସୀଗଣ ସୀତୟାଙ୍କୁ ନେଲେ ସାରିଲେ ସେ ନିତ୍ୟକର୍ମ ।
ଶ୍ରୀରାମ ରୂପ ଏକା ମନେ ଭାବଇ ପ୍ରତିଦିଶେ ସେଇ ଭ୍ରମ ।। ୬୭।।

---

୫୮।୧ କ,ଗ- ୦ପଲଙ୍କ ଉପରେ୦
୫୯।୧ କ,ଗ- ୦ନ ଧରେ ମନେ୦
୫୯।୨ କ- ୦ଭାଙ୍ଗି ଧନୁବର୦
୬୦।୧ କ,ଗ- ଏମନ୍ତ ବଚନ ମାଧୁରୀ ବିନୟ ଶୁଣିଣ ଜନେକ ବାଳୀ
୬୦।୨ କ,ଗ- ୦ଜସ୍ୱେ୦
ଖ- ୦ନାରାଚ୦
୬୧।୧ କ,ଗ- ୦ସ୍ୱେଦ କଣ୦
୬୨।୧ କ,ଗ- ୦ସୁଧା ପାଶେ୦
୬୨।୨ ଗ- ୦ବୋଇଲେ ନୋହେ୦
୬୩।୧ କ,ଗ- ବଚନ ବିନୟେ ୦ଚିତ୍ତ ଆନନ୍ଦିତ୦
୬୩।୨ ଖ- ୦ମନବର୦
୬୫।୧ କ,ଗ- ଶୁଣିଣ ତା ବାଣୀ୦
୬୬।୧ କ,ଗ- ୦ଶଙ୍ଖଧ୍ୱନି୦ ସେଜ୍ଜା୦
ଖ- ୦ସେଜ୍ୟା୦
୬୭।୧ ଖ- ୦ଦାସୀମାନେ୦
୬୭।୨ ଖ- ୦ଏକାହୃଦେ୦

ସୀତା ରୂପ ଭାବ ରଘୁକୁଳ ନାଥ କଷ୍ଟେ ବଞ୍ଚିଲେ ବାସର ।
ନାନା ବେଶ ହୋଇ ଅନ୍ତି ହୁଁ ଆନନ୍ଦେ କରନ୍ତି ନିତ୍ୟେ ବେହାର ।।୬୮।।

ଶ୍ରୀରାମ ବିଳାସ ଚତୁର୍ଦ୍ଦଶ ଛାନ୍ଦ ଶୁଣ ହେ ରସିକ ଜନ । ।
ସେ ରାମ ପାଦ ଯୁଗ ନିତ୍ୟେ ଭାବଇ ନୃପ ଧନଞ୍ଜୟ ମନ ।।୬୯।।

●

## ପଞ୍ଚଦଶ ଛାନ୍ଦ

### (ରାଗ— କେଦାର ଚକ୍ରକେଳି ବାଣୀ)

| | | | |
|---|---|---|---|
| ଏଥୁ ଅନ୍ତରେ ଦଶରଥ ରାଏ | । | ଜନକଙ୍କୁ କହେ ଅତି ବିନୟେ | ।।୧।। |
| ଆଜୁଁ ଅଯୋଧ୍ୟା ମିଥିଳା ନଗର | । | ତୁମ୍ଭେ ପାଳିବ ଶୁଣ ଦଣ୍ଡଧର | ।।୨।। |
| ଆମ୍ଭେ ଆଜହୁଁ ହୋଇଲୁ ତୁମ୍ଭର | । | ଏଥେ ନ କରିବ ଆଉ ବିଚାର | ।।୩।। |
| ରାମ ଭରଥ ଲକ୍ଷ୍ମଣ ଶତ୍ରୁଘନ | । | ଏହୁ ଗୃହରହୁଁ ତୁମ୍ଭର ନନ୍ଦନ | ।।୪।। |
| କନ୍ୟାମାନଙ୍କୁ ବିଭା କରାଇଲ | । | ପୂର୍ବ ବନ୍ଧୁ ପଣ ହୁଁ ବିସ୍ତାରିଲ | ।।୫।। |
| ବିଭା ମଙ୍ଗଳ ଶୁଭେ ହେଲା ଶେଷ | । | ଆଜ୍ଞା ହେଉ ଯିବୁ ନିଜ ନିବାସ | ।।୬।। |
| ଶୁଣି ଜନକ ଦଶରଥ ବାଣୀ | । | ବିଜେ ସମ୍ଭାର କଲେ ରଘୁମଣି | ।।୭।। |
| ଷଣ୍ଢ ଆଭାର ନିତମ୍ବ ଆଣିଲେ | । | ଦିବ୍ୟ ବିମାନ ମାନ ସଜ କଲେ | ।।୮।। |
| ରାଜ କୁମାରୀ ଗମନ୍ତେ ହରଷେ | । | ମାତାଗଣ ବେଢ଼ିଣଛନ୍ତି ପାଶେ | ।।୯।। |
| ବହୁ ପ୍ରକାରେ କହିଲେ ବଚନ | । | ପତିପାଦେ ସେବିବ ଅନୁକ୍ଷଣ | ।।୧୦।। |

୬୮।୨ କ,ଗ- ୦ନିତ୍ୟେ ବିହାର

୬୯।୨ କ,ଗ- ନିତ୍ୟକର୍ମ ଭାବଇ ନୃପ ଧନୁର୍ଜୟ୦

---

୧ କ,ଗ- ୦ଅନନ୍ତରେ୦ (?)
ଖ- ୦ବିନଏ

୪ କ,ଗ- ୦ଲକ୍ଷଣ୦
ଖ- ୦ଭରତ ଲକ୍ଷଣ୦ ୦ସ୍ୱତଭ୍ରାତ ରୁମ୍ଭ ନନ୍ଦନ

୬ କ,ଗ- ୦ଆଜ୍ଞା ହୋଇଯିବୁ ଯେ ନିଜବାସ

ଖ- ୦ଆଜ୍ଞାହୁଅ୦

୮ କ- ୦ଆଭରସଚସ୍ତ୦
ଖ- ୦ଅଭିରଣଚସ୍ତ୦
ଗ- ସ୍ୱର୍ଣ୍ଣ ଆଉ ରସଚସ୍ତ୦

୯ ଖ- ୦ବେଢ଼ିଛନ୍ତି (?)

ଭ୍ରାତା କହିଲେ ଆନ ଆନ ବାଣୀ । ମନେ ନ ଘେନିବ ମୋର ଦୁଲଣୀ ॥୧୧॥
ଶାଶୁ ଶଶୁର ପଦେ ସେବିଥିବ । ଆମ୍ଭ କୁଳର ଭାଗ୍ୟ ପ୍ରକାଶିବ ॥୧୨॥
ଏହି ସମୟେ ଡାକ ପ୍ରତିହାରୀ । ନୃପବର ଆଦେଶ କହିକରି ॥୧୩॥
କହେ ମୃଦୁସ୍ମିତ ଗଣ ହକାରି । ବେଗେ ବିଜୟେ କରିଅ କୁମାରୀ ॥୧୪॥
ଭଲ ଲଗ୍ନ ଯେ ବେଳ ହୋଇଅଛି । ନୃପ ଛାମୁରେ ଜୋଷୀ କହିଅଛି ॥୧୫॥
ଏହି ସମୟେ ଶତକୁମ୍ଭ ତୂରି । ଧ୍ୱନି ରହିଲା ଗଗନ ଆବୋରି ॥୧୬॥
ଶୁଭେ ବିବିଧ ବାଦ୍ୟମାନ ଧ୍ୱନି । ହୁଳହୁଳି ଦିଅନ୍ତି ପୁର କାମିନୀ ॥୧୭॥
ଖଇ ଚମର ପଡ଼େ ନିରନ୍ତର । ଧୀରେ ଧୀରେ ଆସନ୍ତି ରମାବର ॥୧୮॥
ବିଜେ କଲେ ବିମାନ ଅଙ୍କେ ଯାଇ । ପୁଷ୍ପ ବୃଷ୍ଟି କରନ୍ତି ସଖୀ ରହିଁ ॥୧୯॥
ହସ୍ତ କଙ୍କଣମାନ ଧ୍ୱନି କରି । ନାହିଁ ଉପମା ଦେବା ତିନିପୁରୀ ॥୨୦॥
ଶୁଭେ ଜୟ ଜୟ ମୁଖେ ନିଃସ୍ୱନ । ଦିବ୍ୟ ନାରୀ ବରଷନ୍ତି ପ୍ରସୂନ ॥୨୧॥
ରତ୍ନ ବିମାନ ଦିଶେ ଅତି ରୁଚି । ସ୍ୱୟଂ ନିର୍ମାଣ କଲକ ବିରଞ୍ଚି ॥୨୨॥
ଷଣ୍ଡ ଆଭୀରଗଣ ଘେନିକରି । ଗମିବାରେ ଅବନୀତଳ ପୂରି ॥୨୩॥
ପାଶେ ଅଛନ୍ତି ପ୍ରିୟସଖୀ ଗଣ । ଦିବ୍ୟ ବିମାନ ମାନଙ୍କେ ବସିଣ ॥୨୪॥
ଧୀରେ ଧୀରେ ଚଳଇ ସର୍ବବଳ । ସୁଖରେଳେ ଉଚ୍ଛୁଳେ ନଭତଳ ॥୨୫॥
ରାମ ଲକ୍ଷ୍ମଣ ଭରତ ଶତ୍ରୁଘନ । ସଙ୍ଗେ ଘେନିଣ ଦଶରଥ ରାଣ ॥୨୬॥
କେତେ ଦୂର ଗଲେ ଅତି ହରଷେ । ଯାଇ ମିଳିଲେ ଗୋଦାବରୀ ପାଶେ ॥୨୭॥
ବୀର ତୂର ଶୁଭିଲା ଘୋର ରଡ଼ି । ବନଚରେ ଗମିଲେ ବନଛାଡ଼ି ॥୨୮॥
ସେହି ବନେ ଥିଲେ ଭୃଗୁ ନନ୍ଦନ । କର୍ଣ୍ଣେ ଶୁଣିଲେ ବୀର ତୂର ସ୍ୱନ ॥୨୯॥
ଧାଇଁ ଚଳିଣ କୋପେ ପରଚଣ୍ଡ । ଶତ୍ରେ ନାହିଁ ତ ନୃପ ଏ ବ୍ରହ୍ମାଣ୍ଡ ॥୩୦॥
ଏକବିଂଶ ବାର କଲି ନିକ୍ଷତ୍ର । ମୋର କୋପ ସହିବେ କେ ବା ପାତ୍ର ॥୩୧॥

---

୧୧ କ- ୦ଘେନିବଟି୦, ଖ- ଭ୍ରାତା୦
ଗ- ତଥ୍ୟ୦
୧୩ ଖ- ୦ପ୍ରତିହାରୀ । କହେ ମୃଦୁସ୍ମିତଗଣ ହକାରି
୧୪ କ- ନୃପବର ଆଦେଶ କହିକରି୦
୧୬ କ- ୦ଶଙ୍ଖଧ୍ୱନି ତୂରି୦
ଗ- ୦ଶଙ୍ଖଧ୍ୱନି୦, ଧ୍ୱନି୦
୧୭ କ,ଗ- ୦ଦେଲେ ପୁର କାମିନୀ
୨୨ କ- ୦ସ୍ୱୟଂ ନିର୍ମାଣ୦
ଖ- ୦ସ୍ୱୟେ୦
୨୩ ଖ- ଷଣ୍ଡ ଆଭୀରଗଣ
୨୫ କ,ଗ- ୦ମୁଖେଖୋଳେ୦
୨୬ ଖ- ରାମଭରତ ଲକ୍ଷଣ୦
୨୭ କ- ୦ଗଲେ ଅତି ରହସ୍ୟେ୦
୨୮ ଖ- ୦ବଚନରେ ଗମିଲେ୦
୨୯ ଖ- ସେହି ସ୍ଥାନେ୦
୩୧ କ,ଗ- ୦ନିକ୍ଷେତ୍ର୦

ମୁଁ ତ ବୀରଙ୍କ ପରେ ବୀରବର । ଏହୁ ବୀରତ୍ୱର ଶୁଭେ କାହାର ॥୩୨॥
ଆଜ ଜାଣିମା ତାର ବୀରପଣ । ପ୍ରାଣ ଛେଦନ ଯିବ ଜନ୍ତୁଗଣ ॥୩୩॥
ପର୍ଶୁ ଛେଦନ କରିବ ଖଣ୍ଡ ଖଣ୍ଡ । ଶରେ ମନ୍ଥିବ ଆଜ ତାର ପିଣ୍ଡ ॥୩୪॥
ଏତେ ବୋଲି କ୍ରୋଧରେ ପର୍ଶୁଧର । ତପ ସ୍ଥାନ ତେଜ ହୋଲେ ବାହାର ॥୩୫॥
ଏହି ସମୟେ ଦଶରଥ ବାଳେ । ଅନ୍ତରୀକ୍ଷୁ ଉଲ୍କା ବରଷିଲେ ॥୩୬॥
ବାମ କରଣ ଗଲେ ଖଗଗଣ । ମୃଗମାନେ କଲେ ଶୁଭ ଲକ୍ଷଣ ॥୩୭॥
ଅଦଭୁତେ କମ୍ପିଲ ଭୂଅଖଣ୍ଡ । ଛୁଡ଼ି ପଡ଼ିଲେ ଗିରିବର ମୁଣ୍ଡ ॥୩୮॥
ସର୍ବ ଦିଶେ ତମ ହେଲ ଆଚ୍ଛନ୍ନ । ଧୂଳି ଉଡ଼ନ୍ତେ ନ ଦିଶେ ଗଗନ ॥୩୯॥
ଶିବାମାନେ ଅଗ୍ରତେ ଧ୍ୱନି କଲେ । ଊର୍ଦ୍ଧ୍ୱମୁଖେ ଭାସ୍କରଙ୍କୁ ଚାହିଁଲେ ॥୪୦॥
ଏହୁ ହେଲ ଉତ୍ପାତ ମହାଘୋର । ପକ୍ଷୀଗଣରେ ଯେହୁ ଭୟଙ୍କର ॥୪୧॥
ତାହା ଦେଖି ଚିତ୍ତରେ ଦଶରଥ । ଏହୁ ଶୁଭୁଛି ବିଷମ ଅନର୍ଥ ॥୪୨॥
ବ୍ରହ୍ମାନନ୍ଦନ ପାଶେ ହେଲେ ଯାଇ । କରଯୋଡ଼ି ବୋଲେ ଶୁଣ ଗୋସାଇଁ ॥୪୩॥
ମୋର ହୃଦୟ ହୋଏ କମ୍ପମାନ । ଦିଗମାନେ ଦିଶୁଛନ୍ତି ବିଷଣ୍ଣ ॥୪୪॥
କିସ କାରଣେ ଖଗ ମୃଗମାନେ । ଶୁଭ ଅଶୁଭ ସୂଚନ୍ତି ବହନେ ॥୪୫॥
ଶୁଣି ବୋଲନ୍ତି ବ୍ରହ୍ମାର ନନ୍ଦନ । ଯାହା ପଚାରିଲୁ ଶୁଣ ରାଜନ ॥୪୬॥
ଏହୁ ବନେ ଅଛଇ ପର୍ଶୁଧର । ଶୁଣି ଏ ତୋର ବାଦ୍ୟ ବୀରତ୍ୱର ॥୪୭॥
ଆସୁ ଅଛନ୍ତି ଚରି ଏହି ସ୍ଥାନେ । ମୋର ଭାବୁ ଅଛଇ ଯେହ୍ନେ ମନେ ॥୪୮॥
ଏହି ସମୟେ ଦିଶେ ପର୍ଶୁଧାରୀ । ତେଜ ଅଛି ଦିଗଗଣ ଆବୋରି ॥୪୯॥
ହସ୍ତେ ଧରିଛି ବଇଷ୍ଣବୀ ଧନୁ । ଯାହା ଦେଖନ୍ତେ କମ୍ପେ ବୀରତନୁ ॥୫୦॥
ଏହୁ ଅର୍ଜୁନ ଭୁଜଚ୍ଛେଦକାରୀ । ସେହୁ ପରଶୁ କରେ ଅଛି ଧରି ॥୫୧॥

---

୩୪ କ,ଖ- ପ୍ରସୁ ଛେଦନ୦
ଗ- ୦ଶରେ ମନ୍ଥିବ ଆଜ ତାର ମୁଣ୍ଡ
୩୫ କ- ୦ବୋଲି କ୍ରୋଧରେ ପ୍ରସୁଧର୦
ଖ- ବୋଲିଣ କ୍ରୋଧେ୦
୩୬ ଖ- ୦ଦଶରଥ ବଳେ । ଅନ୍ତରୀକ୍ଷୁ ଉଲୁକା୦
୩୭ କ,ଗ- ୦କରଣ କଲେ୦
୩୯ ଖ- ସେହି ଦଣ୍ଡେ ତମ ହେଲ ଆଛାନ
୪୦ ଖ- ୦ଧ୍ୱନି କଲେ୦
୪୧ କ,ଗ- ୦ପକ୍ଷୀଗଣଙ୍କର ଯେହୁ୦
୪୨ କ- ଏହୁ ସୁଚୁଅଛୁ ବିଷମ ଅନର୍ଥ
୪୪ କ,ଗ- ୦ଦିଶୁଛନ୍ତି ବିଚ୍ଛନ୍ନ
ଖ- ୦ବିକ୍ଷନ୍ନ
୪୫ କ,ଗ- କିସ ପ୍ରକାରେ ଖଗମୃଗ୦
୪୬ ଙ- ୦ପୁର ରାଜନ
ଗ- ୦ଶୁର ରାଜନ
୪୭ କ- ପ୍ରସୁଧର
୪୮ କ,ଗ- ୦ଏହିସ୍ଥାନେ୦ ଏହିମନେ
୪୯ କ ୦ପ୍ରସୁଧାରୀ
୫୧ କ,ଗ- ଯେହୁ ଅର୍ଜୁନ୦ ସେହି ପରଶୁ ଅଛୁ କରେ୦

ଏହୁ ପ୍ରକାରେ ଦେଖି ତାର ବର୍ତ୍ତି । ଦଶରଥ ହାରେ ନିଜ ଚେତନ ।।୫୨।।
ମୁନି ବଶିଷ୍ଠ ସଙ୍ଗେ ଘେନିକରି । ତାଙ୍କ ପାଦେ ନମିଲା ଦଣ୍ଡଧାରୀ ।।୫୩।।
ହୋଇ କହଇ ଅତ୍ୟନ୍ତ ବିନତ । ମୋତେ କୃପା କରିବା ଭୃଗୁପତି ।।୫୪।।
କ୍ଷମାକର ସକଳ ଦୋଷ ମୋର । ମୁଁ ଯେ ଧରୁଛି ତୋ ବେନି ପୟର ।।୫୫।।
ବୃଦ୍ଧକାଳେ ହେଲା ମୋର ନନ୍ଦନ । ଏହା ଜାଣି ତ ଅଛ ତପୋଧନ ।।୫୬।।
ବିଭା କରାଇ ନେଉଅଛି ପୁର । ତୁମ୍ଭେ ଏହାକୁ ରଖ ମୁନିବର ।।୫୭।।
ଏହୁ ବଚନ ନ ଶୁଣି ରାଜାର । ରାମ ସମୀପେ ମିଳେ ପର୍ଶୁଧର ।।୫୮।।
ବୋଲେ ରହ ରହ ତୁ ହୋ ଶ୍ରୀରାମ । ମୋର ତୁଲେ କର ଆଜ ସଂଗ୍ରାମ ।।୫୯।।
ତୁ ଯେ ଭାଙ୍ଗିଲୁ ହରର କୋଦଣ୍ଡ । କେତେ ବଳ ବହେ ତୋ ଭୁଜଦଣ୍ଡ ।।୬୦।।
ଆଜ କରିବି କୁଠାର ପ୍ରହାର । ମୁଁ ଯେ ବୋଲାଇ ବୀରଙ୍କର ବର ।।୬୧।।
ମୋର ନାମ ସମାନ ତୋର ନାମ । ଏହା ଶୁଣନ୍ତେ ହୁଏ ମୋର ଶର୍ମ ।।୬୨।।
ଅତି ପୁରୁଣା ଅଟେ ଶିବ ଚାପ । ତାହା ଭାଙ୍ଗିଣ ହୋଇଅଛୁ ଧାପ ।।୬୩।।
ଆଜ କଣ୍ଠରୁ ରୁଧିର ମେଦିନୀ । ତେଣେ ତୋଷିବ ଶୁଣ ରଘୁମଣି ।।୬୪।।
ଏହୁ ବଚନ ଶୁଣିଣ ସୌମିତ୍ରୀ । ବୋଲେ ତୁମ୍ଭେ ତ ଦ୍ୱିଜ ନୋହ କ୍ଷତ୍ରୀ ।।୬୫।।
ଯେଉଁକାଳେ ନାଶିଲ କ୍ଷେତ୍ରୀଗଣ । ତେବେ କ୍ଷେତ୍ରୀ ନ ଥିଲେ ଜାଣ ପୁଣ ।।୬୬।।
ତୁମ୍ଭେ ବ୍ରାହ୍ମଣ ସବୁଜନେ ପୂଜ୍ୟ । ଧନୁ ବିଦ୍ୟାରେ କି ତୋର ପ୍ରୟୋଜ ।।୬୭।।
ଶୁଣି ଲକ୍ଷ୍ମଣ ବାଣୀ ପର୍ଶୁରାମ । ବେଳୁ ବେଳ ବଢ଼ିଲା ହୃଦେ ତମ ।।୬୮।।
ବୋଲେ ଆଜ ସଞ୍ଜୀବନୀ ଭୁବନ । ତୁ ରେ ଦେଖିବୁ ମୁହ ଛନ୍ନମନ ।।୬୯।।
ରାମ ବୋଲେ ଶୁଣିମା ତପୋଧନ । କ୍ଷୀରକଣ୍ଠ ଏ ସୁମିତ୍ରା ନନ୍ଦନ ।।୭୦।।

---

୫୪ କ,ଗ- ୦କହେ ସେ୦ ୦ମୋତେ କରିବା କୃପା୦
୫୭ କ,ଗ- ୦ନେଉଛି ପୁରର
୫୮ କ- ୦ପ୍ରସୁଧର
ଖ- ୦ପ୍ରଶୁଧର
୬୦- କ,ଗ- ୦ବଳ ତୋ ବହେ୦
୬୧ କ,ଗ- କରିବି କୋଠାର୦
ଗ- ୦ବୀରଙ୍କର ବୀର
୬୨ କ- ୦ମୋର ହୁଏ ଭ୍ରମ
ଗ- ୦ମୋର ହୁଏ ଶ୍ରମ
୬୩ କ,ଗ- ୦ହୋଇଅଛୁ ଧାପ
ଖ- ୦ହୋଇଅଛୁ ଅପ
୬୪ କ,ଗ- ରୋଧିର ମେଦନୀ
ଖ- ୦ତୋ କଣ୍ଠ ରୁଧିରେ
୬୫ ଖ- ୦ନୋହକତ୍ରୀ
ଗ- ୦ସୌମିତ୍ରୀ
୬୬ କ,ଗ- ନଥିଲେ କ୍ଷେତ୍ରିଗଣ
ଖ- ୦ନାଶିଲ କ୍ଷତ୍ରୀପଣ୦
୬୭ ଖ- କି ତୋର ତା ବିହୃଜ୍ୟ
ଗ- ୦ତୁମ୍ଭେ ବ୍ରହ୍ମାଣ୍ଡେ
୬୮ କ- ୦ପ୍ରସୁରାମ୦ ଖ- ୦ବେଳେବେଳେ୦
୬୯ କ,ଗ- ୦ନୋହୁ ଛନମନ
୭୦ ଖ- ୦ବୋଲନ୍ତି ଶୁଣ୦

ଏହା ବଚନେ କି କେ କ୍ରୋଧ ତୋର । ଶୁଣି ବୋଲନ୍ତି ସେହୁ ମୁନିବର ।।୭୧।।
କ୍ଷୀରକଣ୍ଠ ଏ ନୋହେ ବିଷକଣ୍ଠ । ମୋର ଆଗେ ଯେ କହୁଅଛୁ ଆଣ୍ଠ ।।୭୨।।
ବୋଲେ ହସିଣ ତହୁଁ ସଉମିତ୍ରୀ । ତେବେ ତୋ ଗୁରୁ ହୋଇଲି ମୁଁ ଯତି ।।୭୩।।
ଗୁରୁ ଆଗର୍ କି ଶିଷ୍ୟ ପ୍ରତିଜ୍ଞା । ମୋର ବାଣୀ ତୁ ନ କର ଅବଜ୍ଞା ।।୭୪।।
କୋପେ ପ୍ରଜ୍ଜ୍ୱଳିତ ଭୃଗୁ ନନ୍ଦନ । ବୋଲେ ଏ ମୋର ମନ୍ଦବୁଦ୍ଧି ଜାଣ ।।୭୫।।
ଏହୁ କୁଠାରେ ତୋ ପିତା କନ୍ଧର । ମୋକ୍ଷ ନ କରି ରଖିଲି ରଣର ।।୭୬।।
ତେଣୁ କହୁଛ ତୁମ୍ଭେ ଏହୁମାନ । ଏବେ ଦେଖାଅ ତୁମ୍ଭ ବୀରପଣ ।।୭୭।।
ମୋର ଧନୁ ଯେବେ ଆଜ ଭାଙ୍ଗିବ । ତେବେ ବୀରଙ୍କର ବୀର ହୋଇବ ।।୭୮।।
ତ୍ୱଷ୍ଟା ରଚି ଏ ବେନି ଶରାସନ । ହରିହର ହାଥେ ଦେଲ୍ ବହନ ।।୭୯।।
କେହୁ ବଳିଷ୍ଠ ଜାଣିମା ବିଚୁର । ହରିହରେ ବିରୋଧ ଦେଲ୍ କରି ।।୮୦।।
ହରି ବିଶେଷ ଜାଣି ଲୋକପାଳ । ଧନୁ ବଡ଼ ହୋଇଲେ ଆଖଣ୍ଡଳ ।।୮୧।।
ଏଣୁ ବିଷ୍ଣୁର ଧନୁ ଏ ବଳିଷ୍ଠ । ଏଥୁ ଶିବଧନୁ ହେଲ୍ କନିଷ୍ଠ ।।୮୨।।
ନମି ନୃପତି ପିତା ଶିବ ସେବି । ଅତି ସନ୍ତୋଷେ ଥିଲ୍ ହର ଭାବି ।।୮୩।।
ତାଙ୍କୁ ସନ୍ତୋଷ ହୋଇ ଉମାସାଇଁ । ଧନୁ ଥୋଇଲ୍ ତାର ପୁରେ ନେଇ ।।୮୪।।
ବିଷ୍ଣୁ ଧନୁ ରୁଚିକ ହାଥେ ଦେଲେ । ତୁମ୍ଭ ତହିଁ ରଖିଥାଅ ବୋଇଲେ ।।୮୫।।
କେତେକାଳେ ଧନୁ ମୋର ପିତାରେ । ତାଙ୍କ ପିତା ଦେଲେ ଅତି ସ୍ନେହରେ ।।୮୬।।
ମୋର ତାତ ତପେ ଶାନ୍ତ ଭଜିଲ୍ । ତେଣୁ ଏ ଧନୁ ମୋତେ ସମର୍ପିଲ୍ ।।୮୭।।
ସବୁ ବଡ଼ ଧନୁ ଏହୁ ଅଟଇ । ବଜ୍ର ଯେନି ନିର୍ମାଣିଅଛି ବିହି ।।୮୮।।
ଯେବେ ଏ ଧନୁରେ ତୁ ଗୁଣ ଦେବୁ । ତେବେ ବୀରରେ ଗଣିତା ହୋଇବୁ ।।୮୯।।
ତେବେ ତୋହର ତୁଲେ କରି ଯୁଦ୍ଧ । ତୋତେ କରିବି ରଣରଙ୍ଗେ ବଧ ।।୯୦।।
ଏହୁ ବାଣୀ ଶୁଣି ପର୍ଶୁଧାରୀର । ମନ୍ଦମନ୍ଦ ହସିଣ ରଘୁବୀର ।।୯୧।।
ହସ୍ତ ବଢ଼ାଇ ଧଇଲେ ତା ଧନୁ । ବେଳୁ ବେଳ ବଢିଲ୍ ତାଙ୍କ ମନ୍ୟୁ ।।୯୨।।

---

୭୨ ଖ,ଗ- କ୍ଷୀର କଣ୍ଠ ଏ୦
ଖ- ୦ଆଗେ ଯେ କହୁଅଛୁ୦
ଗ- ୦ଆଗେ ଯେ କରୁଅଛୁ ଆଣ୍ଠ
୭୪ କ,ଗ- ୦ପ୍ରତିଜ୍ୟା୦ ୦ଅବଜ୍ୟା
ଖ- ୦ଆଗେ କି ଶିଷ୍ୟର ପ୍ରତିଜ୍ୟା
୭୮ ଖ- ୦ଆଜ ଭାଜିବ୦
୭୯ କ,ଖ- ତୋଠାରୁ ବି୦ ୦ହରିହରି୦
୮୧ ଖ- ୦ହରିବିଶେଷ୦
୮୨ ଖ- ୦ହେଲା କନେଷ୍ଠ
୮୩ କ,ଗ- ୦ଶିବ ବେନି୦
୮୭ ଖ- ୦ତପେ ସ୍ୟାନ୍ତ୦
୮୮ କ,ଗ- ୦ବଡ଼ ଏହୁ ଧନୁ
୮୯ ଖ- ଏବେ ଏ ଧନୁରେ୦
୯୦ କ- ତେବେ ତୋର ତୁଲେ ନ କରି୦

ଅବହେଳରେ ରଞ୍ଜଣ ଶିଞ୍ଜିନୀ । ଏକ ଶାମ୍ବୁକ ରାମକରେ ଘେନି ।।୯୩।।
ତାର ଦେହରେ ବିଷ୍ଣୁ ତେଜ ଥିଲା । ରାମ ଶରୀରେ ଯାଇ ଲୀନ ହେଲା ।।୯୪।।
ଶରାସନେ ବସାଇ ଶର ରାମ । କ୍ରୋଧେ ବୋଲନ୍ତି ଶୁଣ ପର୍ଶୁରାମ ।।୯୫।।
ଶର ପେଷି ନିଅନ୍ତି ତୋର ପ୍ରାଣ । ଜାଣ ଯେଣୁ ହୋଇଲୁ ତୁ ବ୍ରାହ୍ମଣ ।।୯୬।।
ବିଷ୍ଣୁ ତେଜ ତା ଦେହୁ ଯହୁଁ ଗଲା । ଦେଖି ପର୍ଶୁଧର କମ୍ପ ଏ ବହିଲା ।।୯୭।।
କରଯୋଡ଼ କରେ ଅତି ବିନତି । ମୋର ବାଣୀ ଶୁଣିବା ରଘୁପତି ।।୯୮।।
ମୋତେ ଦୟାକର ରମା ନାୟକ । ପେଷ ମୋର ପାପ କ୍ଷୟେ ଶାୟକ ।।୯୯।।
ଶୁଣି ବୋଲନ୍ତି ରଘୁକୁଳମଣି । ମୁନି କହିଲ ତୁମ୍ଭେ ଯେଉଁ ବାଣୀ ।।୧୦୦।।
ଏକା ଜଣକ ଅପରାଧେ ତୁହି । ସର୍ବକ୍ଷତ୍ରୀଙ୍କି ପକାଇଛୁ ଦହି ।।୧୦୧।।
ଏଣୁ ତପସ୍ୟା ଅର୍ଜିତ ତୋ ଫଳ । ତାହା କାଟୁଛି ଥାଅ ମହୀତଳ ।।୧୦୨।।
ଏତେ ବୋଲି ସାୟକ ରାମଭେଦି । ପାପରାଶି ତା ପକାଇଲେ ଛେଦି ।।୧୦୩।।
ସ୍ତୁତିକରି ରାମଙ୍କୁ ଭୃଗୁପତି । ପ୍ରଦକ୍ଷିଣ କରି ତାଙ୍କୁ ତତ୍ପରି ।।୧୦୪।।
ବେଗେ ମିଳିଲେ ମନ୍ଦର ଶିଖର । ପର୍ଶୁବଣ ବୋଲି ନାମ ଯାହାର ।।୧୦୫।।
ଏଥୁ ଅନ୍ତରେ ରାଜା ଦଶରଥ । ରାମ ମୁଖ ଗୃହିଁ ହେଲେ ଉଷତ ।।୧୦୬।।
ପୁତ୍ର ବନ୍ଧୁ ସଙ୍ଗତେ ଘେନି ରାଏ । ଯାଇଁ ନିଜ ପୁରେ କଲେ ବିଜଏ ।।୧୦୭।।
ଅତି ଆନନ୍ଦିତ ମତି ହୋଇଲେ । ପୁରେ ପୁତ୍ରବଧୂ ଘେନି ମିଳିଲେ ।।୧୦୮।।
ଏହୁ ରାମବିଳାସ ପଞ୍ଚଦଶ । ଛାନ୍ଦ ଶୁଭେ ଯେ ହୋଇଲା ଏ ଶେଷ ।।୧୦୯।।
ରାମ ସୀତା ପାଦପଦ୍ମେ ଶରଣ । କଲା ନୃପ ଧନଞ୍ଜୟ ରାଜନ ।।୧୧୦।।

●

---

୯୩ କ,ଗ- ଅବନ୍ତିତରେ ରଚଣ ସିଞ୍ଜନୀ୦ (?)
କ,ଖ,ଗ- ୦ସାଏକ୦
୯୪ ଖ- ତାର ଶରୀରେ୦
୯୫ କ,ଗ- ୦ପ୍ରସୁରାମ
୯୭ କ,ଖ,ଗ- ୦ପ୍ରସୁଧର୦
୯୯ କ,ଗ- ୦ରମା ନାଏକ୦
ଖ- ୦ପାପତଏ ସାମ୍ବୁକ
୧୦୦ କ- ଏକା ଜଣେକ ଅପରାଧେ ମୁହିଁ
୧୦୨ କ,ଗ- ଏଣୁ ଦଶା ଅର୍ଜିତ ତୋହୋ୦ ଥାଅ ମହୀପାଳ
୧୦୩ କ,ଗ- ୦ସ୍ୱର୍ଗପଥ ତା ପକାଇଲା୦
୧୦୪ କ,ଗ- ୦ପ୍ରଦକ୍ଷଣ କରି
ଖ- ୦ପୁଣି ପ୍ରଦକ୍ଷଣ କରି ତତ୍ପର
୧୦୫ କ,ଗ- ୦ବିପ୍ର ଶ୍ରବଣ ବୋଲି ନାମ ଯାର
ଖ- ୦ପ୍ରଶୁବଣ୦
୧୦୬ ଖ- ୦ମୁଖ ଦେଖି୦
୧୦୮ କ,ଗ- ୦ମନେ ହୋଇଲେ, ପୁରେ ପତ୍ରବଧୂ୦
୧୦୯ କ- ୦ହୋଇଲିକ ଶେଷ
୧୧୦ କ,ଗ- ୦ପଦ୍ମପାଦେ୦ କଲା ଭଞ୍ଜ ଧନର୍ଜୟ ଶରଣ

# ଷୋଡ଼ଶ ଛାନ୍ଦ*

## (ରାଗ—କଉଶିକ)

ଏଥୁ ଅନନ୍ତରେ ଅନନ୍ତରେ ସୀତା ରସରେ ରସରେ ବଢ଼ରେ,
ନାନା କୁସୁମିତ ବ୍ରତତୀ ତତିରେ କୁସୁମ ପଡ଼େ ଟନ୍ଧଭରେ ।
ତଥି ଚୂମ୍ବନ୍ତି, ଘେଲମ୍ବ ଘେଲମ୍ବ କରଣ
ବୋଲନ୍ତି ଶ୍ରୀରାମ ରାମ କୋମଳାଙ୍ଗୀ ମଧୁଭରେ ଭରେ କାନନ ।।୧।।

ଦେଖ ରସାଳସୀ ରସାଳ ବିଶାଳ ସାଳ ସାଳରେ ସୁ ବକୁଳ,
ଅତି ମନୋହର ହିନ୍ତାଳ ତାଳରେ ଯୁକ୍ତ ରକ୍ତ ମାଳ ତମାଳ ।
ଆରେ ଗଉରୀ, ଗଉରୀ ଗୁଣ ଭୁ କୁଶଳା
ବକୁଳ କୂଳକୁ ଶୋଭାକାରୀ ଦେଖ ଦେଖରେ ନବୀନ ଅବଳା ।।୨।।

ଦେଖ ସଖୀ ତୁଙ୍ଗ ତୁଙ୍ଗସ୍ତନା ନାଗରଙ୍ଗ ରଙ୍ଗ ରଙ୍ଗିଣୀ,
ପ୍ରିୟ ସହଚରୀ ମହାଚରୀ କୁଳ କୁସୁମେ ହସନ୍ତି ଶୋଭିନୀ ।
ପ୍ରାଣଦାୟିନୀ, ଦାୟିନୀ ଅଟୁ ମଦନର
ଦେଖ ବିକଶିତ କୁସୁମ ସୁମନା ସୁମନା ହୋଇ ତୁ ସଧୀର ।।୩।।

ଦେଖ ପାରିଭଦ୍ର ଭଦ୍ର ନୟନାରେ ଚଳଦଳ ଦଳ ଚଳନ,
ମୃଗାକ୍ଷି କର କେଶରକୁ କେଶରେ କେଶରେ କର ତୁ ରଞ୍ଜନ ।
ଦେଖ ପ୍ରିୟଙ୍କ, ପ୍ରିୟ କରେ ମୋର ସତତ
ମଧୁକରେ ମଧୁକରେ ମଧୁକରେ ସେନା ଦେଖେ ପ୍ରିୟ ମିଳିତ ।।୪।।

ଦେଖ ଅଶୋକ ଅଶୋକବଲ୍ଲୀ ହୃଦ ଅନୁକ୍ଷଣେ କରେ ଉଲ୍ଲାସ,
ଶୁଭ୍ର କୁନ୍ତଳା କୁନ୍ତଳା ବିଶ ଏହୁ କେତକ କେ ତ କରେ ରସ ।
ଆରେ ଚଞ୍ଚଳା, ଚଞ୍ଚଳା ଗଞ୍ଜିତ ତୋ ରୁଚି
ମଧୁର ମଧୁର ମଧୁରସରୁ ଏ ଉଲ୍ଲୋଳ ଅଳିକୁଳ ରୁଚି ।।୫।।

---

*ପଞ୍ଚଦଶ ଛାନ୍ଦ
୧।୩- ତଥି ଚୂମ୍ବନ୍ତି, ଘେଲମ୍ବ ଘେଲମ୍ବଂ
୨।୧- ୦ରସାଳସୀ ରସାଳ ରସାଳ ବିଶାଳ ସାଳଯୁ
୨।୨- ୦ଯୁକ୍ତ ରକ୍ତମାଳଂ
୨।୩- ୦ଗଉରୀ ଗୁଣ ରୁଂ
୩।୧- ୦ସ୍ତନା ନାଗର ରଙ୍ଗିଣୀ
୩।୨- ୦ହସନ୍ତି ଶୋଭନ
୩।୪- ୦ସୁମନା ସୁମନାଂ
୪।୧- ୦ଦଳ ଚଞ୍ଚଳ
୪।୨- ୦କେଶର କେଶରକୁ କେଶରେ କେଶରଯୁଂ
୪।୪- ୦ଦେଖ ପ୍ରିୟସୀ ମିଳିତ
୫।୨- ୦ବନ ଏହୁଂ
୫।୩- ଆରେ କମଳା, କମଳା ଦେଖ ଶୋଭାବନ
୫।୪- ରମ୍ୟଏଇ ରୁଚ ରୁଚ ସଞ୍ଚରନ୍ତି କାମେଶ୍ୱ କାମେ ରଞ୍ଜନ ।।୫।।

ଦେଖ ଏହୁ ପାରିଜାତ ଜାତରୂପ ବରଣ ବର ନିତମ୍ବିନି,
ଏଥେ ମନୋହର ଜାତି ଜାତି ନାହିଁ ମଧୁର ମଧୁର ରଜନୀ ।
ଆରେ କମଳା, କମଳା ଦେଖ ଶୋଭାବନ
ରମ୍ୟ ଏହୁ ନିକୁଞ୍ଚ କୁଚ ସଞ୍ଜିବନୀ ଭାମିନୀ କାମିନୀ ରଞ୍ଜନ ॥୬॥*

ଦେଖ ଏ ଗଣିକା ଗଣିକା ପଗଏ ବିଟପ ବିଟପରେ ସ୍ଥିତ,
ଏହୁ ପୁନାଗ ପୁନାଗ କରେକରେ ବ୍ରତତି ଚିତ୍ତ ଆନନ୍ଦିତ ।
ଶୁଣୁ ନୟନା, ନୟନାନନ୍ଦ ଦାୟୀ ମୋର
ଏ ତରୁ ଏତରୁ ତରୁଣୀ ଓଣୀରେ ସ୍ନେହିରେ ଅନୁଗ୍ରହ କର ॥୭॥

ରଣ ରଣକର ଯନ୍ତ୍ର ବିଦ୍ୟା ରରେ ସକଳ କଳ ପିକସାର,
ବାସନ୍ତ ବାସନ୍ତୀ ଏହୁ ବିପିନରେ ନରେଶ ନନ୍ଦନା ରୁଚିର ।
ଆରେ ରମଣୀ, ରମଣୀୟ ମଣି କୁଟ୍ଟିମ
ମଣି ମଣିତସ୍ୱେ ଦ୍ରବ୍ୟ ଆପାଦ ତୋ କର କରସ୍ପାରେ ସୁଷମ ॥୮॥

ସାରସା ରସାରେ ସାରସ ରସାରେ ସାରସକୁଳ ଲୀଳା କରି,
ସାରଙ୍ଗ ସାରଙ୍ଗ ସାରଙ୍ଗ ନୟନା ବିହରି କରି ଶିରପରି ।
ସୁଧା ହାସିନୀ, ହା ସୀମନ୍ତିନୀ ହର ତାପ
ହର ହର ଶିଖିବର ଦରକଣ୍ଠି କଣ୍ଠୀରବ ମଧୁ ସ୍ୱରୂପ ॥୯॥

ଦେଖ ପଦ୍ମ ପଦ୍ମାକରେ କରେ ଲୀଳା ସରୋଜ ହଂସର ମଣ୍ଡଳୀ,
ଶତପତ୍ର ପତ୍ର ନୟନା ନୟନା- ସନ କରଇ ପ୍ରିୟ ଆଳି ।
ଆରେ ସୁଶୀଳା, ଶୀଳା ସୋପାନ ମନୋହର
ଚକ୍ର ଚକ୍ର ଚକ୍ର ବାକୀ ଦେଖ ଚକ୍ର ସ୍ତନୀ ଜଳକେଳୀ ରୁଚିର ॥୧୦॥

ଦେଖ କଲ୍ଲୋଳ ଲୋଳ ଲୋଳ ଅପାଙ୍ଗୀ ଭ୍ରମର ଭ୍ରମର ଶୋଭନ,
ଭ୍ରମ ଭ୍ରମ ଭ୍ରମ କରେ ଛେଦ ଚୋର ସୁମନା ସୁମନା ମଣ୍ଡନ ।
ଚନ୍ଦ୍ର ଆନନୀ, ଆନ କିଏ ତୋତେ ସମାନ
ଅତି ରୋହିତ ରୋହିତ ଶୋଭା ଦେଖ ବିଶାଳ ଶାଳ କେଳୀ ପୂର୍ଣ୍ଣ ॥୧୧॥

କମଳ କମଳ କମଳବାସିନୀ ବାସୀ ନିରନ୍ତର ଖରରେ,
ରତ୍ତ ରତ୍ତ ରତ୍ତ ରସ ଭରସକାର କରେ ମୋର ମନରେ ।
ଶୁଣୁ କେଶନୀ, କେଶ ନିକେତନେ ମଣ୍ଡିତ
କୁବଳୟ କୁବ-ଳୟ ମୋଦକରି କରି ଗମନୀ ହର ଚିତ୍ତ ॥୧୨॥

---

୮।୧- ୦ରବ ପିକର
୮।୨- ୦ଏହୁ ବିପିନରେ୦
* ପୋଥିରେ ନାହିଁ
୧୦।୪- ୦ଚକ୍ର ଗତ ଦେଖ୦
୧୧।୨- ୦କରେ ଛେଦ ଚୋର୦
୧୨।୨- ୦ରତ ଓରସକାର କାରେ ମୋର୦
୧୨।୩- ୦କେଶନୀ କେସର ମଣ୍ଡିତ

କଳ କଣ୍ଠୀ କଳ- କଣ୍ଠୀ କୁଳ କୁଳ ଗତାଗତ ଦେଖୁ ସୁନେତ୍ରା,
ନେତ୍ରେ ନେତ୍ରେ ବାର ଲୋଲୁପ ମଧୁପ ମଧୁପରେ ଗମେ ସୁଗାତ୍ରା ।
ଆରେ ଅବଳା, ଅବଳା ବଳାହକ ଦେଖ
ଜୀବନ ଯେ ଜୀବନ ଯେ ବହିଅଛି ଶ୍ୟାମ ଶ୍ୟାମରେ କରେ ସୁଖ ।।୧୩।।

ପତଙ୍ଗ ପତଙ୍ଗ ପ୍ରଗୃରରେ ହୀନ ହୋଇଛି ଏବନ ଏବନ,
ବିପିନ ବିପିନ-ରେ ଶୋଭା କରୁଛି ନାଗ ନାଗରେ କେଳିଘନ ।
ଘନ ଜଘନା, ଘନାଘନ କେଶ ଶୋଭନା
ପ୍ରବାଳ ପ୍ରବାଳ ପ୍ରବାଳେ ରୁଚିର ପ୍ରବାଳ ଧରି ଗୃହ୍ମଁ କ ନା ।।୧୪।।

ସରଳ ସରଳ ହୃଦୟା ଦେଖରେ ସୁରଭି ସୁରଭି ପବନ,
ଦେଖରେ ମୟୂର ମୟୂରଙ୍କ ମୂଳେ କୁରୁବକ ବକ ରଞ୍ଜନ ।
ଆଗୋ ସଜନୀ, ଜନତ ଏଥେ ହୋୟେ କାମ
କୁମାର କୁମାର ଶୋଭା ଦେଖ ଏବେ ସୁନାସୀ ସୁନାସୀ ସୁଷମ ।।୧୫।।

କକୁଭ କକୁଭ ଶୋଭିତ ଦେଖରେ ଉପଳ ଉପଳ ଶୋଭନା,
ଉପଳେ ଉପଳେ ଉପଳେ ଶୋଭନ୍ତ ହରିଣୀ ହରିଣୀ ନୟନା ।
ଆରେ ସୁନ୍ଦରୀ, ଦରି ଶୋଭା ଦେଖ ଶିରର
ଶିରୀଶ ଶିରୀଶ ଭ୍ରମରୀ ସମାନ ମାନ ମାନସବନ୍ତି ତୋର ।।୧୬।।

ହରିତ ହରିତ ମଣି କରଣରେ ହରି ହରିଗଣେ ଶୋଭିତ,
ହରିଣ ହରିଣ ତୃଣ କଲେ ଶେଷ ଶେଷ ସେଶ ଭରେ ପୂରିତ ।
ହରି ଗମନା, ମନାଇ ନୂପୁର ନିଃସ୍ୱନ
ପୁଷ୍ପ ଶର ଶର ଦର କରୁଅଛି ଶ୍ରବଣ ଶ୍ରବଣ କରଣ ।।୧୭।।

ଶ୍ୟାମ ଶ୍ୟାମ ଶ୍ୟାମ ଶ୍ୟାମ ବଦନରେ ଶ୍ୟାମାକୁ କହେ ବ୍ରୀଡ଼ା ଭରେ,
ଭରସା ଭରସା ସାର ସାରସାକ୍ଷୀ ଅତନୁ ଅତନୁ ଲୀଳାରେ ।
ରମାରତନ, ରତ ନବ ସୁଖ ବିଶ୍ରାମ
ନୃପ ଧନଞ୍ଜୟ ଧନଞ୍ଜୟ ସଖୀ ଏ ବେନିଙ୍କି କରେ ପ୍ରଣାମ ।।୧୮।।

---

୧୩।୨- ୦ମଧୁ ମଧୁପରେ ସଙ୍ଗୀତା
୧୪।୧- ୦ହୋଇଛି ଏ ନବ ଏ ନବ
୧୪।୨- ବିପିନ ବନରେ୦ ୦ନାଗର ଘେନଘନ
୧୪।୩- ଘନ ଜଘନ, ଘନାଘନ କେଶୀ୦
୧୬।୧- ୦ଉଗଳ ଉଗଳ୦
୧୬।୨- ଉପରେ ଉପରେ୦
୧୬।୪- ୦ସମାନ ମାନବନ୍ତି ତୋର
୧୭।୧- ୦ହରିବାଗେ ଶୋଭିତ
୧୭।୨- ୦ସେସ ଭରେ ଶୋଭିତ
୧୮।୨- ୦ସାରସାନାରସାକ୍ଷୀ ଅତନୁ ତନୁ୦
୧୮।୪- ୦ଧନଜ୍ଜୟ ଧନଜ୍ଜୟ୦
୦ଧନୁଜୟ ଧନୁଜୟ୦

କଳାପର କଳା- ପର ଶାଖା ଏହୁ ଅଭିରାମ ରାମ ବିନାଶ,
ରସିକ ରସି କର ଏହା ବିଚାର ଛାନ୍ଦ ହୋଇଲା ଅବଶେଷ ।
　　　　ଆହେ ସୁଜନେ, ଜନେ କର ଏହା ପ୍ରକାଶ
ସକାମ ସକାମ ହୋଇ ମନେ ଧର ମଧୁର ମଧୁର ଏ ରସ　　　॥୧୯॥

●

## ସପ୍ତଦଶ ଛାନ୍ଦ
### (ରାଗ—କାମୋଦୀ)

ଏଥୁ ଅନ୍ତରେ କେତେଦିନ ଅନ୍ତେ ଶ୍ରୀରାମ ଅନୁଜ ଘେନି ସଙ୍ଗତରେ,
ନାନା ବେଶ ନୃପତି ଜିଣି କରି ଆଣିଣ ପୂଜିଲେ ତାତଙ୍କ ପଦ୍ମରେ ସେ ।
　　　　ରଘୁବୀର, ବୀରଙ୍କ ପରେ ବୀରବର
ଜାଣିଣ ଦଶରଥ ଚିନ୍ତିଲେ ନିଜ ଚିତ୍ତା ସଙ୍ଗେ ଘେନିଣ ମନ୍ତ୍ରୀବର ସେ　　॥୧॥

ଶୁଣ ଆମ୍ଭ ସୁବାଣୀ ତୁମ୍ଭେ ତ ମନ୍ତ୍ରୀମଣି ଜାବାଲୀ ବଶିଷ୍ଠ କଶ୍ୟପ,
ସୁମନ୍ତ ଯେ ସୁମନ୍ତ ବିଚାରି ତୁମ୍ଭ ଚିତ୍ତ ମୋ ଆଜ୍ଞା କରିବା ସ୍ୱରୂପ ହେ ।
　　　　ମନ୍ତ୍ରୀମଣି, ଶୁଣି ଯୋଡ଼ିଲେ କରବେନି
ବୋଲନ୍ତି କିସବାଣୀ କହିବା ନୃପମଣି ତୋ ପରିଚର ଆମ୍ଭେ ପୁଣି ହେ　॥୨॥

ବୋଲେ ନୃପତିବର ଏ ମୋହର କୁମର ଜ୍ୟେଷ୍ଠ ଯେ ଅଟଇ ଶ୍ରୀରାମ,
କରିବା ଯୁବରାଜା ପାଳିବ ଜନପ୍ରଜା ଏ ଗୁଣଗଣେ ଅଭିରାମ ହେ ।
　　　　ନୃପ ଆଜ୍ଞା, ଲଭିଣ କରି ସନମତ
ଏକେ ଏକେ ବୋଲନ୍ତି ଶୁଣିବା ଦଣ୍ଡଧର ଏ କଥା ସହଜେ ଉଚିତ ହେ　॥୩॥

ବୋଲନ୍ତି ନୃପବର ଶୁଣ ବ୍ରହ୍ମା କୁମର ଖୋଜ ମାହେନ୍ଦ୍ର ଯୋଗବେଳ,
କରି ଏଥୁ ସମ୍ଭାର ମଣ୍ଡ ରତ୍ନ ମନ୍ଦିର ନ କର ଏଥି ଅବହେଳ ହେ ।
　　　　ମୁନିବର, ସକଳଗୁଣେ ତୁମ୍ଭେ ଜ୍ଞାତା
ଅଛୁ ବଂଶେ ଆମ୍ଭର ଦିଲୀପ ନରବର ରଘୁରେ ଦେଲେ ଦଣ୍ଡ ଛତା ହେ　॥୪॥

---

୨।୩- ୦ଯୋଡ଼ିଲେ ବେନି ପାଣି
୨।୪- ୦ଆମ୍ଭେ ଶୁଣି ହେ
୩।୪- ୦ଶୁଣିମା ଦଣ୍ଡଧାରୀ ଏକଥା ଅଟଇ୦
୪।୧- ୦ଯୋଗ ମାହେନ୍ଦ୍ର ଯୋଗବଳ
୪।୨- ୦ଦଣ୍ଡ ରତ୍ନମଣ୍ଡିର୦ ୦ହେଳ ଚିତ୍ତ ହେ
୪।୩- ୦ରୂ ଜ୍ଞାତ
୪।୪- ଅଛୁ ଅଂଶେ ଆମ୍ଭର୦

କେତେ ଦିନ ଅନ୍ତରେ ଶୁଭବେଳ ବିଚାରି କହିଲେ ନୃପତି ଗୁରୁ,
କାଲି ଶ୍ରୀରାମ ଅଭିଷେକର ଅନୁକୂଳ କରୁଅଛନ୍ତି ଯୋଗିବର ହେ ।
ଶୁଣି ରାଜା, ହୋଇଲେ ଅତ୍ୟନ୍ତ ଆନନ୍ଦ
ତୃଷିତ ଚାତକ ସେ ଯେହ୍ନେ ତାପ ଅନ୍ତରେ ଲଭି ହୁଅଇ ମେଘ ବୃନ୍ଦ ହେ ॥୫॥

ମନ୍ତ୍ରୀ ପୁରମାନ କରାଅ ତତକ୍ଷଣ ବୋଲିଣ ଦିଅନ୍ତେ ଆଦେଶ,
କୁଶଳ ଶିଳ୍ପୀକାରେ ମଣ୍ଡିଲେ ଧାତୁକାରେ ରତ୍ନ ସମଷ୍ଟିରେ ବିଶେଷ ସେ ।
ପୁରେ ପୁରେ, ବିବିଧ ନିଶାଣ ଚହଲ
କୋଟି କୋଟି ଅନେକ ଶଙ୍ଖ ବାଦ୍ୟ ମୃଦଙ୍ଗ ଦୁନ୍ଦୁଭି କଙ୍କିଣି ମର୍ଦ୍ଦଳ ସେ ॥୬॥

ଅତି ଉଚ୍ଛୁକ ପୁରଜନଙ୍କ ଚିତ୍ତ ଦେଖି ଗଲା ତୁରିତେ ଏକ ଦାସୀ,
ଯାହା ନାମ ମନ୍ଥରା ଗମନ ଥରଥରା ଦେଖି ସେ ନୋହିଲା ଉଲ୍ଲାସୀ ସେ ।
ମନ୍ଦପ୍ରାଣୀ, କହିଲା ଯାଇଁ ପାଟରାଣୀ
ଭୁତ କେକୟ ସୁତା କୌଶଲ୍ୟା ଠାକୁରାଣୀ ରାମ ହୋଇଛନ୍ତି ନୃପମଣି ସେ ॥୭॥*

ବାର ବାର ହୋଇଣ ଧାମନ୍ତି ବାରାଙ୍ଗନା ହସ୍ତରେ ହସ୍ତ ନ୍ୟସ୍ତ କରି,
କେଉଁ ବିବିଧ ଅଳଙ୍କାରରେ ଗୁପ୍ତ ହୋଇ ପ୍ରବେଶ ହେଲେ ରାଜପୁରୀ ସେ ।
କେହୁ ତହିଁ, ନୃତ୍ୟନ୍ତି ଗାବନ୍ତି ତରୁଣୀ
କାହା ପାଦ ନୂପୁର ବୋଲଇ ରଣରଣ କାହାର ଶୁଭଇ କଙ୍କିଣୀ ସେ ॥୮॥

ଶୁଣି ନୃପ ଯୁବତି ଲଭିଣ ତୋଷମତି ଦେଇ ଗଳାରୁ ଗଜମୋତି,
ମୋତି ଦଶନା ହସି ବୋଲଇ ଧନ୍ୟ ହେଲି ଶୁଭେ ପାଇଲି ଆଜ ରାତିରେ ।
ଶୁଣ ଦାସୀ, ହୋଉ ଏ ଶୁଭ ତୋ ବଚନ
ପ୍ରାଣୁ ଅଧିକ ମୋର ତନୟ ରଘୁମଣି ସେ ହେବ ଯୁବ ଯେ ରାଜନରେ ॥୯॥

ଶୁଣି ରାଣୀର ବାଣୀ ବୋଲଇ ରୋଷେ ପୁଣି ମନ୍ଥରା ସହଜେ ରାଣ୍ଡେଣି,
ତେଜିଣ ନିଜ ହିତ ଅହିତ ମଣୁ ହିତ ଧିକ ତୋହର ଏହୁ ବାଣୀରେ ।
ଚନ୍ଦ୍ରମୁଖୀ, ମୂର୍ଖପଣରେ କହୁ ଏହା
ରାମ ନୃପତି ହେବ ତୋ ସୁତ ଦୁଃଖୀ ହେବ ଫାଟି ନ ଯାଇ ତୋର ହିଆରେ ॥୧୦॥

---

୫।୨- ଅଭିଷେକ କର ଅନୁକୂଳ କରୁଅଛଂ
୫।୪- ୦ଲଭଇ ମେଘର ବୃନ୍ଦ ସେ
୬।୨- କୁଶଳ ସିହେକାରେ ୦ରତ୍ନସ୍ତମ୍ଭରେ୦
୬।୪- ଅନେକ ଶଙ୍ଖ ଦୁନ୍ଦୁଭି ଭେରୀନାଦେ
ପୂରିଲା ନଭସ୍ଥଳ ସେ

* ପୋଥିରେ ନାହିଁ

୮।୨- ୦ଦେଣି ହସି୦ ୦ଭଲେ ପାଇଲି
୮।୪- ୦ତନୟ ରଘୁବୀର୦ ୦ଯୁବ ସେ ରାଜନରେ
୯।୪- ୦ସୁତ ଦୁଃଖୀ ହେବ୦

ସେ ତୋର ସପତଣୀ ନନ୍ଦନ ରଘୁମଣି କମ୍ପା କରବ ତୋରେ ଶୋଗ,
ଆପଣା ନଧି ପର ହାତକୁ ଦେଇକର କସ ଲଭିବୁ ତୁହି ଭୋଗରେ ।
କୁନ୍ଦଦନ୍ତୀ, ଦନ୍ତୀ ପରାଏ ତୋର ମତ
ଅତ ମତ ସ୍ଥାନରେ କେବଣ ଜନମାନେ ଲଭିଣ ଅଛନ୍ତି ସମ୍ପତ୍ତିରେ ।।୧୧।।

ଅତ ବିଷାଦ ମତ ହୋଇ 'ବର ଯୁବଣି କହଇ ଉପାୟ ଝଟତ,
କାଲି ତ ରାମ ଅଭିଷେକ ହୋଇବେ ଏହା ବିରୁଦ୍ଧ ଅଛନ୍ତି ନୃପତି ସେ ।
ଶୁଣି ରାଣୀ, ବାଣୀ ମନରେ ଦାସୀ ପୁଣି
ବୋଲଇ ପାଟରାଣୀ ପୂର୍ବର ଯେ କାହାଣୀ ପାଶୋରିଲୁ କ ମନୁ ପୁଣି ଗୋ ।।୧୨।।
ମନ୍ଦ ସମର କାଳେ ତୋହର ମହୀପାଳେ କରି ଯେ ଅଛନ୍ତି ସମ୍ମତ,
ମାଗିବୁ ତୁହି ଯାହା ଦେବଇଁ ମୁହିଁ ତାହା ଏବେ ସେ କଥା କର ସତରେ ।
ମଦାଳସୀ, ଶୁଣିଲା ଦାସୀର ବଚନ
ମାନିନୀ ମାନ ଘରେ ଶୟନ କଲା ଯାଇଁ ନ କହି କାହାକୁ ବଚନ ସେ ।।୧୩।।

ଏହି ସମୟେ ତାର ପୁରରେ ନୃପବର ପ୍ରବେଶ ହେଲେ ଧାତକାର,
ଦେଖିଲେ ଶୂନ୍ୟପୁର ନାହିଁ ରମଣୀବର ଚିନ୍ତିଲେ କାରଣ ମନର ସେ ।
ଖାରବର, ଧାତକାରେ ମିଳଣ ପୁର
ବୋଲନ୍ତି ପ୍ରାଣ ପ୍ରାଣମଣି ତୁହି ମୋହର କମ୍ପାଇଁ ଶୋଇଲୁ ଭୂମିର ଗୋ ।।୧୪।।

ଲୋତକ ଭରେ ନେତ୍ର ଦିଶୁନାହିଁ ପବନ୍ତ କମ୍ପୁଛି ଅନୁକ୍ଷଣେ ଗାତ୍ର,
ମୁଖ ଉଦିତ ମିତ୍ର ଭ୍ରୂକୁଟୀ ନେନେ ଚିତ୍ତ ବିକୃତ ସହଜେ ଚରିତ ସେ ।
ପ୍ରାଣପ୍ରିୟା, ଏସନ ରୂପ ଦେଖି ଭୂପ
ବୋଲନ୍ତି ତୋର କୋପ ଏତ ନୁହେଁ ସରୂପ ତେଜ ଛୁ ନେତ୍ର କମ୍ପା ଆପ ।।୧୫।।
ପ୍ରିୟ ପ୍ରିୟର ବାଣୀ ଶୁଣି ରମଣୀମଣି ଚିନ୍ତା ସାଗରେ ମଜ୍ଜି ପୁଣି,
ବୋଲଇ ନୃପମଣି ମୁହିଁ ଅତ ରାଢ଼େଣୀ ନ ରୁହିଁ ମୋର ମୁଖ ଜାଣି ହେ ।
ନରବର, ପାଶୋରିଲୁ କ ପୂର୍ବ ବର
ସେ କଥା ସତ୍ୟ କର ନ ଲଂଘ ସତ୍ୟ ତୋର ଲଂଘିଲେ ଲଂଘ ପାପଭର ହେ ।।୧୬।।

---

୧୧।୧- ୦କରବ ତୋତେ ସୋଗ
୧୧।୨- ୦ଲଭିବୁ କସ ଭୋଗରେ
୧୧।୩- ୦କ ତୋ ମଣ
୧୧।୪- ୦ସ୍ଥାନରେ ଦେଖ କେବଟଂ ୦ଅଛନ୍ତି ସମ୍ପଦରେ
୧୨।୩- ୦ଦାସୀ ଶୁଣି
୧୩।୧- ୦ଅଛନ୍ତି ସନ୍ମତ
୧୩।୨- ୦ଦେବଇ ମୁହିଁ ଏବେଂ
୧୩।୪- ୦ମାନ ପରେ ଶୋଯ୍ୟନଂ
୧୪।୧- ୦ପୁରରେ ନରବରଂ
୧୪।୪- କମ୍ପାଇଁ ହୋଇଲୁ ଭୂମିର ଗୋ
୧୫।୧- ୦ଦିଶୁନାହିଁ ବଚନଂ
୧୫।୨- ୦ହୃଦତ ମିତ୍ରଂ ୦ନେନେ ଚିତ୍ରଂ
୧୫।୪- ୦ସ୍ନେହତେ ଯେତ୍ତେ ସ୍ୱରୂପ ତେଜୁଛଂ
୧୬।୧- ୦ସାଗରେ ମଣିମଣି
୧୬।୨- ବୋଲନ୍ତି ନୃପମଣିଂ
୧୬।୩- ୦କ ନୃପବର

ମାଗୁଛି ମୁହିଁ ଏହା କରିବ ତୁମ୍ଭେ ନାହା ମୋହରେ ଯେବେ ତୋ ସେନେହା,
ରାମ ବନକୁ ଯାଉ ଭ୍ରତ ନୃପତି ହୋଉ ଏହା ତୁ କର ପୁଣ୍ୟ ଦେହା ହେ ।
ଏହା ଶୁଣି, ସାହସ ଉଡ଼ିଲା ରଜାର
ବାଣୀ ହୋଇ ରୁନ୍ଧତ କମ୍ପଇ ସର୍ବଗାତ୍ର ମୂର୍ଚ୍ଛିତେ ପଡ଼ିଲା ଭୂମିର ହେ ॥୧୭॥

କଷ୍ଟେ ଚେତନା ପାଇ ମନରେ ଦୁଃଖୀ ହୋଇ ବୋଲନ୍ତି ଧିକ ହୋଉ ତୋତେ,
ଶ୍ରୀରାମ ବନ ଯିବ ମୋର ଜୀବ ଉଡ଼ିବ ଏସନ ବରୁର ତୋ ଚିତ୍ତେ ଲୋ ।
ପିଶାଚୁଣୀ, କଷ୍ଟସ୍ତେ ମୋତେ ତୁ ଖାଇଲୁ
ରାମ ରାମ କମଳ ନୟନ ବନେ ପେଷି କି ଯଶ ଲଭି ବରୁରିଲୁ ଲୋ ॥୧୮॥

ଏସନ ବାଣୀ କହି ପଡ଼ିଲେ ମୋହ ଯାଇ ଚହଲ ଅନ୍ତଃପୁର ନାରୀ,
ମୁଖର ଧ୍ୱନି ଶୁଣି ଅଇଲେ ରଘୁମଣି ବ୍ରହ୍ମାନନ୍ଦନ ସଙ୍ଗେ କରି ସେ ।
କଏକୟୀ, ବୋଲନ୍ତି ଶ୍ରୀରାମଙ୍କୁ ଗୃହିଁ
ପୂର୍ବେ ତୋ ପିତା ମୋର ସତ୍ୟ କରିଣ ଥିଲ ବନକୁ ଯାଅ ରାମ ତୁହିରେ ॥୧୯॥

ଯେବେ ପିତା ବଚନ ପତି ପାଳିବୁ ତୁହି ତେବେ ତୁ ବିପିନକୁ ଯିବୁ,
ଅସତ୍ୟବନ୍ତ ତାତ ତେବେ ତୋର ନୋହିବ ଚଉଦ ବରଷ ରହିବୁ ସେ ।
ରଘୁପତି, ଫଳମୂଳ ଅଶନ କରି
ଅମ୍ବର ଦୂର କରି ଚିର ବସନ ଧରି ବର୍ଣ୍ଣିବୁ ହୋଇ ବନଗୃହୀ ଯେ ॥୨୦॥

ମୋ ସୁତ ହେବ ରାଜା ପାଳିବ ଜନ ପ୍ରଜା ଏସନ ବୋଲିଛନ୍ତି ରାଜ,
ଛାଡ଼ ଏହୁ ସମ୍ପତ୍ତି ତୁରିତେ କର ଗତି ଏଥେ ତୋହର କିସ କାର୍ଯ୍ୟ ହେ ।
ରାମଚନ୍ଦ୍ର, ଶୁଣି ହୁଅନ୍ତି ହସ ହସ
ବୋଲନ୍ତି ଭ୍ରତ ଯେବେ ପାଳିବ ରାଜ୍ୟ ମାତ ଏହୁ ସେ ମୋହର ପୌରୁଷ ହେ ॥୨୧॥

ତୁମ୍ଭର ଆଜ୍ଞା ଶିରେ ଘେନି ଜନନୀ ମୁହିଁ ଅବଶ୍ୟ ଯିବଇଁ ଯେ ବନ,
ତାତଙ୍କୁ ସେବା କରିଥିବ ଜନନୀ ଘେନ ଆନ ଯେ ନ କରିବ ମନ ଗୋ ।
ଏତେ କହି, ନବରୁ ହୋଇଲେ ବାହାର
ଧରି କମାଣ ବାଣ ଅତି ସନ୍ତୋଷ ହୋଇ ନମିଲେ ତାତଙ୍କ ପୟର ହେ ॥୨୨॥

---

୧୭।୧- ୦କରିବ ନରନାହା୦
୧୭।୩- ବାଣୀ ଶୁଣି
୧୭।୪- ୦ମୁହିତେ୦
୦କମ୍ପିଲ ସର୍ବଗାତ୍ର ମୂର୍ଚ୍ଛି ସେ୦
୧୮।୧- ୦ବୋଲନ୍ତି ଧିକଧିକ୦
୧୮।୨- ୦ବିଚ୍ଛୁର ରୂରତେ ସେ
୧୮।୩- ୦ମୋତେ ଦୁଃଖାଇଲୁ
୧୮।୪- ୦ବନେ ପଶି କି୦
୨୧।୩- ୦ଶୁଣି ହୋଇଲେ୦
୨୧।୪- ୦ଭ୍ରାତ ଯେବେ ପାଳିବ ରାଜ୍ୟପାଟ ଏହୁ ସେ
ମୋର ପଉରୁଷ ହେ
୨୨।୧- ୦ଆଜ୍ଞା ଘେନ ଶିରେ

ଶ୍ରୀରାମ ଯିବାବାଣୀ ଦାସୀଙ୍କ ମୁଖୁଁ ଶୁଣି କାନ୍ଦଣ କଉଶଲ୍ୟା ରାଣୀ,
ବୋଲନ୍ତି ରହ ରାମ ତୁ ନୋହୁ ଦୁଃଖ କ୍ଷମ ରାଜ୍ୟରେ ନୋହୁ ତୁ କାରେଣୀ ହେ ।
ରଘୁନାଥ, ମୁହିଁ ଅନାଥ ତୁ ମୋ ନାଥ
ଭୃଥ ହଉ ନୃପତି ପାନ୍ତୁ ସେ ବସୁମତୀ ତୁ କେବେ ନ ଯା ବନପଥ ହେ ॥୨୩॥

ମାତା ବଚନ ଶୁଣି ବୋଲନ୍ତି ରଘୁମଣି ଜନନୀ ନ ବୋଲ ଏସନ,
ସନମତ କରିଣ ଅଛନ୍ତି ନରପତି ମୁଁ ନିଶ୍ଚେ ଯିବଇଁ ବହନ ସେ ।
ଏତେ କହି, ତୁରିତେ କରନ୍ତି ଗମନ
ଶୁଣିଣ ସଉମିତ୍ରୀ ଜନକରାଜପୁତ୍ରୀ ତୁରିତେ ମିଳିଲେ ସଙ୍ଗେଣ ସେ ॥୨୪॥

ସୁମନ୍ତ ରଥସାଜ ଆଣିଲା ଯୋଚି ବାଜି ବାଜିଲା ରାମ ଯିବା ଗୋଳ,
ଧାମନ୍ତେ ସର୍ବେ ପୁର କମ୍ପିଲା ବସୁନ୍ଧରା ଶୋକେଣ ହୁଅନ୍ତି ଆକୁଳ ସେ ।
ପୁରଜନେ, ବୋଲନ୍ତି ମୂର୍ଖ ନରପତି
ରାମ ବନକୁ ଯାଇ ସ୍ତ୍ରୀରେ ବଶ ହୋଇ କି କେ ସମ୍ମତ କଲା ମତି ସେ ॥୨୫॥

ନ ଥିବା ଏହୁ ପୁର କରିବା ବେଗେ ଦୂର ଏଥରେ ନାହିଁ ତ ବିଗୁର,
ଯହିଁ ତରୁଣୀ ରାଜା ତହିଁ କି ଥାଇ ପ୍ରଜା ସମସ୍ତେ ଯିବା ବନ ଘୋର ଏ ।
ରାମ ବିନୁ, ଭୁବନ ହୋଇବ ବିପିନ
ବିପିନ ବନ ଯହିଁ ଥିବେ ତହିଁ ରହିବା ସେବିଣ ଶ୍ରୀରାମ ଚରଣ ସେ ॥୨୬॥

ବିଜଏ ରଥେ ରାମ କି ସେ ନବୀନ କାମ ରତି ବସନ୍ତ ସଙ୍ଗେ ଘେନି,
ଧାମନ୍ତି ପୁରନାରୀ ଏକେକେ ଆଗସରି ସମସ୍ତେ ପାଦ ଜିଣି ଜିଣି ସେ ।
କେହୁ ତହିଁ, ଚଳି ନ ପାରି ଗତିହୀନ
ମଧ୍ୟ କାହାର ସରୁ କୁଚ କଳଶ ଗରୁ ବେଗେ ନ ଗମେ ଶଙ୍କା ମନ ସେ ॥୨୭॥

କେ ବୋଲେ ଧିକ ଧାତା ହେଲା ଏ ଘୋର ଚିନ୍ତା ନାହିଁକି ତୋହର ବିବେକ,
ରାମଙ୍କୁ ବନେ ପେଷି କମ୍ପା ହୋଇଲୁ ତୋଷି କୁଳିଶ ପଡୁ ତୋ ମସ୍ତକ ହେ ।
ଲୋକକାରି, କୁତ୍ସିତ କଲୁ ତୋ ବେଭାର
ରାମ ରାମ ପୁରକୁ ସର୍ଜନ ଏହୁ ପୁଣି ତାକୁ ବହିଲୁ ବନ ଘୋର ହେ ॥୨୮॥

---

୨୩।୧- ୦କାନ୍ଦଣ କଉଶଲ୍ୟା୦
୨୩।୨- ୦ରାଜ୍ୟରେ ହୁଅ ତୁ୦
୨୪।୧- ୦ବୋଲନ୍ତି ରାମବାଣୀ୦
୨୪।୨- ୦ଯିବଇ ଗହନ ସେ
୨୫।୩- ୦ମୂର୍ଖ ନରପତି
୦ରଖ ନରପତି
୨୬।୧- ୦ବେଗେ କରିବା ଦୂର ନାହିଁ ତ ଏଥରେ୦
୨୭।୪- ୦କୁଚ କଳଶରୁ ବେଗେ ନଗମେ୦
୨୮।୩- ଲୋକକାର ୦କଲୁ ଯେ୦
୨୮।୪- ସର୍ଜନ ଯେହୁ ପୁଣି ତାକୁ ପେଶିଲୁ୦

ଏହି ସମୟେ ରଥ ବାହୁଲେକ ସୁମନ୍ତ ଜାହ୍ନବୀ ତୀରେ ନେଇ ଭଲ,
ରାମ ସଙ୍ଗେ ସମସ୍ତ ପୁରଜନ ଗମିଲେ ଅଯୋଧ୍ୟା ପୁର ଶୂନ୍ୟ ହେଲା ଯେ ।
ରଘୁପତି-ବିଳାସ ସପ୍ତଦଶ ଛାନ୍ଦ
ନୃପତି ଧନଞ୍ଜୟ ଭଞ୍ଜ ଯେ ରଘୁନାଥ ଚରଣେ ସେବେ ଅର୍ପଣ ଯେ ॥୨୯

●

## ଅଷ୍ଟାଦଶ ଛାନ୍ଦ

### (ରାଗ—ଚୋଖି ବସନ୍ତ)

ଏହି ସମୟେ ସେହି ଖରତର
ଗ୍ରହିଲେ ତାଙ୍କ କରଣ ନିକର,
ବାରୁଣୀ ନାୟକ ଭଲେ ଆଶ୍ଳେଷ
ତେଜିଲ ଚନ୍ଦ୍ରିମା ନାୟ୍ଯ ହରଷ ।
ସେ ବାରୁଣୀ ଥାଇଁ,
ତରୁଣୀ ତ ହେଲେ ଗ୍ରସ୍ମାର ପାଇଁ ॥୧॥
ଖଣ୍ଡିଲ ହେତୁ ତସ୍କର ଆନନ୍ଦ
ହର ହରେ ଉଦେ ହୋଇଲା ଚାନ୍ଦ,
କୁମୁଦମା ନାୟ୍ୟ ହେଲେ ହରଷ
ତେଜିଲେ ସାରଙ୍ଗ ପଙ୍କଜ କୋଷ
ତା ଦେଖି ଶ୍ରୀରାମ,
ଅନୁଜ ସହିତେ କଲେ ବିଶ୍ରାମ ॥୨॥
ଆଦେଶ ଦେଲେ ସୁମନ୍ତଙ୍କୁ ଯାଅ
ରାଜନ ସମ୍ମୁଖରେ ଯାଇ ଜଣାଅ,
ଆଜ୍ଞା ପାଇ ସେହି ଗମିଲ ଧାଇଁ
ଏମନ୍ତେ ହୋଇଲା ପ୍ରବେଶ ରାତି ।
ସେ ଇନ୍ଦୁ କିରଣ,
ମଣ୍ଡିଲ ସକଳ ବନ କାନନ ॥୩॥

---

୨୧।୨- ରାମରୂପେ
୨୧।୩- କୈଳାସ ଛାନ୍ଦ ସପ୍ତଦଶ
୨୧।୪- ଧନଞ୍ଜୟ

---

୧।୧- ଖରତର
୨।୩- ହୋଇବ ହରଷ

ବୋଲନ୍ତି ସମରେ ଚନ୍ଦ୍ରମା ମୁଖୀ
ଦେଖ ରଜନୀ ତୋ ହୋଇଲା ସଖୀ,
ଚନ୍ଦ୍ର ବଦନ ଦଶୁଛି ରଞ୍ଜନ
ମଞ୍ଜୁ ଚକୋର ଚଞ୍ଚଳ ନୟନ ।
ସେ ବଶତ ତାରା,
ଆକାଶ କେଶ ମୋର ଜାଲ ପରା ॥୩॥

ଫୁଲ ଶର ସର ଅନଙ୍ଗଦାୟୀ
ରମଣ ରମଣୀ ଉଲ୍ଲାସ ଧାୟୀ,
ତାଙ୍କା ର ମାନସ କରେ ସଙ୍କେତ
କରେ ସେବନ କ ରଜନୀ ଛଣ ।
ରେ ଚନ୍ଦ୍ରମା ମୁଖି,
ଦେଖିଣ ମୋତେ ହୁଅ ତୁ ଦୁଃଖୀ ॥୪॥

ସୀତାଙ୍କୁ କହନ୍ତି ରଘୁନନ୍ଦନ
କେତେ ବେଳ ଅନ୍ତେ କଲେ ଶୟନ,
ଏମନ୍ତେ ରଜନୀ ହେଲା ପ୍ରଭାତ
ନାନା ପକ୍ଷୀ ପିକ କରନ୍ତେ ରୁତ ।
ଶଯ୍ୟା ଛାଡ଼ି କରି,
ଉଠିଲେ ଲକ୍ଷ୍ମଣ କୋଦଣ୍ଡ ଧାରୀ ॥୫॥

କ୍ରମ କ୍ରମରେ ଉଦେ ମାରତଣ୍ଡ
କି ସେ ଉଦୟାଚଳ ରତ୍ନଖଣ୍ଡ,
କିବା ସେ ପୂର୍ବ ଦର ଗିରି ବର
ରମ ମଣ୍ଡଳସ୍ଥ କରେ ବଦାସ ।
ଶୋଣିତେ ବିଲୀନ,
ହେଲେ କି ମୋର ତାରାଗଣେ ଲୀନ ॥୬॥

---

୪।୩- ଚନ୍ଦ୍ରବଦନ ର ରଞ୍ଜନ
୫।୧- ଫୁଲ ଶର ବରଂ
୫।୩- ତାଙ୍କାର ଭ୍ରମ ବାସରେ ସଙ୍କେତ
୫।୪- କରେ ଧରଣ କଂ
୫।୬- ଦେଖିଲୁ ମୁଖୀ
୬।୪- ନାନା ପକ୍ଷୀଙ୍କି
୬।୩- ପ୍ରଭାତରଂ
୬।୫- ଶୋଣିତେ
୬।୬- ହେଲେ ମୋର

ହର ଦଗ ହର ମସ୍ତକ ମଣି
ତେଜେ ରଞ୍ଜିତ ଦଶଇ ତରୁଣୀ,
କି ସେ ସୁନାସୀର ସୁବର୍ଣ୍ଣ ପର
ଥୋଇଣ ଅଛି ଅତି ଯତ୍ନ କରି ।
ଉଦୟାଚଳର,
ମସ୍ତକ ମାଣିକ୍ୟ ଛନ୍ଦ ରୁଚିର ॥୮॥

ସିନ୍ଦୂର ବନ୍ଦୂକ ଦଗାଙ୍ଗନାର
କୁଳଟା ଆଣେ ଅସ୍ତ୍ର ଛେଦକାର,
ନଷ୍ଟେ ଏ ପ୍ରଚଣ୍ଡ କର ତପନ
କମଳ ଆନନ୍ଦ କରେ ବର୍ଦ୍ଧନ ।
ଆମ୍ଭ କୁଳ ଗୁରୁ,
ଏହାଙ୍କୁ ପ୍ରଣାମ କର ରମ୍ଭୋରୁ ॥୯॥

ଏମନ୍ତ ଶ୍ରୀରାମ ସୀତାଙ୍କୁ କହି
ଯେ ବିଧି କର୍ମ ସାରି ସଜ ହୋଇ,
ଜାହ୍ନବୀ ତୀରେ ମିଳିଲେ ତକ୍ଷଣ
ସୀତାଙ୍କୁ ଚାହିଁ କହେ ରଘୁରାଣ ।
ଦେଖରେ ସୁକେଶୀ,
ବଚନ ଏହୁ ବ୍ରହ୍ମପୁର ବାସୀ ॥୧୦॥

ଦେଖ ଜହ୍ନୁନନ୍ଦିନୀ ଏ ରଞ୍ଜିନୀ
ଫୁଲ୍ଲ ପଙ୍କଜ ମୁଖରେ ଶୋଭିନୀ,
ଚପଳ ଶଫରୀ ନୟନ ଶୋହେ
ଚକ୍ରବାକ କୁଚେ ମୁନିଙ୍କ ମୋହେ ।
ଶୈବାଳ କେଶୀ,
ସ୍ୱଚ୍ଛ ହୃଦୟ ପୁଣ୍ଡରୀକ ହାସୀ ॥୧୧॥

---

୮।୩- କସେ ସୁନାଗିରଂ
୮।୬- ୦ମାଣିକ୍ୟ ଘନ ରୁଚିର
୯।୧- ୦ବନ୍ଧୂକ ଗଗନର
୯।୨- ୦ଆଣୀ ଅଶ୍ରୁ ଛେଦକାର
୯।୩- ନଚଷ୍ଟେଂ
୧୦।୩- ଢାନ ଭଗରେ
୧୧।୧- ଦେଖସ୍ୱେ ଜେନ୍ଦ୍ରେ ନନ୍ଦନୀ ରଞ୍ଜିତ
୧୧।୨- ୦ଶୋଭିତ
୧୧।୩- ଚଞ୍ଚଳ, ୦ଶୋଭେ
୧୧।୬- ୦ପୁଣ୍ଡରୀକ ବାସୀ

ଗୁରୁ ପୁଳିନ ଜଘନ ରଞ୍ଜିତା
ମତ୍ତ କଳକଣ୍ଠ ବାଣୀ ଶୋଭିତା,
ମତ୍ତ ମରାଳ ମୁଖର କଙ୍କିଣୀ
ତରଙ୍ଗ ଭୃଙ୍ଗ ପଦ୍ମ ପଦ ପାଣି ।
 ଅବନ୍ତୀ ଏ ନାରୀ,
ଫେନ ବସନେ ହୋଇଅଛି ଘାରି ।।୧୨।।

ମକର ଧ୍ୱଜେ ଆକୁଳିତ ହୋଇ
ମକର ଧ୍ୱଜ ପାଶକୁ ଗମଇ,
ରସବନ୍ତ ଅତି ରତ ଦାୟିକା
ପୁରୁଷ ରାଗେ ଆଶ୍ଳେଷକାରିକା ।
 ହୋଇଲେ ବୃଦ୍ଧତା,
କୁଳ ଲଙ୍ଘନେ ହୋଏ ଅତି ରତା ।।୧୩।।

ଏମନ୍ତେ ରାମ ସୀତାଙ୍କୁ କହିଲେ
ଜାହ୍ନବୀ ପାରି ହେବା ବିଚାରିଲେ,
ଏହିକାଳେ ମିତ୍ର ଗୁହ ଶବର
ନାବ ହେଜଣ ମିଳାଇ ସତ୍ୱର ।
 କଲେ ଗଙ୍ଗା ପାରି,
ଜାନକୀ ସୌମିତ୍ରୀ କୋଦଣ୍ଡଧାରୀ ।।୧୪।।

ଗୁରୁ କାନନେ ହୋଇଲେ ପ୍ରବେଶ
ନ୍ୟଗ୍ରୋଧ କ୍ଷୀରେ ଜଟା କଲେ କେଶ,
ସେହି ପ୍ରକାରେ ବହିଲେ ଲକ୍ଷ୍ମଣ
ସୁସ୍ଥାନ ଦେଖି କଲେ ନିବେଶନ ।
 ସେ ବୋଲନ୍ତି ରାମ,
ଦେଖ ପ୍ରିୟେ ବନ ଏ ଅଭିରାମ ।।୧୫।।

---

୧୨।୧- ୦ପୁଳିଙ୍ଗ ଘନରେ୦
୧୨।୪- ତରଙ୍ଗଭୃଙ୍ଗ୦
୧୨।୫- ଆବର୍ତ୍ତି ଏ ନାଭି
୧୨।୬- ୦ବଚନ ହୋଇଅଛୁ ଶୋଭି
୧୩।୩- ରସପତି ରତି ଅତି ଦାୟିନୀ
୧୩।୪- ୦ନାରେ ଆଶ୍ଳେଷ କାରଣୀ
୧୩।୬- ୦ଲଙ୍ଘନେ ଏମନ୍ତ ଭିତା
୧୪।୨- ଯାନଭି୦
୧୪।୫- ହେଲେବ୦
୧୫।୬- ଜାନକୀ ସୋମିତ୍ରା୦
୧୫।୨- ନଗ୍ରୋଧ କ୍ଷୀରେ
୧୫।୬- ଦେଖରେ ପ୍ରିୟେ ଏହୁ ଅଭିରାମ

ଦେଖ ହେନ୍ତାଳ ମୁକୁଳତମାଳ
ନବ ତମାଳ ବଞ୍ଜୁଳ ହେଳ,
ସରଳ ରସାଳ ତମାଳ ତାଳ
ବକୁଳ ପିଆଶାଳ ମାଳ ମାଳ ।
ଏ ଅନ୍ତରଞ୍ଜନ,
କରେ ଯୋଗୀଜନ ଯୋଗ ଭଞ୍ଜନ ।।୧୭।।

ଝିଲ୍ଲି ଝିଙ୍କାର ଝଙ୍କାରଙ୍କ ଧ୍ୱନି
ଲଳିତ ହୋଇଅଛି ଏହୁ ବନି,
କପୋତ ଶୁକ ଶାରିକା ମୟୂରୀ
ରବ ନୃତ୍ୟରେ ଏହୁଅଛି ପୂରି ।
ଧନ୍ୟ ଏହୁ ବନି,
ଦେଖ ରଙ୍ଗିନୀ ଭଙ୍ଗିନୀ କାମିନୀ ।।୧୭।।

ଫୁଟି ଲୋଟୁଅଛନ୍ତି ଚନ୍ଦ୍ରମଣ୍ଡ
ଚୁମ୍ବନ୍ତି ମଧୁପେ ମାତଙ୍ଗ ଗଣ୍ଡ,
ଦାନ ଜଳେ ପୂରେ ଚୂରେ ଅବନୀ
ଚୁମ୍ବୁଛନ୍ତି ଷଡ଼ ଭୃଙ୍ଗ ଭାବିନୀ ।
ଏ ସନ୍ଧି କରଣ,
ପଦ୍ମାକରରେ କରିଅଛି ବାରଣ ।।୧୮।।

କୁରଙ୍ଗ ହୋଇଛନ୍ତି କୁରଙ୍ଗଳ
ପରଗପୁରେ ହୋଇଛନ୍ତି ବଳ,
ବନ ଭୂମି ଯେ ଶଦ୍ଦଳେ ସ୍ଥଗିତ
ଜାତ କରଏ ମରକତ ମତ ।
ଶିତିକଣ୍ଠଗଣ,
କଳାପ କଳାପେ ଅତି ଶୋଭନ ।।୧୯।।

---

୧୭।୨- ନବ ତମାଳ ବଞ୍ଜୁଳଂ
୧୭।୧- ଝଙ୍କରତା ଧ୍ୱନି
୧୭।୨- ଲଳିତେ ଏହୁବନି
୧୭।୩- ସାରୀକା ଏହୁରି
୧୭।୪- ହେଉଅଛି ପୂରି
୧୭।୫- ବନି ଏହୁବନି
୧୭।୬- ରଙ୍ଗିଣୀ ରଙ୍ଗିଣୀ କାମିନୀ
୧୮।୧- ଲୋଟୁଛନ୍ତି ଚନ୍ଦ୍ରମଣ୍ଡ
୧୮।୨- ମଧୁପେ
୧୮।୪- ଷଡ଼ ଭୃଙ୍ଗ କାମିନୀ
୧୮।୬- ପଦ୍ମାବଳୀରେ କରିଛି ବାରଣ
୧୯।୩- ବନଭୂମି ସାଜେ ଭୂଜେ ଗର୍ଜିତ

ଦେଖ ବାର ବାର କସ୍ତୁରୀ ଜୀବ
ଜୀବ ଜୀବକ କାହିଁ କରେ ଭାବ,
କପୋତହୁଁ କୂଜ ଶୁଣ ମୃଗାକ୍ଷୀ
ସ୍ଫୁରୁଛି କି ଏ ରତିକେଳିଦୀକ୍ଷା ।
ଏ ମଣି ତ ପରା,
ମଣିତ ତୋର ପ୍ରସାଦରେ ଅଧୀରା ॥୨୦॥

ଦେଖ ଏ ବନ ଜଳନିଧି ସମ
ବେଢ଼ିତ ଗଣେ ଏ ଦଶେ ସୁଷମ,
ଗୋକର୍ଣ୍ଣ ଗଣେ ହୋଇଛନ୍ତି ଆଚ୍ଛନ୍ନ
ତିମିର ଶୋଭାରେ ହରୁଛି ମନ ।
ଏ ଅଟି ଦୁସ୍ତର,
ହରିଗଣେ ହୋଇଛନ୍ତି ନିରନ୍ତର ॥୨୧॥

ପ୍ରବାଳ ଲତାରେ ଅଛି ପିରତି
ନାଗମଣିଗଣେ ଦେଉଛନ୍ତି ଖ୍ୟାତି,
ଗନ୍ଧ ବରାଗେ ହୋଇଛନ୍ତି ଶୋଭନ
ମନ୍ଦା ହରି କରିଛନ୍ତି ଶୟନ ।
ରେ ମନ୍ଦର ନେତ୍ରା,
ଏ ବନ ସେବନ ଶୋଭା ବିଚିତ୍ରା ॥୨୨॥

ଦେଖ ଏ ବନ ନଭସ୍ଥ ବଦାର
ତମାଳ ବନ ବନ ବାଢ଼େ ପୂରି,
ସୁମନ ବକମାଳେ ମନୋହର
ବରଷୁଅଛି ମକରନ୍ଦ ଧାର ।
ଲତା ଚମ୍ପଲତା,
ଚମ୍ପଲା ପ୍ରାଏ ଶୋଭିତ ବନିତା ॥୨୩॥

---

୨୦।୨- ଜରଜୀବକ କାହିଁ କରେ ରବ
୨୦।୩- ୦ଶୁଣ ମୃଗାକ୍ଷୀ
୨୦।୪- ଶୁଭୁଛୁ କି ଏ ରତି କେଳି ଦନ
୨୧।୨- ୦ହୋଇଛୁ ଶୋଭନ
୨୧।୪- ୦କରୁଛୁ ମନ
୨୨।୧- ୦ଅଛୁ ପିରତି
୨୨।୩- ୦ଗନ୍ଧ ବଗ୍ଗେଜ
୨୨।୪- ୦କରିଛନ୍ତି ଶୋଭନ
୨୩।୧- ୦ନବ ଛବ ଧର
୨୩।୬- ୦ଶୋଭନ ବନିତା

ଶିଖୀ ଶିଖଣ୍ଡ କ ଶକ୍ର କୋଦଣ୍ଡ
ଦେଖନ୍ତେ ଦହେ ବିଯୋଗିନୀ ପିଣ୍ଡ,
କଳ ଧ୍ୱନରେ ଭେଦୁଛି ବ୍ରହ୍ମାଣ୍ଡ
ଦେଖନ୍ତେ ଦହୁଛି ମଦନ କାଣ୍ଡ ।
ଏ ରସେ ମଧୁରା,
ଏ ବନ ଶୋଭନୀ ବାଳା ଅଧୀରା ॥୨୪॥
ଚଞ୍ଚଳ ଖଞ୍ଜନ ନେସେ ଶୋଭନା
ଭୃଙ୍ଗ ଝଙ୍କାରେ କରେ ଭରତ୍ସନା,
ବାସରେ ବିଚ୍ଛିନ୍ନ କରୁଛି ମନ
ଲୋଚକ ମକରନ୍ଦ ତେଜ ଘନ ।
ଏ ପଲ୍ଲବ ପାଣି,
କମ୍ପାଇ ତର୍ଜନା କରେ କ ପୁଣି ॥୨୫॥
ଦେଖି ପ୍ରିୟେ ଏହୁ ପ୍ରିୟଙ୍କ ଲତା
ପ୍ରୋଷିତ ଭୃଙ୍ଗ କ ପ୍ରାୟେ ଶୋଭିତା,
ପୁଷ୍ପ ହାସେ ହୋଇଅଛି ଖଣ୍ଡିତା
ନାହିଁ ପ୍ରବାଳ ଅଧର ଶୋଭିତା ।
ଏ ରଙ୍ଗ ବଞ୍ଚନା,
ଜୀବନ ଦାନ କାନ୍ତ ବିନୁ ବିନା ॥୨୬॥
ଦେଖ ପ୍ରିୟେ ଏହୁ ଲତା ଖଣ୍ଡିତା
ମାନନୀ ପ୍ରାୟେ ଦଶଇ ଶୋଭିତା,
ପୁଚ୍ଛ ମୁଖରେ ହୋଇଛି ବିନତା
ମରୁତ ତାପେ ହୋଇଛି କମ୍ପିତା ।
ତୁଷାର ସଞ୍ଚୟ,
ଲୋଚକ କ ଏ କରୁଛି ଉଦୟ ॥୨୭॥
ଦେଖ ସାଧବୀ ମଧୁପ ବାନ୍ଧବୀ
ମଧୁରେ ମଧୁକର ଅତି ଲୋଭୀ.
ବନ୍ଦୁଛି ସ୍ୱାଧୀନ ଭର୍ତ୍ତୃକା ପରା
ପୁଷ୍ପ ଗନ୍ଧରେ ହୋଇଛି ଅଧୀରା ।
କାନ୍ତ ରତି ଲଭି
ପତ୍ରାବଳୀରେ ହୋଇଅଛି ଶୋଭି ॥୨୮॥

---

୨୪।୩- ଭଲ ଧୃତିରେଂ
୨୫।୫- ଏ ବଳବେ ପାଣି
୨୬।୨- ପ୍ରୋଷହୃଲତା ପ୍ରାଏତଂ
୨୬।୩- ପୋଷରେ ନାହିଁ
୨୬।୬- ୦ବିନୁଧାନ୍ତା
୨୭।୩- ପୁଚ୍ଛ ମୁଖରେଂ ୦ବନୀତାଂ
୨୮।୧- ଦେଖ ମାଧବୀଂ
୨୮।୪- ହୋଉଛୁ ସଧୀରା

ଦେଖରେ ସ୍ବରୂ ତମସା ନୟନା
ଲତା ଏ ଅଭିସାରିକା ଶୋଭନା,
ଗନ୍ଧହୀନ ନାହିଁ ଝଙ୍କାର ଗଣ
ନୀଳ କୁସୁମ ବସନେ ଶୋଭନ ।
ରବି ଶଶିକର,
ବପିନେ ତମେ କରଇ ପ୍ରଖର ||୨୯||

ଏମନ୍ତ କହି ରଘୁକୁଳମଣି
ଘେନଣ ଜନକ ରାଜ ନନ୍ଦିନୀ,
ବୋଲନ୍ତି ପ୍ରିୟେ ଦେଖ ମନ୍ଦାକିନୀ
ପାଶେ ଅଛନ୍ତି ଭରଦ୍ଵାଜ ମୁନି ।
ସେ ସ୍ଥାନକୁ ଯିବା,
ତାଙ୍କ ଚରଣ କମଳ ପୂଜିବା ||୩୦||

ଏମନ୍ତ ବୋଲି ତହୁଁ ଚଳିଗଲେ
କେତେକ ଦୂରେ ଆଶ୍ରମ ଲଭିଲେ,
ଜଙ୍ଘ୍ରୀ ନବାରଦର୍ଭସଂଚୟ
ପକ୍ଷୀଁ ନାହିଁ ହଂସଗଣଙ୍କ ଭୟ ।
ବ୍ୟାଘ୍ର ମୃଗ ମିଳି,
ଋଷି ପ୍ରଭାବେ କରୁଛନ୍ତି କେଳି ||୩୧||

ସେ ସ୍ଥାନେ ମିଳିଲେ ରଘୁନାୟକ
ଧରିଛନ୍ତି କରେ ଧନୁସାୟକ,
ସଙ୍ଗତେ ଭ୍ରାତ ଅଛଇ ଲକ୍ଷ୍ମଣ
ହେନ ଧରିଛନ୍ତି ଧନୁ ବାଣ ।
ଏହାଙ୍କ ମଧ୍ୟର,
ଶୋଭା ପାଏ ସୀତା ଯୁବତୀବର ||୩୨||

---

୨୯।୩- ୦ଝଙ୍କାରଗୁଣ
୨୯।୪- ୦ବସନେ ରଞ୍ଜନ
୨୯।୬- ବପିନେ ତପନ କର ପ୍ରଖର
୩୦।୨- ୦ରାଜ ଦୁଲଣୀ
୩୦।୬- ୦କମଳ ଚରଣଂ
୩୧।୩- ୦ଜନ୍ତୁ ହିନ ବାରଦଭ ସଞ୍ଚୟଂ
୩୨।୩- ସଙ୍ଗତେ ଅଛନ୍ତି ଭ୍ରାତ ଲକ୍ଷ୍ମଣ
୩୨।୫- ସେ ଛଅଙ୍କ ବର

ଆଶ୍ରମ ନିକଟେ ହୋଇଲେ ଯାଇ
ଏକ ଶିଷ୍ୟ ଦେଖି ଅଇଲା ଧାଇଁ,
ପଚ୍ଛରେ ତାହାଁ ଦେଖି ରାମ ରୂପ
ତୁମ୍ଭେ ତ ରାଜ ନନ୍ଦନ ସ୍ୱରୂପ ।
ବୁଲୁଅଛ ବନ,
ସଙ୍ଗତେ ଘେନିଛ ନାରୀ ରତନ ||୩୩||

ବୋଲନ୍ତି ରାମ ହେ ଶୁଣବା ବଟୁ
ଆମ୍ଭେ ଦଶରଥ ନନ୍ଦନ ଅଟୁ,
ପିତା ଆଜ୍ଞାରେ ଅଇଲୁ ଏ ବନ
ଦେଖିବୁ ଭରଦ୍ୱାଜ ତପୋଧନ ।
ଏସନ ଶୁଣିଲା,
ଗୁରୁ ନନ୍ଦନ ଛାମୁରେ କହିଲା ||୩୪||

ଶିଷ୍ୟ ମୁଖୁ ଏହି ବାଣୀ ଶୁଣିଣ
ଅଇଲେ ଭାରଦ୍ୱାଜ ତପୋଧନ,
ଶ୍ରୀରାମ ଲକ୍ଷ୍ମଣ ସୀତାଯୁକ୍ତ ଘେନ
ଋଷିଙ୍କ ଚରଣେ କଲେ ମୂର୍ଦ୍ଧନ ।
ସେ କଲ୍ୟାଣ କରି,
ଷଡ଼ଙ୍ଗେ ପୂଜିଲେ ସେ ତପୋଧାରୀ ||୩୫||

ପର୍ଣ୍ଣକୁଟୀକ ତାଙ୍କୁ ଘେନିଗଲେ
ଫଳମୂଳ ଆଦି ଅଶନ ଦେଲେ,
ଭୁଞ୍ଜିଣ ସନ୍ତୋଷ ହେଲେ ଶ୍ରୀରାମ
ଏମନ୍ତେ ଆସି ଆଚ୍ଛାଦିଲା ତମ ।
ସେ ସ୍ଥାନ ଉତ୍ତମ,
ଜାଣିଣ ଶ୍ରୀରାମ କଲେ ଆଶ୍ରମ ||୩୬||

ଏମନ୍ତେ ରଜନୀ ହେଲା ପ୍ରଭାତ
ତାମ୍ରଚୂଡ଼ ପକ୍ଷୀ କରନ୍ତେ ରୁତ,
ଶଯ୍ୟା ତେଜିଣ ଉଠେ ରାବଣାରି
ନିତ୍ୟକର୍ମ ବିଧି ସମସ୍ତ ସାରି ।
ଋଷି ପାଦେ ନମି,
ହୋଇଛନ୍ତି ମନ ନିତ୍ୟେ ବନଗାମୀ ||୩୭||

---

୩୫।୪- କଲେ ଋଷଙ୍କ ଚରଣେ
୩୫।୭- ସେ ତପସ୍ୱୀ
୩୬।୧- ପର୍ଣ୍ଣକୋଟୀକ

୩୬।୨- ଆସନ ଦେଲେ
୩୬।୬- ରାମ କଲେକ ଆଶ୍ରମ

ବୋଲନ୍ତ ରାମଙ୍କୁ ଗୁରୁ କୁମର
ଦେଖ ଏ ତ୍ରିବେଣୀ ଅତି ରୁଚିର,
ଏଥି ଘାଟରେ ଘାଟରେ ଗମନ କରି [?]
ଲଭିବ ଯାଇଁ ଚିତ୍ରକୂଟ ଗିରି ।
ମୁନିଛନ୍ତି ମୂରି [?],
ତହିଁ ଯାଇ ରହ କୋଦଣ୍ଡଧାରୀ ।।୩୮।।

ଶୁଣିଣ ଭରଦ୍ୱାଜଙ୍କ ବଚନ
ଆନନ୍ଦ ଲଭେ ରଘୁକୁଳରାଣ,
ସଙ୍ଗତେ ଭ୍ରାତ ପ୍ରିୟା ସଙ୍ଗେ ଘେନି
ମିଳିଲେ ବେଗେ ଚିତ୍ରକୂଟ ବନୀ ।
ସେ ଶ୍ରୀରାମପାଦ,
ଚିନ୍ତି ନୃପ ଧନଞ୍ଜୟ ଆନନ୍ଦ ।।୩୯।।

ଶ୍ରୀରାମ ବିଳାସ ଏ ଗୀତ ନାମ
ପଦକୁ ପଦ ଅଟେ ଅଭିରାମ,
ଅଷ୍ଟାଦଶ ଛାନ୍ଦ ଅଟଇ ଏହୁ
ସଦା ଏ ରସିକ ହୃଦୟେ ରହୁ ।
କାମ କଳା ପୂର୍ଣ୍ଣି,
କାମୀ ମନକୁ ଏ କୁମୁଦ ଜହ୍ନ ।।୪୦।।

---

୩୯।୩- ୦ପ୍ରିୟା ଘେନ କର
୩୯।୪- ୦ଚିତ୍ରକୂଟ ନାମେ ଗିର
୩୯।୦- ନୃପ ଧନଞ୍ଜୟ୦
୦ଧନଞ୍ଜୟ ହୋଏ ଆନନ୍ଦ
୪୦।୬- କାମୀଜନ ମନ କୁମୁଦ ଜହ୍ନ

# ଊନବିଂଶ ଛାନ୍ଦ

## (ରାଗ—ମଙ୍ଗଳଗୁଜ୍ଜରୀ)

ଦେଖ ଦେଖ କୋମଳାଙ୍ଗୀ ଏ ବନ ଶୋଭନ ।
ଚମ୍ପ ଚମ୍ପକୂଟ ଏହୁ ହୋଇଛି ରଞ୍ଜନ ଯେ ॥୧॥
ଧବ ଧବ ଆଲିଙ୍ଗନ ହୋଇଛି ବକ୍ଷସ୍ଥ ।
କୁଟ କୁଟଜରେ ଏହୁ ଅଛି ଶୋଭାଧରା ଯେ ॥୨॥
ପୁନ୍ନାଗ ପୁନାଙ୍ଗଗଣେ ହୋଇଛନ୍ତି ମଣ୍ଡିତ ।
ନଗ ନଗଗଣେ ଏହୁ ଦିଶଇ ବଚନ ଯେ ॥୩॥
କର୍ପୂର କର୍ପୂର ପୂରେ ହୋଇଛି ରଞ୍ଜନ ।
ସାଲ ସାଲ ପୁଷ୍ପଭରେ ଦିଶଇ ଶୋଭନ ଯେ ॥୪॥
ରସାଳ ରସାଳ ରସେ ଭ୍ରମଇ ଭ୍ରମର ।
ଭ୍ରମ ଭ୍ରମ ଭ୍ରମ କରେ ବିଚ୍ଛେଦ ହୃଦର ଯେ ॥୫॥
ମଧୂପ ମଧୂପରରେ ପ୍ରିୟାରେ ଲୋଭିତ ।
ଘନ ଘନ କରେ ଚନ୍ତ୍ର କୁରଙ୍ଗ ଶୋଭିତ ଯେ ॥୬॥
ଦ୍ୱିଜ ଦ୍ୱିଜ ମୁଖରବେ ପୂରିଛି କାନନ ।
ସୁମନା ସୁମନା ଦେଖ ଅବନୀ ଶୋଭନ ଯେ ॥୭॥
ସୁଦନ୍ତୀ ସୁଦନ୍ତୀକୁଳ ଦାନଜଳ ଶୋହେ ।
ଗଣିକା ଗଣିକାକୁଳ ମୁନି ଚିତ୍ତ ମୋହେ ଯେ ॥୮॥
ଶ୍ଳକ୍ଷଣ ଶ୍ଳକ୍ଷଣ କର କରି ଚାଟି ବାଳା ।
ସୁମନା ସୁମନାଗଣ ଚବନେ ଚଞ୍ଚଳା ଯେ ॥୯॥
ମଧୂପ ମଧୂପ ରାଗେ ହୋଇଛନ୍ତି ଧୂସର ।
ମୃଗ ମୃଗ ଦେଖ ହରିଣାକ୍ଷୀ ମନୋହର ଯେ ॥୧୦॥
ଶ୍ୟାମା ଶ୍ୟାମା ଦେଖ ପୁଷ୍ପ ଗୁଚ୍ଛିଜରେ ଲତା ।
ବଞ୍ଜୁଳ ବଞ୍ଜୁଳ କାନ୍ତେ ହୋଇଛନ୍ତି ଶୋଭିତା ଯେ ॥୧୧॥

---

୧।୨- ୦ଶୋଭନ ଶୋ
୨।୧- ୦କରିଛୁ ବକ୍ଷସ୍ଥ
୩।୧- ୦କରେ ହୋଇଛୁ ଶୋଭିତ
୪।୨- ୦ସାଲ ପୂରେ ପୂରେ୦
୫।୧- ୦ଭ୍ରମଇ ଭ୍ରମର
୬।୧- ୦ପ୍ରିଆ-ର ମୋହିତ
୬।୨- ୦ଘନପରେ ଚଞ୍ଚ କୁରଙ୍ଗୀ୦
୭।- ୦ପୂରିଛୁ ଗଗନ
୧୧।୧- ୦ଗୁଚ୍ଛ ଭରେ ନତା

ଲତା ଲତାକୁଳେ ଆକୁଳିତ ବନଭୂମି ।
ମଧୁ ମଧୁଭରେ ଅଳି ନ ପାରଇ ଭ୍ରମି ଯେ ॥୧୨॥

ଅଶୋକ ଅଶୋକ କରେ ସଂଯୋଗୀ ଜନର ।
ବିଯୋଗୀ ବିଯୋଗେରେ ଏ କରଇ କାତର ଯେ ॥୧୩॥

କରାଳ କରାଳବରେ ପୂରିଛି ଏ ବନ ।
କର କର ଯୁଦ୍ଧଭରେ ଦଳିଛି ଅବନ ଯେ ॥୧୪॥

ରଙ୍ଗଣୀ ରଙ୍ଗଣୀ ରାଗେ ହୋଇଛି ପୂରିତ ।
ହେମ ହେମ ପୁଷ୍ପଚୟେ ହରୁଛି ଏ ଚିତ୍ତ ଯେ ॥୧୫॥

ସାର ସାରସାକ୍ଷୀ ଦେଖ ସ୍ଥଳ ସରସିଜ ।
ନାଗରଙ୍ଗ ନାଗରଙ୍ଗେ ହୋଇଛି ବିରାଜ ଯେ ॥୧୬॥

ଶାଖା ଶାଖାମୃଗେ ଦେଖ ହୋଇଛି ଲଳିତା ।
ଚଳଦ ଚଳଦ ଦଳ ଅଙ୍ଗେ ବିଭୂଷିତା ଯେ ॥୧୭॥

ସୁନାସି ସୁନାସି କୁସୁମରେ ମନୋହାରି ।
ଗନ୍ଧର୍ବ ଗନ୍ଧର୍ବଗଣ ଦେଖ ଲୀଳା କାରି ଯେ ॥୧୮॥

ଧର ଧରଣୀ ମଣ୍ଡନା ଦେଖ ସୁଗନ୍ଧିତା ।
ଗନ୍ଧବହ ଗନ୍ଧ ବହନରେ ଏ ମୋହିତା ଯେ ॥୧୯॥

କୁନ୍ଦଦନ୍ତୀ କୁନ୍ଦଦନ୍ତୀ ଦ୍ୱିଜ କରେ ଶୋହେ ।
ବରଣ ବରଣ କଲି ରଞ୍ଜିଶ ଉଦୟେ ଯେ ॥୨୦॥

ଖଞ୍ଜନ ନୟନ ଦେଖ ଏ ବକୁଳ କୁଳ ।
ଏଥେ ରମଣୀୟ ଅତି ପ୍ରବାଳ ପ୍ରବାଳ ଯେ ॥୨୧॥
ଚନ୍ଦ୍ରମୁଖୀ ଦେଖ ଏହୁ କାମ ବାଣ ବାଣ ।
ଏଥିରେ ପୂରିଛି ପୁଣି ବାରଣ ବରଣ ଯେ ॥୨୨॥
ସୁକାନ୍ତ ଏ ଦେଖ ପ୍ରିୟେ ବାସନ୍ତ ବାସନ୍ତୀ ।
ଅତି ମନୋହର ଏଥି ନାହିଁ ଯାଞ୍ଚ ଜାତି ॥୨୩॥
ଦେଖ ପ୍ରିୟେ ପ୍ରିୟାଳୁଳେ କୁରଙ୍ଗ କୁରଙ୍ଗ ।
ଲବଙ୍ଗ ଲତିକା ପରେ ଏ ସାରଙ୍ଗ ରଙ୍ଗ ଯେ ॥୨୪॥

---

୧୪।୨- ବଜୁଳଂ
୧୫।୨- ୦ପୁଷ୍ପଚୟେ ହରନ୍ତିଂ
୧୬।୧- ୦ସରସୀ ଦେଖଂ

୧୭।୨- ଚଳଚଳ ଦଳଦଳ ଗଣେ କ ଶୋଭିତା ଗୋ
୨୦।୧- କୁନ୍ଦ କୁନ୍ଦଦନ୍ତୀ ଏବଂ
୨୨।୨- ଏଥରେ ପୂରିଛୁ ତତ୍ପିଂ

ଦେଖ ଏ ସରସୀ ବରେ ସାରସ ସାରସ ।
ହରୁଛି ଚିତ୍ତକୁ ଏହୁ ସୁବାସ ସୁବାସ ଯେ ॥୨୫॥
ଦେଖରେ ମୀନ ନୟନା ଚକ୍ରାଙ୍ଗ ଚକ୍ରାଙ୍ଗ ।
ଖେଳନ୍ତି ରାଜ ମରାଳ ସୁଭଙ୍ଗ ଶୁଭଙ୍ଗ ଯେ ॥୨୬॥
ଦେଖରେ ଚମସ୍ତ କେଶୀ ଏ ବସାର ସାର ।
ଅତି ରମଣୀୟ ଏହୁ ଦଶେ ବାରବାର ଯେ ॥୨୭॥
ଅତି ମନୋହର ଏହୁ ପଦ୍ମିନୀ ପଦ୍ମିନୀ ।
କେଳି କରୁଛନ୍ତି ଏଥି ନାଗିନୀ ନାଗିନୀ ଯେ ॥୨୮॥
ଏ କମଳ ହୋଇ ହଂସ ହଂସରାଜି ରାଜି ।
କୂଳେ ବିହରନ୍ତି ପ୍ରିୟେ ବନ ବାଜି ବାଜି ॥୨୯॥
ଶ୍ରବଣରେ ଶୁଣି ପ୍ରିୟେ ସୁରଧୁନୀଧ୍ୱନି ।
ଏଥି ତଟରେ ଶୋଭିତ ପ୍ରିୟେ ମୁନି ମୁନି ଯେ ॥୩୦॥
ଏଥିରେ ରଞ୍ଜନ ପ୍ରିୟେ ନଳ ମୀନ ମୀନ ।
ପ୍ରକାଶ କରୁଛି ଏହୁ ନଧୁବନ ବନ ଟେ ॥୩୧॥
ଦେଖ ପ୍ରିୟେ ଏଥି ଶୋଭା କୃଷ୍ଣସାର ଗତି ।
ଦେଖ ପ୍ରିୟେ ଏଥି ଶୋଭା କୃଷ୍ଣସାର ଗତି ଯେ ॥୩୨॥
ଦେଖ ପ୍ରିୟେ ଏଥି ଶୋଭା ଏ ବଂଶ କରିର ।
ଦେଖ ପ୍ରିୟେ ଏଥି ଶୋଭା ଏ ବଂଶ କରିର ଯେ ॥୩୩॥
ଦେଖ ପ୍ରିୟେ ଏଥି ଶୋଭା ଉନ୍ମତ୍ତ କେଶରୀ ।
ଦେଖ ପ୍ରିୟେ ଏଥି ଶୋଭା ଉନ୍ମତ୍ତ କେଶରୀ ଯେ ॥୩୪॥
ଶୋଭା ପାଉଅଛି ବନେ ରୁଚିର କେତକ ।
ସୁଖ ଅବା କରୁନାହିଁ ଏହି ଯେ କେତକ ଯେ ॥୩୫॥
ଦେଖ ପ୍ରିୟେ ପ୍ରିୟେ ଶୋଭା ଏହୁ କୁଶଅନା ।
ବିଯୋଗୀ ମାରଣ ଏଥୁ କାମ କୁଶ ଅନା ଯେ ॥୩୬॥

---

୨୪।୧- ଦେଖ ଦେଖ ପ୍ରିୟା କୂଳେ
୨୪।୨- ୦ସ୍ନେହି ରଙ୍ଗ ରଙ୍ଗ ଯେ
୨୫।୨- ହରଛି ହୃଦକୁ ଏହୁ୦
୨୬।୧- ୦ଚକାଙ୍ଗ ଚକାଙ୍ଗ
୨୬।୨- ଦେଖ ବନ୍ଦୀରାଜ୦
୨୮।୨- ୦ନାଗେଣୀ ନାଗେଣୀ ଯେ
୨୯।୧- ଏ କମଳ ହୋଇଅଛି ହଂସ ହଂସରାଜ
୨୯।୨- ୦ବିହରନ୍ତି ବନ ବାଜ ବାଜ ଗୋ
୩୫।୧- ଶୋଭା ପାଉଛି ବନରେ୦
୩୫।୨- ୦ଏହୁ ଯେ ଯେତେକ ଯେ

ଦେଖରେ ଚନ୍ଦ୍ର ବଦନା ମଧୁପ ରମଣୀ ।
ତୋର ପ୍ରିୟଙ୍କର ଏହୁ ମଧୁପ ରମଣୀ ଯେ ॥୩୭॥

ଦେଖ ମଧୁକରେ ମଧୁକରେ ମଧୁକରେ ।
ଶୋଭା ସାରସରେ ସାରସରେ ସାରସରେ ॥୩୮॥

ଅଧର ଅଧର ଅଧ ରଙ୍ଗ ବିମ୍ବ ବନ୍ଦେ ।
ଅଧର ଅଧର ଅଧରଙ୍ଗ ବିମ୍ବ ବନ୍ଦେ ଯେ ॥୩୯॥

ମଧୁର ମଧୁର ମଧୁରଙ୍ଗ ସେ ଭୃଙ୍ଗମତ ।
ମଧୁର ମଧୁର ମଧୁରସରେ ବିବଦ ଯେ ॥୪୦॥

କମଳ ବଦନୀ ଅଭିରାମ ରାମ ଦେଖ ।
ପ୍ରିୟେ କଳ କଳକଣ୍ଠ ବଢ଼ାଉଛି ସୁଖ ଯେ ॥୪୧॥

ଦେଖ ଭୃଙ୍ଗରାଜ ଭୃଙ୍ଗରାଜ କୋମଳାଙ୍ଗୀ ।
ଦେଖ ସୁକଦଳୀ ଶୁକଦଳୀ ପ୍ରାଣସଙ୍ଗୀ ଯେ ॥୪୨॥

ଶୋଭା ଏହୁ ମୃଗରାଜ ମୃଗରାଜ ରାଜ ।
ସୁକୋମଳା ଦାନବାର ଦାନବାର ସାଜ ଯେ ॥୪୩॥

ଦେଖ ଏହୁ ମଦାଳସୀ ମଦାଳସୀ ପିକ ।
ଦେଖ ଏହୁ ବିଳାସିନୀ ବିଳାସିନୀ କେକୀ ଯେ ॥୪୪॥

ଦେଖରେ ସୁଶୀଳା ଶୀଳା ଏଥି ମନୋହର ।
ପ୍ରିୟେ ଏ ରୋହିତ ହିତ ଅଜ୍ଞାନ ନକର ଯେ ॥୪୫॥

ଏହୁ ଭଦ୍ର ଭଦ୍ର ଭଦ୍ରକେଶିନୀ ସୁହାସୀ ।
ଶୁଣ ପକ୍ଷୀ କଳକଳ କଳ ମୃଦୁଭାଷୀ ସେ ॥୪୬॥

ବନଶୋଭା ଦେଖ ପ୍ରିୟେ ଏହ୍ନ ଶୋଭାବନ ।
ଘନ ହୋଇଛନ୍ତି ତମାଳେ ନ ଘନ ଯେ ॥୪୭॥

ଏ ନବମାଳିକା ଶୋଭା ଏ ନବମାଳିକା ।
ଏହୁ ଶେଫାଳିକା ଦେଖ ଦ୍ୱିରେଫ ମାଳିକା ॥୪୮॥

---

୩୭।୧- ଦେଖନ୍ତେ ଚନ୍ଦ୍ରବଦନୀ
୩୯।୧- ୦ବିଡ଼ମ୍ବହେ ଗୋ
୩୯।୨- ୦ବିଡମ୍ବ ହେ ଗୋ
୪୨।୨- ୦ପ୍ରାଣସଖୀ ଯେ
୪୪।୧- ୦ମଦାଳସୀ ଫାଂକ
୪୪।୨- ୦ବିଳାସିନୀ ପିକ ଗୋ
୪୮।୨- ୦ଦୁଶେଙ୍ଗ ପାଳିକା ଗୋ

ନାଗସୁତ୍ତ ମନୋହର ଦେଖରେ ନାଗସୀ ।
ଧୂକସୀ ଚମନା ଦେଖି ବିଧରେ ଧୂକସୀ ଯେ ॥୪୯॥

ଏହୁ ଅଭିରାମ ରାମଚନ୍ଦ୍ର ଅଭିଳାଷ ।
ଶୁଭେ ଏହୁ ଜନବଂଶ ଶୁଦ୍ଧ ହୋଇ ଶେଷ ଯେ ॥୫୦॥

ନୀଳଗିର ଶ୍ରୀଚରଣେ ରାତି ମତି ଦେଇ ।
ନୃପ ଧନଞ୍ଜୟ ଭଞ୍ଜ ଏହୁ ରସ କହି ହେ ॥୫୧॥

●

# ବାଂଶତି ଛାନ୍ଦ

## (ରାଗ—ବଙ୍ଗଳାଶ୍ରୀ)

ଏଥୁ ଅନନ୍ତରେ ବୋଲନ୍ତି ଶ୍ରୀରାମ
ଶୁଣରେ ମୃଗ ଲୋଚନା ।
ଅତି ରମଣୀୟ ରମଣୀ ଏ ବନ
ଦେଖି ନୁହ ଖେଦମନା ॥୧॥

ରମଣୀ ମଣି ମଣିମୟ ଭୁବନ
ନ ରମଇ ତୋର ମନ ।
କଣ୍ଟକେ ସଂକୁଳ ଏ ବନ ସଜନୀ
କମ୍ପାଇ କଲୁ ଗମନ ॥୨॥

ଯେବଣ ପୁର ଉଦର ସମାସାର
ଘଟିବେ ରମଣୀମଣି ।
ସେ ପୁର ଚଳୁ ମନେ ମଣୁ ବରଙ୍ଗ
କେହ୍ନେ ଶୋଇବୁ ଧରଣୀ ॥୩॥

---

୪୯।୧- ନାଗସୁତଂ
୫୦।୧- ଠରାମଚନ୍ଦ୍ରର ବିଳାସ
୫୧।୧- ନୀଳଦସୁଣ ଚରଣେଂ

---

୧।୨- ଠମୃଗ ନୟନା
୨।୧- ଠଭବନ
୨।୨- ନ ରହ୍ୱଇଂ
୨।୩- କଣ୍ଟକେ ସଙ୍କଟ ଏ ବନଂ
୩।୧- ଠଉଦର ମସାରରେ
୩।୨- ଘଟିତ ବର ରମଣୀ
୩।୩- ଠମଣୁ ମନେ ବରଙ୍ଗ

ବଡ଼ଙ୍କ ସୋପାନ ଅବରୋହଣରେ
ଅବଶ ହବୁ ଚରଣ ।
ଧରାଧର ଆରୋ- ହଣ ତୁ ଚେସନେ
କରିବୁ ମୋର ପରାଣ ॥୪॥

ରତନ ବଚାନେ ରନ୍ତ ମଚ ଚୋର
କେବେହେଁ ନୋହେ ସନ୍ଦରା ।
ଅତି ସୁକୁମାରୀ ନୂତନ କୁମାରୀ
ହେବ କରିବୁ ଦରୀ ॥୫॥
ଘନସାର ସାର ରେଣୁ ତୋ ଦେହରେ
ନ ହେନୁ ପରା ଟଣାଣ ।
ଧରଣୀ ଧୂଳରେ ଧୂସର ସେ ତନୁ
ଦେଖି ମୋ ଯିବ ପରାଣ ॥୬॥
ସୁବର୍ଣ୍ଣ ଝୀନ ଅଣୁକ ପରିଧାନ
ତେବେ ମଣୁଥିଲୁ ଭାର ।
ସେହି ତନୁ ବଳ- କୁମାରୀ କୃଶୋଦରୀ
ବହିଲୁ ଚୀର ଅମ୍ବର ॥୭॥

ଅମୃତ ସମ ଅଶନ ତେଜୁଥାଉ
ଏବେ ଫଳମୂଳ ଭୋଗୀ ।
ମୋ କର ଧରିଲୁ କରୀନ୍ଦ୍ର ଗମନା
ତେଣୁ ହେଲୁ ଦୁଃଖଭାଗୀ ॥୮॥
ଭ୍ରମର ଚଯ଼ୁ ଚଡ଼ିଲ ତୋତେ ପ୍ରିୟେ
ଏବେ ସେବିବେ ଚମରୀ ।
ତୋ ପୁରେ ତେବେ ନାଚନ୍ତି ବାରନାରୀ
ଏବେ ନାଚିବେ ମୟୂରୀ ॥୯॥
ଏବେ ଏ ସରଳ ସରଳ ହୃଦୟା
ବସଇ ସୁଗନ୍ଧ କ୍ଷୀର ।
ଅଗୁରୁ ଅଗୁରୁ ଧୂପ ସୁବାସିତ
ତେବେ ତୋ କେଳି ମନ୍ଦିର ॥୧୦॥

---

୪।୨- ଅବଶ କରୁଂ
୪।୩- ଧରାଧର ରୁ ଆରୋହଣେଂ
୬।୧- ସାର ଘନ ସାରଂ
୬।୩- ଂଧୂସର ତୋ ତନୁ
୭।୧- ସୁବର୍ଣ୍ଣ ତନ ଅଂଶୁକଂ
୯।୧- ଂପ୍ରିୟ ତୋତେ
୯।୩- ଯେ ପୁରେ ସେବନ୍ତି ତୋତେଂ
୧୦।୨- ଝରଇ ସୁଗନ୍ଧଂ

ଦେଖ ଏ ଲତା    ବଳିତ ଚନ୍ଦ୍ରର
    କୁସୁମ ଗୁଚ୍ଛ କୋଳରେ ।
କେବେ ପ୍ରିୟେ ଆଳ    ମୁଖ ଲୋଳ ଲୋଳ
    ମଞ୍ଜୁ ଥାନ୍ତି ଭୋଳଭରେ ॥୧୧॥
ସୁହେମ ଆତପତ୍ର    ତୋର ମସ୍ତକେ
    ଶୋଭିତ ଦଣ୍ଡ ଯଷ୍ଟୀ ।
ଏବେ ଉତ୍ତମାଙ୍ଗ    ପରେ ବିରାଜନ୍ତି
    ସପତ୍ର ପଲ୍ଲବ ମାଳୀ ॥୧୨॥
ତାର ତାର ମୋତି    ମାଳେ ତୋ ଉରଜ
    ପରେ ଦିଶଇ ଶୋଭନ ।
ଏବେ ବନପୁଷ୍ପ    କଳିକା ମାଳିକା
    ମାଳତୀ କୁନ୍ଦ ଜୀବନ ॥୧୩॥
ଦେଖ ଏ ଲତିକା    ଝୋଇଛି ବନିତା
    ଅଶ୍ରୁ ମକରନ୍ଦ ଧାର ।
ଶିଶିର ଶିକ୍ତ    କୋମଳାଙ୍ଗୀ ଦୁଃଖେ ତୋ
    ଦେଖ ରୁଦନ୍ତି ଆତୁର ॥୧୪॥
ଭଗ୍ନ କର ରଣ    କରୁଛି ଭ୍ରମଣ
    ଦେଖିଣ ଦନ୍ତ ବର୍ଣ୍ଣପୂର ।
ପୂର୍ଣ୍ଣ ଅବନୀ ଏ    କରିଅଛି ଭ୍ରମ
    ଘନସାର ସାର ପୂର ॥୧୫॥
ସୁରଭି ନ ଥିବାରୁ    ହୋଏ ଲକ୍ଷିତ
    ମଦ ଜଳ କଣ ପଡ଼
ମିତ ମିତ ଦନ୍ତ-    ଅଛି ଏ ଶୋଭନ
    ରକ୍ତଚନ୍ଦ୍ର ଲଙ୍ଗେ ଜଡ଼ ॥୧୬॥
ଭଗ୍ନ କେଶରରେ    ଛର କେଶରରେ
    ପୁଷ୍ପରେ ଦଶେ ଲଳିତ ।
ଗନ୍ଧ ଗନ୍ଧବାହ    କରୁଛି ତର୍ଜନ
    ହରୁଅଛି ନେତ୍ର ଚିତ୍ତ ॥୧୭॥

---

୧୧|୧- ୦କୁଞ୍ଚିତ ଲତ ବୋଲ
୧୨|୧- ୦ଆତପତ୍ର ମସ୍ତକେ ଶୋଭିତ
୧୨|୨- ଦଣ୍ଡ ସଖୀ
୧୨|୩ ଏବେ ଉତ୍ତମାଙ୍ଗ୦
୧୩|୪- ୦ଜନ୍ମ ଜୀବନ
୧୪|୨- ଅଶ୍ରୁ ମକରନ୍ଦ୦
୧୪|୩- ୦କୋମଳାଙ୍ଗୀ ଦେଖ ଲୋ
୧୪|୪- ଦେଖ ରୁଦନ୍ତି୦
୧୫|୩- କରୁଛି ଭ୍ରମଣ
୧୭|୩- ଗନ୍ଧବାହ ଗନ୍ଧବାହ

ଏପରି ପ୍ରକାରେ    ମହୀସୁତାଙ୍କ ସହ
  କହୁଣ ରଘୁନନ୍ଦନ ।
ଲକ୍ଷ୍ମଣ ସନ-    ଋଷି ପୁଙ୍ଗବ ସନ୍ନିଧି
  ହୋଇଲେ ଆନନ୍ଦ ମନ ॥୧୮॥

ବୋଲନ୍ତି ରାଘବ    ଶୁଣ ହେ ଲକ୍ଷ୍ମଣ
  ରଚ ଏଥେଁ ପର୍ଣ୍ଣ କୁଟୀ ।
ବିରଚ ତଣେ    ତମ୍ଭ ଦଣ୍ଡ ପ୍ରକାରେ
  ଛେଦନ୍ତ ଶାଖା କୁଟି ॥୧୯॥

ଶୁଣି ରଘୁମଣି    ସୁବାଣୀ ଲକ୍ଷ୍ମଣ
  କୁଟୀରେ କଲେ ରଚନା ।
କରଯୋଡ଼ି କହେ    ଶୁଣିମା ହେ ପ୍ରଭୁ
  ଲକ୍ଷ୍ମଣ ମନେ ବେଦନା ॥୨୦॥

ଯେବେ ମହାଭୁଜ    ପୁରକୁ ଗର୍ଜନ
  ମେଣ୍ଟ ରଘୁନାଥ ଭୁଜ ।
ପାଇବ ପ୍ରଭୁ    ବନୀଆର ଜାଣିଲ
  ଏଥା ପଡ଼ିବ ତୋ ଦେଶ ॥୨୧॥

ବୋଲନ୍ତି ରାଘବ    ଶୁଣ ହୋ ଲକ୍ଷ୍ମଣ
  ଜାଣ ତୁ ସର୍ବ ବିଷୟ ।
ଦୁଃଖ ସୁଖ ଏହୁ    ସଂସାର ଆଶ୍ରୟ
  ନ କର କିଛି ବିସ୍ମୟ ॥୨୨॥

ଏତେ ବୋଲି ରାମ    ଅତି ସୁଖ ମନେ
  ପର୍ଣ୍ଣଶାଳାରେ ରହିଲେ ।
ଜନକ ନନ୍ଦିନୀ    ସଙ୍ଗତେ ହରଷେ
  ନାନା କ୍ରୀଡ଼ାମାନ କଲେ ॥୨୩॥

---

୧୮।୩- ଋଷିପୁଙ୍ଗବ ସନ୍ନିଧି
୧୯।୨- ପର୍ଣ୍ଣକୋଟୀ
୧୯।୩- ତମ୍ଭ ଦଣ୍ଡ ପ୍ରକାରେ
୨୦।୧- ସୁବାଣୀ ରଘୁପତି
୨୧।୨- ମେଣ୍ଟ ରଘୁବର
୨୩।୧- ଏତେ ବୋଲି ରାମ

ରହୁଁ କଛୁ ଦନ ଅନ୍ତରେ ଭରତ
ନେବାକୁ କଶ ବସ୍ତର ।
ମନ୍ତ୍ରୀଗଣ ସଙ୍ଗ ପରବାର ସଙ୍ଗେ
ମିଳଲେ ଶଙ୍କକୂଟର ॥୨୪॥

ଅନେକ ପ୍ରକାରେ ରାମଙ୍କୁ ପ୍ରବୋଧ
କହ ନମିଲେ ଚରଣ ।
ପିତା ବଚନ ବ୍ରତ କଶ ଶ୍ରୀରାମ
ନ କଲେ ପୁରେ ପ୍ରୟାଣ ॥୨୫॥

ପିତାଙ୍କ ନଧନ ଶୁଣିଣ ଶ୍ରୀରାମ
ସାରଲେ ଯେ ବଧିକୃତ ।
ପାଦୁକା ଦୁଇ ଭରତ କରେ ଦେଇ
ପେଷିଲେ ପୁରେ ତ୍ୱରତ ॥୨୬॥

ପୁର ଜନ ମାନ ଗମନ ଶଙ୍କାରେ
ସେଠାରୁ କଲେ ଗମନ ।
କଛୁ ଦନ ଅନ୍ତେ ପ୍ରବେଶ ହୋଇଲେ
କୁମ୍ଭଯୋନ ନବେଶନ ॥୨୭॥

ଦେଖି ଋଷିବର ରାମଙ୍କୁ ସତ୍ୱର
ନେଇ ସମ୍ଭାବନା କଶ ।
ଏକାନ୍ତେ କହନ୍ତି ସଧୀରେ ବସିଣ
ଶୁଣ ହେ କୋଦଣ୍ଡ ଧାଶ ॥୨୮॥

ପୂର୍ବେ ବେଦବର ସେବ ତୋ ପସ୍ୱର
ମାଗିଥିଲେ ଯେଉଁ ବର ।
ଏବେ ତା ବରୁଣ ମନରେ ଶ୍ରୀରାମ
ବଚନ ତୋ ସତ୍ୟ କର ॥୨୯॥

---

୨୪।୧- ୦କଛୁଦନ
୨୪।୨- ୦ପରଷଦ ଘେନ
୨୫।୪- ମନରେ ପୁରେ ପ୍ରସ୍ଥାଣ
୨୬।୩- ପାଦୁକା ବେନ ଭରଥ ହସ୍ତେ ଦେଇ
୨୭।୩- କଛୁ ଦନ ଅନ୍ତେଂ
୨୮।୩- ଏକାନ୍ତେ ବସାଇ କହନ୍ତ ସଧୀରେ
୨୮।୪- ଶୁଣ ରୁଂ
୨୯।୨- ମାଗିଥିଲ ଏହୁବର
୨୯।୩- ଏବେ ତା ମନରେ ବରୁଣ ଶ୍ରୀରାମ
୨୯।୪- ବଚନ ତାଂ

ବୋଲନ୍ତୁ ଦେବ ଶ୍ରୁଣ ମୋର ତୋ
ଉଦ୍ଧରିବ ଧରାଭାର ।
ବଶିଷ୍ଠ ଋଷି ନନ୍ଦନ ନାଶି ଏବେ
ସେ କଥା ସଫଳ କର ॥୩୦॥

ଏମନ୍ତ କହି ଋଷିବର ରାମଙ୍କୁ
ଦେଲେ କୋଦଣ୍ଡ ତୂଣୀର ।
ବୋଲନ୍ତି ଏ ତିନ ଶର ବର ରାମ
ଥିଲେ ଏ ବୈକୁଣ୍ଠ ପୁର ॥୩୧॥

ଏହି ଶରବରେ ମରିବ ରାବଣ
ଏ ଶରେ ମରିବ ବାଳ ।
ଏ ଶରେ ଲବଣ ହୋଇବ ନିଧନ
ଏହା ଘେନ ରାବଣାରି ॥୩୨॥

ଜାଣିଲ ନିଷ୍ଟଏ ଏବେ ସେ ହୋଇବ
ଦେବ ବର କାର୍ଯ୍ୟ ସିଦ୍ଧି ।
ଅଯୋଧ୍ୟାପୁର ଗ୍ରାମ୍ହେ ଯେଣୁ ଅରଣ୍ୟେ
ବିଜେ କଲେ ଦୟାନିଧି ॥୩୩॥

ଏହି ସମୟରେ ଇନ୍ଦୁର ନନ୍ଦନୀ
ଅଗସ୍ତି ଋଷି ରମଣୀ ।
ଅତି ହରଷରେ ଜାନକୀଙ୍କି ଘେନ
କହନ୍ତି ମଧୁର ବାଣୀ ॥୩୪॥

ଘେନରେ ପଙ୍କଜ ବାସୀ ମନ୍ଦହାସୀ
ଏହୁ ଅମଳାନ ବାସ ।
ଦିବ୍ୟ ଅଙ୍ଗରାଗ ଏ ଗୃହୁ ଭୂଷଣ
ଘେନ ତୁ ହୁଅ ହରଷ ॥୩୫॥

---

୩୦।୧- ୦ମୋର ତୋ
୩୦।୩- ବଶିଷ୍ଟ
୩୧।୨- ୦ତୁଣୀର
୩୧।୩- ଶରି ବର ଧନ
୩୧।୪- ଥିଲେ ଜଣୁ ବଇକୁଣ୍ଠପୁର
୩୨।୧- ୦ନାଶିବ ରାବଣ
୩୨।୨- ୦ନାଶିବ ବାଲୀ
୩୩।୧- ଜାଣିଲି ଏବେ ସେ ହୋଇବ ନିଶ୍ଚୟେ
୩୩।୨- ଦେବବର୦
୩୪।୨- ୦ଋଷି ନନ୍ଦନୀ
୩୫।୪- ୦ତୁ ହୁଅ ସନ୍ତୋଷ

ପୂର୍ବେ ହିମବନ୍ତ ନନ୍ଦନୀ ମୋହର
ଦେଇଥିଲେ ପ୍ରୀତିଭରେ ।
ଏବେ ମୋହମନେ ଆନନ୍ଦ ଲଭିଣ
ପ୍ରଦାନ କଲି ତୋହରେ ॥୩୬॥

ଦେନ ସେ ବସନ ରତନ ଭୂଷଣ
ଜନକ ରାଜ ନନ୍ଦିନୀ ।
ଅତି ହରଷ ମତି ହୋଇ ସୁବତି
କାନ୍ତେ ନମେ ଚନ୍ଦ୍ରାନନୀ ॥୩୭॥

ପୁଣି ବୋଲନ୍ତି ଋଷିବର ସତ୍ୱର
କର ତୁ ରାମ ଗମନ ।
ଅତି ରମଣୀୟ ରମଣୀୟ ସେତୁ
ଆଗେ ପଞ୍ଚବଟୀ ବନ ॥୩୮॥

ତହିଁ ଯାଇ ବାସ କର ହୃଷୀକେଶ
ଯହିଁରେ ଅଛନ୍ତି ଋଷି ।
ବିଶେଷ ସ୍ଥାନ ଅଟଇ ପବିତ୍ର
ଦେଖି ତାହା ହୁଅ ତୋଷି ॥୩୯॥

ଏମନ୍ତ କହି ସେ ଶିଷ୍ୟଗଣ ଙ୍କୁହିଁ
ବୋଲନ୍ତି ହେ ସୁଦର୍ଶନ ।
ଦର୍ଶନେ ଅଟୁ ତୁ ସର୍ବ ଆଗ୍ରହରେ
ବନେ ରାମେ ଚଳ ଦେନ ॥୪୦॥

ଗୁରୁ ଆଜ୍ଞା ପାଇ ରାମ ସଙ୍ଗେ ଋଷି
ନନ୍ଦନ ବେଗେ ଗମିଲ ।
ନାବିକ ରାଇ ଜାହ୍ନବୀ ପାରହୋଇ
ପଞ୍ଚବଟୀ ବନେ କଲ ॥୪୧॥

---

୩୬।୧- ପୂର୍ବେ ହେମବନ୍ତ ନନ୍ଦନୀ ମୋହରେ
୩୬।୨- ଦେଇଥିଲେ ପ୍ରୀତଭରେ
୩୬।୩- ସେ ମୋହର ନନ୍ଦନ
୩୭।୩- ୦ହୋଇ ସେବନ୍ତ
୩୮।୪- ୦ପଞ୍ଚବଟୀ ବନ
୩୯।୩- ବିଶେଷ ପବିତ୍ର ଅଟଇ ସେ ସ୍ଥାନ
୩୯।୪- ଦେଖି ତାକୁ
୪୦। - ୦ସବୁଥା ଆଗ୍ରରେ
୪୧।୧- ୦ରାମ ସଙ୍ଗେ ଦେଇ
୪୧।୨- ଋଷି ନନ୍ଦନ ଗମିଲା

ଚଳିଲେ ଶ୍ରୀରାମ ଏହୁ ଅନ୍ତେ ରାମ
ଏଥି କରିବା ଆଶ୍ରମ ।
ଏତେ ବୋଲି ପ୍ରିୟା ଅନୁଜ ସେହେଣ
ରହିଲେ ବାସ ଉତ୍ତମ ॥୪୨॥

ଶ୍ରୀରାମ ବିଳାସ ନାମ ଏ ବିଂଶତି
ଛାନ୍ଦ ସମ୍ପୂର୍ଣ୍ଣ ହୋଇଲା
ସେ ରାମ ପାଦେ ନୃପତି ଧନଞ୍ଜୟ
ଶରଣ ଏବେ ପଶିଲା ॥୪୩॥

●

# ଏକବିଂଶ ଛାନ୍ଦ

## (ରାଗ—କେଦାର କାମୋଦୀ)

ଶୁଣ ସୁଜନେ ଏହା ଅତି ରହସ୍ୟ । ପଞ୍ଚବଟୀରେ ରାମ ରହିଣ ବାସ ଯେ ।
ଜନକ ନନ୍ଦିନୀଙ୍କ ସଙ୍ଗତେ ଘେନି । ଦେଖନ୍ତି ବୁଲି ବୁଲି ବିପୁଳ ବନୀ ଯେ ॥୧॥

ଏହି ସମୟେ ଦେଖି ଚତୁର୍ଥ ସୁତ । ଭୟ ହୋଇଲା ସୀତା ମନେ ଉଦ୍ଗତ ଯେ ।
ରାମଙ୍କୁ ଆଲିଙ୍ଗନ କଲାକ ଯାଇ । ସଭୟେ କମ୍ପୁଅଛି ଜ୍ଞାନ ହରାଇ ଯେ ॥୨॥

ସୁବର୍ଣ୍ଣ ରତନର ଏ ଗୃଦ୍ଧ ଦେଖି । ବୋଲନ୍ତି ରାମ କସ ଦେଖିଲୁ ସଖିରେ ।
ଏତେ ବୋଲିଣ ତହିଁ ଦେଲେ ଅନାଇ । ଦେଖିଲେ ପୁରେ ଅଛି ପକ୍ଷୀଙ୍କ ସାଇଁ ଯେ ॥୩॥

ମହୀଧର ଶିଖର ସମାନ ମୁଣ୍ଡ । କ୍ଷମ୍ଭୂତ ବର ସମ ବିଶାଳ ପିଣ୍ଡ ଯେ ।
ନଖାଙ୍କୁଶରେ ଭୟଙ୍କର ଦିଶୁଛି । ରକ୍ତ ବିଦାର ରବି ଛବି ଚଞ୍ଚୁଛି ଯେ ॥୪॥

ଦେଖି କୋଦଣ୍ଡଧର କୋଦଣ୍ଡ ଧରି । ଶୀଘ୍ର ନାରଚ ବେଗେ ସନ୍ଧାନ କରି ଯେ ।
ଆଗକୁ ଯାଇ ଶର ଛେଡ଼ିବା କାମ । ଜାଣି ଡାକିଲା ପକ୍ଷୀ ରହ ଶ୍ରୀରାମ ହେ ॥୫॥

---

୪୧।୩- ୦ଜାହ୍ନବୀ ପାର କରି
୪୨।୪- ୦ଚଳିଲେ ବାସଂ
୪୩।୧- ୦ଏ ବିଂଶତି ନାମ
୪୩।୪- ଭକ୍ତ ଶରଣ ପଶିଲା

---

୪।୨ ୦ବକ୍ତ୍ର ବିଦାରଂ
୪।୨- ୦ରବି ଛବି ଦିଶୁଛି ଯେ
୫।୧- ୦କୋଦଣ୍ଡଧାରୀଂ ୦ନାରାଜଂ

ନୁହଇ ଜାଣ ମୁହିଁ ରଜନୀଚର । ତୁମ୍ଭ ଜନକ ସଖା ଜାଣ ସତ୍ୟର ହେ ।
ମୁହିଁ ଅଟଇ ଖଗବର ନନ୍ଦନ । ଅନେକ ଦିନୁ ଏଥେଂ କରିଛି ସ୍ଥାନ ଯେ ॥୬॥

ସମସ୍ତ ପ୍ରକାରେ ମୁଁ ତୁମର ବନ୍ଧୁ । କରୁଣା କର ମୋତେ କରୁଣାସିନ୍ଧୁ ଯେ ।
ମୃଗୟା ଅର୍ଥେ ଯେବେ ଗମିବ ତୁମ୍ଭେ । ସୀତାଙ୍କ ରକ୍ଷଣରେ ରହିବୁ ଆମ୍ଭେ ଯେ ॥୭॥

ଶୁଣିଣ ପକ୍ଷୀବର ବାଣୀ ତତ୍ତ୍ୱ । ଅତି ସନ୍ତୋଷ ମନ୍ତ ସେ ରଘୁପତି ଯେ ।
ଏମନ୍ତେ କେତେକାଳ ନେଲେ ସେଠାର । ସୀତସ୍ୱା ତୁଲେ ରଞ୍ଜି ନାନା ବହାର ଯେ ॥୮॥

ଶୁଣ ଦଇବ ଘଟିତ ଅତି ବିଚିତ୍ର । ସେ କାଳେ ସୂର୍ପଣଖା ହେଲା ଆଗତ ଯେ ।
ଦୂରରୁ ଦେଖି ରାମ ରୂପ ଅବଳା । ମାର ମାରଣୁ ହେଲା ଅତି ଚଞ୍ଚଳା ଯେ ॥୯॥*

ତତକ୍ଷଣେ ରଞ୍ଜି ଜଗମୋହିନୀ ରୂପ । ତୁରିତେ ମିଳିଲା ସେ ରାମ ସମୀପ ଯେ ।
ବୋଲଇ ମୋର ବାଣୀ ଶୁଣିବା ଧୀର । ତୁମ୍ଭେ ଦେବତା କିବା କୁସୁମ ଶର ଯେ ॥୧୦॥

କିମ୍ପାଇ ହୋଇଅଛ କାନନବାସୀ । ସଙ୍ଗେ ଘେନିଛ ବାଳା ସେ ଶୋଭାରାଶି ଯେ ।
ଏ ବନେ ନିଶାଚରମାନଙ୍କ ଘର । ନିର୍ଭୟେ ହୋଇ ରହିଅଛ ଏଠାର ହେ ॥୧୧॥

ଶୁଣି ତରୁଣୀ ବାଣୀ ସେ ରଘୁମଣି । ବୋଲନ୍ତି ଆଗୋ ଶୁଣ ମୃଗ ଲୋଚନୀ ଗୋ ।
ଯେହୁ ସେ ଦେବ ଆମ୍ଭେ ଅଟୁ ମାନବ । ତପନ ବଂଶେ ଆମ୍ଭେ ଅଟୁ ସମ୍ଭବ ଯେ ॥୧୨॥

ଅଯୋଧ୍ୟା ପୁରେ ଦଶରଥ ନୃପତି । ତାଙ୍କ କୁମର ଆମ୍ଭେ ଶୁଣ ଯୁବତୀ ଗୋ ।
ପିତା ଆଜ୍ଞାରେ ଆମ୍ଭେ ବନ ଆଇଲୁ । ରମ୍ୟ ଦେଖିଣ ଏହୁ ବନେ ରହିଲୁ ଗୋ ॥୧୩॥

ଶୁଣି ନମର ବାଣୀ ଯେ ନିଶାଚରୀ । ହସି ମଧୁର କରି କହେ ଚତୁରୀ ଗୋ ।
ତୋ ରୂପ ଦେଖି ମୁହିଁ ହେଲି ମୋହିତ । ମୋତେ ରମଣ କର କୋଦଣ୍ଡ ହସ୍ତ ହେ ॥୧୪॥

ମୁହିଁ ଅଟଇ ଯେ ବିଶ୍ରବା ତନୁଜା । ମୋ ଭ୍ରାତ ରାବଣ ଯେ ଲଙ୍କାରେ ରାଜା ଯେ ।
ମୋ ତୁଲେ ଲୀଳାମାନ କରିବୁ ଯେବେ । ରତିର ବଇଭବ ଲଭିବୁ ତେବେ ଯେ ॥୧୫॥

ଭ୍ରାତ ସ୍ଥାମୁରେ ମୁଁ କହି ବିଶ୍ୱରୂପ । ତୋତେ କରିବ ସ୍ୱର୍ଗପୁରରେ ନୃପ ଯେ ।
ମାନବ ନାରୀ ଏହୁ ତୋର ଅବଳା । ଏ କିସ ଜାଣିବଟି ସୁରତି କଳା ଯେ ॥୧୬॥

ଶୁଣି ବୋଲନ୍ତି ହସି କୋଦଣ୍ଡଧାରୀ । ଶୁଣ ସୁନ୍ଦରୀବର ଅଛି ମୋ ନାରୀ ଗୋ . . . ।
ଏହୁ କିଶୋର ଦେଖ ମୋର ଅନୁଜ । ରମଣୀ ଶିରୋମଣୀ ତୁ ତାକୁ ଭଜ ଗୋ ॥୧୭॥

---

୬|୧- ୦କରୁଣାକର ମୋରେ୦
୮|୨- ୦ରହି ନାନା ବେଭାର ଯେ
୯|୧- ୦ସେ କାଳେ ସୁପଲେଷି୦
*ଏ ଧାଡ଼ିଟି ନାହିଁ
୧୩|୨- ୦ଏହୁ ସ୍ଥାନେ୦
୧୪|୨- ୦କୋଦଣ୍ଡ ହାତ ହେ
୧୫|୧- ୦ଅଟଇ ବିଶବାର୦
୧୫|୨- ୦ରତିର ବଇଭୋଗ୦
୧୬|୧- ୦ସୁରପୁରରେ ନୃପ ଯେ
୧୬|୨- ୦ସୁରଥ କଳା ଯେ
୧୭|୨- ୦ତୁ ତାକୁ ଇଚ୍ଛ ଗୋ

ନାହିଁ ତାର ରମଣୀ ଜାଣ ଭରତେ । ରତିରେ ତୃପ୍ତିକାମ କରିବ ତୋତେରେ ।
ଏସନ ଶ୍ରୀରାମର ଶୁଣି ବଚନ । ଲକ୍ଷ୍ମଣ ପୁରେ ବାଳା ମିଳି ତକ୍ଷଣ ଯେ ॥୧୮॥

ବୋଲଇ ଶୁଣ ତୁ ହୋ ସୁବାଙ୍କ ବର । ସୁରତି ଦେଇ ହର ମାନସ ମୋର ଯେ ।
ତୁମ୍ଭ ଅଗ୍ରଜ ବୋଲି ଅଛନ୍ତି ଏହା । ନିଶ୍ଚୟେ ତୁମ୍ଭେ ମୋର ହୋଇବ ନାହା ଯେ ॥୧୯॥

ବୋଲେ ଲକ୍ଷ୍ମଣ ଶୁଣ ସୁବର୍ଣ୍ଣ ବର । ତୁ କେହ୍ନେ ପରପୁରୁଷ ହେବୁ ସୀତାର ଗୋ ।
ମୁହିଁ ତାହାଙ୍କ ଦାସ ନିଶ୍ଚୟ ଜାଣ । ଦାସର ଦାସୀ କେହ୍ନେ ହେବୁ ସୁଜାଣ ଗୋ ॥୨୦॥

ସେହୁ ଅଟନ୍ତି ଜାଣ ଅବନୀପତି । ତାଙ୍କୁ ଭଜିବୁ ତୁ ହେ ବର ସୁବତି ଗୋ ।
ଏସନ ଶୁଣି ବାଳା ଅଇଲା ଚଳି । ରଘୁପତି ଛାମୁରେ ତୁରିତେ ମିଳି ଗୋ ॥୨୧॥

ବୋଲଇ କୋପକରି ଶୁଣ ତୁ ବର । କହିଲୁ ମୋତେ ପରିହାସ ଉତ୍ତର ହେ ।
ସେହୁ ତ କେବେ ସ୍ୱୀକାର ନ କଲା । ଦାସର ଦାସୀ କେହ୍ନେ ହେବୁ ବୋଇଲାରେ ॥୨୨॥

ମୋତେ ବୋଇଲା ତାଙ୍କୁ ଭଜ ତୁ ଯାଇଁ । ସେହୁ ଅଟନ୍ତି ଜାଣ ଅବନୀ ସାଇଁ ଯେ ।
ବୋଲନ୍ତି ଅଭିରାମ ରାମ ବଚନ । ନିଶ୍ଚେ ତାହାଙ୍କୁ ଭଜ ନାରୀ ରତନ ଯେ ॥୨୩॥

ଦେବୁ ଆମ୍ଭେ ପତ୍ରିକା ଘେନିଣ ଯାଅ । ଆମ୍ଭର ଆଜ୍ଞା ଦେଇ ତା କାନ୍ତା ହୁଅ ଗୋ ।
ଏତେ ବୋଲିଣ ରାମ ଲେଖା କାହିଲେ । ନାସା କର୍ଣ୍ଣ ଏହାର ଛେଦ ବୋଇଲେ ଯେ ॥୨୪॥

ପତ୍ରିକା ଘେନିଗଲା ରଜନୀଚରୀ । ବୋଲଇ ଶୁଣ ତୁମ୍ଭେ ଶାୟକଧାରୀ ଯେ ।
ଦେଇ ଅଛନ୍ତି ଭ୍ରାତ ଉଦନ୍ତ ତୋରେ । ଏହା ଘେନ ଏ କାର୍ଯ୍ୟ ଘେନ ସତ୍ୱରେ ଯେ ॥୨୫॥

ଶ୍ରୀରାମ ହସ୍ତଲେଖା ଘେନି ଲକ୍ଷ୍ମଣ । ଶିରେ ଲଗାଇ ଫେଡ଼ି ପଢ଼ି ତକ୍ଷଣ ହେ ।
ବୋଲନ୍ତି ଆରେ ଆରେ ଆସ ସୁନ୍ଦରୀ । ବୋଲି ଉଠିଣ କେଶ ବାସ ତା ଧରି ଯେ ॥୨୬॥

ଅବନୀ ମଣ୍ଡଳରେ ତକ୍ଷଣେ ପାଡ଼ି । ନିଜ ସ୍ୱରୂପ ଧରି ଗୁଡ଼ନ୍ତେ ରଡ଼ି ଯେ ।
ଶାୟକ ଧରି ନାସା ଶ୍ରବଣ କାଟି । ବିକଳେ ଲୋଟେ ମହୀ ବସ୍ତ୍ରାରି ପାଟି ଯେ ॥୨୭॥

ଧରି ଦୂରକୁ ଫିଙ୍ଗି ଦେଲେ ଲକ୍ଷ୍ମଣ । ନାସା ଶ୍ରବଣ ତେଜି ଦଶେ ବଷଣ୍ଡ ଯେ ।
ଶୋଣିତ ଧାରମାନ ଯାଉଛି ବହି । ମିଳିଲା ବାଲୀ ଖର ସମୀପେ ଯାଇ ଯେ ॥୨୮॥

ଦେଖି ବୋଲଇ ତାକୁ ଅସୁରପତି । ଏ କର୍ମ କଲା ତୋତେ କେହୁ ଦୁର୍ମତି ଯେ ।
କାଳ ଭୁଜଙ୍ଗ ମୁଖେ ହସ୍ତ କେ ଦେଲା । ମେରୁ ପକାଇ କେହୁ ଶିର ପାଡ଼ିଲା ଯେ ॥୨୯॥

---

୧୯।୨- ତୁମ୍ଭ ଅନୁଜ ବୋଲି ଅଛନ୍ତି ଯାହା
୨୩।୧- ୦ସେହୁ ଅଟନ୍ତି ଜାଣ୦
୨୩।୨- ୦ଭଜ ସ୍ତ୍ରୀ ରତନ ଗୋ
୨୪।୧- ୦ଦେବୁ ପତ୍ରିକା ଆମ୍ଭେ୦
୨୪।୨- ୦ତୁ ଏହା ନାସା କର୍ଣ୍ଣ୦
୨୫।୧- ୦ବୋଲନ୍ତି ଶୁଣ ତୁମ୍ଭେ୦
୨୫।୨- ୦କର ସତ୍ୱରେ ହେ
୨୬।୨- ୦ଆସ ସୁନ୍ଦରୀ; ବୋଲି ଉଠିଣ ସେ ପାସ୦
୨୮।୧- ଧରି ଫିଙ୍ଗି ଦେଲେ୦ ୦ଯାନ୍ତେ ଦଶେ ଭମିଣ୍ଡି ଯେ
୨୯।୧- ୦କେହୁ ତୋତେ ବଳ ସୁନ୍ଦରୀ
୨୯।୨- ୦କେହୁ ମସ୍ତ ପାଡିଲା ଯେ

ନିଧନରେ ସଭୟ କେହୁ ନୋହିଲ । ମୃତ୍ୟୁ ଦେବତାର ଭୁବନେ ପଶିଲରେ ।
କହ ସୁନ୍ଦରୀ ଏହୁ କେବଣ ରୀତ । କେବଣ ଜନ ଦେଲା ଏହୁ ବିପତ୍ତିରେ ॥୩୦॥

ବାଣ ଅନଳେ ତାକୁ ଭସ୍ମ କରିବ । ଶମନ ଭବନ ତାକୁ ଦେଖାଇବରେ ।
ଶୁଣି ରୋଦନ କରି କହେ ତରୁଣୀ । ଅନାଥ ହୋଇଲି ମୁହିଁ ତୋର ଭଗିନୀ ଯେ ॥୩୧॥

ଅଯୋଧ୍ୟା ନୃପ ଦଶରଥ ବୋଲଣ । ତାହାର ଜ୍ୟେଷ୍ଠ ପୁତ୍ର ଶ୍ରୀରାମ ଶୁଣ ଯେ ।
ସଙ୍ଗତେ ଭ୍ରାତ କାନ୍ତା ଘେନିଣ କରି । ରହିଛି ପଞ୍ଚବଟୀ ବନ ଆବୋରି ଯେ ॥୩୨॥

ମୁନିଗଣଙ୍କୁ ଦେଲ ଅଭୟ ବର । ଶରେ ନାଶିଲା ସର୍ବ ଅବନୀଚର ଯେ ।
ତାଡ଼କା ସୁବାହୁକୁ କଲା ନିଧନ । ଏବେ ମିଳିଲା ଆସି ଦଣ୍ଡକାରଣ୍ୟ ଯେ ॥୩୩॥

ମୁହିଁ କରନ୍ତେ ଲୀଳା ଦେଖିଲି ତାକୁ । ଧାଇଁଲି ଖାଇବି ବୋଲି ସମୀପକୁ ଯେ ।
ଦେଖି ଅନୁଜ ତାର ମୋତେ ଧଇଲା । ଶାୟକେ ନାସା କର୍ଣ୍ଣ ଛେଦନ କଲା ଯେ ॥୩୪॥

ଅଛି ତା ସଙ୍ଗେ ନାରୀ ମୁନିମୋହିନୀ । ତାହାକୁ ଲଭିବ ସେ ଦଶ ମୂର୍ଦ୍ଧନୀ ଯେ ।
ସମରେ ହତ ତାକୁ ବେଗେ ତୁ କର । ନୋହିଲେ ମୁହିଁ ପଶିବ ଦହନର ଯେ ॥୩୫॥

ଶୁଣି ତା ବାଣୀ ସଜ ହେଲା ତକ୍ଷଣ । ଖର ତ୍ରିଶିର ବଳୀ ବୀର ଦୂଷଣ ଯେ ।
ଚତୁର୍ଦ୍ଦଶ ସହସ୍ର ସୈନ୍ୟ ସଙ୍ଗର । ଗଜ ତୁରଙ୍ଗ ତହିଁ ଯେହ୍ନେ କୂପାର ଯେ ॥୩୬॥

ସଜ ହୋଇ ଧାମନ୍ତି ଦନୁଜ ସୈନ୍ୟ । ଘୋର ଗର୍ଜନ ଘାତେ ପୂରେ ଅରଣ୍ୟ ଯେ ।
ଶୁଣି ବୋଲନ୍ତି ସେ କୋଦଣ୍ଡ ଧର । ଲକ୍ଷ୍ମଣ ସୀତା ଘେନି ରହ କନ୍ଦର ଯେ ॥୩୭॥

ରାମ ଆଦେଶ ପାଇ ବୀର ଲକ୍ଷ୍ମଣ । ସୀତାଙ୍କୁ ଘେନି ଦୂରେ କଲେ ଗମନ ଯେ ।
ରହିଲେ ଗିରି ଦରୀ ଆବୋରି କରି । ଉଦରେ ପ୍ରବେଶ ତା କରି ଚତୁରୀ ଯେ ॥୩୮॥

ଏହି ସମୟେ ହଣେ ଦନୁଜ ସୈନ୍ୟ । ନଭ ପୂରିଣ ଯେହ୍ନେ ଆସନ୍ତି ଘନ ଯେ ।
ଛେଲ ଭୁଷୁଣ୍ଡୀ ଶୂଳ ଚକ୍ର ଧରିଣ । ତୋମର ଉଦୂଖଳ ଶକତ ଗଣ ଯେ ॥୩୯॥

କେହୁ ପହଣ୍ଡେ ଆସି ଘୁଡ଼ନ୍ତି ରଡ଼ି । ମହୀଧର ମସ୍ତକ ପଡ଼ଇ ଝଡ଼ି ଯେ ।
ବାଣ ବରଷିବାରେ ବନ ଆକୁଳ । ପାଦରଜରେ ପୂରେ ଆକାଶ ସ୍ଥଳ ଯେ ॥୪୦॥

ଏମନ୍ତେ ଦନୁଜଙ୍କ ସୈନ୍ୟ ଦେଖିଣ । ତୂଣୀର ଭିଡ଼ି ରାମ କଲେ ପ୍ରୟାଣ ଯେ ।
ଧନୁରେ ଯୋଡ଼ି ଶର ବନ୍ଧେ ଚଡ଼ତ । କାଟିଲେ ନିଶାଚର ସୈନ୍ୟକୁ ଧାଡ଼ ଯେ ॥୪୧॥

---

୩୨।୧- ୦ଦଶରଥ ରାଜନଂ
୩୩।୧- ୦ସର୍ବ ଅବନୀ ଚର ଯେ
୩୩।୨- ୦ଦଣ୍ଡକାବନ ଯେ
୩୫।୧- ୦ଦଶ ମୁର୍ଦ୍ଧନୀ ଯେ
୩୫।୨- ୦ସମରେ ହତୋକୁଂ ପଶିବ ବହ୍ନିର ଯେ
୩୬।୧- ୦ବଳ ବରହଗଣ ଯେ
୩୭।୧- ୦ଧାମନ୍ତି ଅସୁର ସୈନ୍ୟ
୩୮।୨- ରହିଲେ ଗିରିବରଂ ଗହ୍ୱରେ ପ୍ରବେଶ
୩୯।୧- ଏହି ସମୟେ ସେଂ
୩୯।୨- ୦ତୋମର ଉଡ଼ୁଖଳଂ
୪୧।୧- ୦ପୟାଣ
୪୧।୨- ୦ନିଶାଚର ସୈନ୍ୟ ଧାଡ ଯେ

ବାଣ ଅଗ୍ନିକୋଣରେ ପଶିଲା ବନ | ପଡ଼ିଲେ ଛୁଡ଼ ଛୁଡ଼ ଦନୁଜ ସୈନ୍ୟ ଯେ |
ଶୋଣିତ ପୂରେ ପୂରେ ବନ ଅବନୀ | ବଳ ନିଧନ ଦେଖି ଧାମେ ଅଗ୍ରଣୀ ଯେ ||୪୨||

ରଥ ଚଢ଼ିଣ ତହିଁ ତ୍ରିଶିର ବୀର | ରାମ ଶରୀରେ ଶର କଲା ପ୍ରହାର ଯେ |
ଦେଖି କାଟିଲେ ତାହା ରଘୁନାୟକ | ହସି ଗୁଣେ ବସାଇ ପେଷେ ଶାୟକ ହେ ||୪୩||

ବାଣ ବେଗେ ପାଇଣ ତ୍ରିଶିର ହତ | ହୋଇଲେ ତିନି ଶିର ଅବନୀ ଗତ ଯେ |
ଯେସନେ ମହୀଧର ନିକୃନ୍ତ ତିନି | ଅଶନି ପାଇ ଛୁଡ଼ ପଡ଼େ ଅବନୀ ଯେ ||୪୪||

ତ୍ରିଶିର ହତ ଦେଖି ବୀର ଦୂଷଣ | ଶୂଳ କରେଣ ଧରି ଧାମେ ରୋଷେଣ |
ମନ୍ଦର ଗିରି ସମ ଦଶେ ଭୀଷଣ | କଣ୍ଠା ସଙ୍କୁଳ କରି ଦନ୍ତ ସମାନ ଯେ ||୪୫||

ଚଣ୍ଡ ଘଣ୍ଟ ମଣ୍ଡଳୀ କରନ୍ତି ଧ୍ୱନି | ଶୂଳନ୍ତେ କମ୍ପିଲା ସେ ନବ ମେଦିନୀ ଯେ |
ଦେଖିଣ ରାମ ତହିଁ ଶାୟକ ପେଷି | ଶୂନ୍ୟକୁ ପାଇ ହେଲା ସେ ଭସ୍ମରାଶି ଯେ ||୪୬||

ମନେ ବିଚାର କରି କୋଦଣ୍ଡପାଣି | ତୂଣୀର ବାଛି ଏକ ଶାୟକ ଘେନି ଯେ |
ପୂର୍ବେ ଶଚୀରପତି ସମର କାଳେ | ଦନୁଜ ନନ୍ଦନ ସହିଁ ନାଶିଣ୍ଟି ହେଲେ ଯେ ||୪୭||

ସେ ବାଣ ଘେନି ରାମ କଲେ ମନ୍ତ୍ରଣ | ଯୋଚ ବନ୍ଧି କାଟିଲେ ଭୁଜ ତକ୍ଷଣେ ଯେ |
ଶୂଳ ସହିତେ ଭୁଜ ପଡ଼ିଲା କ୍ଷିତି | ପଡ଼ନ୍ତେ ବନଦେବେ ଲଭିଲେ ଭୀତି ଯେ ||୪୮||

ବାମ କରରେ ଧରି ବୃକ୍ଷ ନଚୟ | ପେଷିଲା ରାମେ ରଣେ ଅତି ନିର୍ଦୟ ଯେ |
ଦେଖି ତାହାର ବୀରପଣ ଶ୍ରୀରାମ | ମନରେ କଛି ତହିଁ ବହିଲେ ଭ୍ରମ ଯେ ||୪୯||

ପେଷିଲେ ଅର୍ଦ୍ଧଚନ୍ଦ୍ର ଶର ତୁରିତ | କନ୍ଧ ଛିଡ଼ିଣ ଶିର ଅବନୀ ଗତ ଯେ |
ଏସନ ଦେଖି ଖର ବୀର ନ ସହି | ଆବୋର ଶ୍ରୀରାମଙ୍କୁ ଯୁଝିଲା ରହି ଯେ ||୫୦||

କୋଟି କୋଟି କରଣ ପେଷିଣ ଶର | ଗଗନ ଦିଗଗଣ କଲା ଅନ୍ଧାର ଯେ |
ଶର ପେଷି କାଟିଲା ବୈଷ୍ଣବୀ ଧନୁ | ନାରାଚେ ପୂରାଇଲା ଶ୍ରୀରାମ ତନୁ ଯେ ||୫୧||

ତିଳ ସମାନ କଲା କପାବାଚ ଛେଦ | ପେଷିଲା ବାଣଗଣ ମର୍ମକୁ ଭେଦ ଯେ |
ସଂଶୟ ମନ ତହିଁ ହେଲେ ଶ୍ରୀରାମ | ଆଗ ପଛିଣ୍ଡ ପଛ କରିବ କାମ ଯେ ||୫୨||
ଆନ ଧନୁ ଧରିଣ ରଘୁନାୟକ | ପେଷିଲେ ଖର ପରେ ଦିବ୍ୟ ସାୟକ ଯେ |
ତୂଣୀର ଧନୁ ଶର ଛେଦିଲେ ତାର | କ୍ରୋଧେ ଧଇଲା ଗଦା ଅସୁର ବର ଯେ ||୫୩||

---

୪୨।୧- ୦ପଡ଼ିଲେ ପଡ଼ି କ୍ଷିତି
୪୩।୧- ୦ତ୍ରିଶିରାବର୦
୪୪।୨- ୦ପଡ଼େଣ ବନରେ
୪୫।୧- ୦ଧାମେ ବହନ ଯେ
୪୫।୨- ୦କଣ୍ଠା ସଙ୍କୁଳ ଅତି ଦନ୍ତ୦
୪୬।୧- କରେ ଏ ଧ୍ୱନି୦
୪୬।୨- ୦ଶୂଳକୁ ପାଇହେଲା
୪୭।୧- ରାମ ମନେ ବିଚାରି ତୂଣରୁ ବାଛି
ଏକ ସାୟକ ଘେନି ସନ୍ଧିରେ ପେଷି ଯେ
୪୮।୨- ୦କଲନ୍ତେ ବନ ଦେବେ୦
୪୮।୨- ପଡ଼ିଲା ଛୁଡ଼ି୦
୪୯।୨- ୦ତହିଁ କଛି ଲଭିଲେ୦
୫୨।୧- ୦କପଚ ଭେଦ

ମଧ୍ୟାହ୍ନ ମାର୍ତ୍ତଣ୍ଡ ସମ ତାର ବର୍ଷ୍ମ । ପେଷନ୍ତେ ଦହନ୍ତି ସେ ଯୋଜନେ ବନ ଯେ ।
ଇନ୍ଦ୍ରାସ୍ତ୍ର ପେଷି ରାମ ନାଶିଲେ ତାହା । ବୃକ୍ଷ ପାଷାଣ ପେଷେ ଅସୁର ନାହା ଯେ ।।୫୪।।

ଏସନ ରାମ ଦେଖି ତା ଖରପଣ । ବାଣ ପେଷିଣ ଦେଲେ ଯମ ସଦନ ଯେ ।
ଦେଖିଣ ସୂର୍ପଣଖା ଗଲା ପଳାଇ । ମାୟାରୂପ ଧରିଣ ଆକାଶେ ରହି ଯେ ।।୫୫।।

ରାମ ସମୀପେ ମିଳେ ଲକ୍ଷ୍ମଣ ସୀତା । ଦନୁଜ ନାଶ ଦେଖି ତେଜିଲେ ଚିନ୍ତା ଯେ ।
ରାମ ବିଳାସ ଛାନ୍ଦ ଏକବିଂଶତି । ମନ ଦେଇଣ ଏହା ଶୁଣ ସୁମତି ଯେ ।।୫୬।।

ଏହୁ ଚରିତ ଶୁଣି ଅତି ସୁରସ । ଶୁଣି ସୁଜନମାନେ ହୋଇବା ତୋଷ ଯେ ।
କୋଦଣ୍ଡଧାରୀ ପାଦେ କରି ସ୍ମରଣ । ଭଣେ ନୃପତି ଧନଞ୍ଜୟ ସୁମନ ଯେ ।।୫୭।।

●

## ଦ୍ୱାବିଂଶ ଛାନ୍ଦ
### (ରାଗ—ଚିନ୍ତା କେଦାର)

ଏଥୁ ଅନନ୍ତରେ ସୂର୍ପଣଖୀ । ଖର ଦୂଷଣଙ୍କ ବଧ ଦେଖି ।
ଅତି ସଭୟ ହୋଇ ସେହୁ ଗମିଲା ଯାଇଁ ଦେଖିଲା ସେ ବଂଶ ଆଖି ଯେ, ସୁନ୍ଦରୀ ।।୧।।

ନେତ୍ର ଯୁଗୁଁ ଲୋତକ ତେଜୁଛି । ହା ହା ହା ହା ଭ୍ରାତ ଯେ ବୋଲୁଛି ।
ପଡ଼ିଲା ଦଶଗ୍ରୀବର ପଦତଳେ ଯେହ୍ନେ କୁଠାରେ ଛେଦିତ ସାକ୍ଷୀ ହେ, ଦଇବ ।।୨।।

ଦେଖି ବୋଲନ୍ତି ଲଙ୍କା ରାଜନ । ହେଲି କେ କଲା ଏ ବିଡ଼ମ୍ବଣ ।
ନିଶ୍ଚୟେ ଜାଣିଲି ସେହୁ ଅତି ମୂଢ଼ ନ ଲଭିଲା କି ସେହୁ ମରଣରେ, ସୁନ୍ଦରୀ ।।୩।।

ଶୁଣ ରାଜନ ବରୁଣ କବା । ଯମ କୁବେର କି ଅନ୍ୟ ଦେବା ।
ନୋହିଲେ କି ଅବା ଦେବ ନାରାୟଣ ଦଣ୍ଡ ଦେଲା ସ୍ୱୟମ୍ଭୂ ଅଥବାରେ, ସୁନ୍ଦରୀ ।।୪।।

ମୋତେ ନ ଜାଣି କଲା ଅବଜ୍ଞା । ତିନି ପୁରେ ବିଦିତ ମୋ ଆଜ୍ଞା ।
କହ କହ ମୋତେ ନିଶ୍ଚୟ କରିଣ ତା'ତ ମହାକାଳ ଗୃହରେ ବାଞ୍ଛା ରେ, ସୁନ୍ଦରୀ ।।୫।।

---

୫୪।୨- ପେଷିଲେ ତାହା ।

୫୭।୨- ୦ପାଦ କରି ଶରଣ, ଭଣେ ଏ ଗୀତ ଧନଞ୍ଜୟ ରାଜନ ।।୫୭।।

---

୧।୧- କ-୦ଶୂପଲେଖି
ଖ-ଅନ୍ତରେ ଯେ ସୂର୍ପଣଖୀ
୧।୨- ଖ-୦ଭେଟିଲ ସେ୦
୨।୨- ଖ-୦ଦଶ ମାଥର ପଦତଳେ
୩।୨- ଖ-୦ସେହୁ ମୂଢ ଅତି
୩।୨- ଝ-୦ସେ ଏ ଗତି ହେ୦
୪।୧- ଖ-ସୁର ରାଜନ୦
୫।୧- ଖ- ୦ବିରାଜେ ମୋ ଆଜ୍ଞା
୫।୨- ଖ-୦କହ କହ ମୋରେ୦
୫।୨- ଖ-୦ସକଳ ନସ୍ତରେ୦

ଭ୍ରାତ ବାଣୀ ଶୁଣି ବୋଲେ ବାଳୀ । ତୁ ତ ହେଲୁ କାମ ଭୋଗଶାଳୀ ।
ଗୃହ ନ ଥାଇ ଯେବଣ ସେ ରାଜାର ତାର ବଂଶରେ ଲାଗଇ କାଳ ହେ, ରାଜନ ॥୬॥
ଗ୍ରାମ ଭୋଗେ ମାତିଲୁ ସତତ । ପାନବଶେ ହେଲୁ ଘୋର ମତ୍ତ ।
ନ ଜାଣୁ ଖର ଦୂଷଣ ତ୍ରିଶିର-ସହିତେ ଜନ୍ମଭ୍ରାତ ତୋର ହେଲେ ହତ ରେ, ରାଜନ ॥୭॥
ଦଶରଥ ଅଯୋଧ୍ୟାର ରାଜ । ରାମ ବୋଲି ତା ଜ୍ୟେଷ୍ଠ ତନୁଜ ।
ଭ୍ରାତାପତ୍ନୀ ସଙ୍ଗେ ଘେନି ଦଣ୍ଡକାରେ ତୋର ବଳକୁ କଲା ଦହନ ହେ, ରାଜନ ॥୮॥
ତାର ଅବଳା ଅତି କୋମଳା । ରାମ ସଦୃଶେ ଗୁଣେ କୁଶଳା ।
ଦେଖିଣ ତାକୁ ମୁଁ ଆଣିଣ ଯେ ଗଲି ତୋର ହୁଅନ୍ତା ସେ କଣ୍ଠମାଳା ହେ, ରାଜନ ॥୯॥
ତାର ଭ୍ରାତ ଲକ୍ଷ୍ମଣ ବୋଲିଣ । ସେହୁ ସହଜେ ଅତି ଦୁର୍ଜନ ।
ସନ୍ନିଧିକୁ ଆସି ଧରି ମୋତେ ପାଡ଼ି ବଳେ କାଟିଲା ନାସା ଶ୍ରବଣ ହେ, ରାଜନ ॥୧୦॥
ତାହା ନ ସହି ଖର ଦୂଷଣ । ତିନି ଭ୍ରାତ କଲେ ଘୋର ରଣ ।
ରାମ ଶର ପାଇ ଚଉଦ ସହସ୍ର ସଙ୍ଗେ ଗଲେ ସେ ଯମ ଭୁବନ ହେ, ରାଜନ ॥୧୧॥
ଏବେ ବେଗେ ତୁ ବିଜୟ କର । ରାମ ନାଶି ସୀତା ଆଣ ଧାର ।
ବ୍ରହ୍ମାଣ୍ଡେ କେ ଅଛି ତୋତେ ସରି ସମ ତୁ ଯେ ଦନୁଜକୁଳ ଈଶ୍ୱର ହେ, ରାଜନ ॥୧୨॥
କରି ଭଗିନୀକୁ ଆଶ୍ୱାସନ । ଦଶଗ୍ରୀବ ହୋଇ ଖେଦମନ ।
ସୀତସ୍ତ୍ରୀ ଆଣିବାରେ ମନ ବଳାଇ ରଥ ଆରୋହି କଲା ଗମନ ସେ, ରାବଣ ॥୧୩॥
ନିମିଷକେ ଲଂଘିଲା ବାରିଧି । ମନେ ଚିନ୍ତା କଲା ଧୀର ବୁଦ୍ଧି ।
ମାରୀଚ ଭୁବନେ ପ୍ରବେଶ ହୋଇଲା ତାକୁ କହେ ଅନେକ ପବୋଧି ସେ, ରାବଣ ॥୧୪॥
ବୋଲେ ଶୁଣ ତୁ ସୁନ୍ଦ ନନ୍ଦନ । ଫେଡ଼ ମୋର ବଡ଼ ଅଭିମାନ ।
ରାମ ଘରଯା ମୁଁ ହରଣ ଆଣିବି ମୋର ସହାୟ ହୁଅ ବହନରେ, ସଚିବ ॥୧୫॥
ଶୁଣି ବୋଲଇ ତାଡ଼କା ସୁତ । ରାୟେ କହିଲ ତ ଅଦଭୁତ ।
ଯେହୁ ତୋତେ ଶିକ୍ଷା ଦେଲା ସେହୁ ଯେ ତୋର ଜାଣ ପର ଶତ୍ରୁ ମିତ ହେ,ରାଜନ ॥୧୬॥
ରାମ ତୁଲେ କେ ସଂଗ୍ରାମେ ସରି । ସେହୁ ଭେଦି ପାରେ ମେରୁ ଗିରି ।
ଥିଲ ତ ଜାଣୁ ତୁ ଶିବ ଧନୁ ବରି ମିଥିଳାରୁ ପଳାଇଲୁ ଡ଼ରି ହେ, ରାଜନ ॥୧୭॥
ତାହା ଭାଙ୍ଗିଲା ସେ ଧରି ହେଳେ । ରାଜାଗଣେ ଦେଖୁଥିଲେ ତୋଳେ ।
ସୀତସ୍ତ୍ରୀକୁ ବିଭା ହୋଇଣ ଆସନ୍ତେ ପର୍ଶୁରାମକୁ ଜିଣିଲା ହେଳେ ହେ, ରାଜନ ॥୧୮॥

---

୬।୧- ଖ-ଘନବରେ ହୋଇଲୁଂ
୯।୧- ରମା ଗୁଣେ ସଦୃଶଂ
୯।୨- ୦ଦେଖିଣ ମୁହିଁ ତାକୁ ଆଣି ଗଲି
୯।୨- ତୋର ହୋଅନ୍ତା୦
୧୦।୧ ୦ଭ୍ରାଥ ଲକ୍ଷ୍ମଣ୦
୧୦।୧- ଅତି ଦୁର୍ଜନ
୧୧।୧- ତିନି ମୂଧା।୦
୧୨।୧- ୦ ଆଣ ରମାବର
୧୪।୧- ୦ଧିରବଧି
୧୫।୧- କ-୦ସୁଣନ୍ତୁ ସୁନ ନନ୍ଦନନ୍ଦନ
ଖ-୦ଶୁଣନ୍ତୁ ସୁନ୍ଦ ନନ୍ଦନ
୧୫।୧ ମୋରେ ଫେଡ଼ ବଡ ଅଭିମାନ
୧୫।୨- ମୋରେ ସାହାଯ୍ୟ ହେବ ବହନ ହେ
୧୬।୧- ରାଜା କହି ଲଜ
୧୬।୨- ଯେହୁ ତୋତେ ଶକ୍ଷା ଦେଲା ସେହୁ ଯେ
୧୮।୨- ୦ହୋଇଣ ଆଣନ୍ତେ

ହେତୁ ଅର୍ଜୁନର ଅନ୍ତକାଶ । ତୋତେ ବାନ୍ଧି ଯେହୁଥିଲା ଧର ।
ତାହା ତ ଲେ ତୁହି ବରେଧ ଆଚର କେଉଁ ଅଂଶକୁ ତା ତୁଲେ ସର ହେ, ରାଜନ ।।୧୯।।
ତୋର ଲକ୍ଷେ ଯେତେ ମହାବଳୀ । ମୋର ତହୁଁ କେହୁ ଜାଣ ବଳୀ ।
ବିଶ୍ୱାମିତ୍ର ଯାଗକାଳେ ବାଲ୍ୟବେଳେ ସୁବାହୁକୁ ପକାଇଲା ଦଳ ହେ, ରାଜନ ।।୨୦।।
ତାହା ଦେଖି ମୁହିଁ ନ ସହିଲ । ରାମ ସମ୍ମୁଖକୁ ବଳେ ଗଲ ।
ସେକାଳେ ମାନବାସ୍ତ୍ର ପେଷି ମୋହରେ ବଳେ ଉଡ଼ାଇଲା ବାହୁଶାଳୀ ହେ, ରାଜନ ।।୨୧।।
ଶତେ ଯୋଜନଙ୍କ ପରମା । କଲି ସିନ୍ଧୁ ତୀରରେ ପତନ ।
ଅନେକ ବରଷ ଅନ୍ତେ ଜ୍ଞାନ ପାଇ ସେହି ଦିନୁ ହେଲି ତପୋଧନ ହେ, ରାଜନ ।।୨୨।।
ରାଜ ରମଣୀ ରତନ ରଥ । ର କା ଆଦି ହେଲେ କର୍ଣ୍ଣପଥ ।
ରାମ ନାମେ ଦଙ୍କା ଯେଣୁ ବଡ଼େ ମୋର ତେଣୁ ନୁହିଁଇ ସନ୍ତତ ସୁସ୍ଥ ହେ, ରାଜନ ।।୨୩।।
ମୁଁ ତ ନ ଯିବି ତା ସନ୍ନିଧାନ । ତୁ ହୋ ପୁରେ ଯେ କର ଗମନ ।
ମୂର୍ଖପଣେ ତୁ ଯେ କାଳକୂଟ ବିଷ କରଅଛୁ ଭକ୍ଷିବାକୁ ମନ ହେ, ରାଜନ ।।୨୪।।
ଶୁଣି ସଚିବ ବଚନ ରାଜା । କ୍ରୋଧେ କମ୍ପି ବଢ଼ାଏ ପଦ୍ମଜା ।
ଯେବେ ମୋର ଆଜ୍ଞା କରିବୁ ଅବଜ୍ଞା ବେଗେ ଯିଞ୍ଜିବମି ପୁର ଯା ଯା ରେ, ସଚିବ ।।୨୫।।
ଏହାପରି ତା ବଚନ ଶୁଣି । ମନେ ମନେ ସେ ମାରିଚ ଗୁଣି ।
ରାମ ହସ୍ତେ ହତ ହୋଇବା ମଙ୍ଗଳ ଏହା ହସ୍ତେ ମୃତ୍ୟୁ ହୀନ ପୁଣି ହେ, ଦଇବ ।।୨୬।।
ଏତେ ବିଚାରି କଲା ସମ୍ମତ । ରାଜା ସଙ୍ଗେ ଚଳିଲା ତ୍ୱରିତ ।
ଏହୁ ବିଚାର ତାର ମନେ ଜାଣିଣ ମନେ ଶଙ୍କେ ଦଶରଥ ସୁତ ହେ, ଦଇବ ।।୨୭।।
ଏହା ଜାଣିଣ ସେ ରାବଣାରି । ଏକାନ୍ତରେ ସୀତାଙ୍କୁ ହକାରି ।
କହନ୍ତି ଶୁଣରେ ଚନ୍ଦ୍ରମା ବଦନୀ ଦୁଷ୍ଟ ଆସୁଅଛୁ ତୋତେ ହରିରେ, ସୁନ୍ଦରୀ ।।୨୮।।
ଅନ୍ତରିତ ତୁ ଅନଳେ ହୁଅ । ମାୟା ରୂପ ତୋ ମନ୍ଦିରେ ଥୁଅ ।
ବିଧାତାର କଥା ତୁମ୍ଭରେ ବିଦିତ ଯେଣୁ ମରିବ ବିଶ୍ରବା ପୁଅରେ, ସୁନ୍ଦରୀ ।।୨୯।।
ରାମ ଆଦେଶ ପାଇ ଅବଳା । ଅନଳରେ ରହିଲେ ନିର୍ମଳା ।
ଛାୟା ସ୍ୱରୂପ ସେ କୁଟୀରେ ରଖନ୍ତେ ଦେଖି ସୁଖୀ ହେଲେ ରଘୁବଳା ହେ, ଦଇବ ।।୩୦।।
ଏହି ସମୟେ ସୁନ୍ଦ ନନ୍ଦନ । ହୋଇଲା ହେମ ମୃଗ ତତକ୍ଷଣ ।
ବନ ମୃଗଗଣ ସଙ୍ଗତେ ମିଳିଣ ହୋଇଲା ସୀତା ପୁରତେ ବନ୍ଦନ ହେ, ଦଇବ ।।୩୧।।
ଅଭ୍ୟନ୍ତରେ କରୁଅଛୁ ଲୀଳା । ତାହା ଦେଖିଲା ନେତ୍ରେ ଅବଳା ।
ନାନା ରତ୍ନଗଣେ ହୋଇଛୁ ନିର୍ମିତ ଲୋଭେ ହୋଇଲେ ଅତି ଚଞ୍ଚଳା ହେ, ଦଇବ ।।୩୨।।

---

୧୯।୨- ଠଅଂଶକୁ ତୁ ତାଙ୍କୁଠ
୨୦।୧- ମୋତେ ହେତୁ ତହିଁ ମହାବଳୀ
୨୦।୨- ଠକାଳେ ବାହୁବଳେ
୨୧।୧- ଠବେଗେ ଗଲ
୨୧।୨- କ-ଠମାନବାସ୍ତ୍ରଠ
୨୩।୧- ରାଜ ରତନ ରମଣୀଠ
୨୫।୨- ଠମୋର କଥାଠ
୨୫।୨ କ-ଠସଂଜ୍ଞୟ ବନ ପୁରଠ
୩୧।୧- ଠସୁନ୍ଦ ନନ୍ଦନ
୩୧।୨- ଠସୀତା ସନ୍ନିଧାନ ହେ
୩୨।୧- ଅବଦୂରେଠ

ବୋଲେ ଶୁଣିବା ପ୍ରଭୁ ଶ୍ରୀରାମ । ଏହୁ ମୃଗରେ ବଡ଼େ ମୋ କାମ ।
ଏହାକୁ ନିଧନ କରି ଆଣି ଦିଅ ଶଯ୍ୟା କରିବି ଏହାର ଚର୍ମ ହେ, ରାଜନ ।।୩୩।।
ଶୁଣି ଅବଳା ବାଣୀ କୋମଳା । ଉଠି ରାଜ ଦଶରଥ ବଳା ।
ବୋଲନ୍ତି ଲକ୍ଷ୍ମଣ ଦେଖ ରନ୍ଧ ମୃଗ ଏଥେ ହୋଇଲା ସୀତା ମତି ଭୋଳା ହେ, ଲକ୍ଷ୍ମଣ ।।୩୪।।
ଏହା ମାରି ଚରମ ଆଣିବା । ସୀତା ଆସନ ଅର୍ଥରେ ଦେବା ।
ପୂର୍ବେ ମନ୍ଦରେ ଥିବା କାଳେ ଜାନକୀ ରାଣ୍ଡୀ ବାଣ୍ଡିଅଛୁ ସେବା ହେ, ଲକ୍ଷ୍ମଣ ।।୩୫।।
ଶୁଣି ଲକ୍ଷ୍ମଣ କହେ ବଚନ । ଏହୁ ମୃଗ ନୁହଁଇ ରାଜନ ।
ବନେ ମାରୀଚ ଏହୁ ରୂପ ଧରିଣ ନୃପ କୁମର କରେ ନିଧନ ହେ, ଶ୍ରୀରାମ ।।୩୬।।
କାହିଁ ନାହିଁ ତ ଏସନ ଶୁଣି । ରନ୍ଧ ମୃଗ ଅଛୁ ଏ ଧରଣୀ ।
ତୁମ୍ଭେ ସୁଜାଣ ରଘୁ କୁଳ ଅଗ୍ରଣୀ ଏଥି ଲୋଭ ହେଉଅଛୁ ଜାଣି ହେ, ରାଘବ ।।୩୭।।
ଶୁଣି ସୁମିତ୍ରା ବଚନ ରାମ । ଧର୍ମ କହେ ବାଣୀ ମନୋରମ ।
ଜାଣିବାକୁ ଏହୁ ବିଧାତାର କୃତ୍ୟ ଏଥି ନ କହ ତୁ କେବେ ବାମ ହେ, ଲକ୍ଷ୍ମଣ ।।୩୮।।
ତେବେ ରାଜାମାନେ ମୃଗୟାର । ନାଶ କରନ୍ତି ସମ୍ପଦବର ।
ଆହାର ନିମନ୍ତେ ହରିଣ ମାରନ୍ତି ଏହା ମନେ ନ କର ବିଚାର ହେ, ଲକ୍ଷ୍ମଣ ।।୩୯।।
ଯେବେ ଅସୁରଟି ଏହୁ ଜାଣ । ଏହୁ ବଧାରହ ଅଟେ ପୁଣ ।
ଋଷିମାନଙ୍କୁ କରଇ ଆହାର ତେବେ ବାଣେ ନାଶିବି ମୁଁ ଜାଣ ହେ, ଲକ୍ଷ୍ମଣ ।।୪୦।।
ଅଶ୍ୱତଥ ଗର୍ଭ ପ୍ରାପ୍ତେ ହୋଇ । ମୃଗ ରୂପକୁ ଅଛୁ ଏ ବହି ।
ଏମନ ପ୍ରକାରେ ଲକ୍ଷ୍ମଣଙ୍କୁ କହି ପୁଣି ବୋଲନ୍ତି ଶୁଣିମା ତୁହି ହେ, ଲକ୍ଷ୍ମଣ ।।୪୧।।
ବାବୁ ସୀତାଙ୍କୁ ରଖିଣ ଥିବ । ଏହୁ ସ୍ଥାନୁ କେଣିକ ନ ଯିବ ।
ରଜନୀ ଚର ଚନ୍ଦେ ଏହୁ ପୂରନ୍ତୁ ଏଥି ଜାନକୀ ଭୟ ଲଭିବ ହେ, ଲକ୍ଷ୍ମଣ ।।୪୨।।
ତୁମ୍ଭେ ଜଟାୟୁଷ ବେନଜନ । ସୀତା ରଖିଥାଅ ଏହୁ ସ୍ଥାନ ।
ଆମ୍ଭେ ମୃଗମାରି ଆସିବାର ଯାଏ ତୁମ୍ଭେ କେଣେ ନ କର ଗମନ ହେ, ଲକ୍ଷ୍ମଣ ।।୪୩।।
କିଛୁ ନ କହ ମୋହର ରାଣ । ଏଥି ହୋଇଥାଅ ସାବଧାନ ।
ଏତେ ବୋଲିଣ ସେ ଗମେ ରଘୁବୀର କରେ ଧରିଣ ସେ ଧନୁର୍ବାଣ ହେ, ରାଘବ ।।୪୪।।
ଏହୁ ଶ୍ରୀରାମବିଳାସ ଗୀତ । ଛାନ୍ଦ ଦ୍ୱାବିଂଶ ଏ ସମାପତ ।
ରଘୁବର ପାଦ କମଳ ସନ୍ତତ-ଭୃଙ୍ଗ ନୃପତି ଧନଞ୍ଜୟ ରଚି ହେ, ସୁଜନେ ।।୪୫।।

---

୩୩।୨- ସେଯ୍ୟା କରିବଂ
୦କରିବ ମୁଁ ଏହା ଚର୍ମ
୩୪।୨- ୦ସୀତାମତ ଲୋଭ
୩୫।୧- ରାମଙ୍କୁ କରନ୍ତୁ ସେବା ହେ
୩୬।୨- ରାଜ କୁମରଂ
୩୭।୨- ଏଥେ ହୋଇଅଛୁ ଲୋଭ ପୁଣି ହେ
୩୯।୧- ୦ଶ୍ୱାପଦବର
୪୦।୧- ୦ନଷ୍ଟସ୍ତେ ଅସୁରଂ
୪୦।୧- ଏହା ବଧିବାରଂ
୪୧।୧- ୦ହେବ ପ୍ରାପ୍ତେଂ
୪୨।୨- ୦ଏହୁ ବନେ ପୁରନ୍ତୁ
୪୨।୧- ଏତେ ଜାନକୀଂ
୪୪।୧- ୦ମୋହର ଅଂଗ
୪୫।୨- ଭକ୍ତ ନୃପ ଧନଞ୍ଜୟଂ

# ଉଦ୍ୟୋବଂଶ ଛାନ୍ଦ

## (ରାଗ—ବରାଡ଼ି)

ଏଥୁ ଅନନ୍ତରେ ମନ ଦେଇଣ ଶୁଣ ସୁଜନ
ମୃଗକୁ ଦେଖିଲେ ରଘୁପତି,
ଦେଖି ସେ ଧାଇଲା ଖିତ ଗମିଲା ତହୁଁ ତଡ଼ିତ
କଲା ସେ ଚଞ୍ଚଳା ଚଞ୍ଚଳ ଗତି । ସେ ରଘୁବୀର,
କରେ ଧରିକରି ଧନୁଶର
ଧାମନ୍ତି ସେ ବେଗ ହୋଇ ପାଶେ କୁରଙ୍ଗ ଦିଶଇ
ପୁଣି ନ ଦିଶଇ ନିଶାଚର ସେ ||୧||

ଦୁଅଇ ସେ ଅନ୍ତରିତ ପୁଣି ମିଳଇ ଅଗ୍ରତ
ପୁଣି ସେ ଦିଶଇ ଦୂରେ ଯାଇଁ,
ଲକ୍ଷ୍ୟଗତ ହୋଏ ଆସି ପୁଣି ପଳାଇ ସେ ହାସି
ଏମନ୍ତେ ଭ୍ରମଇ ବନଭୂଇଁ । ସେ ରଘୁପତି,
ଅତି ଚଞ୍ଚଳ ତ ତାର ମତି
ପଛେ ଗୋଡ଼ାଇଲେ ଜାଣି ଭ୍ରମିଲା ମେହ୍ନ ଧରଣୀ
ବମ କ୍ଷିଁ କଲେକ ମୋହ୍ନ ଗତି ସେ ||୨||

ମୃଗଟଣେ ଦିଶେ ପୁଣି ତୃଣ ଚରଇ ଧରଣୀ
ଦେଖିଣ ଧାଇଁଲେ ରଘୁବୀର,
ଶରଦ ମେଘରେ ଶଶୀ ଯେହ୍ନେ ଦିଶଇ ନ ଦିଶି
ବିପିନେ ତେସନେ ଭ୍ରମେ ବୀର । ସେ ରଘୁମଣି,
କି ବିଷୟ ବୋଲି ମନେ ଗୁଣି
ଶଠ ମୃଗ ପୁଣି ଦେଖି ରାମ ହୋଇ ଅତି ଦୁଃଖୀ
ସାୟକ ପେଷିଲେ ସେହିକ୍ଷଣି ସେ ||୩||

---

୧।୩- ଗମିଲା ତହୁଁ ତଡ଼ିତ ଦେଖି ସେ ଧାଇଲା ଖିତ
୨।୧- ୦ଅନ୍ତର୍ହିତ ପୁଣି ମିଳଇ ପୁରତ
୨।୩- ୦ମିଳଇ ଦୂରେ ଯାଇଁ
୩।୬- ପୁଣି ଶଠ ମୃଗୀ ଦେଖି୦
୩।୭- ୦ପେଷିଲେ ରଘୁମଣି

ବାଜନ୍ତେ ଦନୁଜ ବର ତେଜିଣ ସେ ଧାନ୍ତକାର
ମୃଗ ତନୁ ତେଜଣ ଗଡ଼ିଲା,
ଅତି ଘୋର ଭୟଙ୍କର ସ୍ୱରୂପ ଧରି ପାମର
ରାମ ସ୍ୱରେ ଲକ୍ଷ୍ମଣ ଡ଼ାକିଲା । ସେ ନିଶାଚର,
ବୋଲେ ହାହା ହାହା ହୋ ଲକ୍ଷ୍ମଣ
ମରିବା ସମୟେ ତାର କରି ପ୍ରଭୁ ଉପକାର
ଏତେ ବୋଲି ତେଜିଲା ପରାଣ ହେ ।।୪।।

ଏ ବାଣୀ ଶୁଣି ତାହାର ଚଳିଚିତ୍ତ ରଘୁବୀର
ମନେ ପୁଣି କରନ୍ତି ବିଚାର,
ମୋର ସ୍ୱରେ ତ ଅଇରି ଡ଼ାକେ ଭ୍ରାତ ନାମଧରି
ଶଙ୍କା ନିକି ଲଭେ ନାଶ୍ୱବର । ହେ ନିଶ୍ଚେ ଏଥେ,
ଲକ୍ଷ୍ମଣକୁ ନିକି ପେଷିଥାଇ
ହେବ ପରା ବିପଘାତ ଯିବଇଁ ମୁହିଁ ତ୍ୱରିତ
ବାମ ନେତ୍ର ମୋର ତ ସ୍ଫୁରଇ ହେ ।।୫।।

ଏହି ସମୟରେ ତହିଁ ଜାନକୀ ଲକ୍ଷ୍ମଣ ଚାହିଁ
ବୋଲନ୍ତି ତୁ ଶୁଣ ମହାବୀର,
ଭ୍ରାତାକୁ ତୋର କଷଣ ପଡ଼ିଲା ତେଣେ ତୋହର
ନାମେ ତୋର ଡ଼ାକଇ ସତ୍ୱର । ହେ ସଉମିତ୍ରୀ,
ବେଗେ ତୁମ୍ଭେ କରିବା ଗମନ
ଏହୁ ତ ଘୋର କାନନ ଦନୁଜଙ୍କ ନିବେଶନ
କିସ ଏହୁ ଦେଖ ତ ବହନ ଯେ ।।୬।।

ବୋଲଇ ଲକ୍ଷ୍ମଣ ବୀର ଶୁଣ ଆଗୋ ରାମାବର
ତ୍ରୈଲୋକ୍ୟେ ସେ ବୀରଙ୍କ ଅଗ୍ରଣୀ,
ସେହୁ ଧନୁର୍ଦ୍ଧର ବୀର ଜିଣିପାରେ ପୁରନ୍ଦର
ସେ କେବେ ନ କହେ ଦୀନବାଣୀ । ଗୋ ରାମାମଣି,
ମନେ ଏହା ନକର ବିଚାର
ଦନୁଜଙ୍କ ମାୟା ଏହି ଜାଣରେ ଚନ୍ଦ୍ରମା ମୁହିଁ
ନ ଜାଣୁ କି ରାମର ବେଭାର ଗୋ ।।୭।।

---

୪।୨- ୦ତେଜିଣ ପଡ଼ିଲା
୫।୧- ବାଣୀ ଶୁଣିଣ ତାର୦
୫।୩ କ- ସ୍ୱ ମୋ ସ୍ୱରେ ଦେବ ଅଇରି ଡାକିଲା ମୋର ଭ୍ରାତରେ
୬।୩- ୦ପଡ଼ିଲା ଯେ ଚିତ୍ତମନ
୭।୫- ମନେ ନ କର ଏହା ବିଚାର
୭।୬- ୦ଜାଣିଥାରେ ଚନ୍ଦ୍ରମୁହିଁ

ଭୂମ୍ଭର ତାତ ପୁରରେ ଲକ୍ଷେ ନୃପତି ମଧ୍ୟରେ
ଶିବଧନୁ କଲାଟି ଦ୍ୱି ଖଣ୍ଡ,
ଜଣିଲ ସର୍ବ ନୃପତି ତୋର ପାଇଁ କୁନ୍ଦଦନ୍ତୀ
ମାର୍ଗେ ପର୍ଶୁରାମ ଦେଲ ଦଣ୍ଡ । ଗୋ ଠାକୁରାଣୀ,
ନ ହେନ ସଂଶୟ କିଛି ମନେ
ମୃଗ ବା ରାକ୍ଷସ ହେଉ ନିଧନ କରଣ ସେହୁ
ଆସି ମିଳିବେ ତୋ ସନ୍ନିଧାନ ॥୮॥

ଶୁଣି ବାଣୀ ବୋଲେ ସୀତା ମନରେ ଲଭିଣ ଚିନ୍ତା
ତୋତେ ମୁଁ ରେ ଜାଣଇ ଲକ୍ଷ୍ମଣ,
ନ ଜାଣନ୍ତି ରାମ ଏହା ତୁହି ନୋହୁ ପୁଣ୍ୟ ଦେହା
ଅଛି ତୋର କପଟ କାରଣ । ହେ ରଜମିଣୀ,
ଭରତର ତୁ ସେ ଗୁପ୍ତଚର
ରାମଙ୍କୁ ମାରଣ ବନେ ମୋତେ ନେବା କରି ମନେ
ଏହନ ତୋ ମନ୍ତ୍ରରେ ପାମର ହେ ॥୯॥

ରାମ ଅଭାବରେ ମୁହିଁ ଅନଳେ ପଶିବି ଯାଇଁ
ରାମ ମୋର ପ୍ରାଣର ଈଶ୍ୱର,
ମୁହିଁ ପତିବ୍ରତା ବର ଆନ ମନେ ନ ବରିବ
ମୋର ପାଶୁଁ ଯାଅ ତୁ ପାମର । ହେ ରଜମିଣୀ,
ଲୋଡ଼ୁ କି ଭରସା ମତେ କରି
ଏହନ ନିଷ୍ଠୁର ବାଣୀ ସୀତାଙ୍କ ମୁଖରୁ ଶୁଣି
କର୍ଣ୍ଣେ କର ଦେଲା ଧୀର କରି ସେ ॥୧୦॥

ବୋଲଇ ସେ ବଳମଣି ଶୁଣ କୋପନା ତରୁଣୀ
ମୋତେ ଯାହା ବୋଇଲୁ ଭର୍ତ୍ସନା,
ରାମ ମୋହର ଈଶ୍ୱର ଅଟନ୍ତି ତାର ଦାସ ମୁଁ
ଏ ଅଭୋ ଲଭିବ ମୁଁ ବେଦନା । ଗୋ ଠାକୁରାଣୀ,
ଅବେଭର ବୋଇଲୁ ତୁ ମୋତେ
ମୁହିଁ ନୁହଁଇ ତେମନ ପାଳୁଛି ରାମ ବଚନ
ବଧିକୃତ ଲଭ ତୁ ବେଭରେ ଗୋ ॥୧୧॥

---

୮।୧- ଭୂମ୍ଭ ତାତ ପୁରବରେ

ଏତେ ବୋଲି କରି ଲକ୍ଷ୍ମଣ ଗମିଲେ ସେ ତତକ୍ଷଣ
କରେ ଧରିକରି ଧନୁର୍ବାଣ,
ପଶିଲେ ଘୋର କାନନ ଅନ୍ତର ଦେଖି ରାବଣ
ମାୟାରୂପ ହେଲା ତତକ୍ଷଣ । ସେ ଦଶଶିର,
ପରିବ୍ରାଜ ରୂପକୁ ଧରିଛି
କରେ ଦଣ୍ଡ କମଣ୍ଡଳ ଜଟା କଳାପେ ଉଲ୍ଲୋଳ
ମିଳି କୁଠାରରେ ଭିଆଇଛି ସେ ।।୧୨।।
ଦେଖି ମୁନି ବେଶ ତାର ସୀତା ପର୍ଣ୍ଣକୁଟୀ ଦ୍ୱାର
ବୋଲେ ମୁନି କାହୁଁ ତୁ ଆଗତ,
କ୍ଷଣେକ କର ବିଶ୍ରାମ ଆସିବେ ଦେବ ଶ୍ରୀରାମ
ପୂଜା ତୋରେ କରିବେ ବହୁତ । ହେ ମୁନିବର,
ମୃଗୟା ବିନୋଦେ ଛନ୍ତି ଯାଇ
ଏହ୍ନିକ୍ଷଣି ବେନି ଭାଇ ଆସିବେ ଶୁଣ ଗୋସାଇଁ
ସନ୍ତୋଷ ହୋଇବେ ତୋତେ ଗୃହୀ ହେ, ମୁନିବର ।।୧୩।।
ବୋଲଇ ମାୟା ଜଟାଳ ଶୁଣ ଟିଗୋ ଗୁରୁ କୁଟିଳ
ତୁମ୍ଭେ ଏଥି ଅଛ କାହୁଁ ଆସି,
କିସ ସେ ତୁମ୍ଭର ନାମ ସର୍ବଗୁଣେ ଅନୁପମ
ମୋର ଆଗେ କହିବା ସୁକେଶୀ । ଗୋ ସରୋଜାକ୍ଷୀ,
ଇଚ୍ଛୁଅଛି ତାହା ଶୁଣିବାକୁ
ହୋଇବି ମୁଁ ଉଲ୍ଲସିତ ଭାଷ ଅମୀୟ ଭରିତ
ମୂକ ତୁ ହୁଅ କର କୋକିଳକୁ ଗୋ ।।୧୪।।
ବୋଲନ୍ତି ଜନକସୁତା ଶୁଣ ତୁମ୍ଭେ ଉର୍ଦ୍ଧ୍ୱରେତା
ଅଯୋଧ୍ୟା ନାମେଣ ସିଦ୍ଧପୁର,
ତହିଁ ରାଜା ଦଶରଥ ଯେ ଗମେଟି ସୁରପଥ
ଯାହାକୁ ପୂଜଇ ପୁରନ୍ଦର । ହେ ସାଧୁବର,
ରାମ ତାର ଅଗ୍ରଜ କୁମର
ତାଙ୍କର ମୁହିଁ ବନିତା ଜନକ ରାଜାର ସୁତା
ନୃପ ବୋଲେ ଅଇଲୁ ବନର ହେ ।।୧୫।।

---

୧୨।୨- ୦ଧରି ଧନୁର୍ବାଣ
୧୨।୬- ୦ଜଟା ଭରା ପେଡ଼ଝୋଳ
୧୨।୭- ୦କୁଟୀରେ ଲଗାଇଛି
୧୩।୪- ୦ଭକ୍ତିବେ ବହୁତ୦
୧୩।୭- ୦ହୋଇବେ ତୋତେ ଗୃହୀ୦
୧୪।୧- ୦ମାୟା ଜଟିଳ୦
୧୪।୩- ବଶେଷେ୦
୧୪।୫- ଇଚ୍ଛା ଅଛୁ
୧୫।୩- ୦ଜେଗଇ ସୁରପଥ

ସୀତା ବୋଲ ଶୁଣିକର  ବୋଲେ ଦଶଶିର ଧାଇ
ଜାଣ ମୁହିଁ ଲଙ୍କାର ନୃପତି,
ରାବଣ ମୋ ନାମ ଜାଣ  ଜିଣିଅଛୁ ସୁରଗଣ
ତୋତେ ନେବ ଆସିଛୁ ସୁମତି । ଗୋ କୋମଳାଙ୍ଗୀ,
ମୋତେ ଭଜ ନରଣ ନ କର
ରାଜ୍ୟ ହୋଇଅଛୁ ଚ୍ୟୁତ  ଧରିଛୁ ତପସ୍ୱୀ ମତ
ଅରଣ୍ୟେ ବୁଲୁଛି କାନ୍ତ ତୋର ଗୋ ॥୧୬॥
ସେହୁ ଅଟଇ ମନୁଷ୍ୟ  ସେ କଅ ଜାଣଇ ରସ
ତାର ଅବା କେଉଁ ବଇଭବ,
ବିଧି କରିଅଛୁ ଯୋଗ  ତୋହରେ ମୋହର ଭୋଗ
ଏହା ଅବା କେ ଆନ କରିବ । ରେ ସାରଙ୍ଗାକ୍ଷୀ,
ଛନ୍ତ ତୋ ଅଯୋଧ୍ୟାପୁର କାହିଁ
କାହିଁ ଏ ଦଣ୍ଡକ ବନ  କରିବ ଅଛୁ ଗମନ
ଲଙ୍କାରେ ବଢ଼ିବ ଚନ୍ଦ୍ରମୁଖୀରେ ॥୧୭॥
ଜନପୁରେ ମୁହିଁ ରଜା  ମୋହର ଶତେକ ଭାରିଯା
ଦାସୀପଣେ ତୋର ହେବେ ସେବା,
ଯାବତ ଭୋଗ୍ୟ ସ୍ୱର୍ଗର  କରିବୁ ରମଣୀବର
ଏସନ ଅଛଇ ତୋର ଭାବରେ । ମଦାଳସୀ,
ଏଥିରେ ତ ନୁହଁସି ଆଳସୀ
ବିଳସିବୁ ରତ୍ନପୁର  ଲଭିବୁ ଭୋଗ ଅପାର
ଆସ ଯିବା ମନ୍ଦହାସୀ ରେ ॥୧୮॥
ନିଧନ ତୋହର ପତି  ତହିଁ ତୋର ମିଛ ମତି
ନିଧିହୀନ ତେଜନ୍ତି ତରୁଣୀ,
ତୃଣହୀନ ଯଜବନ  ତେଜନ୍ତି ତା ମୃଗେ ଜାଣ
ଦେଶାନ୍ତର ତେଜ ଚୂର୍ଣ୍ଣି ହାଣିରେ । ବିମ୍ବାଧରୀ,
ଧର ମୋର ବାଣୀ ହୃଦପୁର
ମନେ ନ ଧରି ବିଧୁର  ବେଗେ ତୁ ହୁଅ ବାହାର
ତୋତେ ନେଇଯିବ ଲଙ୍କାପୁରରେ ॥୧୯॥

---

୧୬।୩- ରାବଣ ମୋ ନାମ ଜାଣିଂ ଓ ଦୂରଗତେ
୧୬।୭- ରାମ ହୋଇଅଛି ରତ ଧରିଛି ତପ୍ସ
୧୭।୧- ଓ କସ ଜାଣିନ ରସ
୧୭।୨- ଓ ତେଣୁ ବଇଭୋଗ
୧୦।୧- ଓ ସାରସାକ୍ଷୀ
୧୮।୧- ଓ ଯତେଭାରଜା
୧୦ ୫- ଏଥିରେ ତୁ ନୋହୁ ନୁ ଆଳସୀ
୧୮।୬- ଓ ଭୋଗ୍ୟ ଅପାର

ଏମନ୍ତ ବୋଲି ରାବଣ    ନିଜରୂପ ପ୍ରକାଶିଣ
ସୀତାଙ୍କୁ ଧଇଲେ ତତ୍କ୍ଷଣ,
ପାଦେ ଅବନୀ ବିଦାରି    ଘେନିଣ ବର ସୁନ୍ଦରୀ
ରଥେ ଯାଇଁ ବସିଲା ଦୁର୍ମତି ସେ । ଶୂନ୍ୟପଥେ,
ଅତି ବେଗେ କରନ୍ତି ଗମନ
ଧାଇଁଲା ଗରୁଡ଼ ସୁତ    ପଥ ନିରୋଧି ତୁରିତ
ଜାନକୀର ରୋଦନ ଶୁଣିଣ ସେ ॥୨୦॥
ନବ ଜଳଧର କୋଳେ    ଚଞ୍ଚଳା ଯେସନେ ଖେଳେ
ତେସନ ସେ ଜାନକୀ ଶୋଭନ,
କରଇ ଦେବୀ ରୋଦନ    ବେନି କରକୁ ତାଡ଼ଣ
ବ୍ୟାଘ୍ର କୋଳେ ହରିଣୀ ଯେସନ ସେ । ରାମାମଣି,
ବୋଲେ ହା ହା ଏହୁ ରାମ ବାଣୀ
ରାହୁ ଗିଳା ଚନ୍ଦ୍ରକଳା    ତେସନେ ଦିଶେ ଅବଳା
ରାବଣ କୋଳରେ ଯୋଷାମଣିରେ ॥୨୧॥
ବୋଲଇ ସେ ଖଗପତି    ତୁ ରେ ରାବଣ ଦୁର୍ମତି
କରିଅଛୁ ମୂଢ଼ ଏହୁ ମତି,
ନାହିଁ ତୋ ମରଣେ ଭୀତି    ତେଜ ଯାଅ କୁନ୍ଦଦନ୍ତୀ
ନଖେ ତୋତେ ମାରିବି କ୍ରୋଧରେ । ନିଶାଚର,
ପଳାଅ ତୁ ଏବେ ସତ୍ୱର
ଗ୍ରୁଡ଼ଣ ରମଣୀ ମଣି    ଶୁଣିଣ ମୋହର ବାଣୀ
ନୋହିଲେ ପେଷିବି ଯମପୁର ରେ ॥୨୨॥
ଶୁଣିଣ କ୍ରୋଧେ ରାବଣ    ଯୋଡ଼ି ଧନ୍ୱେ ତୀକ୍ଷବାଣ
ବାଣ ପାଇ ନୋହିଲା କ୍ଷୋଭିତ,
ରଥ ଖଣ୍ଡ ଖଣ୍ଡ କଲା    ନଖ ଚଞ୍ଚୁ ବିଦାରିଲା
ପକ୍ଷପାତେ କଲକ ଘାତିତ ସେ । ଜଟାୟୁଷ,
ଧନୁର୍ଧର କଲା ସେ ଭଞ୍ଜନ
ଚୂର୍ଣ୍ଣ କଲା ରଥବର    ଛେଦିଲା ଛତ୍ର ନିକର
ଅଶ୍ୱ ସାରଥୀ କି କଲା ଭିନ୍ନ ସେ ॥୨୩॥

---

୨୦।୧- ନିଜ ରୂପ ଧରି ପୁଣ
୨୦।୩- ୦ପରସୁନ୍ଦରୀ
୨୧।୨- ୦ଜାନକୀ ଶୋଭବନ
୨୧।୩ କ- ୦ବେନି କେତକୁଂ
୨୧।୫- ୦ରାମ ହାହା ଏତୁଂ
୨୧।୬- ରାହୁ କୋଳଗତ କଲାଂ
୨୨।୬- ଗ୍ରୁଡ଼ ରାମ ଶିରୋମଣିଂ
୨୩,୪- ୦କଲକ ପାତ ମତ ସେଂ
୨୩।୬ କ- ଛେଦିଲା ଛତ୍ରଂ
୨୩।୬ ଖ- ଛେଦିଲା ତା ଛତ୍ରବର

କପଟ ବିଚ୍ଛିନ୍ନ କଲା ଅଙ୍ଗଯାକ ବିଦାରିଲା
ଶୋଣିତେ ପୂରିତ ଗାତ୍ର ତାର,
ଶିରର ମୁକୁଟ ତାର ପାଦଘାତେ କଲା ଚୂର
ଦେଖିଣ କୋପିତ ନିଶାଚର ସେ। ପରଚଣ୍ଡା,
ବିକୋଷ କଲାକ ବେଗେ ଖଣ୍ଡା
ପକ୍ଷୀର ପକ୍ଷରେ ନେଇ ହାଣିଲା ସେ ରୋଷ ବହି
ବୀରମାନଙ୍କରେ ସେହୁ ଚଣ୍ଡା ସେ ।।୨୪।।

ପକ୍ଷୀରାଜ ତୁଲେ ରଣ ରାବଣର ଦେଖି ପୁଣ
ସୀତା ତହୁଁ ପଳାଇଣ ଥିଲେ,
ପଳାଶ ଲତିକା ଅନ୍ତେ ଲୁଚିଣ ଥିଲେ ଏକାନ୍ତେ
ନ ଦେଖି ରାବଣ ବିଚାରିଲେ । ସେ ଖଣ୍ଡେଦୂରେ,
ଯାଇଣ ଦେଖିଲେ ପାଦଚିହ୍ନ
ଲୁବ୍ଧ ମୃଗୀର ଯେସନେ ପାଦଚିହ୍ନ ଦେଖି ଗମେ
ସେହି ରୂପେ ଖୋଜ ଦଶାନନ ସେ ।।୨୫।।

ଦେଖିଲେ ଲତା ଅନ୍ତର ହୋଇଛି ଯୁବତୀବର
ପର୍ଣ୍ଣତଳେ ହୋଇଛି ବିଲୀନ,
ଦେଖି ଦୈତ୍ୟ କ୍ରୋଧଭର ହୋଇ ଧରେ କେଶଭାର
ଉତ୍କୁଣ୍ଡିଣ ନେଲାକ ବହନ । ସେ ସମୟରେ,
ତିନିଲୋକ ହୋଇଲା ଅନ୍ଧାର
ଅରୁଣଶ୍ରୀ ନ ଦିଶିଲା ଗୋଦାବରୀ ନ ବହିଲା
ଆଶାହୀନ ଜାଣି ନିଶାଚର ସେ ।।୨୬।।

ମାୟାରେ କରି ବିମାନ ଆକାଶେ କଲା ଗମନ
ପବନର ପଞ୍ଚମ ମାର୍ଗରେ,
ରୋଦନ କରଇ ବାଳୀ ନୟନୁ ଲୋତକ ଗଳି
ଦେଖେ ଥାଇ ରାବଣ କୋଳରେ । ସେ ଶଶିମୁଖୀ,
ଋଷ୍ୟମୂକେ ଦେଖୁ ପାଞ୍ଚ ହରି
ଉତ୍ତରୀୟ ବସନରେ ବାନ୍ଧି ଅଳଙ୍କାର ସାର
ପକାଇଲେ ତାହାଙ୍କ ଉପରି ସେ ।।୨୭।।

---

୨୪।୧- କବାଟ ବିଭିନ୍ନ କଲା
୨୪।୫- ବିକାଶିଲା ବେଗେ ଖଣ୍ଡା
୨୫।୧- ଂଶ୍ୱବଣ ଶର
୨୫।୬- ଲୁବ୍ଧକ ଯେସନେ ମୃଗୀରଂ
୨୬।୬ କ,ଖ,- ଅରଣ୍ୟଟ୍ଟାଂ

ଧରି ସୀତାଙ୍କୁ କୋଳର — ଲଙ୍ଘିଣ ବେଗେ ସାଗର
ଗମନ କରିଣ ମହାଙ୍କର.
ପାରାବତ ମନ୍ଦରର — ପ୍ରବେଶ·ହେଲା ସଧୀର
ସୀତା ଗୁହାଁ କହଇ ଧୂର ହେ । ଲଙ୍କାପତି,
ଶୁଣ ମୋ ର ବାଣୀରେ ସୁବତି
ଭଜ ମୋହର ସଇର — ଅଭୟ ଗୁରୁ ଈଶ୍ୱର
ଆଜ ରମେ କାହିଁ ତୋ ସଙ୍ଗତ ରେ ||୨୮||

ତାକର ରାକ୍ଷସୀଗଣ — ବୋଇଲେ ସେହୁ ରାବଣ
ନିଜଟା ସହିତେ ଭୁଞ୍ଜି ମିଳ,
ଥାଅ ସୀତାଙ୍କୁ ରଖିଣ — ଅଶୋକ ବନେ ନେଇଣ
ଏତେ କହି ଗଲା ମହାବଳୀ ସେ । ରାଜାଆଜ୍ଞା,
ଲଭିଣ ସେହି ରୂପେ ରଖିଲେ
ଅଶୋକ ବନ ମଧ୍ୟରେ — ଶିଂଶପା ବୃକ୍ଷ ମୂଳରେ
ଚନ୍ଦ୍ରାମନେ ଜାନକୀ ରହିଲେ ସେ ||୨୯||

ଏହି ସମୟରେ ତହିଁ — ମିଳେ ବେଗେ ଶଚୀସାଇଁ
ଜାନକୀଙ୍କି ଆଶ୍ୱାସ କରିଣ,
ଦେଲେକ ଆଣି ପୀୟୂଷ — କହି ସକଳ ସନ୍ଦେଶ
ସୁର ପୁରେ ମିଳିଲେ ବହନରେ । ରଘୁବୀର,
ବିଳାସ ନାମେ ହସ୍ତୋବଂଶ
ଯୁଦ୍ଧ ଏ ହୋଇଲା ଶେଷ — ଲିଖି ଛନ୍ଦରେ ହରଷ
ଭଣେ ନୃପ ଧନଞ୍ଜୟ ନରେନ୍ଦ୍ରଶ ହେ ||୩୦||

---

୨୮ ପଦ 'ଖ' ପୋଥିରେ ନାହିଁ
୨୯।୧- ବୋଇଲେ ସେହୁ ରାବଣ
୩୦।୩- କହି ସକଳ ଚରଣ
୩୦।୪- ଏ ରଘୁପତି

# ଚତୁର୍ବିଂଶ ଛାନ୍ଦ

## (ରାଗ—ଚିନ୍ତା-ଦେଶାକ୍ଷ)

ଏଥୁ ଅନନ୍ତରେ ରାମ ଆସୁ ବହନ । ପୃଷ୍ଠରେ ଜମ୍ବୁକମାନେ କଲେକ ସ୍ୱନ ॥୧॥
ମନେ ମନେ ବିଚାରନ୍ତି ରଘୁନନ୍ଦନ । କମ୍ପାଇ ବଛନ୍ତି ମୋର ଲଭୁଛି ମନ ॥୨॥
ନଷ୍ଟେ ଅଇଲ କି ସୀତା ଗୁଢ଼ ସୁମିତ୍ରୀ । ପକ୍ଷୀଗଣମାନେ ସଞ୍ଚୁ ଅଛନ୍ତି ଖ୍ୟତ ॥୩॥
ବାମଭୁଜ କମ୍ପୁ ଅଛି ଏ ଅଦଭୁତ । ତେଣେ କି ଲକ୍ଷ୍ମଣ ସୀତା ହୋଇଲେ ହତ ॥୪॥
ଏମନ୍ତ ଚିନ୍ତିଣ କଛୁ ଦୂର ଗମିଣ । ଦେଖିଲେ ବିରସ ମୁଖ ବୀର ଲକ୍ଷ୍ମଣ ॥୫॥
ଦେଖି ବିଚାରନ୍ତି ମନେ କୋଦଣ୍ଡଧାରୀ । ବିଧାତା ଚରିତ୍ର ଏହୁ ଜାଣି ନ ପାରି ॥୬॥
ନିରଶ ଏହାକୁ ସେହୁ ସୀତା ବୋଇଲ । ତାର ବୋଲେ ତେଣୁ ଏତେ ଦୂର ଅଇଲା ॥୭॥
ଏକଥା ସତ୍ୟ ପରାଏ ହେବ ମୁହିଁ । ଏତେ ବୋଲି ବିରସ ସେ ସୀତସ୍ୱା ସାଇଁ ॥୮॥
ପରିହରନ୍ତି ଏଠାକୁ କମ୍ପାଇ ଅଇଲୁ । ପ୍ରାଣର ସଖିକି ମୋର ଏକା ଛୁ କଲୁ ॥୯॥
ଏ ବନରେ ନିଶାଚରଙ୍କ ବାସ । ସିଂହ ବ୍ୟାଘ୍ରଗଣ ଏଥି କରି ନିବାସ ॥୧୦॥
ଜାଣିଲି ନିଶ୍ଚୟେ ସୀତା ନାହିଁ ମୋହର । ଅଶକୁନମାନେ ଘୂରଉରେ ବିସ୍ତାର ॥୧୧॥
ବୋଲନ୍ତି ଲକ୍ଷ୍ମଣ ଶୁଣ ରଘୁନନ୍ଦନ । ତୋ ସ୍ୱରେ ଶୁଭିଲା ବାଣୀ ଅତି କାରୁଣ୍ୟ ॥୧୨॥
ତେଣୁ ମୋତେ ସୀତସ୍ୱା ଯାଅ ଯା ବୋଇଲା । ମୁହିଁ କହିଲି ବଚନ ମନେ ନ କଲା ॥୧୩॥
ଅପାର ଭର୍ତ୍ସନା କରି ବୋଇଲା ବାଣୀ । କୋପଭର ହୋଇଣ ରମଣୀ ସିହାଣୀ ॥୧୪॥
ସେ ବାଣୀ କହି ତ ଦେବ ମୁଖେ ନ ଆସେ । ତେଣୁ କରି ଅଇଲି ମୁଁ ତୁମ୍ଭର ପାଶେ ॥୧୫॥
ବୋଲନ୍ତି ଶ୍ରୀରାମ ଆସ ଯିବା ବହନ । ନିକ ବିତୁନେ ନୁହଇ ରାମା ରତନ ॥୧୬॥
ନିଶ୍ଚେ ଜାଣିଲି ତାହାକୁ ଅସୁରମାନେ । ଖାଇନେଉଛନ୍ତି ଅବା ଏହୁ କାନନେ ॥୧୭॥
ବିରସ ବଦନ ହୀନ ରଘୁନାୟକ । କରେ ଧରି ନ ପାରନ୍ତି ଧନୁସାୟକ ॥୧୮॥
ପ୍ରବେଶ ହୋଇଲେ ଯାଇ ଆଶ୍ରମ ପାଶ । ନ ଦେଖିଲେ ତହିଁ ରମାବର ବିଳାସ ॥୧୯॥

---

୨ କ- ୦ବିଚାରି କରନ୍ତି୦
୩- ୦ ଗୁଢ଼ ସୌମିତ୍ରୀ୦ ୦ଶୁଭ୍ରଅଛନ୍ତି ଖ୍ୟାତ
୫- (କ) ୦କଛୁ ଦୂର୦
୬- ୦ସୀତାର ଚରିତ ଏହୁ୦
୭- ତାର ବୋଲେ ତେଣୁ ଏତେ ଦୂର ଅଇଲ
ନିରସ ଏହା ସେହୁ ସୀତା ବୋଇଲ
୮- ୦ନିରଶ ସୀତସ୍ୱାର ସାଇଁ
୯- ଏଠାକୁ କାହିଁକି୦ ୦ଏକାନ୍ତ କଲୁ
୧୦- ଏ ବଣରେ ଜାଣ ନିଶାଚର ନିବାସ
ସିଂହ ବ୍ୟାଘ୍ରଗଣେ ଏଥେ କରେ ବିଳାସ
୧୩ରୁ ୩୨- 'କ' ପୋଥିରେ ନାହିଁ

ଡାକନ୍ତି ଶ୍ରୀରାମ ଆଗୋ ଜନକସୁତା । କୁରଙ୍ଗୀ ମାରି ଆଣିଛୁ ଆସ ବନିତା ॥୨୦॥
ପର୍ଣ୍ଣକୁଟୀ ଭିତରକୁ ଦେଲେ ଅନାଇ । ନ ଦେଖିଣ ରାମ ମୋହେ ପଡ଼ିଲେ ମୋହି ॥୨୧॥
ଆଶ୍ୱାସନା କରି ତାଙ୍କୁ ଲକ୍ଷ୍ମଣ ଧରି । ସଂଜ୍ଞା ଧରି ପୁଣ ରାମ ରୋଦନ କରି ॥୨୨॥
ଅବନୀ ଲୋଟନ୍ତି ଧୂଳି ଧୂସର ଅଙ୍ଗ । ବୋଲନ୍ତିରେ ପ୍ରିୟତମା କି କଲେ ବିରଙ୍ଗ ॥୨୩॥
କାହିଁ ଅଛୁ ଚନ୍ଦ୍ରମୁଖି ଦେଖାରେ ବାଳୀ । ମୋରେ କି ହୋଇଛୁ ପରିହାସରେ ମାଳି ॥୨୪॥
ସର୍ବ ସହିପାରୁ ସର୍ବଂସହା ନନ୍ଦିନୀ । ଜାଣୁ ବିଚ୍ଛେଦ ନ ସହି ତୋର ଭାବିନୀ ॥୨୫॥
ସୁତ ବିଚ୍ଛେଦରେ ଶୀର୍ଣ୍ଣ ଯେବଣ ନୃପ । ତାହାଙ୍କର ସୁତ ମୁହିଁ ଜାଣ ସ୍ୱରୂପ ॥୨୬॥
ଏ ନିକୁଞ୍ଜରେ ଅଛୁ କିରେ କୁଞ୍ଜବିହାରି । ବିହାର ସ୍ଥଳ ତୋ ଦେଖି ହୃଦ ବିଦାରି ॥୨୭॥
ଆହେ ଲକ୍ଷ୍ମଣ କେଉଁଣେ ଗଲା ମୋର ସୀତା । ମୋତେ ଦେଲା କୋମଳାଙ୍ଗୀ ଏ ଘୋର ଚିନ୍ତା ॥୨୮॥
ତିଳେକ ବିଚ୍ଛେଦ ନ ସହିଲି ତାହାର । ହାହା କେଉଁଣେ ଗଲୁ ମୋର ରମଣୀବର ॥୨୯॥
ବାତୁଳ ପ୍ରାୟେକ ହୋଇ ରଘୁନନ୍ଦନ । ବୁଲନ୍ତେ ପୁଚ୍ଛନ୍ତି ରାମ ବନ କାନନ ॥୩୦॥
ମୃଗଗଣ ଦେଖି ତାଙ୍କୁ ପଚ୍ଛନ୍ତି ପୁଣି । ଦେଖିଛୁ କି କୁରଙ୍ଗିଣୀ ମୋର ରମଣୀ ॥୩୧॥
ତାର ନେତ୍ର ଶୋଭା ତୁମ୍ଭ ନେତ୍ରେ ଦେଖିଣ । କେଉଁଣେ ଲୁଚିଅଛୁ କହ ମୋର ପରାଣ ॥୩୨॥
ଚୂଳି ସେ ବୋଲନ୍ତି ଶୁଣ କୁସୁମଲତା । ପୁଷ୍ପିଛ ଲେ ହସୁଅଛ ଦେଖିଛ ସୀତା ॥୩୩॥
ଉଦରରେ ଲୁଚୁଇଣ ଅଛଇ ସୀତା । ଉଚ୍ଚ ବୃକ୍ଷ ସ୍ତନଭରେ ଲକ୍ଷୁଛି ମୁଁ ତା ॥୩୪॥
ଚଳିତ ପଲ୍ଲବ କରେ କରୁଛ ନାହିଁ । ଝଙ୍କାରେ କହନ୍ତି ଭୃଙ୍ଗ ଅଛି ମୋ ସହି ॥୩୫॥
ଆହେ ଧରାଧରମାନେ ଶୁଣ ମୋ ବାଣୀ । ଦେଖିଛ କି ଅବଳା ଅବନୀ ମଣ୍ଡନୀ ॥୩୬॥
ମୁହିଁ ରାମ ସେହୁ ଜାଣ ମୋର ବନିତା । ଚଞ୍ଚଳା ରୁଚିର ରୁଚି କରେ ଗଞ୍ଜିତା ॥୩୭॥
ପୃଥୁଶ୍ରେଣୀ ପଦ୍ମବନ ଭାରରେ ନତ । ବିମ୍ବୋଷ୍ଠୀ ହରିଣନେତ୍ରା ମୋର ସଂଘାତ ॥୩୮॥
କ୍ଷୀଣ କଟୀତଟେ ଶୋଭେ ଲୋଳରସନା । ମୋ ମୁଖ ନ ଦେଖି ହୋଇଥାଇ ସେ ଘନା ॥୩୯॥
ଏମନ୍ତ ପ୍ରକାରେ ତରୁ ଲତାଙ୍କୁ ପୁଚ୍ଛି । ଶୋକଭର ହୋଇ ଦଶରଥଙ୍କ ବତ୍ସି ॥୪୦॥
ଦେଖିଲେ ଶୋଣିତ ପଡ଼ିଅଛି ଅବନୀ । ହତ ହେଲା ବୋଲି ରାମ ପଡ଼ନ୍ତେ ଅବନୀ ॥୪୧॥
ବୋଲନ୍ତି ଆରେ ଲକ୍ଷ୍ମଣ ଦେଖ ତଡ଼ିତ । ନିଶ୍ଚେ ଅସୁର ଖାଇଲା ଜନକ ପୁତ୍ରୀ ॥୪୨॥
ଏହାର ଅଭାବେ ମୁଁ କି ରଖିବି ଜୀବ । ଏ କି ଆଉ ଲୋକ ଆଲୋକନ ଲଭିବ ॥୪୩॥
ଏମନ୍ତ ହୋଇ ଜୀବନେ ହୋଇ ନିରାଶ । ଦେଖିଲେ ପଥେ ପଡ଼ିଛି ଗରୁଡ଼ ଶିର ॥୪୪॥

---

୩୩- ୦ଆହେଗୋ କୁସୁମଲତା୦
୩୪-ଅଛିକି ତୁମ୍ଭେ । ଉଚ୍ଚ କୁଚ ସ୍ତନଭରେ ଲକ୍ଷୁଛୁ ଆମ୍ଭେ
୩୭- ୦ଚଞ୍ଚଳା ଚଞ୍ଚଳା ରୁଚ କରେ କଞ୍ଜିତା
୩୯ କ- ଖିନକଟୀ ତଟେ୦
୪୧- ୦ପଡ଼ି ଅଛଇ ବନ୦
୪୪- ୦ହୋଇଛି ବନେ୦

ବେନ ପକ୍ଷ ଛେଦେ ହୋଇଛୁ ଖଣ୍ଡନ । ମହା ଅଦ୍ରିକୂଟ ପ୍ରାୟେ ଦିଶେ ଶୋଭନ ।।୪୫।।
ମନେ ବିଚାରନ୍ତି ରାମ ଅସୁର ଏହି । ସୀତାଙ୍କୁ ଖାଇଣ ମୋର ଅଛଇ ଶୋଇ ।।୪୬।।
ଏତେ ବୋଲି ଗୁଣେ କଲେ ଶରସନ୍ଧାନ । ଦେଖି ପକ୍ଷୀ ବୋଲେ ରହ ରଘୁନନ୍ଦନ ।।୪୭।।
ନୁହଇ ମୁଁ ନିଶାଚର ମୋତେ ନ ମାର । ମୋତେ ମାରି ସୀତାଙ୍କୁ ନେଲା ପାମର ।।୪୮।।
ଦଶଗ୍ରୀବ ବୋଲିକରି ନାମ ତାହାର । ମୋହ ତୁଲେ ସଂଗ୍ରାମ ସେ କଲା ଅପାର ।।୪୯।।
ଦେଖ ଯେତ୍ତୁ ଛତ୍ରଧ୍ୱଜ ରଥ କାର୍ମୁକ । କବଚ କିରୀଟ ତାର ରତ୍ନନାୟକ ।।୫୦।।
ଦୁର୍ଜୟ ଅଟଇ ସେହି ଦେବଗଣରେ । ମୋତେ ହାଣି ନେଲା ସୀତା ଗଲା ଅମ୍ବରେ ।।୫୧।।
ଦକ୍ଷିଣ ଦିଗକୁ ସେହି କଲା ଗମନ । ଏତେ କହି ଛାଡ଼ିଲା ସେ ନିଜ ଜୀବନ ।।୫୨।।
ଏମନ ପ୍ରକାରେ ତାଙ୍କୁ ଦେଖି ରାଘବ । ବୋଲନ୍ତି ଲକ୍ଷ୍ମଣ ଆହେ ଦେଖ ତୁ ଶବ ।।୫୩।।
ଅଗ୍ନି ଜାଳି ଏହାକୁ କରିବା ଦହନ । ଏ ଅଟଇ ଜାଣ ଆମ୍ଭ ତାତ ସମାନ ।।୫୪।।
ଆମ୍ଭର କାର୍ଯ୍ୟରେ ରଣେ ହୋଇଲା ହତ । ଏଣୁ ପକ୍ଷୀରାଜ ସ୍ୱର୍ଗେ ଗଲା ନିପୂତ ।।୫୫।।
ଏତେ ବୋଲି ପକ୍ଷୀନ୍ଦ୍ରକୁ କଲେ ଦହନ । ମୃଗମାଂସ ଗୃଧ୍ରଗଣେ ଦେହିଲେ ଦାନ ।।୫୬।।
ଆପଣେ ଶ୍ରୀରାମ ଜଳ ଆଞ୍ଜୋଳି ଦେଇ । ଦୁଃଖେ ଚହିଁ ଚଳିଯାନ୍ତି ସୀତା ପାଇଁ ।।୫୭।।
ଶ୍ରୀରାମ ବିଳାପ ଛାନ୍ଦ ଏ ଚତୁର୍ବିଂଶ । ରସିକ ଜନ ଆନନ୍ଦ କରେ ସୁରସ ।।୫୮।।
ଗିରୀଶ ଗିରିଶ ପାଦେ ଦେଇଣ ମତି । ଭଣେ ଏହା ଧନଞ୍ଜୟ ଭଞ୍ଜ ନୃପତି ।।୫୯।।

---

୪୫- ୦ମହା ଅଦ୍ରିକୂଟ୦
୪୬- ୦ରାମ ଦାନବ ଯେହ୍ନ୦ ଅଛୁ ସେ ଶୋଇ
୪୭- ୦ଗୁଣେ ଶର କଲେ୦ ୦ପକ୍ଷ ବର ବୋଲେ ରଘୁନନ୍ଦନ
୪୮- ୦ସୀତାଙ୍କୁ ନେଲା ପାମର
୫୦- ୦ଛତ୍ରଧ୍ୱଜ ରଥ୦
୫୧- ୦ହାଣି ସୀତା ନେଇଗଲା ଶୂନ୍ୟରେ
୫୨- ୦ଏତେକ କହି ଛାଡ଼ିଲା୦
୫୫- ୦ଏଣୁ ଜାଣୁଥାଇ ସ୍ୱର୍ଗେ୦
୫୬- ୦ଦହନ କଲେ୦ ୦ଦାନ ଦେହିଲେ
୫୮- ଏ ରାମ ବିଳାପ ଛାନ୍ଦ ଏ ଚତୁର୍ବିଂଶ୦
୫୯- ୦ଗିରୀଶ ପାଦେଣମତି୦

# ପଞ୍ଚବିଂଶ ଛାନ୍ଦ

## (ରାଗ—ଚିନ୍ତା କେଦାର)

ଏଥୁ ଅନନ୍ତରେ ରଘୁବୀର । ସୀତା ବିଚ୍ଛେଦେ ହୋଇ କାତର ।
ପଚ୍ଚରନ୍ତି ଯେଣୁ ନିଜ ଜ୍ଞାନ ନାହିଁ ମେ ଯେ ସଚଳ ଚର ଅଚର ହେ, ଶ୍ରୀରାମ ॥୧॥

ଆହେ ଶୁଣ ବନଚର ଗଣ । ମୋର ସଙ୍ଗେ କରୁଛ କି ରଣ ।
ରଣ-ରଣକ ନିକେତନ ଅବଳା ଦେଖିଅଛ କି ମୋର ପରାଣ ରେ, ରମଣି ॥୨॥

ଆହେ ଚମରୀ ଶୁଣ ବଚନ । ତୁରୂ କେଶିନୀ ନାରୀ ରତନ ।
କେଶ ଶୋଭା ଭୂମିଠାରେ ରଖିକରି କାହିଁ ଲୁଚିଛୁ ମୋ ପ୍ରାଣଧନ ରେ, କୁରଙ୍ଗୀ ॥୩॥

ରଙ୍ଗୀ ଅଟଇ କାମ କୁଶଳା । ହେଲା ଖେଳା ତା ଚଞ୍ଚଳ ଡୋଳା ।
ରତି ଅନ୍ତେ ମୋତେ ନିବେଶି ଭାବିନୀ ହୃଦେ କରିଥାଇ ମୋର ଲୀଳାରେ, ଦଇବ ॥୪॥

ଭରେ ନୃପତିଲକ ନନ୍ଦନା । ମୋତେ ନୋହୁ ତୁ କେବେ ବିମନା ।
ବିନା ଅପରାଧେ ଏତେ ଦଣ୍ଡ ଦେଇ ଆହା କେଣେ ଗଲୁ ଚନ୍ଦ୍ରାନନାରେ, ଭାବିନୀ ॥୫॥

ତୋର ହସି କହିବା ଚାତୁରୀ । ବାଣୀ ପିକ ମୃଦୁଳ ମାଧୁରୀ ।
ଶ୍ରବଣ କଲେରେ ରହିବ ଜୀବନ ଦେଖି ତୋର ସେ ଲୀଳା ଚତୁରୀରେ, ସୁନ୍ଦରୀ ॥୬॥

ଜାଣ ତୋର ସକାଶୁ ଚରିତ । ମନ୍ଦୋଦରୀ ଧବ ହେବ ହତ ।
ଆଜହୁଁ ଜାଣ ତୁ ଏକଥା ନିଶ୍ଚୟ ନିଶ୍ଚେ ଶୁଣି ମୁଁ ଏହା ଏଗାତରେ, ସୁନ୍ଦରୀ ॥୭॥

ଏହୁ ଦଇବ ଅତି ଦାରୁଣ । ତୋତେ ନିହିଲା ଏ ବିଡ଼ମ୍ବଣ ।
ଧିକ ହେଉ ମୋର ଭୁଜବଳ ପ୍ରିୟେ ତୁ ଯେ ରହିଲୁ ଦୈତ୍ୟ ସଦନରେ, ସୁଶୀଳା ॥୮॥

ତୋର ଗତି ହେଲା ଅଲକ୍ଷିତ । ଜୀବ ନେବାକୁ ହେଲା କୃତାନ୍ତ ।
ଲକ୍ଷ ମାନ ଯେବେ ମୋହର ହୁଅନ୍ତା ତାର ହନ୍ତା ନୁହନ୍ତା କୃତାନ୍ତରେ, ସୁନ୍ଦରୀ ॥୯॥

---

୧।୨- ୦ସକଳ ଚର ଅଚର୦
୨।୧- ମୋର ଶୋକେ୦
୨।୨- ରଣ କଳ କେତକ ଅବଳା୦
୩।୨- କାହିଁ ଲୁଚିଲୁ୦
୪।୨- ୦କରିଥାଉ ମୋତେ୦
୫।୧- ମୋତେ ଦେଖି ନୋହୁ ତୁ ବିମନା
୬।୨- ୦ମୋ ଜୀବନ ରହିବ

୬।୨- ୦ସେ ଲୀଳା ତୋର ଚତୁରୀରେ୦
୭।୨- ୦ଶୁଣି ମୁଁ ଏହା ସୁଶୀଳାରେ୦
୮।୨- କ-ଧିକ ମୋର ଭୁଜ ବଳ ପ୍ରିୟେ
ଖ-ଏବେ ଧିକ ହେଉ ମୋର ଭୁଜ ବଳ ପ୍ରାଏ
୮।୨- ୦ସୁନ୍ଦରୀ
୯।୨- ଆରେ ଲକ୍ଷମାନ୦

ତୋର କଥା ହୃଦେ ମୋର ଗୁଣି । ତୁ ମୋ ଦଶରଥ ବଧୂ ରମଣୀ ।
ଦଶରଥ ମଣି ମଣି ଚେଳିଲୁ ଧିକ ଧିକ ମୋର ପ୍ରାଣ ଶ୍ରେଣୀରେ, ସୁମୁଖୀ ॥୧୦॥

ଆହେ ସାରଙ୍ଗ ସାରଙ୍ଗ ଗତି । ଗତି ମୋର ସେ ନବ ଯୁବତି ।
ମୋର ଗତି ଭବ ଭବ ଭଚ କରି କଣି ନେଇଛି ପ୍ରାଣ ସୁନ୍ଦରୀ ରେ, ସାରଙ୍ଗ ॥୧୧॥

ଆହେ ଭୂଧର ଭୂଧର-ସ୍ତନା । ଦେଖି ଅଛୁ କି ଏଣୀ-ନୟନା ।
କୁଟିଳ କୁନ୍ତଳା ବଚନ ମାଧୁରୀ ସେ ଯେ କନକ ବର ବରନାରେ, ଜୀମୂତ ॥୧୨॥

ଜୀବଂଜୀବ ଜୀବକ ଲୋଚନା । ସୁକୁନ୍ତଳା ଦାମିନୀ ବରନା ।
ନିତାନ୍ତେ ନିତାନ୍ତ କେଳି ତୋ ସୁମରି ଅଙ୍ଗେ ବଢୁଛି କାମ ବେଦନା ହେ, ଦଇବ ॥୧୩॥

ଆହେ ପାନ୍ଥ ଦେଖ ମୋର କାନ୍ତା । ମୋର ବନିତା ଜନକ ସୁତା ।
କେଣେ ଗଲା ଦେଖି ଅଛ କି ତୁମ୍ଭେ ତା ଘନହୀନ ବିଦ୍ୟୁଲ୍ଲତା ମତା ହେ, ପଥିକ ॥୧୪॥

ଶୁଣି ରାମ ବାଣୀ ପାନ୍ଥ ଭଣି । ତୋତେ ନ ଜାଣଇ ତୋ ରମଣୀ ।
ଆହେ ଶ୍ୟାମଘନ ବରନ ଏ ବନେ ଏକା ଶୁଣି ଅଛୁ ଏହୁ ବାଣୀ ହେ, ସୁନ୍ଦର ॥୧୫॥

ହା ହା ହା ହେ ରାମ ଲକ୍ଷ୍ମଣ । ମୁଁ ଯେ ଅନାଥ ହୋଇଲି ଜାଣ ।
ତୁମ୍ଭ ହସ୍ତେ ଧନୁ ଶାୟକ ଧରିଛ ମୋତେ ହରିନେଉଛି ରାବଣ ହେ, ସୁନ୍ଦର ॥୧୬॥

ଏହା ଶୁଣି ରଘୁକୁଳ ଚନ୍ଦ୍ର । ମୂର୍ଚ୍ଛା ଗତରେ ଲଭିଲେ କ୍ଷିତି ।
ଚେତନା ପାଇ ପୁଣ ପୁଣ ବୋଲନ୍ତି ହାହା କେଣେ ଗଲୁ ମୋତିଦନ୍ତୀରେ, ଭାମିନୀ ॥୧୭॥

ଆଶ୍ୱାସନା କଲାକ ସୁମିତ୍ରୀ । ବୋଲେ ପ୍ରଭୁ ତୁମ୍ଭେ ମହାକ୍ଷତ୍ରୀ ।
ରାବଣ ଛାର ତାକୁ ହତ କରିବା ଆମ୍ଭେ ଲଭିବା ଜନକ ପୁତ୍ରୀ ହେ, ଶ୍ରୀରାମ ॥୧୮॥

ଧୈର୍ଯ୍ୟ କର ତୁମ୍ଭେ ଅବଲମ୍ବ । ଏହା ଦେଖି ଭାଜୁଛି ମୋ ଦମ୍ଭ ।
ଆସ ଋଷିଗଣମାନଙ୍କୁ ପଚାରି ରିପୁ ନାଶ କରିବା ଆରମ୍ଭ ହେ, ଶ୍ରୀରାମ ॥୧୯॥

---

୧୧।୨- ଆହେ ଗତି ମୋରେ ଭବ ଭବ ଭବ କରି
୧୧।୨- ୦ପ୍ରାଣ ସୁନ୍ଦରୀରେ, ମାରଣୀ
୧୨।୨- ସେ ଜେ ଦହକ ବରନା୦
୧୩।୨- ଆହେ ନିତାନ୍ତେ ନିତାନ୍ତେ ସୁମରି
୧୪।-୨ ୦ଦେଖିଲକି ତା କୁମ୍ଭେ
୧୫।୧- ୦ପାଥ ଭଣି
୧୬।୧- ୦ରାମ ହାହେ ଲକ୍ଷ୍ମଣ
୧୬।୨- ଅହେ ତୁମ୍ଭ ହସ୍ତେ ଧନୁ ସାୟେକ୦
୧୬।୨- ୦ଧରି ନେଉଛି ରାବଣ୦
୧୭।୧- କି- ମୂର୍ଚ୍ଛାଗତ୦
୧୭।୨- ଆହେ ଚେତନା୦
୧୮।୧- ୦ସୌମିତ୍ରୀ
୧୮।୨- ଆହେ ରାବଣ୦ ୦ହତ୍ୟାକରିବା
୧୯।୧- ୦କର ଦେବ୦
୧୯।୧- ୦ଦେଖି ଭାଗୁଛି୦
୧୯।୨- ଆହେ ଆସ୦

ଆଶ୍ୱାସନା ଲଭି ରଘୁବୀର । ପଥ ଗମନରେ ଅତି ଧୀର ।
ତକ୍ଷଣେ ଯାଇ ପରବେଶ ହୋଇଲେ ଆଦି ସୁର ତରଙ୍ଗିଣୀ ତୀର ସେ, ଶ୍ରୀରାମ ॥୨୦॥

ସେହି ସ୍ଥାନେ ଶବରୀ ଆଶ୍ରମ । ତହିଁ ଶ୍ରମ ଶାନ୍ତ କଲେ ରାମ ।
ଜାଣି ସେ ଷୋଡ଼ ଅର୍ଘ୍ୟେ ପୂଜଣ ଭାବମା ରାମ ଚରଣେ କଲା ପ୍ରଣାମ ସେ, ଶବରୀ ॥୨୧॥

କନ୍ଦ ଫଳ ମୂଳ ଆଣି ଦେଲା । ଭକ୍ତି ଭାବେ ରାମକୁ ପୂଜିଲା ।
ରାମ ଆଜ୍ଞା ପାଇ ସାମୀପ୍ୟ ମୁକତି ଲଭି ବୈକୁଣ୍ଠ ପୁରକୁ ଗଲା ସେ, ଶବରୀ ॥୨୨॥

ଏଥୁ ଅନ୍ତରେ ରଘୁନନ୍ଦନ । ଗୋଦାବରୀ କ ପୁଛନ୍ତି ପୁଣ ।
ଦେଖିଲ କି ମୋର ରମଣୀର ମଣି ତୋର ତୀରେ ସେ କରେ ଗମନ ସେ, ସୁନ୍ଦରୀ ॥୨୩॥

ତହିଁ ଦେଖିଣ ସେ ଚକ୍ରବାକ । ତାକୁ ପୁଛନ୍ତି ରଘୁନାୟକ ।
କାନ୍ତ କାନ୍ତା ବେନି ପୀରତି ବଶରେ ରାମ ମୁଖ ନ କଲେ ଆଲୋକ ସେ, ସାରଙ୍ଗ ॥୨୪॥

ଦେଖି ଅନାଦର ରଘୁପତି । କ୍ରୋଧ ବଢ଼ିଲା ତାଙ୍କର ମତି ।
ବୋଲନ୍ତି ଏ ମୋର ଶାପ ଯେବେ ତୁମ୍ଭେ କାନ୍ତ କାନ୍ତାରେ ନୋହି ସଙ୍ଗତିରେ, ସାରଙ୍ଗ ॥୨୫॥

ଶୁଣି ଭୀତାରୁ ହେଲା ବିରଙ୍ଗ । କମ୍ପ ଜାତ ହୋଏ ସର୍ବ ଅଙ୍ଗ ।
ରାମ ପାଦେ ପଡ଼ି କହନ୍ତି ବିନୋଇ ଆମ୍ଭେ ଅଚେତ ଦେବ ବିହଙ୍ଗ ହେ, ଶ୍ରୀରାମ ॥୨୬॥

ତୋର ସଙ୍ଗେ କି ଆମ୍ଭେ ଭଜନ । କ୍ଷମା କର ହୁଅ ପରସନ ।
ରଙ୍ଗ ବିଭଙ୍ଗେ ବିଫଳ ହୋଇଯିବ କୃପା ସିନ୍ଧୁ ତୁହି କୃପାସ୍ଥାନ ହେ, ଶ୍ରୀରାମ ॥୨୭॥

ପକ୍ଷୀ କାର୍ପଣ୍ୟ ବଚନ ଶୁଣି । ହସି ବୋଲନ୍ତି କୋଦଣ୍ଡ ପାଣି ।
ଆମ୍ଭ ବଚନ ତ ନୋହିବ ବିଅର୍ଥ ତୁମ୍ଭେ ଦିବସେ କର ରମଣି ହେ, ସାରଙ୍ଗ ॥୨୮॥

ନିଶି ଅବଶ୍ୟ ହେବ ବିଚ୍ଛେଦ । ଲଙ୍ଘିଲେ ଲଭିବ ପ୍ରମାଦ ।
ଶତେ ଖଣ୍ଡ ହୋଇ ଫାଟିବ ମୂର୍ଦ୍ଧନୀ ତୀରେ ଥିରେ କରିବ ଶବଦ ହେ ସାରଙ୍ଗ ॥୨୯॥

ଏତେ ବୋଲି ତହୁଁ ଯାନ୍ତି ଚଳି । ପଥେ ଦେଖିଲେ ଦନୁଜ ବଳୀ ।
ଯୋଜନେ ଯୋଜନେ ପ୍ରମାଣ ହୋଇଛି ବେନି ଭୁଜ ଦଶେ ଗିରି ଆଳି ସେ, କବନ୍ଧ ॥୩୦॥

---

୨୦।୧- ୦ଗତି ଧୀର
୨୦।୨- ଆଦ୍ୟେ ତକ୍ଷଣେ୦ ୦ହୋଇଲେ
୨୨।୧- ଭକ୍ତ ଭାବରେ ସେହୁଂ
୨୨।୨- ଅନ୍ୟେ ରାମ ଆଜ୍ଞା୦
୨୩।୨- ଆଗୋ ଦେଖିଲକି ମୋର ରମଣୀ ମଣିକି
୨୪।୧- ୦ସୁରଙ୍ଗ
୨୫।୨- ଆଦ୍ୟେ ବୋଲନ୍ତି୦
୨୬।୨- ୦କହନ୍ତେ ବିନୋଇ
୨୭।୧- ୦ଶାପ କି ଆମ୍ଭେ ଭର୍ଜନ
୨୭।୨- ଅନ୍ୟେ ରଙ୍ଗ ବିଫଳ ହେବ ଜୀବନ
୨୮।୧- ପକ୍ଷୀ କାପୁର୍ଣ୍ୟ୦
୨୮।୨- ଆଦ୍ୟେ ଅମ୍ଭ୦
୨୮।୨- କ- ୦କର ରମଣୀ ହିତ୦
୨୯।୧- ୦ହେବ ଅବଶ୍ୟ୦
୨୯।୨- ୦ଅନ୍ୟେ ଶତେ୦
୨୯।୨- ବେନି ତୀରେ୦

ବକ୍ଷ ସ୍ଥଳେ ବିରାଜଇ ତୁଣ୍ଡ । ଯାଉ ଜ୍ୟୋତି ଗଞ୍ଜେ ମାର୍ତ୍ତଣ୍ଡ ।
ବନଭୂମି ଯାକ ମାଡ଼ି ଆସୁଅଛି ପରଚଣ୍ଡ ତାର ଭୁଜଦଣ୍ଡ ସେ, କବନ୍ଧ ॥୩୧॥

ରାମ ଲକ୍ଷ୍ମଣଙ୍କୁ ଭୁଜେ ଧରି । ଆକର୍ଷିଣ ଆଣେ ବେଗ କରି ।
ବୋଲନ୍ତି ଶ୍ରୀରାମ ଶୁଣ ହେ ଲକ୍ଷ୍ମଣ ଏ କସ ଜାଣି ନ ପାରି ହେ, ଲକ୍ଷ୍ମଣ ॥୩୨॥

ବିହ୍ୱ ଯୋଗୁଁ ହରାଇଲି ସୀତା । ଏଣୁ ହୋଇଛି ଦୁଃସହ ଚିନ୍ତା ।
କ୍ଷୁଧାରେ ପୀଡ଼ିତ ତନୁ ଅତି କ୍ଷୀଣ ଏବେ ଜୀବନ ନେଉଛି ଧାତା ହେ, ସୁମିତ୍ରୀ ॥୩୩॥

ଶୁଣି ବୋଲନ୍ତି ଲକ୍ଷ୍ମଣ ବାଣୀ । ଶୁଣ ରଘୁକୁଳ ଶିରୋମଣି ।
ଦନୁଜ ଭୁଜ ପଞ୍ଜରେ ପଶିଥାଇ ଖଣ୍ଡା ଯେନ ପକାଇବା ହାଣି ହେ, ଶ୍ରୀରାମ ॥୩୪॥

ଭ୍ରାତ ବଚନ କର୍ଣ୍ଣରେ ଶୁଣି । ଶନ୍ତା ତେଜି ଧୀରେ ରଘୁମଣି ।
ତୂର୍ତ୍ତେ ବିକୋଷ କରି ଚନ୍ଦ୍ରହାସ ବେନି ବେନି ଭୁଜ ବେଗେ ହାଣି ସେ, ରାଘବ ॥୩୫॥

ପ୍ରାଣ ତେଜି କବନ୍ଧ ପଡ଼ିଲା । ଦିବ୍ୟ ତନୁ ତକ୍ଷଣେ ଲଭିଲା ।
ଆକାଶେ ରହି ଶ୍ରୀରାମଙ୍କୁ ନିରେଖି ସେହୁ ମଧୁର କରି କହିଲା, ସେ କବନ୍ଧ ॥୩୬॥

ବୋଲେ ଶୁଣିମା ଜଗତ ନାଥ । ଇନ୍ଦ୍ର ଶାପୁଁ ହୋଇଲି କୃତାର୍ଥ ।
ଜାଣୁଛି ରାବଣ ବଧେ ଏହୁ ମତ ସ୍ୱର୍ଗ୍ୟ ଲଭିଅଛି ଦଶରଥ ହେ, ଶ୍ରୀରାମ ॥୩୭॥

ଏବେ ଏଠାରୁ ଗମନ କରି । ଯାଇଁ ଦେଖ ଋଷ୍ୟମୂକ ଗିରି ।
ଅଛି ତହିଁ ସୁଗ୍ରୀବର କପିରାଜ ତାର ମିତ୍ର ହୁଅ ତୁ ବଡ଼ିରି, ହେ ଶ୍ରୀରାମ ॥୩୮॥

ସେହୁ ତୋର ସହାୟୁ ହୋଇବ । ସୀତା ଅନ୍ୱେଷଣ ସେହିଁ କରିବ ।
ବାଳିକ ମାରି ତାକୁ କର ରାଜନ ପ୍ରିୟା ପ୍ରାପତ ତେଣୁ ହୋଇବ ହେ, ଶ୍ରୀରାମ ॥୩୯॥

ଏତେ କହି ସ୍ୱର୍ଗ ଯାନ୍ତେ ସେହୁ । ତହିଁ ବନେ କର ମହାବାହୁ ।
ପମ୍ପା ସର ତୀରେ ପ୍ରବେଶ ହୋଇଲେ ସେହୁ ଦନୁଜ କୁଳଙ୍କ ରାହୁ ସେ, ଶ୍ରୀରାମ ॥୪୦॥

ଏହୁ ଶ୍ରୀରାମ ବିଳାସ ଗୀତ । ସର୍ବ ରସରେ ଏହୁ ପୂରିତ ।
ପଞ୍ଚବିଂଶ ଛାନ୍ଦ ହୋଇଲା ସମ୍ପୂର୍ଣ୍ଣ ଭଣେ ଧନଞ୍ଜୟ ମହୀକ୍ଷିତ ହେ, ସୁଜନେ ॥୪୧॥

●

---

୩୧।୧- ବକ୍ଷତଳେ ଦିଶଇ ତାଂ
୩୧।୧- ବହୁ ଯୋଜନ ନଦେଂ
୩୧।୨- ଆହେ ବନଭୂମି
୩୧।୨- ଛୁର ଚରଣେଂ
୩୨।୨- ବାବୁ ଏ କସଂ ୦ପାରି ହେ, ସୌମିତ୍ରୀ
୩୩।୨- ଆହେ କ୍ଷୁଧାରେଂ
୩୪।୨- ଆହେ ଦନୁଜଂ ୦ପଶି ଛୁଇ
୩୫।୨- ଆହେ ତୁରତେଂ
୩୬।୨- ଆହେ ଆକାଶେଂ
୩୬।୨- ୦ରୂମ୍ବସତୀ
୩୭।୨- ସ୍ୱର୍ଗେ ଲଭିଅଛୁ ଦଶମାଥଂ
୩୮।୧- ୦ଋଷିମୂଙ୍କଂ
୩୮।୨- ୦ରାଘବ
୩୯।୨- ଅହେ ବାଳିକ ମାରିକରି ତାକୁ ରାଜନ
୩୯।୨- ପ୍ରିୟା ତେଣୁ ପ୍ରାପତଂ
୪୦।୨- ଆହେ ପମ୍ପାଂ
୪୦।୨- ୦ଦନୁଜ ଚନ୍ଦ୍ରଙ୍କଂ

# ଷଡ଼୍‌ବିଂଶ ଛାନ୍ଦ

## (ରାଗ—ଶଙ୍କରାଭରଣ)

ଏଥୁ ଅନନ୍ତରେ ରାମ ଲକ୍ଷ୍ମଣଙ୍କୁ ଗୃହିଁ
ବୋଇଲେ ଏ ପମ୍ପା ସରୋବର ଦେଖ ଭାଇ ।
ହେଲେ ଅମୃତ ଆକାର,
ପ୍ରିୟା ବିନୁ ମୋତେ ଏ ନୋହୁଛି ସୁଖକର ॥୧॥

ଜାନକୀର ଛବି ମୋର ଅଛି କରୁ ବନ୍ଧ
ଚକ୍ରବାକ ସ୍ତନୀ ଏ ପଙ୍କଜ ମୁଖେ ଶୋହ୍ଧ ।
ମୀନ ନୟନେ ରଞ୍ଜିତା,
ଭ୍ରମର କେଶିନୀ ଭଙ୍ଗ ତ୍ରିବଳୀ ଭଜିତା ॥୨॥

ଦେଖ ଏହୁ ହୋଇଅଛି ଅଚଳ ସ୍ମରଣ
ସିନ୍ଦୂର ଶୋଭାକୁ ଏହୁ କରୁଛି ପ୍ରକାଶ ।
ଏହୁ ବିସର ଜନକ,
କମଳା କରରେ ସର୍ବ ଜନଙ୍କ ତୋଷକ ॥୩॥

ବକୁଣ୍ଠକ ଈଧନରେ ଜନ ଚିତ୍ତ ମୋହେ
ଏହୁ ବାଜବାଜ କ୍ରୀଡ଼ା ସ୍ଥାନ ବାବୁ ଶୋହେ ।
ସେହୁ କୁମୁଦ ସେବନ୍ତା,
କୃଷ୍ଣ ବିଷଧରରେ ଏ ଅତି ବରାଜିତ ॥୪॥

କେଶର ସଉୟୁ ଯେ ସରଭ ଆଲୋଡ଼ିତ
କୁବଳୟ ଶୋଭାକୁ ଏ ରଞ୍ଜୁଛି କୁତେ ।
ହଂସ ଉଦୟ କାରଣ,
ଦ୍ୱିଜରାଜ ମଳୟ ଏ ନୟନ ରଞ୍ଜନ ॥୫॥

---

୧।୧- ୦ଶ୍ରୀରାମ ମୁଖ ସ୍ମୃତି
୧।୩– ଆହେ ଅମୃତ୦
୩।୪- ୦ସର୍ବ ଜୀବଙ୍କ୦
୪।୨- ୦ସ୍ଥାନ ବାବୁ ଶୋହେ
୪।୩- ୦କୁମୁଦ ଶୋଭିତ
୪।୪- ୦ଏତ ଅତ ବରାଜିତ
୫।୪- ଦ୍ୱିରାଜ ନୟନ ଏ୦

ଦେଖ ପୁଣ ଧରେ ହଂସ ଶଶିର ଶୋଭିତା
ଗୋପିକା ଜୀବନ ବନମାଳରେ ରଞ୍ଜିତା ।
ଖରେ ଲଳିତ ଲାଙ୍ଗଳୀ,
ପିତକାନ୍ତ ଧାରଣେ ମୋହୁଛି ମହୀଆଳ ।।୬।।

ଦେଖ ଦେଖ ବାବୁ ଏ ମୋହର ଶୋକ ଦେଖି
ସ୍ୱଚ୍ଛ ହୃଦୟ ଭାବରେ ଏ ହୋଇଛି ଦୁଃଖୀ ।
ଭୃଙ୍ଗ ଝଙ୍କାରେ ବେଦନ,
କଲ୍ଲୋଳ ହସ୍ତରେ କ କରୁଛି ଆଶ୍ୱାସନ ।।୭।।

ମୂର୍ଚ୍ଛି ମଣୁଅଛି ଏହୁ ମୀନ ଯେ କେତନ
ପୁଷ୍ପ ଶରେ କରି ମୋର ନାଶୁଛି ଜୀବନ ।
ଯେଣୁ ଅଟଇ ଅତନୁ,
ମଧୁର ସ୍ୱଭାବେ ମୋର ଦହୁଅଛି ତନୁ ।।୮।।

ରକ୍ତଶାଳୀ ହୋଇ ମୋର କରୁଛି ଭରତ
ଶିଳୀମୁଖ ଚୟୂର ସ୍ୱେ ମାରୁଛି ବକୋତ ।
ପ୍ରିୟା ହୀନ ଦେଖି ମୋତେ,
ତୁ ଦେଖିଛୁ କାମ ପ୍ରାଣ ଦେଉଛି ଭୂରତେ ।।୯।।

ବୋଲନ୍ତି ଲକ୍ଷ୍ମଣ ଶୁଣ ରଘୁର ମଣ୍ଡନ
ଏହୁ ଯେ ଅଟଇ ଶର ଲୁହାଇ ମଦନ ।
ରାମ ବୋଲନ୍ତି ବଚନ,
ଶରେ ସିନା ଜୀବନ ଏ ନେବ ତତକ୍ଷଣ ।।୧୦।।

ଆହେ ଲକ୍ଷ୍ମଣ ବନେ କ ପଡ଼ଇ ଅଶନି
ବୋଲନ୍ତି ସୁମିତ୍ରୀ ବାନ ଶୁଭେ ପିକ ଧ୍ୱନି ।
ଶୁଣି ଭ୍ରାତର ବଚନ,
ଆରେ ପିକଭାଷୀ ଅସ ରମଣୀ ରତନ ।।୧୧।।

---

୬।୧- ୦ହଂସା ଶଶୀ ସୁର୦
୬।୨- ୦ଜନ ଜୀବନ
୭।୧- ୦ବାବୁ ମୋର ସ୍ନେହୁ ଶୋକ୦
୭।୨- ସ୍ୱଚ୍ଛ ଭାବ ହୃଦୟରେ ହୋଇଅଛୁ୦
୮।୧- ମଣୁଅଛୁ ମୂର୍ଚ୍ଛି ଯେ୦
୮।୪- ୦ଦହୁଅଛୁ ମୋର୦
୯।୧- ରକ୍ତମାନ ହୋଇ୦
୯।୨ କ- ଶିଲମୁଖରସ୍ୱଚସ୍ୱେ୦
୧୦।୧- ବୋଲକ୍ଷ୍ମଣ ଶୁଣ ରଘୁ ରଘୁର ମଣ୍ଡନ
୧୦।୨- ଏ ଯେ ଅଟଇ ରଷ୦
୧୦।୪- ୦ଜୀବନ ଏ ନଅ୦
୧୧।୧- ଆହେ ଆହେ ଲକ୍ଷ୍ମଣ ବନେ ପଡ଼ଇ୦
୧୧।୨- ବୋଲେ ସଉମିତ୍ରୀ୦
୧୧।୪- ଆରେ ପିକଭାଷୀ ଅଣେ୦

ବିଭୋଳ ହୋଇଣ ଲତା କଲେ ଆଲିଙ୍ଗନ
ଉଡ଼ିଗଲା ଦ୍ୱିଜସ୍ୱର ହୋଇଲା ବିଲାନ ।
ବାଣୀ ନ ଶୁଣିଲେ ଯହୁଁ,
ହା ହା ପ୍ରାଣସଖି ବୋଲି ମୋହ ଗଲେ ତହୁଁ ॥୧୨॥

ଆଶ୍ୱାସିଣ କୋଳରେ ଧରଣି ସଉମିତ୍ରୀ
ମୁଖେ ଜଳ ସିଞ୍ଚି ବୋଲେ ଲଭିବା ଧିରତ୍ତ ।
ତୁମ୍ଭେ ରଘୁକୁଳ ବୀର,
ଏସନ ହୋଇବା ପ୍ରଭୁ ନୋହଇ ବେଭାର ॥୧୩॥

ପୁଣି ବିହ୍ୱଳ ହୋଇଣ ବୁଲନ୍ତି କାନନ
ତରୁଲତା ପୁଚ୍ଛିଣ କରନ୍ତି ନିବେଦନ ।
ମୋର ପ୍ରାଣର ବଲ୍ଲଭୀ,
କହ ଆହେ ତରୁଲତା ପାଇବି କି ଲଭି ॥୧୪॥

ତୁମ୍ଭେମାନେ ଆଲିଙ୍ଗନେ ପ୍ରିୟାରେ ଶୋଭନ
ମୋର ପ୍ରିୟାହିନେ ମୁଁ ବୁଲଇଁ ବନେ ବନ ।
ମୋତେ ବାଣୀ ତ ନ କହ,
ତୁମ୍ଭେ କିବା ଅଚେତନ ଦୟା କି ନ ବହ ॥୧୫॥

ହାହା ରେ ଚନ୍ଦ୍ରବଦନା ନରେନ୍ଦ୍ର ନନ୍ଦନା
କାହିଁଅଛୁ ପ୍ରିୟେ ଆସି ହର ମୋ ବେଦନା ।
ମୋର ଶାଖା କେହି ନାହିଁ,
ଶାଖା ହୋଇ ଏକାଭୁରେ ଥିଲୁ ବଇଦେହୀ ॥୧୬॥

ମୃଗୟା ମୁଁ ଯାଇଥିଲେ ପଥେ ବସିଥାଉ
ଶ୍ରମଜଳ କଣମୁଖେ ଦେଖି ଯେ ନ ସହୁ ।
ଏବେ ଶୋକ ଜଳଧାର,
ବୁଡ଼ିଅଛି ପ୍ରିୟେ କେହୁ କରିବ ଉଧାର ॥୧୭॥

---

୧୨।୧- ୦ବହ୍ୱଳ ହୋଇଣ
୧୨।୨- ୦ହୋଇଲା ବଜନ
୧୨।୩- ୦ଶୁଣିଲେ ଏଣୁ୦
୧୨।୪- ୦ମୋହ ଗଲେ ତେଣୁ
୧୩।୧- ଆକର୍ଷିଣ କୋଳକଲେ ଧରି୦
୧୫।୨- ୦ମୁଁ ବୁଲୁଛି୦
୧୫।୪ କ- ୦ବାଣୀ ତ ନ କହ
୧୬।୧ କ- ୦ଚାନ୍ଦ୍ରଧାନ୍୦
୧୬।୪- ୦ରୁରେ ମୋର ଚନ୍ଦ୍ରମୁହିଁ
୧୭।୨- ୦ଦେଖିଲେ ନ ସହୁ
୧୭।୩- ୦ଜଳଧାର
୧୭।୪- ୦ପ୍ରିୟେ ଏହୁ୦

ବଚନ କହିଲେ ମୋତେ କହୁ ତୁ ବଚନ
ଶୟନ କଲେଣ ମୁଁ ଯେ କରୁ ତୁ ଶୟନ ।
ସେହୁ ଭାବ କେ ଜାଣିବ,
ପ୍ରାଣ ନେବାପାଇଁ ଏବେ ବସିଛୁ ଦଇବ ॥୧୮॥

ବନେ ଚିତ୍ରକୂଟରେ ତୁ ଏକାଥିଲୁ ବସି
କସ୍ତୁରୀ ମାଂସ ତୁ ଶୁଖାନ୍ତେ ଶୁଭ୍ରକେଶୀ ।
ଇନ୍ଦ୍ରକାକ ମୂଢ଼ପଣେ,
କୁଚେ ତୋର କ୍ଷତ କଲା ଯେବଣ ଚରଣେ ॥୧୯॥

ଏତେ କହି କ୍ଷତ ଜାତ ନ ସହିଲ ତୋର
ଆଇଁଶିକା ଶର ମୁଁ ପେଷିଲ ଧାଡ଼କାର ।
ସେହୁ ବ୍ରହ୍ମାଣ୍ଡ ବୁଲିଲା,
ରଖନ୍ତା ତାହାକୁ ବ୍ରହ୍ମା ଶିବ କେହିଁ ନୋହିଲା ॥୨୦॥

ତୋର ପାଦେ ବେଗେ ସେହୁ ପଡ଼ିଲା ଶରଣ
ସେ କାଳେ ତୁ ତାର ପ୍ରାଣ କଲୁ ଯେ ତାରଣ ।
ଏବେ ମାରୁଛି ମଦନ,
ତାର ବାଣୁଂ ମୋର ପ୍ରାଣ ରଖ ତୁ ବହନ ॥୨୧॥

ଉପକାରେ ଉପକାର ଯୁଗତ ଅଟଇ
ମାର ମୁଖେ ମୋତେ ଦେଇ ଗଲୁ ଗୃହମୁଁହିଁ ।
ନାହିଁ ମୋତେ ଯେ ରଖନ୍ତା,
ଏକା ତୁ ଏଥୁ ରଖିଣା ପାରୁ ପ୍ରିୟ କାନ୍ତା ॥୨୨॥

ଏମନ୍ତ ବୋଲଣ ସେହୁ କରନ୍ତେ ରୋଦନ
ଆଶ୍ୱାସିଣ କରନ୍ତ ଯେ ସୁମିତ୍ରା ନନ୍ଦନ ।
ପ୍ରଭୁ ଜାନକୀ ଖୋଜିବା,
ଜାଣିକରି ଏଥିର କାରଣ ବସୁରିବା ॥୨୩॥

ଏହି ସମୟରେ ଋଷ୍ୟମୂକ ଗିରିବର
ଚାରି ମନ୍ତ୍ରୀ ସଙ୍ଗତେ ଯେବଣ ସୁଗ୍ରୀବର ।
ଅତି ଭୟରେ କାତର,
ଲକ୍ଷଣ ପଶିଲେ ଯାଇ ଗିରି କନ୍ଦରର ॥୨୪॥

---

୧୮।୨- ଶୟନ କଲେକ୦
୧୯।୨- ମାଂସ୍ୱସ
୧୯।୩- ଉନ୍ଦ୍ରସୁତ କାକ୦
୨୧।୧- ୦ପଶିଲା ଶରଣ
୨୨।୪- ୦ରଖିଣ ଏଥୁ୦
୨୩।୧- ୦ବୋଲଣ ତହୁଁ୦
୨୩।୨- ଆଶ୍ୱାସିଣ କହନ୍ତି୦
୨୪।୧ କ- ୦ଋଷିମୁଖ୦
୨୪।୨- ସ୍ୱରମିଷ ଘେନ ସଙ୍ଗତେ୦
୨୪।୦- ୦ଗିରର କନ୍ଦର

ଏସନ ଦେଖିଣ ତାଙ୍କୁ ବୋଲଇ ମାରୁତ
ଚପଳ ନୃପତ ତୋ ସହଜ କପିଜାତ ।
କମ୍ପା ଲଭୁଅଛ ଭୟ,
ବାଳି ନାହିଁ କମ୍ପା ତୋର ବସ୍ତୁସ୍ଥ ଉଦୟ ।।୨୫।।

ବୋଲନ୍ତି ହେ ସୁଗ୍ରୀବର ଶୁଣ ହେ ପାବନ
ପମ୍ପା ତୀରେ ଦେଖିଲି ମୁଁ ଧନୁର୍ଦ୍ଧର ବେନ ।
ନିଶ୍ଚେ ବାଳିର ସେ ଚର,
ତାହାଙ୍କୁ ଦେଖିଣ ମୁହିଁ ହେଉଛୁ କାତର ।।୨୬।।

ଶିରରେ ଜଟା ମୁକୁଟ ବନବାସୀ ମୂର୍ତ୍ତି
କପଟେ ବୁଲନ୍ତି ମଣୁଅଛୁ ମୋର ମତି ।
ତୁମ୍ଭେ ବୁଝି ଆସ ଯାଇ,
କେ କେ ସେ ଅଛନ୍ତି ସରୋବର ତୀରେ ରହି ।।୨୭।।

ସୁଗ୍ରୀବର ବାଣୀ ଶୁଣି ମାରୁତ ଗମିଲା
ଭିକ୍ଷୁ ରୂପ ଧରି ରାମ ସମୀପେ ମିଳିଲା ।
ହସି ପଚାରନ୍ତି ବାଣୀ,
କମ୍ପା ବେନି ଯୁବା କର କାନନ ଭ୍ରମଣୀ ।।୨୮।।

ଜାତ ବଡ଼କୁଳେ ପରି ତୁମ୍ଭେ ଦିଶୁଅଛ
ସର୍ବ ଲକ୍ଷଣେ ସଂଯୁତ ଅଟ କାହା ବଛ ।
ହସ୍ତେ ତୀର ଯେ କମାଣ,
ଜଟା ଚୀରାମ୍ବର ଧରିଅଛ କି କାରଣ ।।୨୯।।

କପିବୀର ବାଣୀ ଶୁଣି ଦଶରଥ ସୁତ
ଭ୍ରାତ ମୁଖ ଚାହିଁ କେତେ କଲେକ ଇଙ୍ଗିତ ।
ତାହା ଜାଣିଣ ଲକ୍ଷ୍ମଣ,
ହନୁମନ୍ତ ମୁଖ ଚାହିଁ କହଇ କାରଣ ।।୩୦।।

---

୨୫।୧- ୦ରାମ ବୋଲନ୍ତି୦
୨୫।୨- ୦ତୋ ସଙ୍ଗେ କପି୦
୨୬।୧- ୦ହେ ପାବେମା
୨୬।୩- ୦ସେ ଚର
୨୬।୪- ୦ମୁଁ ଯେ ହୋଇଲି କାତର
୨୭।୧ କ- ୦ମୂର୍ତ୍ତ
ଖ- ଶିରେ ଜଟା ମୁକୁଟ ତା୦ ୦ମୂର୍ତ୍ତି

୨୭।୨- କପଟେ ବୁଲୁଛୁ
୨୮।୪ ୦ବେନି ଯୁବାକାଳେ୦
୨୯।୧- ୦ଅବା ତୁମ୍ଭେ୦
୩୦।୧- କପିବର୦
୩୦।୨- ଭ୍ରାଥା ମୁଖ ଚାହିଁ ବୋଲେ କହ ଏ ଚରିତ
୩୦।୩- ରାମ ସନମତ ଜାଣି
୩୦।୦- ବୋଲନ୍ତି ଲକ୍ଷ୍ମଣ ଶୁଣ ବପ୍ରମଣି

କୋଶଳ ଦେଶରେ ଦଶରଥ ଯେ ରାଜନ
ତାହାଙ୍କ ନନ୍ଦନ ଆମ୍ଭେ ଅଟୁ ବେନିଜନ ।
ଏହୁ ଜ୍ୟେଷ୍ଠ ଜାଣ ରାମ,
କନିଷ୍ଠ ଅଟଇ ମୁଁ ଲକ୍ଷ୍ମଣ ମୋର ନାମ ।।୩୧।।

ପିତା ସତ୍ୟ ପାଳି ଆମ୍ଭେ ବନକୁ ଆଇଲୁ
ଗୋଦାବରୀ ତଟରେ ଆଶ୍ରମ କରିଥିଲୁ ।
ତହିଁ କପଟେ ଆସିଣ,
ରାମ ପତ୍ନୀ ସୀତା ହରି ନେଲାକ ରାବଣ ।।୩୨।।

ତେଣୁକରି ବନମାନଙ୍କରେ ଖୋଜୁଅଛୁ
ଜାଣିଅଛ କି ହେ କହ ତୁମ୍ଭଙ୍କୁ ପୁଛୁଛୁ ।
ତୁମ୍ଭେ କେଉଁ ଦେଶ ଚର,
ଦେଖିଅଛ କି ଯେ ସୀତା ନେଲା ଦଶଶିର ।।୩୩।।

ପୁଣି ବୋଲନ୍ତି ଶ୍ରୀରାମ ତୁମ୍ଭେ ଦ୍ୱିଜବର
ମୁକୁଟ କୁଣ୍ଡଳେ ତ ଦିଶୁଛ ମନୋହର ।
କହ ଏଥିର କାରଣ,
ରାଜାମାନେ ଯହିଁକି ଅଟନ୍ତି ଅରହଣ ।।୩୪।।

ଏସନ ରାମ ବଚନ ଶୁଣିଣ ପାବନୀ
ସ୍ୱଯୂଥ ବଚନ ମନେ ମନେ ସେହୁ ଗୁଣି ।
ବୋଲେ ଧନ୍ୟ ଆଜଦିନ,
ଲଭିଲି ତ୍ରୈଲୋକ୍ୟ ନାଥ ରାମ ଦରଶନ ।।୩୫।।

ଏମନ୍ତ ଚିନ୍ତିଣ ସେହୁ ପ୍ରଣାମ କରିଲା
ମଧୁର କରିଣ ରାମ ସମ୍ମୁଖରେ କହିଲା ।
ରାଜ୍ୟ କାନ୍ତାର ବହୀନ,
ହୋଇ ରହିଅଛି ସୁଗ୍ରୀବର ଏହୁ ସ୍ଥାନ ।।୩୬।।

ମୁହିଁ ଯେ ପବନ ସୁତ ସଚିବ ତାଙ୍କର
ସେହୁ ମିହିର ନନ୍ଦନ ଶୁଣ ରଘୁବୀର ।
ଘୃତ ମନ୍ତ୍ରୀ ଯେତେକତି,
ରହିଅଛି ଆସିବା ଋଷ୍ୟମୂକ ଗିରି ।।୩୭।।

---

୩୧।୪- ୦ମୋର ନାମ ଲଇକ୍ଷଣ
୩୨।୨- ତୁମ୍ଭେ ଜାଣ କହେଂ
୩୩।୩ କ- ଆମ୍ଭେ କେଉଁ ଦେଶ ଚ୍ଚର
୩୩।୪ କ- ୦ନେଲ୍ଲ ଦଶଶିର
୩୪।୨- ୦କୁଣ୍ଡଳ ଯେ ଦିଶୁଛୁଂ
୩୫।୧ ଓ ୦ପାବେନୀ
୩୫।୨- ୦ସେହୁ ମନେମନେ ଗୁଣିଂ
୩୬।୪- ରହିଅଛୁ ସୁଗ୍ରୀବର ହୋଇ ଏହୁ ସ୍ଥାନ
୩୭।୧- ସଚିବ ତାହାର
୩୭।୩- ଘୃତମିଷଂ
୩୭।୪ କ- ୦ଋଷିମୁଖ ଗିରି

ତୁମ୍ଭର ସେ ଉପକାର ଅବଶ୍ୟ କରିବ
ରାବଣ ମାରିଣ ଜାନକୀଙ୍କି ଆଣିଦେବ ।
ପ୍ରଭୁ ବିଜୟେ କରିବା,
ସୁଗ୍ରୀବର ତୁଲେ ତହିଁ ମଇତ୍ର ହୋଇବା ।।୩୮।।

ଏତେ ବୋଲି ହନୁମନ୍ତ ବେଗେ ଚଳିଗଲା
ସୁଗ୍ରୀବର ଆଗେ ସବୁ ମଣୋଇ କହିଲା ।
ସଙ୍ଗେ ଘେନି କପିବୀର,
ଶ୍ରୀରାମ ଛାମୁରେ ସେ ମିଳିଲା ଧାଡିକାର ।।୩୯।।

ଦେଖି ସୁଗ୍ରୀବର ରାମ ଚରଣେ ନମିଲା
ହୃଦୟର ବେଦନା ସମସ୍ତ ଜଣାଇଲା ।
ଶୁଣି ରଘୁକୁଳ ବର,
ଆପଣାର ଦୁଃଖ କହେ ତାହାଙ୍କ ଆଗର ।।୪୦।।

ନିଜ ଦୁଃଖ କୁହାକୁହି ହୋଇ ବେନିଜନ
ମଇତ୍ର ହୋଇଲେ ସାକ୍ଷୀ କରିଣ ଦହନ ।
ରାମ ବୋଲନ୍ତି ବଚନ,
ବାଳି ମାରି କିଷ୍କିନ୍ଧାରେ କରିବ ରାଜନ ।।୪୧।।

ତୁଉଁଅଛି ଧନୁ ମୋର ପ୍ରତେ ମନେକର
ବାଳିକି ମାରିବ ନିଶ୍ଚେ ସତ୍ୟ ଏ ମୋହର ।
ସାକ୍ଷୀ ଦଶଦିଗପାଳ,
ଚନ୍ଦ୍ର ସୂର୍ଯ୍ୟ ସାକ୍ଷୀ ଏହୁ ଶୁଣ ମହାବଳ ।।୪୨।।

ଶ୍ରୀରାମ ବିଳାସ ଏହୁ ଛାନ୍ଦ ଷଡ଼ବିଂଶ
ରାମ ସୁଗ୍ରୀବ ଭେଟରେ ହୋଇଲାକ ଶେଷ ।
ଯେହୁ ଶ୍ରୀରାମ ଚରଣ,
ଭଣେ ନୃପ ଧନଞ୍ଜୟ କରିଣ ସ୍ମରଣ ।।୪୩।।

●

---

୩୮।୪- ସୁଗ୍ରୀବର ସଙ୍ଗେ०
୩୯।୩- ०ଘେନି କପିବର
୪०।୧- ०ଚରଣେ ଲୋଟିଲା
४୨।୨- ०ସାକ୍ଷୀ ରକ୍ଷିଣ०

୪୩।୧ କ- ०ଛାନ୍ଦ ସପ୍ତବିଂଶ०
୪୩।୪ କ- ०ନୃପ ଧନଞ୍ଜୟ०
ଖ- ०କରିଣ ଶରଣ

# ସପ୍ତବଂଶ ଛାନ୍ଦ

## (ରାଗ – ରସକୋଇଲି ବାଣୀରେ)*

ଏଥୁ ଅନନ୍ତରେ ଶୁଣ ସୁଜନ
ଶ୍ରୀରାମ କଥା ଏ ଅତି ରଞ୍ଜନ,
ସୁଗ୍ରୀ ସଙ୍ଗେ ରାମ ମଇତ୍ର ହୋଇ
ସୁଖେ ରହିଲେ ପୀତସ୍ଥାର ପାଇଁ ସେ ।
ସ୍ନାନ ଭୋଜନ ସାରିଲେ ଯେ,
ସମସ୍ତେ ଏକମେଳ ହୋଇ ବସନ୍ତେ
ବାଳି କଥା ପଚ୍ଛରିଲେ ଯେ ||୧||

ବୋଲନ୍ତି ଶ୍ରୀରାମ ଶୁଣିମା ମିତ୍ର
କହ ଏବେ ମୋତେ ବାଳି ଚରିତ,
କେତେ ମାନ ସେହୁ ଅଟଇ ବଳି
ତୁମ୍ଭର ତାଙ୍କ ସଙ୍ଗେ କମ୍ପା କଳି ସେ ।
କହିବା ମୋତେ ନିଶ୍ଚିତ ଯେ,
ତେବେ ସିନା ଏଥି କାରଣ ବିଗ୍ଭରି
କରିବା କାର୍ଯ୍ୟ ତ୍ୱରିତ ଯେ ||୨||

ବୋଲେ ସୁଗ୍ରୀବର ଶୁଣିମା ରାମ
ମଘେ ଦୈତ୍ୟ ସୁତ ଦୁନ୍ଦୁଭି ନାମ,
ସମସ୍ତ ବଳିଷ୍ଠ ମାନଙ୍କେ ବର
ପ୍ରବେଶ ହୋଇଲା କିଷ୍କିନ୍ଧା ପୁର ସେ ।
ରଣେ ବାଳିକି ଡାକଇ ଯେ,
ଯେବଣ ଦୁନ୍ଦୁଭି ଦନ୍ତଦନ୍ତୀ ଗଣ
ଧରି ବଳେ ଜିଣିଥିଲି ସେ ||୩||

---

* କ- ରାଗ—ରସ କୋଇଲି
୨|୭- କାର୍ଯ୍ୟ କରିବା॰
୩|୧- ॰ଶୁଣିମା ଶ୍ରୀରାମ
୩|୩ କ- ॰କଇଷ୍କିନ୍ଧା ପୁର

ନ ସହି ତାର ଧ୍ୱନି କପିବୀର
ଭୂଶତେ ପୂରୁ ହୋଇଲେ ବାହାର,
କଲ ତାହା ଭୂଲେ ଘୋର ସମର
ଚରଣ ଧରି କ୍ଷେପିଲା ଅମ୍ବର ସେ ।
କଲା ଶୋଣିତ ବମନ ସେ,
ମାତଙ୍ଗ ଆଶ୍ରମେ ଚଢ଼ିଲା ସେ ଯହୁଁ
ଶାପ ଦେଲେ ତତକ୍ଷଣ ସେ ||୪||
ବୋଇଲେ ବାଳିରେ କଲୁ ଅନୀତ
ମୋର ତପସ୍ୟା ଭଙ୍ଗିଲୁ ଦୁର୍ମତି,
ଯେବେ ତୁ ଏ ଗିରିବରେ ଆସିବୁ
ଶତ ଅଶନି ବାଜି ମୃତ ହେବୁ ସେ ।
ସେହି କଥା ମନେ ଧରି ଯେ,
ବାଳି ଭୟରେ ବ୍ରହ୍ମାଣ୍ଡ ବୁଲି ବୁଲି
ଅଛି ଋଷ୍ୟମୂକ ଗିରି ହେ ||୫||
ତାର ଭ୍ରାତ ହାତ ଶୁଣି ମାୟାବୀ
କ୍ରୋଧରେ ଏ ପୁରେ ମିଳିଲା ଭାବି,
ସଂଗ୍ରାମେ ବାଳିକି ଦେଖି ଭାଜିଲା
ପାତାଳ ବିମ୍ବରେ ଯାଇ ପଶିଲା ସେ ।
ମୁହିଁ ଥିଲି ସଙ୍ଗତରେ ଯେ,
ବିବର ଦ୍ୱାରରେ ମୋତେ ରଖି ବାଳି
ପଶିଲା ପାତାଳ ପୁରେ ଯେ ||୬||
ଦାନବଙ୍କ ସଙ୍ଗେ ରଣ ସେ କଲା
ଏମନ୍ତେ ଅନେକ ଦିବସ ଗଲା,
ବିବର ଦ୍ୱାର ବାହାର ଶୋଣିତ
ଦେଖି ମୁଁ ତାହା ହେଲି ଚକିତ ଚିତ୍ତ ସେ,
ଜାଣିଲି ମୁଁ ବାଳି ମଲା ଯେ ।
ନୋହିଲେ କାହିଁପାଇଁ ଏ ବିଳଦ୍ୱାରେ
ଶୋଣିତ ବାହାର ହେଲା ଯେ ||୭||

---

୪।୨- ୦ନବରୁ ହେଲ୍ଂ
୪।୩- କଲ ତାହା ତୁଲେଂ
୪।୫ କ- ୦ଶ୍ରୋଣିତ ବଦନ ସେ
୪।୬- ୦ତହୁଁ ସେ
୪।୭ କ- ସେହୁ ଶାପ ଦେଲେ ତକ୍ଷଣ ଯେ
୫।୨ କ- ୦ତପସ୍ୟା କଲୁ ଦୁର୍ମତି
୫।୬ କ- ୦ବ୍ରହ୍ମାଣ୍ଡ ବୁଲି
୫।୭ କ- ୦ଋଷିମୂଖଂ
୬।୨- କ୍ରୋଧଭରେଂ
୬।୩- ୦ଦେଖି ଭାଙ୍ଗିଲ
୬।୬- ବିମ୍ବରଂ
୭।୨- ୦ଦିବସ ଅନେକଂ
୭।୩- ବିମ୍ବରଂ
୭।୪- ଦେଖିଣ ତା ମୁଁ ହେଲ୍ଂ
୭।୭-ଶ୍ରୋଣିତ ପ୍ରବେଶ ହେଲା ଯେ

ପର୍ବତ କୂଟ ଯେମନ୍ତ ଅଇଲ
ଅସୁରଙ୍କ ଭୟେ ଦ୍ୱାର ରୁନ୍ଧିଲ,
ନଗରେ କହିଲ ମଲ ନୃପତି
ତେଣୁ ସେ ମୋତେ କଲେ ମହୀପତି ସେ ।
ସମ୍ପଦରେ ମତ୍ତ ହୋଇ ସେ,
ବାଳର ପ୍ରିୟା ତାହାଙ୍କୁ ଯେନ ମୁହିଁ
ଅଭିଷେକ ହେଲ ତହିଁ ସେ ॥୮॥

ଏମନ୍ତେ କେତେଦିନର ଅନ୍ତର
ଦନୁଜ ମାରି ଆସି ମହାବୀର,
ଦେଖିଲ ମୁଁ ଅଛୁ ରାଜ ଆସନେ
ତା ପ୍ରିୟା ବସିଛୁ ମୋ ସନ୍ନିଧାନେ ସେ ।
କ୍ରୋଧରେ ଆସି ବୋଇଲ ସେ,
ବାଳକ ସିନା ଚଞ୍ଚଳ ପଣ ତୋର
ଏବେ ପ୍ରକାଶ ହୋଇଲ ସେ ॥୯॥

ଜାଣି ମୋ ନିଧନ ହେଲୁ ନୃପତି
ଏକଥା ତୋର ଅଟଇ ଯୁଗତି,
ମୋର ଅନ୍ତେ ରାଜ୍ୟ ହୁଅଇ ତୋର
ଏକଥା ତୋର ନୋହେ ଅବେଗର ସେ ।
ମୋର ଘରଣୀ ତୋ ମାତା ସେ,
ଏତେ ଗୁଣ୍ଡାଳ ବୁଦ୍ଧି କାହିଁ ଧରିଲୁ
ତାକୁ କଲୁ ତୋର କାନ୍ତା ସେ ॥୧୦॥

ଏବେ ବଧକୁ ତୁ ନୋହୁ ପ୍ରାପତ
ଏବେ ବଧ ତୋର ହେବ ନିଯୁତ,
ଯେତେ ବୋଲଣ କଲ ରୋଷମନ୍ତ
ପାଦ ପ୍ରହାର କଲ କପିପତି ସେ ।
ପଡ଼ିଲ ମୁହିଁ ଭୂମିର ସେ,
ଖଡ଼ଗ ଯେନ କାଟୁଥିଲ ମସ୍ତକ
ନିବାରିଲ ରକ୍ଷବର ସେ ॥୧୧॥

---

୯।୮- ୦ମୋର ଅସନେ ସେ
୯।୬- ୦ଏତେ ଚଞ୍ଚଳ ପଣ
୯।୭- ତୋର ପ୍ରକାଶିଲ ହୋଇ ସେ
୧୦।୧- ୦ନିଧନ ହେଉଁ୦
୧୦।୨- ଏ କଥାରେ ତୋ ଅଟଇ ଯୁକତ
୧୧।୧- ଯେବେ ବଧକୁଂ
୧୧।୩- ୦କର ରୋଷ ମୂର୍ତ୍ତି

ରୋଷେ ବୋଇଲାରେ ଯା ଯା ଚଣ୍ଡାଳ
ଆଜ ଦେଖିଲେ ପୂରଇବ କାଳ,
ଏମନ୍ତ ବୋଲ ସେ ବୋଇଲା ଯହୁଁ
ଗୃହମନ୍ତ୍ରୀ ହେନ ଅଇଲା ତହୁଁ ।
ଅଛୁ ଏହୁ ଗିରିବର ଯେ,
ବାଳ ରୂପ ମୋତେ ସବୁଆଡ଼େ ଦିଶେ
ନ ଜାଣେ କାହିଁକ ଡ଼ର ଯେ ॥୧୨॥

ତୁମ୍ଭଙ୍କୁ ଏବେ ପ୍ରଭୁପଣେ ପାଇ
ଅତି ଆନନ୍ଦିତ ହୋଇଛୁ ଦେଖି,
ବୋଇଲେ ଯେ ମୁହିଁ ମାରିବି ବାଳି
ସେହୁ ଅଟଇ ଏତେ ମାନେ ବଳି ସେ ।
ତୁମ୍ଭର ବଳ ଜାଣିମା ହେ,
ତେବେ ସିନା ମନେ ସମ୍ଭୃତେ ହୋଇବ
ପରୀକ୍ଷାମାନ ଘେନିମା ଯେ ॥୧୩॥

ଦେଖ ପଡ଼ିଅଛି ଦୁନ୍ଦୁଭି ହାଡ଼
ମେରୁ ସମାନେ ଉଚ୍ଚ ଅତି ଦୃଢ଼,
ଯେବେ ତାହାକୁ ତୋଳିପାର ତୁମ୍ଭେ
ତେବେ ବଳାବଳ ଜାଣିବୁ ଆମ୍ଭେ ସେ ।
ବିଜୟେ ତହିଁକି କର ଯେ,
ସଙ୍ଗେ ତୁମ୍ଭର ଯାଆନ୍ତୁ ଗୃହମନ୍ତ୍ରୀ
ଅଟନ୍ତି ସେ ମହାବୀର ଯେ ॥୧୪॥

ଶୁଣି ସୁଗ୍ରୀବର ବଚନ ରାମ
ଅଳପ ହସିଣ କହନ୍ତି ବାମ.
ଟେକିବୁ ଯାଇଁ ଆମ୍ଭେ ତାର ଅସ୍ଥି
କମ୍ପା ମନେ ମିତ କରୁଛ ସ୍ଥିତି ହେ ।
ଏସନ ବୋଲିଣ ଗଲେ ଯେ,
ଦୁନ୍ଦୁଭି ହାଡ଼ ପାରୁଷେ ରଘୁନାଥ
ଚରଣ ଅଙ୍ଗୁଳି ଦେଲେ ଯେ ॥୧୫॥

---

୧୨।୧- ୦ବୋଇଲୁ ଯାଯାରେ ଚଣ୍ଡାଳ
୧୨।୭- ନ ଜାଣେ କାହିଁକ ଡରେ ହେ
୧୩।୭- ପରକ୍ଷମାନ ମଣିବା ହେ
୧୪।୧- ଦେଖ ପଡ଼ିଛୁ ଦୁନ୍ଦଭିରଂ
୧୪।୨- ୦ଅଛ ହୃଢ ଦଢ଼
୧୫।୨- ୦କହନ୍ତି ରାମ

ଅବହେଳେ ପାଦେ ଦେଲେକ ଟାଳ
ଯୋଜନେକେ ଯାଇଁ ପଡ଼ଲା ଢ଼ଳ,
ଦେଖି ଆନନ୍ଦ ହେଲା ସୁଗ୍ରୀବର
ମନେ ମନେ ପୁଣ କଲା ବଚାର ସେ ।
ଏ ବହୁତ ଦିନ ପୁରୁଣା ଯେ,
ଶୋଣିତ ମେଦ ମଜ୍ଜା ଚର୍ମ ଯାଇଛୁ
ଅଟଇ ସେ ବଳେ ଜୁଣା ଯେ ।।୧୬।।

ରାମ ପାଶେ ଯାଇ ଭୁରତେ ମିଳ
ବୋଲଇ ଦେବ ତୁମ୍ଭେ ମହାବଳ,
ସବ ଶୁଖିଯାଇଥିଲାକ ହାଡ଼
ତେବେ ଏ ସିନା ହୋଇଥିଲାକ ଗାଡ଼ ଏ ।
ଆଉ କଥା ଏକ ଅଛୁ ଯେ,
ଏହୁ ମହାଶାଳ ଦେଖ ମେରୁସମ
ଦଶରଥ ରାଜ ବହ୍ନି ଯେ ।।୧୭।।

ବଜ୍ର ହୁଁ କଠିଣ ଏହୁ ଅଟଇ
ଏହା ଭେଦିଲେ ମୋ ମନ ଖଟଇ,
ଏଥୁ ଛନଗଛ ଭେଦଇ ବାଳ
ନାରାଚ ଦେନ କପି ମହାବଳୀ ସେ ।
ତୁମ୍ଭେ ଯେବେ ପାର ଭେଦି ଯେ,
ତେବେ ସିନା ମୁହିଁ ଜାଣିବ ନିଶ୍ଚଏ
ହେବ ମୋର କାର୍ଯ୍ୟ ସିଦ୍ଧି ହେ ।।୧୮।।

ସୁଗ୍ରୀ ବାଣୀ ଶୁଣି ରଘୁନାୟକ
ବେଗେ ଧନୁରେ ଯୋଡ଼ଲେ ଶାୟକ,
ଆକର୍ଣ୍ଣ ପର୍ଯ୍ୟନ୍ତେ ଓଟାରଣ
ଡ଼ାକଣ ବାଣ କଲେକ ମୋକ୍ଷଣ ସେ ।
ସାତ ଶାଳ ଗଲା ଫୁଟି ଯେ,
ଅର୍ଦ୍ଧଚନ୍ଦ୍ର ବାଣ ପୁଣି ପେଷି ରାମ
ପକାଇଲେ ତାକୁ କାଟି ଯେ ।।୧୯।।

---

୧୬।୧ କ- ୦ରାମ କଲେକ ଟାଳ
୧୬।୪- ୦କରେ ବସ୍ମର ହେ
୧୬।୫- ଏ ବହୁତ ଦନ୦
୧୬।୬- ୦ମଜା ଯାଇଛୁ
୧୮।୪- ନାରାଜ୦
୧୯।୨- ୦ଯୋଡ଼ଲେ ସାଏକ
୧୯।୬- ୦ପେଷିଣ ରାମ୦

ବାଣ ପର୍ବତ ବର ନିକଳିଲା
ମେଦିନୀ ଫୁଟି ପାତାଳେ ମିଳିଲା,
ଦେଖିଣ ନାଗର କଲେ ପୂଜନ
ଶ୍ରୀରାମ ତୂଣୀରେ ମିଳେ ବହନ ଯେ ।
ଦେଖି ସୁଗ୍ରୀ ତୋଷ ହେଲା ଯେ,
ଯାହା ମୋରେ ରାମ ଏବେ ଆଜ୍ଞା ଦେବ
ତାହା କରିବି ବୋଇଲା ସେ ॥୨୦॥
ତୁମ୍ଭ ମହିମା ମୁହିଁ ନ ଜାଣିଲି
ଚଞ୍ଚଳ ଚିତ୍ତେ ପରୀକ୍ଷା ମାଗିଲି,
ଏକ ବାଳି ଅବା କେତେ ମାତର
ଶତେ ବାଳିକି ଚୂର୍ଣ୍ଣ କରିପାର ହେ ।
କି କରିବି ଆଜ୍ଞା ହେଉ ଯେ,
ସୁଗ୍ରୀବର ବାଣୀ ଶୁଣି ହସହସ
ବୋଲନ୍ତି ସେ ବୈଦେହୀ ବନ୍ଧୁ ଯେ ॥୨୧॥
ସଂଗ୍ରାମ ପାଇଁ ବାଳି ଭୁଲେ କର
ମୁହିଁ ରହିଥିବି ଲତା ଅନ୍ତର,
ସେ କାଳେ ତାକୁ କରିବି ନିଧନ
ଏ କଥା ମିଛ କରିବା ବଚନ ଯେ ।
ରାମ ରାମ ବାଣୀ ଶୁଣି ଯେ,
କିଷ୍କିନ୍ଧା ପୁର ଦ୍ୱାରେ ବେଗେ ମିଳିଣ
ବାଳିକି ମାଗେ ଆରଣି ଯେ ॥୨୨॥
ବୋଇଲା ଆରେ ଆରେ ଆରେ ବାଳି
ସୁଗ୍ରୀ ମୁଁ ଅଛି ତୋର ଦ୍ୱାରେ ମିଳି,
ସଂଗ୍ରାମେ ତୋର ନେବି ପରାଣ
ରହିଛୁ କମ୍ପା କିଷ୍କିନ୍ଧ ପୁରେଣ ଯେ ।
ମେଘ ପରି ତାର ରଡ଼ ଯେ,
ପୁର ରୋଦସୀ କନ୍ଦରେ ଆନ୍ଦୋଳିଲା
ଯେସନ୍ତେ ମେଘ ଘଡ଼ଘଡ଼ ଯେ ॥୨୩॥

---

୨୦।୨- ୦ପାତାଳେ ମିଳିଲା
୨୦।୩- ଦେଖି ନାଗରଜା୦
ଦେଖିଣ ନାରାଜ
୨୦।୬- ୦ଯେବେ ଆଜ୍ଞା ହେବ
୨୧।୬- ୦ଶୁଣି ହସି ହସି
୨୧।୭- ୦ସେ ବୈଦେହୀବନ୍ଧୁ ଯେ
୨୨।୧- ସମର ପାଇ୦
୨୨।୩ କ- ସେହିକାଳେ ତା୦
୨୨।୬ କ- କିଷ୍କିନ୍ଧାପୁର୦
୨୩।୨- ୦ତୋର ପୁରେ ମିଳି
୨୩।୩- ସମରେ ତୋର ନେଇବି୦
୨୩।୪- ରହିଛୁକି ମାଡ଼ କିଷ୍କିନ୍ଧ ପୁଣ ସେ
୨୩।୫- ୦ଘୋର ରଡ଼ ସେ
୨୩।୬- ୦କନ୍ଦରେ ଆନ୍ଦୋଳିଲା

ଏସନ ପ୍ରକାରେ ଶୁଣିଣ ବାଣୀ
କୋପେ ପ୍ରଜ୍ୱଳିତ ସେ କପିମଣି,
କର୍ଣ୍ଣ ଧ୍ୱନି ଶୁଣି ହରି ଯେସନ
ନ ସହି ତୁରିତେ ମିଳେ ରାଜନ ସେ ।
ରେ ରେ କାର ଧ୍ୱନି କରି ଯେ,
ସୁଗ୍ରୀବର ଉପରେ ମୁଥେ ପ୍ରହାରିଲା
ଗିରିରେ ଯେସନ ଗିରି ଯେ ॥୨୪॥

ସମାନ ବଳ ଅଟଇ ସେ ବେନି
ଧରାଧରି ହୋଇ ପଡ଼େ ଅବନୀ,
ମୁଣ୍ଡକୁ ମୁଣ୍ଡ ହୋନ୍ତି କୋଡ଼ାକୋଡ଼ି
ଛନ୍ଦାଛନ୍ଦି ହୋଇ ଯାଆନ୍ତି ଗଡ଼ି ସେ ।
କେ ତଳେ ଉପରେ କେହୁ ଯେ,
ବେନି ଜନେ ପୁନା ଗିରିର ସଦୃଶ
ନ ଚିହ୍ନିଲେ ମହାବାହୁ ଯେ ॥୨୫॥

ଗୁଣରୁ ଶର କଲେକ ସଂହାର
ମନେ ମନେ ଚିନ୍ତେ ସେ ରଘୁବୀର,
ବାଳି ସୁଗ୍ରୀ କେ ନୋହିଲ ଗୋଚର
କାହାକୁ କରିବ ଶର ପ୍ରହାର ସେ ।
ଲକ୍ଷ୍ୟ ଭେଦ ଅଛି ହୋଇ ସେ,
ବାଳିରେ ନ ବାଜି ସୁଗ୍ରୀରେ ବାଜିଲେ
ମିତ୍ର ପାପ ଥିବ ବନ୍ଧୁ ଯେ ॥୨୬॥

ଏହି ସମୟରେ ସେ କପିପତି
ମୁଥ ସୁଗ୍ରୀକ ପ୍ରହାରିଲା ଧାଡି,
ଶୋଣିତ ଉଦ୍‌ଗାରି ଗଲା ପଳାଇ
ପୁରେ ମିଳି ବେଗେ ତାହାର ଯାଇଁ ସେ ।
ସୁଗ୍ରୀ ପଳାଇଣ ଗଲା ଯେ,
ଶ୍ରୀରାମଙ୍କୁ ଦେଖି ଅନେକ ଭର୍ତ୍ସନା
ବଚନ କ୍ରୋଧେ ବୋଇଲା ଯେ ॥୨୭॥

---

୨୪।୨- କ୍ରୋଧେ ଜଳିତ ସେହୁଂ
୨୪।୩- ଗଜ ଧ୍ୱନିଂ
୨୪।୭- ଗିରିପରେ ଯେସ୍ନେଂ
୨୫।୨- ଗଡ଼େ ଅବନୀ
୨୫।୬- ବେନିଜନେ ବେନିଜନେ ସୁନାଗିରି
୨୫।୭- ସଦୃଶ୍ୟ ନ ଚିହ୍ନେ
୨୬।୬- ବାଳିକି ନ ବାଜି ସୁଗ୍ରୀକିଂ
୨୭।୩- ଶ୍ରୋଣିତ
୨୭।୪- ପୁରେ ବେଗେ ମିଳେଂ

ବୋଲନ୍ତି ମୁଁ ତୋତେ ଜାଣଇ ରାମ
ଭାରିଯା ରକ୍ଷଣେ ନୋହିଲୁ କ୍ଷମ,
ବାଳକ ଦେଖି ହୋଇଲୁ କାତର
ଲୁଚିଣ ମିଛେ ଅଛୁ ଲତାନ୍ତର ସେ ।
ହେନନ୍ତା ମୋର ପରାଣ ଯେ,
ତୋର ବୋଲେ କମ୍ପା ମ ୁଁ ତାକୁ ଡାକିଲି
ଏ ମୋହର ମୂଢ଼ପଣ ଯେ ।।୨୮।।

ବୋଲନ୍ତି ଶ୍ରୀରାମ କୋପ ନ କର
ବେନି ଭାଇ ତୁମ୍ଭ ଏକ ଆକାର,
ଏଣୁ ମୁଁ ବାଣ ନ କଲି ପ୍ରହାର
ବାଳି ଦେଖି କମ୍ପା ହେବ କାତର ସେ ।
ମିତ୍ର ଦ୍ରୋହକୁ ଡ଼ରିଲି ଯେ,
ଏବେ ବାଳି ଭୁଲେ ଯୁଦ୍ଧ କର ମିତ୍ର
ଚିହ୍ନି ଦେବା ଯାଅ ଚଳି ସେ ।।୨୯।।

ଏସନ ସୁଗ୍ରୀବ କହିଣ ବାଣୀ
ବୋଲେ ଲକ୍ଷ୍ମଣ ଶୁଣ ରଘୁମଣି,
ବାବୁ ଏକମାଳା ଗୁନ୍ଥିଣ ଆଣ
ସୁଗ୍ରୀ ଗଳାରେ ଦିଅନ୍ତେ ତକ୍ଷଣ ସେ ।
ଲୁରତେ ସୁମିତ୍ରା ସୁତ ଯେ,
ରାମ ବାଣୀ ଶୁଣି କେଶର କୁସୁମ
ମାଳା କଲେ ସଂଜାତ ଯେ ।।୩୦।।

ସୁଗ୍ରୀ ଗଳାରେ ଲମ୍ବାଇଲେ ନେଇ
ତେଣେ ଶୋଭବନ ରମାର ସାଇଁ,
ନାଗ କେଶର ପାଇଲେ ଶୋଭନ
ମେରୁରେ ଯେସନେ ଚନ୍ଦ୍ରମାର ଚିହ୍ନ ସେ ।
ଦେଖି ହୃଷ୍ଟ ରଘୁପତି ଯେ,
ବୋଲନ୍ତି ଏବେ ନଷ୍ଟେ ବାଳି ମରିବ
ଚଳ ତୁ ମିତ୍ର ତଡ଼ିତ ଯେ ।।୩୧।।

---

୨୮।୧- ବୋଲୁ ମୁଁ ତୋତେଂ
୨୮।୪- ଲୁଚିଣ ଅଛୁ ମିଛେଂ
୨୯।୩- ୦ବାଣ ମୁଁ ନ କଲିଂ
୨୯।୭ କ- ଚଳି ଯାଅ ସେ

୩୦।୨- ବୋଲନ୍ତି ରାମଂ
୩୦।୪- ସୁଗ୍ରୀ ଗଳାରେ ଦିଅ ତତକ୍ଷଣ ସେ
୩୧।୪- ୦ଚନ୍ଦ୍ର ଶୋଭବନ ସେ
୩୧।୬- ୦ନଷ୍ଟେ ଏବେଂ

ରାମ ବାଣୀ ଶୁଣି ରବି ନନ୍ଦନ
ପୁଣି ବାଳକ ଡାକିଲା ରଣେଣ,
ପଲଙ୍କ ଅଙ୍କେ ବସିଥିଲା ବାଳି
ବାଣୀ ନ ସହି ସେହୁ ମହାବଳୀ ସେ ।
ବାହାର ହୁଅନ୍ତ ପୁଣି ସେ,
ପାଟ ମହାଦେବୀ ତାରା ବୋଲେ ତାକୁ
ଶୁଣ ତୁମ୍ଭେ କପିମଣି ସେ ॥୩୨॥

ଗୂଢ଼ ଚରରେ ପାଇଲି ବାରତା
ରାବଣ ହରି ନେଲା ରାମ କାନ୍ତା,
ସେ ଋଷ୍ୟମୂକେ ପ୍ରବେଶ ହୋଇଲା
ସୁଗ୍ରୀବର ତୁଲେ ମିତ୍ରତା କଲା ସେ ।
ପ୍ରତିଜ୍ଞା କରିଣ ଅଛି ସେ,
ତୋତେ ମାରି ତାକୁ ରାଜ୍ୟେ ଅଭିଷେକ
କରିବାକୁ ଅଛି ଇଚ୍ଛି ସେ ॥୩୩॥

ବୋଲଇ ବାଳି ଶୁଣ ଚନ୍ଦ୍ରମୁଖୀ
ଅଯୁଗତ କଥା କହିଲୁ ସଖି,
କାହିଁ ସେ ରାମ କେଉଁ ଦେଶାନ୍ତରୀ
ସୁଗ୍ରୀ ତୁଲେ ତାକୁ କେ ମିତ୍ର କରି ସେ ।
ତାର ଅବା କେତେ ବଳ ସେ,
ବଳ ଥିଲେ କିକ ତାହା ଘରପାକୁ
କିଅନ୍ତା ସେ ଲଙ୍କପାଳ ସେ ॥୩୪॥

ଯେବେ ସୁଗ୍ରୀବର ସଖା ହୋଇଛି
ତେବେ ସେହି ଯମ ଘର ଇଚ୍ଛିଛି,
ତାର ତ ମୁହିଁ ନୁହଇ ବଇରୀ
ତା ପାଇଁ କମ୍ପା ସେ ମୋତେ ସଂହାରି ସେ ।
ଯାହା ମୁଁ ଥାଆନ୍ତି ରହି ସେ,
ତୁ ଯାହା କହିଲୁ ଏହା ଶୁଣି କେତେ
ମୁଁ ପୁରେ ରହିବି ସହି ଗୋ ॥୩୫॥

---

୩୨।୪- ବାଳି ନ ସହିଲା ସେହି ବାଣୀକି ସେ
୩୩।୧- ମୁଁ ତ ଚରରେ ।
୩୩।୨- ରାବଣ ନେଲା ଶ୍ରୀରାମର କାନ୍ତା
୩୩।୩ କ- ସେ ଋଷି ମୂଖେ ପ୍ରବେଶ ହେଲା
୩୪।୪- ସୁଗ୍ରୀ ସଙ୍ଗେ ତାକୁ ।
୩୪।୬- ବଳଥିଲେ କି ତାର ।
୩୫।୧ କ- ।ସୁଗ୍ରୀବର ଶାଖା ।
୩୫।୧- ଏବେ ସୁଗ୍ରୀବର
୩୫।୫- ଯାହା ମୁହିଁ ଥାନ୍ତି ।

ପୁଣି ସେ ତାରା କଲାକ ନିଷେଧ
ପ୍ରାଣପ୍ରିୟାଠାରେ ବହିଛୁ ସଧ,
ପୁଣି ସେ ସ୍ନେହେ ତେଜେ ନେତ୍ରୁ ନୀର
ନ ଯାଅ ବୋଲି ପଡ଼ିଲା ପୟର ସେ ।
ବୋଲନ୍ତି ଦେବ ଶୁଣିମା ହେ,
ସପତ ଶାଳ ଛେଦିଲା ରାମ ଶରେ
ଗୁର ପେଷି ଣ ଜାଣିମା ହେ ॥୩୬॥

ନୋହିଲା କି ସୁଗ୍ରୀ ତୋତେ ଡ଼ାକଇ
ଯେତୁ ଏହିକ୍ଷଣି ଥିଲ ପଳାଇ,
ତେଡ଼ିକ ଭରସା ଅଛି ସେ ପାଇ
ତେଣୁ ସେ ଭ୍ରାତେ ଡାକଇ ତୁହାଇ ସେ ।
ମୋ ବୋଲ ଦେବ କରିବା ହେ,
ରାମକୁ ମର୍ତ୍ତି କରି ସୁଗ୍ରୀବରକୁ
ଆଣି କଛି ରାଜ୍ୟ ଦେବା ହେ ॥୩୭॥

ପ୍ରିୟା ବଚନ କରି ଅନାଦର
ପୁରୁ ବାହାର ହେଲା ସତ୍ୱର,
କାନ୍ଧଣ ନାରୀ ଅଛନ୍ତି ଗୋଡ଼ାଇ
ଦ୍ୱାରେ ସରବେ ନିରୋଧିଲେ ଯାଇ ସେ ।
ରମଣୀଗଣ ରହିଲେ ସେ,
ପ୍ରାଣ ଗଣେକୁ କାନ୍ତ ଭୁଲେ ପେଷି ଣ
ଦେହ ମାତ୍ରକ ରଖିଲେ ସେ ॥୩୮॥

ଏଥୁ ଅନନ୍ତରେ ସେ ସୁଗ୍ରୀବର
ରୋଷେ ବୋଲଇରେ ବାଳି ପାମର,
ଯୁଦ୍ଧ ନ କରି ତ ଘରେ ରହିଲୁ
କେଉଁ ବୀରବରୁ ବୋଲାଉ ଥିଲୁ ଯେ ।
ବେଗେ ତୁ କର ସମର ଯେ,
ଶୁଣି ବାଳି ବେଗେ ରୋଷେ ଗରଜଣ
ଧଇଲା ତାହାର କର ସେ ॥୩୯॥

---

୩୬।୧ - କଲ୍ପକ ନିରୋଧ
୩୬।୨ - ୦ତୋତେ ସୁଗ୍ରୀ୦
୩୬।୩ - ଏହୁ୦
୩୬।୪ - କାନ୍ଧଣ ନାରୀ ଅଛନ୍ତି ଗୋଡ଼ାଇ
୩୬।୫ - ୦ଦେବ ଶୁଣିମା ହେ
୩୭।୬ - ରାମକୁ ବୋଧିକରି
୩୭।୭ - ଆଣି କଛୁ ରାଜ୍ୟ୦
୩୯।୫ - ବେଗେ ତୁ ସମର କର ଯେ

ମୁଥେ ମରମର ହୁଅନ୍ତେ ବେକ
ପର୍ବତ ପରେ କ ପଡେ ଅଶନ,
ମୁଣ୍ଡକୁ ମୁଣ୍ଡ ହୋନ୍ତି କୋଡ଼ାକୋଡ଼
ସୁଗ୍ରୀବକୁ ବାଳ ବସିଲ ମାଡ଼ ଯେ ।
ରକ୍ତ ଗ୍ରହେ ସୁଗ୍ରୀବର ଯେ,
କଣ୍ଠେ ପୁଷ୍ପମାଳା ନ ଦେଖିଣ ରାମ
ଶର କଲେକ ପ୍ରହାର ଯେ ।।୪୦।।

ହା ହତ ହେଲ ବୋଲି ଡାକ ଦେଇ
ମହୀରେ ପଡ଼ିଲ ତାହାର ପାଇଁ,
ସେହୁ ରାମବାଣ ଗଳଣ ଗଲା
ବୁକୁକୁ ବାଜ ପିଠିକ ଗଳଲ ଯେ ।
ବଜ୍ରହୁଁ ତା ଅଙ୍ଗ ଆଣ୍ଟ ଯେ,
ଯେଉଁ ଶର ମେରୁ ଗିରି ଭେଦପାରେ
ଗଳ ନ ପାଇଲ ବାଟ ହେ ।।୪୧।।

ଦେଖିଣ ରାମ ହୋଇଲେ ଆନନ୍ଦ
ସୁଗ୍ରୀ ମୁଖେ ଯେଷ୍ଠେ ବଗ୍ରକେ ଗୃନ୍ଦ,
ରାମ ଚରଣେ କଲାକ ପ୍ରଣାମ
ଲଭିଲେ ଅତରେ ମନର କାମ ସେ ।
ଏହୁ ସମୟରେ ବାଳ ଯେ,
କଣ୍ଠୁ ଚେତନା ଲଭି କରି ଉଠନ୍ତେ
ପଡ଼ିଲା ଯେ ମହୀ ଆଳ ଯେ ।।୪୨।।

ରାମ ବଳାସ ଯୁଦ୍ଧ ସପ୍ତବିଂଶ
ବାଳ ନିଧନେ ଏହୁ ଅଛ ରସ,
ରସିକେ ଶୁଣି ଆନନ୍ଦ ଲଭିବା
ନାନା ପ୍ରକାରେ ରସ ବର୍ଣ୍ଣିବା ସେ ।
ଶ୍ରୀରାମ ଚରଣ ଧ୍ୟାୟି ଯେ,
ନୃପତି ଧନଞ୍ଜୟ ଭଞ୍ଜ ଭଣିଲେ
ସୁଜନ ଆନନ୍ଦ ପାଇଁ ଯେ ।।୪୩।।

●

---

୪୦।୧- ମୋଥେ ମରମର
୪୦।୪- ଶୁଣି ଚସିଲ ଯେ ବାଳ ମାଡ଼ ସେ
୪୦।୬- ନଦେଖିଣ ଶ୍ରୀରାମ
୪୧।୧- ହତ ହେଲ ବୋଲ ରଡ଼ ଏ ଦେଇ
୪୧।୬ କ ନଗିରି ଭେଦ
୪୧।୭ କ- ନ ପାଇଲ ବାଟ ଯେ
୪୩।୨- ନନିଧନ ଏ ଅଛ ରହସ୍ୟ

# ଅଷ୍ଟାବିଂଶ ଛାନ୍ଦ

## (ରାଗ—ମଙ୍ଗଳ ଗୁଜ୍ଜରୀ)

ଏଥୁ ଅନନ୍ତରେ କଥା ଶୁଣ ସାଧୁ ଜନ ।
ରାମବାଣ ବାଜି ବାଳି ପଡ଼ନ୍ତେ ବହନ ଯେ ॥୧॥

ଅକାରଣେ ହତକଲ୍ଲୁ ବୋଲଣ ବୋଇଲ ।
ଆରେ ସୁଗ୍ରୀବର ତୋର ଏ ରାଜ୍ୟ ହୋଇଲା ଯେ ॥୨॥

ଏହି ସମୟରେ ରାମ ଯେନି ଧନୁଶର ।
ଲତାର ଅନ୍ତରୁ ବେଗେ ହୋଇଲେ ବାହାର ଯେ ॥୩॥

ଦେଖିଲେ ସେ କପିବର ପଡ଼ିଛୁ ଅବନୀ ।
ସୁରଗିରି ପଡ଼େ ଯେହ୍ନେ ବାଜଣ ଅଶନି ଯେ ॥୪॥

ଆକାଶୁଁ କି ଛୁଡ଼ି ପଡ଼ିଅଛୁ ମାରତଣ୍ଡ ।
ନଷ୍ଟ ଭି ହୋଇଣ କି ପଡ଼ିଛୁ କାଳଦଣ୍ଡ ଯେ ॥୫॥

ଜଳପୂର ହୀନ କି ହୋଇଛୁ ପାରାବାର ।
ତେମନ୍ତ କରଣ ରାମ ଦେଖେ କପୀଶ୍ୱର ଯେ ॥୬॥

ପାଶରେ ହୋଇଛୁ ସୁଗ୍ରୀବର ବୋହୁ ଭଗ୍ନ ।
ଉଦୟାଚଳରେ ଯେହ୍ନେ ଆଦିତ୍ୟର ପ୍ରଭା ଯେ ॥୭॥

ଦେଖି ହସ ହସ ହୋଇ ବୋଲନ୍ତି ଶ୍ରୀରାମ ।
ଏବେ ଦେଖ ସେହୁ ବାଳି ପଡ଼ିଛୁ ସଂଗ୍ରାମ ଯେ ॥୮॥

ଯାହାର ଭୟରେ ତୋତେ ଅବନୀ ମଣ୍ଡଳ ।
ସ୍ଥାନ ନ ପାଇ ପଶିଲୁ ଲୋକାଲୋକ ବଳ ଯେ ॥୯॥

ଏବେ ଭୋଗ କର ତୁମ୍ଭେ କିଷ୍କିନ୍ଧା ନଗରୀ ।
ମୋତେ ଯା ବୋଲିଛ ମନେ ଥିବ ହେତୁ କରି ଯେ ॥୧୦॥

---

୧।୨ କ- ୦ବାଣ ବାଜି ବାଜି ବାଳି୦
୩।୨- ୦ଅନ୍ତରୁ ରାମ ହୋଇଲେ୦
୪।୧ ୦ପଡ଼ିଲା ଅବନୀ
୪।୨- ସୁର ଗିରି ପରେ ଯେହ୍ନେ୦
୬।୨- କେମନ୍ତ କରଣ୦
୭।୧- ୦ସୁଗ୍ରୀବର ଭଗ୍ନ
୯।୨- ଆନ ନ ପାଇ୦
୧୦।୧ କ- ୦କିଷ୍କିନ୍ଧା୦
ଖ- ୦କର ରୂହ୦

ଏହ୍ନି ସମୟରେ ସଂଜ୍ଞା ପାଇ କପିବର । <br>
ଶ୍ରୀରାମର ମୁଖ ଚାହିଁ କହନ୍ତ ଉତ୍ତର ଯେ ॥୧୧॥

ତୁ ଅଟୁ କେବଣ ଦେଶୀ କାହାର ନନ୍ଦନ । <br>
କପଟ ବେଶରେ ତ ଧରିଛ ଧନୁବାଣ ହେ ॥୧୨॥

ମୁଁ ତ ନୁହଇ ତୋହର କେବେହେଁ ବଇରୀ । <br>
କମ୍ପାଇଁ ବାଣ ପେଷିଣ ନେଲୁ ମୋର ଶିରୀ ଯେ ॥୧୩॥

ଯେବେ ତୁ ବୋଲଉ ବୀର ଯୁଦ୍ଧ ତୁ ନ କଲୁ । <br>
ଋଷି ରୂପ ଧରିକ କେମନ୍ତେ ଘାତ କଲୁ ଯେ ॥୧୪॥

ବୋଲନ୍ତ ଶ୍ରୀରାମ ତୁମ୍ଭେ ଶୁଣ କପିରାଜ । <br>
ଆମ୍ଭେ ଦଶରଥ ସୁତ ବୋଲ୍ଲ ଏହ୍ନି କାର୍ଯ୍ୟ ଯେ ॥୧୫॥

ଧର୍ମହୀନ ଲୋକଙ୍କୁ ଅବଶ୍ୟ କରି ନାଶ । <br>
ଧର୍ମଥିଲ ଲୋକଠାରେ ହେଉ ଯେ ସନ୍ତୋଷ ଯେ ॥୧୬॥

ବୋଲନ୍ତ ସେ ବାଳି ଶୁଣ ତୁମ୍ଭେ ରଘୁପତି । <br>
କି ଅନୀତି କଲୁ ଆମ୍ଭେ ତୋର କେଉଁ ମୀତ ହେ ॥୧୭॥

ପୂର୍ବେ ଶୁଣିଅଛୁ ଆମ୍ଭେ ବୀରଙ୍କ ମଧ୍ୟରେ । <br>
ମୋକ୍ଷ ପାଇଁ କରିକ ନାଶନ୍ତ ନରବରେ ଯେ ॥୧୮॥

ମାଂସ ପାଇଁ ମୃଗଗଣେ ମୃଗୟା କରନ୍ତ । <br>
ଭୁଜବଳ ଜାଣିବାକୁ ହରି ସଂହାରନ୍ତ ଯେ ॥୧୯॥

ଏ ଜନ୍ତୁମାନଙ୍କେ ଆମ୍ଭେ ନୋହୁ ତ ଗଣିତ । <br>
ଭକ୍ଷ ପଞ୍ଚାନକ୍ଷୀ ନୋହୁଁ କମ୍ପା କଲୁ ହତ ଯେ ॥୨୦॥

ରଘୁବଂଶ ପାଂଶଳ ତୁ ଜାଣିଲ ଶ୍ରୀରାମ । <br>
ଆନକ ଜରତ ଶାଖାମୃଗେ ହତ କ୍ଷମ ଯେ ॥୨୧॥

---

୧୦।୨ କ- ୦ମନେ ଥି କରି ଯେ <br>
୧୧।୧ କ- ୦ଜ୍ଞାନ ପାଇ କପିବୀର <br>
୧୧।୨ କ- ଶ୍ରୀରାମ ମୁଖକୁଂ <br>
୧୨।୧- ୦କାହାର ଦେଶଂ <br>
୧୨।୨- ୦ଲେଶରେ ଧରିଅଛୁଂ <br>
୧୩।୨- ୦ବାଣ ପେଷିଲୁ ମୋହରଂ <br>
୧୪।୨- ଦସ୍ୟୁ ରୂପ ଧରିଂ <br>
୧୫।୨- ୦ବୁଝ ଏହ୍ନିଂ <br>
୧୬।୧- ୦ତୁମ୍ଭେ ଶୁଣଂ <br>
୧୯।୨ ୦ସଂଜାଣିବାକୁ ହରିକ ମାରନ୍ତ ଯେ <br>
୨୦।୨- ଉପପଞ୍ଚନଖୀ ଏହୁଂ

ବନଜନ୍ତୁ ବନେ ଥାଇ ଫଳମୂଳ ଖାଇ ।
ମନୁଷ୍ୟମାନଙ୍କର କେବେ ଶତ୍ରୁ ନୋହୁଁ ଯେ ॥୨୨॥

କସ ମୋ ଅନ୍ୟାୟ ଦେଖି କଲୁ ଏ ବେଭାର ।
କହ କହ ଜାଣିମା ତୋ କୁଳର ଆଚାର ଯେ ॥୨୩॥

ଏମନ୍ତ ଶୁଣିଣ ତାଙ୍କ ବାଣୀ ରଘୁମଣି ।
ବୋଲନ୍ତି ସଂହର କ୍ରୋଧ ଶୁଣ ମୋର ବାଣୀ ॥୨୪॥

ସାନ ଭ୍ରାତ ପତ୍ନୀଠାରେ କଲୁ ଅଭିଳାଷ ।
ଏହା ଜାଣି ମୁହିଁ ତୋତେ ଶରେ କଲି ନାଶ ଯେ ॥୨୫॥

ଭ୍ରଥ ନୃପତି ଆଜ୍ଞାରେ ବୁଲୁ ବନେବନ ।
ଧର୍ମ ପାଳନାରେ ଯେଷି ଅଛନ୍ତି ସଜନ ହେ ॥୨୬॥

ବୋଲନ୍ତି ସେ ବାଳି ରାମ ମୋର ବାଣୀ ଶୁଣ ।
ଏ ଆମ୍ଭର ଧର୍ମ ଜାଣ ବିଧାତା ବିଧାନ ଯେ ॥୨୭॥

ପଶୁଜନ୍ତୁମାନଙ୍କରେ ଯୋନି ଦୋଷ ନାହିଁ ।
ଯେସନ ବୋଲିଣ ବ୍ରହ୍ମା ଅଛନ୍ତି ଯେ କହି ଯେ ॥୨୮॥

ଏକମାତାଠାରୁ ଜାତ ବେନି ଆମ୍ଭେ ହୋଇ ।
ଏକଗୋଟି ପତ୍ନୀ ଆରଗୋଟି ପତି ହୋଇ ଯେ ॥୨୯॥

ଏଥକୁ କମ୍ପାଇଁ ଏଡ଼େ ଅନ୍ୟାୟ ତୁ କଲୁ ।
ଏ ଲୋକରେ ଅପଯଶ କଥା ରୁହାଇଲୁ ଯେ ॥୩୦॥

ଯହିଁ ପାଇଁ କଲୁ ଏହି ଅମିତ ବିସ୍ତର ।
ମୋତେ କହିଲେ ସେ କଥା କରନ୍ତି ସତ୍ୱର ଯେ ॥୩୧॥

କେତେ ବା ରାବଣ ଛାର କେତେ ତାର ବଳ ।
ଅବହେଳେ ଲଂଘିଣ ଯାଆନ୍ତି ସିନ୍ଧୁ ଜଳ ଯେ ॥୩୨॥

ଉପାଡ଼ ଆଣନ୍ତି ସେ ତ୍ରିକୂଟ ଗିରିବର ।
ତୋହର ଛାମୁରେ ଯେ ଦିଅନ୍ତି ରଘୁବୀର ଯେ ॥୩୩॥

---

୨୨।୨ କ- ୦କେବେ ହେଁ୦
୨୩।୧ କ- ୦କେଷିଲୁ ଏ ବେଭାର
୨୩।୨- ୦କୁଳର ବେଭାର ହେ
୨୬।୧- କହଇ ସେ ବାଳି୦
୨୬।୨- ୦ଧର୍ମ ପାଳ ଧାତାର୦
୨୮।୨- ଏମନ୍ତ ବୋଲିଣ୦
୩୦।୧ କ- ୦ଅନ୍ୟାଏ୦
୩୦।୨ କ- ୦ଅଯଶ୦

ଏତେ ମୂଢ଼ ବୋଲି ତୋତେ ଜାଣିଲଇଁ ମୁହିଁ ।
ନ ମାଗିଲୁ କ୍ଷମାଇଁ ମୋହରେ ନତ ହୋଇ ସେ ॥୩୪॥

ଶ୍ରୀରାମ ବୋଲନ୍ତି ତୁମ୍ଭେ ଶୁଣ କପିବର ।
ସଶଲ୍ୟ କରିବା ଯେବେ କହ ଧାତକାର ହେ ॥୩୫॥

ଶୁଣିଣ ବୋଲନ୍ତି ବାଳି ନୋହେ ଏ ସତ୍ୱର ।
ଯୁଦ୍ଧେ ହତ ହେବା ଆମ୍ଭ ଅଟଇ ସତ୍ୱର ସେ ॥୩୬॥

ହଣୁଅଛି ମତେ ଯେ ଉତ୍ତମ ଲୋକମାନ ।
ଯେଣୁ ମୁହିଁ ତୁମ୍ଭ ହସ୍ତେ ଲଭିଲି ନିଧନ ସେ ॥୩୭॥

ଏଣୁକରି ଜାଣୁଅଛି ତୁମ୍ଭେ ନରହରି ।
ଭୂ ଭାର ତାରଣ ଅର୍ଥେ ଅଛ ଅବତରି ହେ ॥୩୮॥

ଚପଳ ମତିରେ ମୁଁ ବୋଇଲି କଟୁବାଣୀ ।
ଏହା ମୋର କ୍ଷମା ଯେ କରିବା ରଘୁମଣି ସେ ॥୩୯॥

ଜାଣ ଏହୁ ସୁଗ୍ରୀବର ଅଟେ ମହାବୀର ।
ସୀତା ଆଣିଦେବ ଏହୁ କଷ୍ଟରେ ତୁମ୍ଭର ହେ ॥୪୦॥

ଏ ପାବେମା ମନ୍ତ୍ରୀବର ବୀରଙ୍କର ବୀର ।
ଏ ତୋର କରିବ କାର୍ଯ୍ୟ ଶୁଣ ଧାତକାର ହେ ॥୪୧॥

ଏହୁ ଯେ ଶୁଭ ଅଙ୍ଗଦ ଅଙ୍ଗଦ ମୋହର ।
ମୋର ପ୍ରାଣ ସମ ଏହୁ ଜାଣ ମହାବୀର ହେ ॥୪୨॥

ବଳରେ ମୋର ସମାନ ସମାନ ବୀର୍ଯ୍ୟରେ ।
ଶ୍ରମ କରାଇଣ ମୁହିଁ ନାହିଁ ସ୍ନେହଭରେ ହେ ॥୪୩॥

ଏହାଠାରେ ଅନୁଗ୍ରହ ତୁମ୍ଭେ କରିଥିବ ।
ଏତେ କହି ତୂନି ହେଲେ କପିଙ୍କ ପାର୍ଥିବ ହେ ॥୪୪॥

---

୩୫।୨ ୦କରିବା ଏବେ୦
୩୬।୧ କ- ଶୁଣିଣ ବୋଲନ୍ତି୦
୩୭।୨ କ- ୦ମୁହିଁଲି ନିଧନ ସେ
ଖ- ୦ତୁମ୍ଭ ହସ୍ତେ ମୁଁ ସେ୦
୩୮।୧- ୦ଜାଣୁଆଇ୦

୪୧।୧ କ- ୦ମନ୍ତ୍ରୀ ବୀରବର ବରବର
୪୨।୨ କ- ୦ପ୍ରାଣ ସମ ଜାଣ୦
୪୩।୨- ସମ କରାଇଣ୦
୪୪।୧ କ- ଏହିଠାରେ ଅନୁଗ ତୁମ୍ଭେ
ଖ- ୦କର ତୁମ୍ଭେ ଥିବ

ସୁରଗଣେ ଜଣାଇଲେ ତାଙ୍କ ଗ୍ରାମୁର ।
ରାମବାଣେ ହତ ହେଲେ ତୁମ୍ଭ ପ୍ରାଣେଶ୍ୱର ହେ ।।୪୫।।

ଶୁଣିଣ ଅବଳାମଣି ପଲଙ୍କୁ ପଡ଼ିଲି ।
ହାହା ନାଥ ହାହା ନାଥ ବୋଲି ବୋବା ଦେଲି ସେ ।।୪୬।।

ଅଜ୍ଞାନ ହୋଇଣ ପୁଣି ନ କହିଲି କିଛି ।
ପୁଣି ସେ ରୋଦନ କରି ଉଠିଲି ମୃଗାକ୍ଷୀ ସେ ।।୪୭।।

ଆପଣାର କରବେଣୀ ଶିରେ ନେଇ ତାଡ଼ି ।
ମଲମଲି ବୋଲି ଅବନୀରେ ଗଲି ଗଡ଼ି ସେ ।।୪୮।।

ହା ହା ପ୍ରାଣନାଥ ତୁମ୍ଭେ କପିଙ୍କ ନାୟକ ।
ମୋ ବୋଲି ଏଡ଼ି ଲଙ୍ଘିଲ ଶ୍ରୀରାମ ସାୟକ ସେ ।।୪୯।।

ସଂଗ୍ରାମ ଭୂମିରେ ଆସି ମିଳିଲି ସୁଶ୍ରୋଣୀ ।
ବେଢ଼ି ଅଛନ୍ତି ତାହାକୁ ସର୍ବ ସପତ୍ନୀ ସେ ।।୫୦।।

ଏତେ ବୋଲିକରି ତାରା ହୋଇଲି ବାହାର ।
ନାରୀଗଣ ରୋଦନରେ ପୂରିଛି ଅମର ସେ ।।୫୧।।*

ହାହା ନାଥ ବୋଲି କରୁଅଛନ୍ତି ରୋଦନ ।
କେଶବାସ ଅସମ୍ଭାଳ ମଣ୍ଡନ ବିହୀନ ସେ ।।୫୨।।

ଦେଖିଲେ ରଣେ ପଡ଼ିଛି ବାଳି ମହାବଳୀ ।
ହାହା ପ୍ରିୟ ବୋଲି କୋଳେ ଧଇଲି ସେ ତୋଳି ସେ ।।୫୩।।

ବୋଲନ୍ତି ହେ ପ୍ରାଣନାଥ ପ୍ରାଣ ମୋର ନଅ ।
ତୋ ବିନୁ ରଖିବ କେହ୍ନେ ମୁଁ ହିଁ ହୀନ ଦେହ ହେ ।।୫୪।।

ସୁକୁମାର ଅଟଇ ମୋ ଅଙ୍ଗଦ କୁମର ।
କାହାକୁ ଦେଇଣ ଯାଉଅଛ ସୁରପୁର ସେ ।।୫୫।।

ଚେତନା ପାଇଣ ବାଳି ବୋଲେ ସୁଗ୍ରୀବର ।
ଶରଘାତେ ପ୍ରାଣନାଶ ହେଉଛି ବାହାର ସେ ।।୫୬।।

---

୪୮।୧- ୦କର ନେଇ ଶିରପରେ ପାଡ଼ି
୪୮।୨- ୦ବୋଲି ସେ ଅବନୀରେ ଗଡ଼ି ସେ
*'ଖ'ରେ ଏହି ପଦଟି ନାହିଁ
୫୨।୨ କ- ୦ଅସମ୍ଭାଳ ଛନ ସେ

୫୩।୧ କ- ୦ପଡ଼ିଛୁ ମହାବଳୀ
୫୪।୧- ୦ମୋର ପ୍ରାଣ ନାଥ
୪୪।୨- ୦କ ତେ ମୁହିଁ ସ୍ଥାନ
୫୫ ଓ ୫୬ ପଦ ଦୁଇଟି 'ଖ'ରେ ନାହିଁ

ଦେଖ ଦେଖ ତାର ତାର ପତିଙ୍କ ରଚନା ।
ଏହାଠାରେ କେବେ ହେଁ ନୋହିବୁ ଖେଦମନା ଯେ ॥୫୭॥

ଏହୁ ପୁତ୍ର ଦେଖ ମୋର ପ୍ରିୟ ଯେ ଅଙ୍ଗଦ ।
ଶତ୍ରୁପୁତ୍ର ବୋଲି ମନେ ନ କରିବୁ ଭେଦ ହେ ॥୫୮॥

ପୁଣି ରାମ ମୁଖ ଚାହିଁ ବୋଲନ୍ତି ସେ ବାଳି ।
ପୂର୍ବେ ଇନ୍ଦ୍ର ଦେଇଛନ୍ତି ମୋତେ ଏହୁ ମାଳୀ ଯେ ॥୫୯॥

ସୁଗନ୍ଧ କୋମଳ ଏହୁ କନକ କମଳ ।
ଏହା ଥିବାଯାକ ଏ ମୋ ନୋହିବ ଅମଙ୍ଗଳ ଯେ ॥୬୦॥

ଏ ମାଳା ଘେନ ମୋହର ରଘୁକୁଳମଣି ।
ଲକ୍ଷ୍ମଣେ କି ସୁଗ୍ରୀବରେ ଦିଅ ତୁମ୍ଭେ ଜାଣି ହେ ॥୬୧॥

ମୋତେ ଆଜ୍ଞା ହେଉ ମୁହିଁ ତେଜିବି ଜୀବନ ।
କିଷ୍କିନ୍ଧାରେ ସୁଗ୍ରୀବର କର ଯେ ରାଜନ ହେ ॥୬୨॥

ଏସନ ବାଳିର ବାଣୀ ଶୁଣି ବୋଲେ ରାମ ।
କହିଲ ଯେତେକ ବାଣୀ ଏହା ଯେ ଉତ୍ତମ ହେ ॥୬୩॥

ମୋର ଆଜ୍ଞା ଲଭି ତୁମ୍ଭେ ଦିବ୍ୟଲୋକ ପାଅ ।
ନିଶ୍ଚିନ୍ତ ହୋଇଣ ବିଷ୍ଣୁପୁରେ ରହିଥାଅ ହେ ॥୬୪॥

ଏମନ୍ତ କହିଣ ବାଳି କଣ୍ଠୁ ପଦ୍ମମାଳ ।
ସୁଗ୍ରୀବର କଣ୍ଠେ ଲମ୍ବାଇଲେ ମହାବଳ ଯେ ॥୬୫॥

ଚରଣ ଯୁଗ ବିସ୍ତାରି ନେତ୍ରଯୁଗ ଖୋସି ।
ବଦନ ବିସ୍ତାରି ପ୍ରାଣ ଛାଡ଼େ ଇନ୍ଦ୍ରଶିଷି ଯେ ॥୬୬॥

ମନ୍ତ୍ରୀମାନଙ୍କୁ ଡାକିଣ ରାମ ଆଜ୍ଞା ଦେଲେ ।
ଅନ୍ତଃପୁରକୁ ଅବଳା ନିଅସି ବୋଇଲେ ଯେ ॥୬୭॥

ସୁଗ୍ରୀବରକୁ ନେଇଣ ରାଜ୍ୟେ ରାଜା କର ।
ଅଙ୍ଗଦକୁ ଯୁବରାଜା କର ଧାଡିକାର ଯେ ॥୬୮॥

---

୫୮।୨- ଶତ୍ରୁ ପୁତ୍ର୦ ୦ଖେଦ ହେ
୫୯।୧- ୦ବୋଲନ୍ତି ସେ୦
୬୦।୧- ୦କମଳ ଏହୁ୦
୬୦।୨- ୦ଥିବା ଯାଏ ନୋହିବ୦
୬୧।୧- ଏ ମାଳା ଘେନଣ୦
୬୩।୨- ୦ଏହୁ ସେ ଉତ୍ତମ
୬୪।୧- ୦ଦିବାଲୋକେ ଯାଅ
୬୫।୧ କ- ଏମନ୍ତ ଶୁଣିଣ ବାଳି କଣ୍ଠୁମାଳ
୬୭।୨- ଅନ୍ତପୁରକୁ ନିଅସି ବୋଲିଣ୦
୬୮।୨ କ- ୦ଯୁବରାଜା କର୦

ରାମ ଆଜ୍ଞା ପାଇ ସୁଗ୍ରୀବରଙ୍କୁ ସେ ନେଲେ ।
ଲକ୍ଷ୍ମଣ ଯାଇଣ କିଷ୍କିନ୍ଧାରେ ରାଜା କଲେ ଯେ ॥୬୯॥
ପାଟ ମହାଦେଇଙ୍କ ପଣେ ତାରାଙ୍କୁ ବସାଇ ।
ଅଙ୍ଗଦଙ୍କୁ ଯୁବରାଜ ପଣେ ଶାଢ଼ୀ ଦେଇ ଯେ ॥୭୦॥
ଶ୍ରୀରାମ ଗୁମ୍ଫରେ ଯାଇ ପ୍ରବେଶ ହୋଇଲେ ।
ଯେସନ ବିଧାନ ସର୍ବମାନ ଜଣାଇଲେ ॥୭୧॥
ସୁଗ୍ରୀବର ଶଚୀବକୁ ସନ୍ନଧେ ହେନଣ ।
ବାଳିଙ୍କର ପ୍ରେତକାର୍ଯ୍ୟ ସାରଣ ବହନ ଯେ ॥୭୨॥
ଶ୍ରୀରାମ ଗୁମ୍ଫରେ ଯାଇ ହୋଇଣ ପ୍ରବେଶ ।
ବୋଲେ ସାବଧାନ ହୋଇ ଶୁଣ ରଘୁଶିଷ୍ୟ ଯେ ॥୭୩॥
ତପ ଋତୁ ଶେଷହେଲ୍ ହେଉଛି ବରଷା ।
ମାଲ୍ୟବନ୍ତଠାରେ ପ୍ରଭୁ କରଯାଇ ବସା ଯେ ॥୭୪॥
କାର୍ତ୍ତିକ ଅନ୍ତରେ ସେହୁ କାର୍ଯ୍ୟ ବିଚାରିବା ।
ଏକ ଆରେ ମନେ କିଛି ଆନ ନ ଧରବା ହେ ॥୭୫॥
ସୁଗ୍ରୀ ବାଣୀ ଶୁଣି ରାମ ସ୍ୱୀକାର କରି ।
ଲକ୍ଷ୍ମଣ ହେନ ରହିଲେ ମାଲ୍ୟବନ୍ତ ଗିରି ହେ ॥୭୬॥
ନିଜପୁରେ ସୁଗ୍ରୀବର ହୋଇଲେ ପ୍ରବେଶ ।
ସର୍ବ କପି ନୃପତିଙ୍କ ଦେଲେକ ଆଦେଶ ଯେ ॥୭୭॥
ଅପ୍ରମିତ ବଳ ସର୍ବେ ହେନଣ ଆସିବ ।
ବରଷା ଅନ୍ତରେ ମୋତେ ଦର୍ଶନ କରିବ ହେ ॥୭୮॥
ଅଷ୍ଟାବିଂଶ ଛାନ୍ଦ ଏହୁ ଶ୍ରୀରାମ ବିଳାସ ।
ଅତି ରସେ ରସି କହେ ଭଞ୍ଜ ନରଙ୍କଣ ହେ ॥୭୯॥

●

---

୭୦।୨- °ଯୁବରାଜ ପଦେ°
୭୧।୨- °ବିଧାନମାନ ସର୍ବ°
୭୨।୧- °ସଙ୍ଗତେ°
୭୩।୧- ଯାଇ ହୋଇଣ°
୭୫।୨- ଏ କଥାରେ ଆନ କିଛୁ ମନେ ନ°
୭୮।୧- °ବଳ ଘେନ ସମସ୍ତେ°
୭୮।୨ କ- °ଦ୍ରୁସନ°

# ଊନତ୍ରିଂଶ ଛାନ୍ଦ

## (ରାଗ—ବରାଡ଼ି)*

[ ଆଷାଢ଼ଶୁକ୍ଳ ବାଣୀରେ ଗାଇବ ]

ଏଥୁ ଅନନ୍ତରେ ଗ୍ରୀଷମ ଶେଷ
ବରଷା ଆସି ହୋଇଲା ପ୍ରବେଶ
ଗଗନ ମଣ୍ଡଳ ଆଚ୍ଛାଦ ଘନ
ଘନ ଘନ କର କରେ ନିଃସ୍ୱନ
କୋଳେ ବିଦ୍ୟୁଲ୍ଲତା,
ହସିଲା ପ୍ରାୟେକ ଦଶେ ଶୋଭିତା ॥୧॥

ସର୍ବଦିଗକୁ ଆଚ୍ଛାଦି ରହିଲେ
ଜୀମୂତ ସିତେ ଆଲିଙ୍ଗନ କଲେ,
ଦଳିତ ଅଞ୍ଜନ ପ୍ରାୟେ ରୁଚିର
(ବିରହିଣୀ ଜନ ଗଳ ସୋଦର ।
ଦିଶେ ମନୋହର,
କାମୀ କାମିନୀଜନ ସୁଖକର ॥୨॥)

କେତକ କୁଳ ଗର୍ଭର ନିଦାନ
ଚାତକ ତୃଷା କରଇ ଭଞ୍ଜନ,
କଦମ୍ବ କଦମ୍ବ ଆନନ୍ଦକାରୀ
ସଜ ଅର୍ଜ୍ଜୁନ ରତି ସୁଖକାରୀ ।
ସେ ନବୀନ ଘନ,
ନଭ ମଣ୍ଡଳେ କରନ୍ତି ଭ୍ରମଣ ॥୩॥

---

'ଖ'ରେ ନାହିଁ
୧।୨- ୦ହୋଏ ପରବେଶ
୨।୩- ୦ଅଞ୍ଜନ ଅତ ସୁଷମାର
୨।୪- ନାହିଁ
( ) ବନ୍ଧନୀ ଅନ୍ତର୍ଗତ ପଦ 'ଖ'ରେ ନାହିଁ

ମାଳତୀ କଳି ବିକାଶ କାରକ
କୁଟଜ ସୁମନ ରସ ଦାୟକ,
ଦେଖନ୍ତେ ବିନ୍ଧେ ମଦନ ଶାୟକ
ପ୍ରାଣ ହରେ ଏ ବିଚ୍ଛେଦ ନାୟକ ।
ଏ ଅମୃତ ଧର,
ଧରେ ପୂରିତ କଲା ଜଳଧାର ॥୩॥

ସଂଯୋଗୀ ଜନ ଆନନ୍ଦର ଦାତା
ବିଯୋଗୀ ଜନର ପ୍ରାଣ ହରନ୍ତା,
କାଳକା ମାଳ ପ୍ରାୟେ ବିରାଜନ୍ତା
ସଖିମା କୁଳ ନର୍ତ୍ତନ ବଢ଼ାନ୍ତା ।
ସେ ଯେସନ ଘନ,
ଘନ ଜଘମାର କେଶ ରଞ୍ଜନ ॥୫॥

ମାର ନିରନ୍ତରେ ପ୍ରଚୁର କଲା
ସାଲୁର କୁଳେ ଆନନ୍ଦ ବିହ୍ୱଳ,
କାଳକଣ୍ଠ କୁଳ କଲା ଆନନ୍ଦ
ଜଗତ ଜନକ ଆନନ୍ଦ କନ୍ଦ ।
ଘନରସ ଦାତା,
ଦାମିନୀ ମାଳରେ ଦିଶେ ଶୋଭିତା ॥୬॥

କାନ୍ତ ମାରର ବିତାପ ଖଣ୍ଡିଲେ
ଘନ ପୁଷ୍ପ ଧରି ନାସ୍ତି ମଣିଲେ,
କର୍ପୂରରେ ଅଙ୍ଗ କଲା ଲେପନ
ରଜମାନଙ୍କୁ କରେ କଲା ଲୀନ ।
ଏସନ ସେ ଘନ,
ଦେଖିଲେ ଏହୁ ସେ ରଘୁନନ୍ଦନ ॥୭॥

---

୪।୨- ୦କୁସୁମ୦
୪।୩- ୦ନିନ୍ଦେ ମନେ୦
୪।୪- ପ୍ରାଣ ହରଇ୦
୪।୫- ଧରି ପୂରିତ୦
୫।୪- ସଜନୀ କୁଳବତୀ ନିବଚନ୍ତା
୫।୫ କ- ଏସନ ଘନ ଘନ
୫।୬ କ- ୦କେଶର ରଞ୍ଜନ
୭।୧- କାନ୍ତ ମାର ସବିତା ଖଣ୍ଡିଲା
୭।୨- ନାସ୍ତି ଧରି ମଣ୍ଡିଲା
୭।୩- କର୍ପୂରରେ ଅବା୦
୭।୪ ବନିତା ଖଞ୍ଜିଲା ଧୈର୍ଯ୍ୟ ତରୁକୁଳ
୭।୫ ଏହୁ ସେହୁ ବାଳ
୭।୬ କନ୍ଦର୍ପ ସ୍ୱରରେ ହେଲା ଆକୁଳ

କନ୍ଦର୍ପ ଶରରେ ହେଲେ ଆକୁଳ
ଚିନ୍ତା ପ୍ରିୟାଚନ୍ଦ୍ର ମୁଖମଣ୍ଡଳ,
ନୟନ ନୀର ହୋଇଲା ପ୍ରବଳ
ବଢ଼ି ଭାଙ୍ଗିଲା ଧୈର୍ଯ୍ୟ ତଟକୂଳ ।
ଏ ଦୁଃସହ କାଳ,
ବୋଲି ପଡ଼ିଲେ ଅବନୀମଣ୍ଡଳ ॥୮॥

ବୋଲନ୍ତି ହାହାରେ ଚନ୍ଦ୍ରବଦନା
କର ମୋତେ କାମବାଣୁ ମୋଚନା,
ବାସ ନିଧନେ ନୋହୁଛୁ ଶୋଚନା
କାହିଁ ଦେଖିବୁ ତୁ ମୋର ବେଦନା ।
ରେ ପିବରସ୍ତନା,
ଧିକ ବିଧିଦେଲା ତୋତେ ଯାତନା ॥୯॥

ଏ ଘନ ଦେଖୁଥାଇ ହସିକରି
ମୋ ମୁଖେ ଚୁମ୍ବ ଦେଉ କୃଶୋଦରୀ,
ମୁଁ ଯେ ଆଣଇ ତୋତେ କୋଳ କରି
ତୋ ବିନୁ କେହ୍ନେ ବଞ୍ଚିବ ଶରୀରୀ ।
ରେ କନକ ଗୋରୀ,
କେବେ ହେଁ ବାମନୋହୁ ମନୋହାରୀ ॥୧୦॥

ମୋ ଜୀବନେ ବିକାଳ ଘନମାଳା
ନେଇ ଅନ୍ତର ତୋତେ ଦେଖି ଗଲା,
ତୁ ଯେ ହୋଇଥିଲୁ ମୋ କଣ୍ଠମାଳା
ନିର୍ଦ୍ଦୟ ହେଲୁ କି କେ ପ୍ରେମଶୀଳା ।
କାମ ଅନର୍ଗଳା,
ତୋତେ ଦହିବ ପେଷି ବାଣ ଜ୍ୱାଳା ॥୧୧॥

---

୮।୨ ପ୍ରିୟା ମୁଖଚନ୍ଦ୍ରଂ
୮।୪ ବଢ଼ି ଝଳଂ
୯।୧ ୦ମୃଗ ଲୋଚନା
୯।୩ ବାସ ନିଧନେଂ
୯।୪ କାହିଁ ଦେଖିବୁଂ
୧୦।୩ ୦ଯେ ଆଣିଲଂ
୧୧।୨ ୦ଦେଖି ଚଲାଂ

ଦେଖିବୁ ଘନ ସଘନ ଅମ୍ବର
ଜୀବ କି ରଖିବୁ ରମଣୀବର,
ତୋତେ ସେ ହରିନେଲା ନିଶାଚର
ଏହା ସେ ବିହିଲା ବିଧି ପାମର ।
ମୋର ଈଶ୍ବର,*
ଏକା ହୋଇଥିବୁ କେଉଁ ଠାବର ॥୧୨॥

କ୍ଷଣେ ମୋ ନେତ୍ର ବିଚ୍ଛେଦ ନ ସହୁ
ମୁଖେ ଚୁମ୍ବନ ଦେଇ ହସି କହୁ,
ଆଲିଙ୍ଗନ କରି ପ୍ରସାରି ବାହୁ
ସୁରତି ଦାନେ ମୋର ମନ ମୋହୁ ।
ଦେଖାଉ ତୁ ମୋହୁ,
ବୋଲୁ ଏ ବିଯୋଗୀ ଚନ୍ଦ୍ରର ରାହୁ ॥୧୩॥

ଆଲିଙ୍ଗନ କରି ମୋତେ ନ ଛାଡୁ
ମଦନ ବିହ୍ୱଳେ କହୁ ତୁ ହୁଡୁ,
ସୁରତି ମାଗିଲେ ହୃଦରେ ପଡୁ
ଗଳାକୁ ଗଳା ଦେଇକରି ଭିଡୁ ।
ହୃଦେ ହୃଦ ଯୋଡୁ,
ଅତନୁ ପାଶ ବନ୍ଧନରୁ ଫେଡୁ ॥୧୪॥

ଶଶାଙ୍କ ବଦନା ମୋତେ ନ ଛାଡ଼
ମାରଅଛି ବାଣେ ମଦନ ରାଡ଼,
ଦିଅ ତୁ ମୋତେ କୁଚଗିରି ଗଡ଼
ମଦନ ଛେଲ ମୋ ହୃଦୁ ଉପାଡ଼ ।
ଏହୁ କଷ୍ଟ ଫେଡ଼,
ମାର ଶରରେ କଲା ମୋତେ ଜଡ଼ ॥୧୫॥

---

୧୨।୧ ଘେନିବୁ ଘନ୦
୧୨।୨ ଜୀବନ ରଖିବୁ୦
* 'କ' ପୋଥିରେ ନାହିଁ
୧୩।୧– କ୍ଷଣେ ମୋତେ୦
୧୩।୨– ୦ଚୁମ୍ବନ ଦେଲେ୦
୧୩।୩– ୦ପାଳିଛି ବାହୁଁ
୧୩।୫– ଦେଖାଉ ରୁ ସ୍ନେହୁ
୧୪।୨– ମନ ବିହ୍ୱଳେ କହୁ ଯହୁଁ ରୁ୦
୧୪।୫– ହୃଦେ ହୃଦ ଭିଡୁ
୧୫।୩– ୦ମୋତେ କୁଚ ଶିର୦
୧୫।୬– ୦ମୋତେ କଲ ଜଡ଼

ତନୁ କରୁଛୁ ମୋ ତନୁ ଅତନୁ
ଏହା ତୁ ଜାଣୁ ନାହୁଁ କି ସୁତନୁ,
ଦେଖ ଏବେ ଏହୁ ଘନ ଅତନୁ
ଇନ୍ଦ୍ର ଧନୁକୁ କରଅଛୁ ଧନୁ ।
 ବନ୍ଧିଅଛୁ ମନୁ,
ଧାରବାଣେ ଖଣ୍ଡୁଅଛୁ ଏ ତନୁ .।।୧୬।।

କଳାପ କେଶ ସେ କଳାପ ଦେଖି
ବଢ଼ାଉ ନାହିଁ ତୋର ବନୁ ମୁଖ,
ନୃତ୍ୟ ବଶେଷେ ଦେଉଅଛୁ ଦୁଃଖ
ତୁ ଯେଣୁ ନୋହୁଛୁ ମୋର ସୁମୁଖ ।
 ମୋତେ କଲୁ ଲକ୍ଷ,
ବର୍ଷୁଛି ବାଣ କୁସୁମ ବଶିଖ ।।୧୭।।

ପୁଣି ବୋଲନ୍ତି ହାହାରେ ଚନ୍ଦ୍ରାନନା
ପ୍ରାଣ ନ ଯାଉ ହର ମୋ ବେଦନା,
କାହିଁଅଛୁ ଆସ ମୋତ ରଦନା*
ଶିରେ ତୋହର ଖୋଷିବ ସୁମନା ।
 ରେ ମୀନଲୋଚନା,
ତୁମ୍ଭ ସିନା ମୋର ସୁଖ ସଦନା ।।୧୮।।

ପୁଣି ବୋଲନ୍ତି ଦେଖ ସଙ୍ଗିନୀ
କେଣେ ଗଲା ମୋର କନକ ଗାତ୍ରୀ,
ଥିଲା ମୋ ପାଶେ କାମକେଳିଦାତ୍ରୀ
ଯାହୁଁ କାହୁଁ କେଣେ ଗଲା ସୁନେତ୍ରୀ ।
 ସେହୁ ପ୍ରେମଗାତ୍ରୀ,
ମୋ ଅଙ୍ଗ ତରୁଲତା ରାଜପୁତ୍ରୀ ।।୧୯।।

---

୧୬।୨- ୦ତୁ ଜାଣୁ ନାହୁଁ
୧୬।୪- ୦କରୁଛୁ ଅତନୁ
୧୮।୧- ୦ବୋଲୁଛୁ ବୃହାଁ୦
* 'ସ' ପୋଥିରେ ନାହିଁ

୧୮।୪- ଶିରରେ ତୋର୦
୧୯।୨- ୦ପ୍ରେମ ପାତ୍ରୀ
୧୯।୬- ମୋ ଅଙ୍ଗଲତା

ନୋହେ ଏ ଘନ ରାକ୍ଷସ ତମକ
ନୋହେ ବିଜୁଳି ନଷ୍ଟେ ସେ ଜାନକୀ,
ନୋହେ ସୁରଧନୁ ଏତା ଧନୁ କ
ନୋହେ ଜଳଧାର ବାଣ ଧାରା କ ।
ତା ଦନ୍ତ ପନ୍ତୀ କ,
ନୋହେ ବଳାକା ଅଛନ୍ତ ଅନ୍ତକ ॥୨୦॥

ଘନ ଧୂନି ନୁହେଁ ଏ ତାର ଧୂନି
ଏ ଅଟ୍ଟହାସ ନୋହେ ଅଶନି,
ନୋହେ ଗିରିଶିରି ଗଜ ମୂର୍ଦ୍ଧ୍ନୀ
ଆରୋହି କେତକ କୁନ୍ତକ ଘେନି ।
ଧର ମୋ ଭାମିନୀ,
ଦେଖ ମୋ ଯାଉଛି ଦଶ ମୂର୍ଦ୍ଧ୍ନୀ ॥୨୧॥

ଆଣ ବାବୁ ଏବେ ଖର କମାଣ
ନିଶ୍ଚୟେ ଘେନିବି ଏହା ପରାଣ,
ଏତେ ବୋଲିଣ କନ୍ଧେ ଧନୁର୍ବାଣ
ଦେଖି ଲକ୍ଷ୍ମଣ କରେ ନିବାରଣ ।
ଶୁଣ ରଘୁରାଣ,
ନୋହେ ରାବଣ ଏହୁ ଘନ ଜାଣ ॥୨୨॥

ଧଇର୍ଯ୍ୟ ଲଭି ବୋଲନ୍ତି ରାଘବ
ଏ ନୋହେ ରାକ୍ଷସ କାମୀ ବାନ୍ଧବ,
ଯେଣୁ ନାହିଁ ମୋ ପାଶେ ଜୀବଜୀବ
ଏଣୁ ମୋରେ ଏ କରୁଛି ଅଭାବ ।
ଜୀବନ କି ଦେବ,
ଏ ନିକି ଲଭିଇବ ତା ଭାବ ॥୨୩॥

---

୨୨।୧- ଆସ ଏବେ ବାବୁ ।
୨୨।୩- ୦ସାଜେ ଧନୁର୍ବାଣ
୨୨।୪ କ-୦କରେ ନିବାରଣ
୨୩।୩- ୦ମୋର ସେ ଜୀବଜୀବ
୨୩।୪- ୦କରୁଅଛି ଉତ୍ପାତ
୨୩।୬- ଜୀବନ ଦେଇ ନେବ
୨୩।୭- ସେ କି ଲଭିବ ତାର ଅଭାବ

ଶୁଣ କରୁଛୁ ନୀଳକଣ୍ଠ ରାବ
ଏହାଙ୍କୁ ମାରିଛୁ କି ଉଦ୍ଧବ,
ରାବ ଛଳରେ ଲଭୁଛନ୍ତି ପ୍ଲବ
ନୀଳକଣ୍ଠ ବୋଲେ ନ ମାର ଦେବ ।
ଏଥୁ ନାଶ ହେବ,
ଯାହାଂ ନେଶାନଳେ ହୋଇଛୁ ସର୍ବ ॥୨୩॥

ମାଳତି ଫୁଲେ ଭ୍ରମର ଲମ୍ପଟ
ବୋଲନ୍ତି ଦେଖ ଦଶରଥ ସୁତ,
ଦେଖ ବାବୁ ଏହୁ ମଦନ ଭଟ
ମନ ମୋହର କରୁଛୁ ଉଚ୍ଚାଟ ।
ଝୁଙ୍କାର ଉଦ୍ଭଟ,
ଏବେ ମୋ ଜୀବ ପଡ଼ିଲା ସଙ୍କଟ ॥୨୪॥

ଏ କି କହିବ କି ଜାନକୀ କଥା
ତୁଟାଇବ କି ମୋ ହୃଦର ବ୍ୟଥା,
ଆଗେଣ ଉଡ଼ି କମ୍ପାଉଛୁ ମଥା
ପ୍ରିୟାର ଦୂତ ଏ ଜାଣ ସର୍ବଥା ।
ନୁହଇ ଏ ବୃଥା,
ଅନଙ୍ଗ ରାଜାର ଏ ମହାରଥୀ ॥୨୫॥

ମାଳତି ଗନ୍ଧବହ ଗନ୍ଧବହ
ପ୍ରିୟାର କୁଶଳ କୁଶଳ କହ,
ମୋହ ମୋହର ହେଉଛୁ ଦୁଃସହ
ଜଗତ ପ୍ରାଣ ପ୍ରାଣ ମୋର ବହ ।
ଅଦେହ ଅଦେହ,
କାରଣ କାରଣ ହେଲା ସନ୍ଦେହ ॥୨୬॥

---

୨୩।୪- ବୋଲେ ନ ମାରୁ
୨୩।୬- ହୋଇଛୁ ଶବ
୨୪।୫- ହୁଙ୍କାରନ୍ତି ଭଟ
୨୫।୪- ଏ ଦୂତ ଜାଣ

୨୫।୫- ନୋହିଲେ ଏ
୨୬।୧- ମଣ ଗନ୍ଧବହ
୨୬।୪- ଜଗତେ ଜଗତ ପ୍ରାଣ ହେ
୨୬।୫- ଅଦେହ ଅଦେହ

ଯେହ୍ନୁ ମଳୟ ମରୁତ ଦକ୍ଷିଣ
ବିରହୀ ମାରଣେଣ୍ଟ ଯେହ୍ନୁ ଦକ୍ଷିଣ,
ତୁମ୍ଭେ ସଜ୍ଜନେ ଅଟ ଅଦକ୍ଷିଣ
ମୋ ପ୍ରାଣ ନେବାକୁ ହେଲୁ ଦକ୍ଷିଣ ।
ଏହ୍ନୁ ବିଲକ୍ଷଣ,
କ୍ଷୀଣ କରୁଅଛୁ କ୍ଷଣକୁ କ୍ଷଣ ॥୨୮॥

ତୋତେ ଜାଣିଲି ପାପୀ ଜଳଧର
ତୋର ବାସ ପରା ଅମରପୁର,
କରନ୍ତୁ ପୂର୍ଣ୍ଣ ଅମୃତ ଆହାର
ଅମୃତ ଦାନେ ମୋର ମୃତ୍ୟୁ କର ।
ତୁହି ନିଶାଚର,
ଶିବ ମସ୍ତକ ଗିଳୁଛୁ ସତ୍ୱର ॥୨୯॥

ପ୍ରିୟା ବିନୁ ମୁହିଁ ହୋଇଲି ନାଶ
ତୁ କରଅଛୁ ସର୍ବ ଆଶା ଗ୍ରାସ,
ତୋ ଠାରେ ହେବ କେମନେ ବିଶ୍ୱାସ
ଜଡ ସଙ୍ଗ ତୋର ଯେଣୁ ବିଶେଷ ।
ମୋର ପ୍ରୀତି ଆଶ,
ଏଥର ଭିତରୁ ନୋହେ ବିଶ୍ଳେଷ ॥୩୦॥

ଲକ୍ଷ୍ମଣ ଦେଖ ଧାରାଧରଗଣ
ଧରଣୀ ମିଳି ଗିଳୁଛି ତତ୍‌କ୍ଷଣ,
ମୁକ୍ତିର ସାଗରେ କରେ ଭ୍ରମଣ
ଜଳ ଆଧାରେ ହୋଇଛି ଭ୍ରମଣ ।
ଏ କିସ କାରଣ,
ଏହୁ କି ମତେ କରିବ ଗିଳଣ ॥୩୧॥

---

୨୯।୩- କନ୍ତୁଛୁ ପର ପୂର୍ଣ୍ଣ॰
୨୯।୪- ॰ମୋତେ ମୃତ୍ୟୁ॰
୩୦।୫- ॰ପ୍ରତିଭାସ
୩୧- ଧରତ ମିଳି ଗଳୁଛୁ॰
୩୧।୪- ଜଳ ଧାରରେ॰
୩୧।୬- ଯେହ୍ନେ କି ମତେ॰

ପୂର୍ଣ୍ଣି ବହ୍ନିଲେ ଲକ୍ଷ୍ମଣ ସନ୍ତାପ
ବୋଲନ୍ତି ଆରେ ଦେଖ ମୋର ବାପ,
ଅମ୍ବର ଯାକେ ପୂରିଛି ତ ଆପ
ସାଗର ଘୋଟିଲା କି ବିଷ୍ଟପ ।
କରେ ଧୂର୍ତ୍ତ ଲେପ,
ନୋହେ ଦାମିନୀ ବାଡ଼ବ ସ୍ୱରୂପ ॥୩୨॥

ନୋହେ ବଳାକା ଏ ହଣ୍ଡୀରଚୟ
ନୋହେ ରୋହିତ ପ୍ରବାଳ ଆଳୟ,
ଘନ ଗର୍ଜନର ଏହୁ ଆଶ୍ରୟ
ପବନ କରିଅଛି ବେଗେ ରୟ ।
ଦେଉଅଛି ଭୟ,
ରବି ଅପ୍ରକାଶ କରେ ଉଦୟ ॥୩୩॥

ଦେଖ ପୁଷ୍ପଠନୁ ପୁଷ୍ପଧନ୍ୱର
ଭ୍ରମର ଗୁଣେ ଦିଶେ ଭୟଙ୍କର,
ପ୍ରାଣ ନେବ ହେଉ ଆଗ ଶର*
ଅନ୍ତର୍ହିତେ କାମ କରେ ପ୍ରହାର ।
ଦିଶୁନାହିଁ ଶର,
ଲକ୍ଷ୍ୟ ହେଲେ ତା କରନ୍ତି ନିବାର ॥୩୪॥

କେବଳ ମୋରେ ଦେଉଛି ଭୟକୁ
ଦେଖିଲେ ଡରନ୍ତି କମ୍ପା ମାରକୁ,
ଧିଗୁଣ ରୂପ ଧରିଛି ଧାସକୁ
ଏକା ଏ ନ ନାଶୁ ମୋର ପ୍ରିୟାକୁ ।
ମାରନ୍ତି ଏହାକୁ,
ମନ୍ମର ମାରିବା କେଉଁ ଲାଭକୁ ॥୩୫॥

---

୩୨।୩- ଅମ୍ବୁଜୁର ସ୍ଥାନେ
୩୨।୪- ସାଗର ଗୋଟିଗଲା କି ପିଷ୍ଟପ
୩୨।୬- ଜଳଧାରରେ ହୋଇଛି ସଂକ୍ଷେପ
୩୧।୧- ନୋଏ ପିଣ୍ଡରସ୍ୱ
୩୨।୪- ଜାଣି ପିଷ୍ଟପ
୩୩।୪- ବେଗେ କରିଅଛି
୩୩।୬- ରବି ପ୍ରକାଶ

*- 'କ' ପୋଥିରେ ନାହିଁ
୩୪।୪ କ- ଅଶବ୍ଦତେ କାମ
ଖ- ଅନ୍ତର୍ହିତେ ନାମ
୩୪।୬- କରନ୍ତି ପ୍ରହାର
୩୫।୨- ନାକ ମାରକୁ
୩୫।୬- କହ ଲାଭକୁ

କେଉଁଠାରେ ଥିବ ମୋ ପ୍ରିୟା ଏକା
ନ ଶୁଣିବ କି ନୀଳକଣ୍ଠ କେକା,
ତା ଜୀବ ଯିବାକୁ ହେଉଛି ଢକା
ଯେଣୁ ସେ ମୋର ଜୀବନ ଦାୟିକା ।
ସେ ବର ନାୟିକା,
କାମିନୀକ ତାକୁ କରଇ ଢକା ।।୩୬।।

ଆରେ ପ୍ରାଣପ୍ରିୟା ମୋ ରସବର
ଜାଳିକ ଜାଲ ବସ୍ତାଣଛି ତାର
ଷରଙ୍ଗୀ ମୃଗୀ ବନ୍ଧନେ ମନ୍ଥର
କେତକ ଭଲ ଧରି ନିଜ କର ।
ସେ ଲତା ଉଦର,
ଲୁଟି ରହିଛି ନିର୍ଦ୍ଦୟ ପାମର ।।୩୭।।

କେସନେ ଦନୁଜ ପୁରେ ତୁ ଥିବୁ
ନିଶି ବାସର କେଣେ କରି ନେବୁ,
ମୋ ସଙ୍ଗେ କେଳି ନିଶ୍ଚେ ଭାବୁଥିବୁ
ଯେବେ ଜୀବନ ଯିବ ତେବେ ଥିବୁ ।
ତୁହି ମୋର ସବୁ,
ପ୍ରାଣ ରଖିଥିବୁ ଜଳ ଦରବୁ ।।୩୮।।

ନୀଳ ଜଳଦ ନୋହେ କଳାବର
ଦେଖ ଦେଖ ଏ ହରୁଛି ଅମ୍ବର.
ଦ୍ୱିଜବଜର ବସୁ ଅପହାର
କରିପାରିଲି ସୁର ମାର୍ଗ ବର ।
ଏ ଅତି ପାମର,
ନିକି କରଇ ତୋର ପ୍ରାଣ ମାର ।।୩୯।।

---

୩୬।୩- ଅଜବ ଯିବାକୁଂ
୩୬।୪ କ- ହେଣୁ ସେ ମୋର ଜୀବନ ଦକା
୩୬।୫ କ- ଂନାଏକା
୩୭।୨- ଜାଲ ଜୋଲଂ
୩୭।୩- ଂଚନ୍ଦନେ ସନ୍ଥର
୩୮।୪ କ- ଂଜୀବନେ ସନ୍ଥର
୩୮।୪ କ- ଂଜୀବନେ ଥିବୁ
୩୮।୬· ଂଜଳଦ ସବୁ
୩୯।୧- ଂନୋହେ କଳାମ୍ବର
୩୯।୬- ନିକ କନ୍ଧଇଂ ଂପ୍ରାଣମାର

ଏତେ କହିଣ ରଘୁକୁଳପତି
ଛନ ଛନ କର ଅଛନ୍ତି ମତି,
ଆଶା ଗଣଙ୍କୁ ଦେଖି କରେ ସ୍ତୁତି
ବୋଲନ୍ତି ଆସ ମୋ ପ୍ରାଣ ସଙ୍ଗତି ।
ଚେଜ ମନୁ ଖ୍ରୁତି,
ମାତ୍ର ଆଣିବ ତୋତେ ଲଙ୍କପତି ॥୪୦॥

ଶୁଣିଣ ବହୁଳ ରାମ ବଚନ
ବୋଲେ ଲକ୍ଷ୍ମଣ ନୁହେଁ ଅଚେତନ,
ଅବଶ୍ୟ ରାବଣ ହେବ ପତନ
ଏ ବଗୃର କର ରଘୁନନ୍ଦନ ।
ଏ ବରଷା ଘନ,
ହୋଇଲ ଧଗ ହୋଇଲେ ପ୍ରସନ୍ନ ॥୪୧॥

ଲକ୍ଷ୍ମଣ ବାଣୀ ଶୁଣି ରଘୁପତି
ସନ୍ତାପ ଗୁଡ଼ ଲଭିଲେ ଧିରତି,
ବୋଲନ୍ତି ବାବୁ ହୋ ଶୁଣ ସୁମିତ୍ରୀ
ଏଥର ବଗୃର କର ସୁମିତ୍ରୀ
ସେହୁ କପିପତି,
ବଳେ ଦେହିଣ ମିଳିବ ତଡ଼ିତି ॥୪୨॥

ଊନବିଂଶ ଏ ଶ୍ରୀରାମବିଳାସ
ଛାନ୍ଦ ଛାନ୍ଦରେ ଅଟଇ ବିଶେଷ,
ସୁଜନେ ଶୁଣି ହୋଇବା ଉଲ୍ଲାସ
ବରଷା ବର୍ଣ୍ଣନାରେ ହେଲା ଶେଷ ।
ସେ ସୀତା ବିଳାସ,
ଭନେ ଧନଞ୍ଜୟ ନୃପ ମାନସ ॥୪୩॥

●

---

୪୦।୬- ୦ଆଣିବ ତୋତେ୦
୪୧।୩- ୦ହୋଇଣ ସୁମତ୦
୪୩।୧- ୦ଛାନ୍ଦ ଶ୍ରୀରାମ ବିଳାସ
୪୩।୩- ୦ହୋଇବା ବିଳାସ
୪୩।୪- ୦ବର୍ଣ୍ଣନେ ହେଲା ଏ୦
୪୩।୬- ୦ନୃପ ସାନେଶ

# ତ୍ରିଂଶ ଛାନ୍ଦ

## (ରାଗ—ମଙ୍ଗଳ ଧନାଶ୍ରୀ)

ଏଥୁ ଅନନ୍ତରେ ଶୁଣ । ରାମ କରନ୍ତି କାରୁଣ୍ୟ ।
ପ୍ରବେଶ ହେଲା ଶରଦ । ଗଲା ବରଷା ଉପୃଦ ।।୧।।

ନିର୍ମଳ ହେଲେ ଗଗନ । ଦିଶିଲା ଅତି ରଞ୍ଜନ ।
ନିର୍ଭେଳ ନକ୍ଷତ୍ର ମାଳ । ଅସଙ୍ଖ୍ୟ ଭାବେ ଗହଳ ।।୨।।

ତେଜିଲେ ସବୁ ଜୀବନ । ପାଣ୍ଡୁର ଦିଶିଲେ ଘନ ।
ନୃତ୍ୟ ତେଜିଲେ ଶିଖିନୀ । ଗୁଡ଼ିଲେ ଗିରି ମୂର୍ଦ୍ଧ୍ନୀ ।।୩।।

ଶାଳୂର ହୋଇଲେ ମୂକ । କଣ୍ଠେ କାଳକଣ୍ଠ ଶୋକ ।*
ଏସନ ଶରଦ ଋତୁ । ବିରହୀଙ୍କ କାଳକେତୁ ।।୪।।

ରାମ ବୋଲନ୍ତି ଲକ୍ଷ୍ମଣ । ଦେଖ ନିର୍ମଳ ଗଗନ ।
ଏହୁ ଯେ ଶରଦ ନାରୀ । ହେଲା କି ଜଗରେ ଭାରୀ ।।୫।।

କାମୁକେ ସେ ମନୋହାରୀ । ବିଗଳିତ ପୟୋଧାରୀ ।
ଶୁଭ୍ରାଂଶୁ କରେ ଏ ଭାରୀ । ହଂସମଣି ମାଳା ଧରି ।।୬।।

କୁମୁଦ ହାସେ ରଞ୍ଜନ । ମଧୁର ନିଜେ ବଚନ ।
ସମାନ ଦଣ୍ଡ ଧାରଣୀ । ଗଳିତ ନେହେ ଶୋଭନୀ ।।୭।।

ଏବେ ଆସୁଅଛି କ୍ଷମ । ଜାଣ ଏ ବିରହ ଯମ ।
କରେ ମୋ ସମସ୍ତ କାମ । ଏବେ ହୋଇବ ଏ ବାମ ।।୮।।

ହାହାରେ ଚନ୍ଦ୍ରବଦନା । ମତ୍ତ ମରାଳ ଗମନା ।
ଦେଖରେ ଏ ହିମଋତୁ । ହେଲା ମୋ ମରଣ ହେତୁ ।।୯।।

ହଂସପୁରେ ତୋତେ ଘେନ । ଏହୁ ଗର୍ଜିଲା ଯାମିନୀ ।
ନଅଇ ମୁଁ କ୍ଷଣେ କରି । ତୋ ଭାବେ ଗୁଣ ଗଉରୀ ।।୧୦।।

---

୧।୨ କ- ବରଷାର ଉଦ
୨।୨- ଔଷଧି ଭବେ
୩।୧ କ- ପାଣ୍ଡୋର ଦଶିଲେ
୩।୨- ଗିରି ମୁର୍ଦ୍ଧ୍ନୀ
*- 'ଙ'ରେ ଧାଡ଼ିଟି ନାହିଁ
୫।୨- ଦୁରେଦରେ ନାଶ, ହେଲକ·ଜପତେ
୬।୧- କାଂଶକେଶେ
୬।୨- ସୁବାସ କରେ ଏ ହଂସ ସମୀପ
୮।୧- ଜାଗଏ ବିରସ
୮।୨- ସେ ବାମ
୧୦।୧- ହଂସପୁରେ ତୋତେ

ଏବେ ଏ କେମନ୍ତେ ଯିବ । ନାହିଁ ତୁ ମୋହର ଜୀବ ।
ଏହାକୁ ମୁଁ ନ ଡରଇ । ତୋର ପାଶେ ଯେବେ ଥାଇ ।।୧୧।।

ମୋତେ ଆଲିଙ୍ଗନ କରି । ନ ଛାଡ଼ୁ ତେବେ ସୁନ୍ଦରୀ ।
ଏହା ତୁ କେମନ୍ତେ ନେବୁ । ମୋ ଭାବ ଯେ ଭାବୁଥିବୁ ।।୧୨।।

ଏହା ନକ କଲ୍ ବିହି । ତୋ ସଙ୍ଗେ ନ ନେଲ୍ ବୋହି ।
ଏକାଳେ ଶଶିକି ଚାହିଁ । ମୁଁ ଯେ ନନ୍ଦୁଥାଇ ସହି ।।୧୩।।

ବୋଲଇରେ ପ୍ରିୟା ଦେଖ । ଚନ୍ଦ୍ର ଏ ଅତି ମୂରୁଖ ।
ତୋ ମୁଖ ସମାନ ଶିରୀ । ନୋହି ଭ୍ରମଇ ଶର୍ବରୀ ।।୧୪।।

ଶିଶିରେ ତନୁ ଲୁଚଇ । ଦେଖ ଥରୁଅଛି ସେହି ।
ଏବେ ଏହି ସୁଧାକର । ଗଗନେ ଦେଖି ମୋହର ।।୧୫।।

ରହିବ ନିକି ଜୀବନ । ତୋ ମୁଖ ଚିନ୍ତା କରଣ ।
ଦେଖ ଏବେ ହିମଋତୁ । କାନ୍ତାକାନ୍ତା କେଳି ହେତୁ ।।୧୬।।

ଜାଣ ଏଥେ ଏହୁ ବର । ନ କରେ ତନୁ ଅନ୍ତର ।
ପୁଣ ଏ କାମ ସମାନ । ହୋଇ ଦିଏ ଭୟମାନ ।।୧୭।।

ତନୁରେ କମ୍ପ କରଇ । ପ୍ରାଣେ ବିରୋଧ ବଢ଼ଇ ।
ଶୀତକର ଅଗ୍ନି ସମ । କରଇ ଏହାର କାମ ।।୧୮।।

ବିଯୋଗୀର ଏହୁ ବାମ । ମନକୁ କରଇ ଭ୍ରମ ।
କାମରେ ଦିନକୁ ନାଶେ । ସମସ୍ତ ଆଶାକୁ ଗ୍ରାସେ ।।୧୯।।

ଏ ଋତୁ ଦେଖିଲେ ବାଳା । ହୋଇବୁ ଅତି ବିହ୍ୱଳା ।
ତୋର ବଦନ ବଇରୀ । ହରଇ ଏ ପଦ୍ମଶିରୀ ।।୨୦।।

ଏଣେ ହଉ ସୁଖକାରୀ । ଏବେ ହେବୁ ଦୁଃଖ ଭାରୀ ।
ତୋର ମୋର ଶୋଇଥାଇ । ଏ ଋତୁରେ ଚନ୍ଦ୍ରମୁହିଁ ।।୨୧।।

---

୧୧।୧- ୦କେମନ୍ତେ ନେବୁ । ମୋ ଭାବ ଯେ ଭାବୁଥିବୁ
(   ) 'ଖ' ପୋଥିରେ ନାହିଁ
୩୧।୧- ଲୋକହୀନ କାଳ୦
୧୩।୨- ୦ମୁଁ ଯେ ହାଦେ ନନ୍ଦୁଥାଇ
୧୪।୧- ବୋଲଇରେ ପ୍ରିୟା ଦେଖ୦
୧୪।୧ କ- 'ଚନ୍ଦ୍ର ଏ ମୂରୁଖ' ନାହିଁ
୧୫।୨- ଏବେ ଏହୁ୦
୧୬।୨- ଦେଖିଲେକ୦
୧୭।୧- ୦ଏ ଦୂଜର୦
୨୦।୧ କ- ୦ଅତି ଭଭଳା
୨୦।୧- ୦ଦେଖିଣ ବାଳା, ହୋଇ ରୁ ଅତି୦
୨୦।୨- ୦ସାରଇ ଏ୦
୨୧।୧- ସ୍ୱେଥୁ ସ୍ୱେତୁ୦

ତନୁର ଅନ୍ତର ଆସେ । ନେଉଛଇ ନାହିଁ ପାଶେ ।
ନ ସେନୁ ଯେ ଲୁଚେ ହାର । ଏବେ ତ କଲୁ ଅନ୍ତର ॥୨୨॥

ତନୁ ତନୁ ଭେଦ ପାଇ । ପୁଲକ ମୁଁ ବାଞ୍ଛୁଥାଇ ।
ନ ସହୁ ଏତେ ବିଚ୍ଛେଦ । ଦଇବ କଲା ପ୍ରମାଦ ॥୨୩॥

ଏବେ ସାଗର ଅନ୍ତର । ହୋଇଲୁ ରମଣୀବର ।
ଧିକ ମୋ ଜୀବନ ଯାଉ । ଖାଉ ମୋତେ କାମସାହୁ ॥୨୪॥

ଜଗତ ହେଲା ଅନ୍ଧାର । ଦେଖା ମୁଖ ଶଶଧର ।
ଏମନ୍ତ ବିହ୍ୱଳ କହି । ଶ୍ରୀରାମ ଦେଲେ ଅନାଇ ॥୨୫॥

ଜାନକୀର ରୂପବର୍ଣ୍ଣ । ଦିଶେ ସର୍ବ ଲତାମାନ ।
ବୋଲନ୍ତି ଆରେ ଅବନା । ତୋ ହୃଦ ଏତେ କୁଟିଳା ॥୨୬॥

ଏକା ମୋର ପାଶେ ଥିଲୁ । ଏବେ ଜଗତ ହୋଇଲୁ ।
ତୋ ଏକ ଅଙ୍ଗ ଲାବଣ୍ୟ । ଦେଖୁଥାଇ ମୋ ନୟନ ॥୨୭॥

ତେବେ ନୁହଇ ତୃପତ । ଏବେ ତ ଦେଲୁ ବିପତ୍ତି ।
ବେନି ନୟନ ମୋହର । ତୁ ହିତ ହେଲୁ ଅପାର ॥୨୮॥

ଏ ବିଦ୍ୟା ତୁ ମୋତେ ଦିଅ । ମୁଁ ଟି ଦଶରଥ ପୁଅ ।
ହୋଇବି ସହସ୍ର ନେତ୍ର । ତେବେ ଦେଖିବି ତୋ ଗାତ୍ର ॥୨୯॥

ସୁରପତି ପଦ ନେବି । ଅମର ସୁଖ ଭୁଞ୍ଜିବି ।
ବିହ୍ୱଳେ ବୋଲନ୍ତି ପୁଣି । ଆସରେ ପ୍ରାଣ ମିତଣି ॥୩୦॥

ଏ ତ କଳକଣ୍ଠ ଧ୍ୱନି । କହୁଛୁ ତୁ ଜୀବଧନୀ ।
କମ୍ପାଇଁ ଅଙ୍କେ ନ ଆସୁ । ସେନେହ ହୋଇ ନ ବସୁ ॥୩୧॥

ପୁଣି ଦେଖି ମଧୁକର । ବୋଲନ୍ତି ହୋଇ କାତର ।
ତୁମ୍ଭେ ଦେଖିଛ ମୋ ବାଳୀ । ଶୁଣ ହେ ଦ୍ୱିରେଫ ମାଳ ॥୩୨॥

ତାର କେଶ ରୁଚି ରୁଚି । ସହି କି ଦିଶୁଛି ଶୁଚି ।
କହ ମୋହର ବଚନ । କି କହୁଛି ପ୍ରାଣଧନ ॥୩୩॥

---

୨୨।୧- ତନୁ ଅନ୍ତରଂ ନାହିଁ ଆରେ
୨୨।୨- ୦ଯେ ଭରେ ହାରଂ
୨୩।୧- ୦ମୁଁ ସ୍ୱବୁଥାଇ
୨୩।୨ କ- ୦ଦଇବ ନ ନଳଂ
୨୫।୧- ୦ମୁଖ ଶଶୀଧର
୨୫।୨- ସ୍ୱେହନ ବଚ୍ଛେଦ ଭଦ୍ରଂ
୨୬।୨- ୦ଏକଡ଼େ କୁଟିଳା
୨୭।୨- ୦ସହାଉ ମୋ ନୟନ
୨୮।୧- ୦ଦେଲୁ ଦର୍ପଣ

ବସି ତ ହୋଇଲ ତୂନ୍ନ । ତୁମ୍ଭେ କି ଅଗସ୍ତି ମୁନି ।
ମୋର ପ୍ରାଣ ପାରାବାର । କରିବ କି ହେ ଆହାର ॥୩୪॥

କିବା ତୁମ୍ଭେ କାଳ ମୂର୍ତ୍ତି । ଭ୍ରମ ତ କାନନ ମାନ୍ତ ।
ଖୋଜୁଛ କି ମୋ ଜୀବନ । ନେବ ପ୍ରିୟା ସନ୍ନିଧାନ ॥୩୫॥

ପୁଚ୍ଛ ମୁଖେ ଲତ ଲତା । ତୁମ୍ଭେ କି ଦେଖିଛ ସୀତା ।
ଅବସ୍ଥା ମୋହର ଦେଖ । ପ୍ରିୟା ବିନୁ ନାହିଁ ସୁଖ ॥୩୬॥

ଦେଖ ମୋ ନୟନ ନୀର । ଏଣୁ ମୁଁ କଲି କୃପାର ।
କୃପାର ପରେ ମୋ ବାଳା । ରହି ମୋରେ କଲା ହେଳା ॥୩୭॥

ତୀକ୍ଷ୍ଣ କାମ ଚନ୍ଦ୍ରହାସ । ଚନ୍ଦ୍ରହାସେ କରି ନାଶ ।
ଦୁଃସହ ଏ କାମବାଣ । ନେହ ବାଣେ କରୁ କ୍ଷୀଣ ॥୩୮॥

କୁଚ ଗିରି ଦୁର୍ଗ ଦେଇ । ଉଦ୍ଧର ଚନ୍ଦ୍ରମା ମୁହିଁ ।
ପୁଣି ବୋଲନ୍ତି ଲକ୍ଷ୍ମଣ । ଦେଖ ଶଶିରେ ଶୋଭନ ॥୩୯॥

ଆଶାଗଣ ଅପ୍ରକାଶ । କଲାଟି ଏହୁ ବିଶେଷ ।
ଏ କାଳରେ ଚନ୍ଦ୍ରମୁଖୀ । ମୋ ପାଶେ ଥାଇ ସେ ସଖି ॥୪୦॥

ଅଗୁରୁ ଧୂପେ ସୁବାସ । କରିଥାଇ କେବା କେଶ ।
ତା ବିନୁ ଏବେ ଏ କାଳ । କେଳି ହୋଇଲା ବିଫଳ ॥୪୧॥

ମୋର ଶୋକକୁ ଦେଖିଣ । ସ୍ୱେଦନ୍ତି ଏ ତରୁଗଣ ।
ତୁ ପାରଦ୍ୱାଜରେ ? କରି । ଢେଳନ୍ତି ଏ ଅଶ୍ରୁବାରି ॥୪୨॥

ଏକାଳେ ନାହିଁ ମୋ ସୀତା । ଦେଲା ମୋତେ ଗୁରୁ ଚିନ୍ତା ।
ଯାଉ ଏ ମୋର ଜୀବନ । ପ୍ରିୟା ପ୍ରେମ ସୁମରଣ ॥୪୩॥

ତୁମ୍ଭେ ହେ ଶିଶିର ଶୁଣ । ଗଲାଣି ମୋହର ପ୍ରାଣ ।
ପ୍ରାଣ ନେଉଛ କିମ୍ପାଇଁ । ଦୟା କି ତୁମ୍ଭର ନାହିଁ ॥୪୪॥

ଦୁଃଖୀଜନ ନାଶ କରି । କି ଯଶ ହେବ ତୁମ୍ଭରି ।
ଏହା ବିସ୍ମର ନ କରି । ଏକା ବଇରାଗ ଧରି ॥୪୫॥

---

୩୫।- ୦କାଳ ମୂର୍ତ୍ତି୦ ୩୯।- ଗିରିଦୁର୍ଗ

ଅନଙ୍ଗ କି ତୁମ୍ଭ ମିତ । କି ଅବା ତୁମ୍ଭେ ତା ଦୂତ ।
କି ଅବା ତୁମ୍ଭେ ଅସୁର । ବିଯୋଗୀ କର ଆହାର ॥୪୬॥

ମୋତେ ବିଯୋଗୀ ଜାଣିଣ । ଖାଇ କି ଆସିଛ ପୁଣ ।
ତେଣେ ଖାଇଲୁ ସେ ସୀତା । ଜାଣିଲି ତୁ ମୂଢ଼ଚେତା ॥୪୭॥

ଜାଣିଲି ତୁ ଅଟୁ ଚଣ୍ଡୀ । ନେବୁ ମୋ ଜୀବନ ଭଣ୍ଡି ।
ସଂଗ୍ରାମ କଲୁ ଜଗତ । ଆକାଶେ ଭକ୍ଷିଲୁ ମିତ ॥୪୮॥

ମୁହିଁ ତାର କୁଳେ ଜାତ । ନାଶିବୁ କି ଆମ୍ଭ ଗୋତ୍ର ।
ଦିନ ଆଗମନେ ତୋର । ବରଣ ନୋହେ ବେଭାର ॥୪୯॥

ନିଷ୍ଠୁରେଁ ତୁ ନିଶାଚର । ନିଶା ବିସ୍ତାରିଲୁ ଘୋର ।
ଖଣ୍ଡିଲୁ କି ଦିନ ଶିରୀ । ନେଲୁ ଦ୍ୱିଜରାଜ ନାରୀ ॥୫୦॥

ସେ କି ବେଗେ ଲଜେ ଯାଇ । ଅସ୍ତାଚଳରେ ପଶଇ ।
ଏମନ୍ତ ବୋଲନ୍ତେ ରାମ । ରଜନୀ ହେଲେ ବିରାମ ॥୫୧॥

ଶିଶିର ହୋଇଲା ଅନ୍ତ । ହେବ ପ୍ରବେଶ ବସନ୍ତ ।
ରାମ ବିଳାସ ଦରଶ । ଛାନ୍ଦ ଏ ହୋଇଲା ଶେଷ ॥୫୨॥

ଶ୍ରୀରାମ ଚରଣ ଶନ୍ତ । ଭଣେ ଭଞ୍ଜ ନରପତି ।
ରସିକ ଆନନ୍ଦକାରୀ । ସର୍ବ ରସେ ମନୋହାରୀ ॥୫୩॥

●

# ଏକତ୍ରିଂଶ ଛାନ୍ଦ

## (ରାଗ—ଅହାରି)

ଶିଶିର ଅନ୍ତରେ ପ୍ରବେଶ ହୋଇଲା ବସନ୍ତ ବିରହୀଙ୍କ ଶୋକ,
ଯାହା ଶୋଭା ନେତ୍ରେ ଦରଶନ ମାତ୍ରେ ସୁଖ ହୋଇଥାନ୍ତି କାମୁକ ।
ଦେଲ ସେ, ସର୍ବ ଲତାଗଣେ କୋରକ,
କାମ ମିତ୍ର ମୁଖଚନ୍ଦ୍ର ପ୍ରକାଶିଲା ଖଣ୍ଡିଲା ପଙ୍କ କୁନ୍ଦମୂକ ।।୧।।

ନାଗ କୁସୁମ ଛନ୍ଦ ଛନ୍ଦ କେତକୀ ନୃପତି କୁସୁମ ବିଶିଖ,
ନବ କେତକ ପଲ୍ଲବ ବିରାଜିତ ମାରୁତ ରଥ କଲା ସୁଖ ।
କୁସୁମ, ପୁଞ୍ଜ ତୂଣୀର ଶିଳୀମୁଖ,
ଅତ୍ୟୁତ ଚୂତକୁନ୍ତ ସଜ କରିଛି ବିରହୀ ମାରଣେ ସୁମୁଖ ।।୨।।

ଫୁଲ୍ଲ କମଳ ଫଳ କରକରେ ଆଳିମାଳା କରି ଖଡ଼ଗ,
ବସନ୍ତ ସାମନ୍ତ ସଙ୍ଗେ ସେନା କରି ବିଜେ କରି ଅବା ବିରାଗ
କୋକିଳ, ନିସାଣ କରିଅଛି ଆଜ,
ଅଗ୍ରତେ ଚନ୍ଦ୍ର ଦଣ୍ଡ ଦେଇ ବିରାଜେ ଡାକନ୍ତି ପ୍ରତିହାରୀ ଭୃଙ୍ଗ ।।୩।।

କୁସୁମ ପରାଗ ଧୂଳି ଉଡ଼ିବାରେ ଅନ୍ଧାର କଲା ଦିଗସଂଘ,
ବିଶିଖ ଗଦାନ୍ତ ଉପଳଜ ଛେଳ ଧରି ଜଗିଛନ୍ତି ଓଘ ।
କେତେକ, ମୁକୁଳ ସୁବର୍ଣ୍ଣ ପରିଘ,
ବିରହୀ କରି ବାରଣ କାରଣରେ ବିରାଜୁଅଛି ମାରସିଂହ ।।୪।।

ଏମନ୍ତେ ବସନ୍ତ ପ୍ରବେଶ ହୁଅନ୍ତେ ଦେଖିଣ ଶ୍ରୀରଘୁନନ୍ଦନ,
ପ୍ରିୟା ପ୍ରେମଲୀଳା ଚିତ୍ତରେ ଚିତୋର ହାନିପଡ଼ିଲେ ନିଜଜ୍ଞାନ ।
ଉଠିଣ ଦେଖିଲେ ମାଧବୀ ପ୍ରସୂନ,
ଆମୋଦ ଭରରେ ପୂର୍ଣ୍ଣ କରିଅଛି ଧରାଧର ଧର କାନନ ।।୫।।

ମତ୍ତାଳୀ ମଦଭରେ କରେ ଝଙ୍କାର ହିଶୁଅଛି ଅତି ସୁସଜ୍ଜ,
ମଣିଲେ ରାମ ଏ କାମର ଶିଞ୍ଜିନୀ ଟଂକାର ଶୁଭୁଅଛି ଉଚ୍ଚ ।
ବୋଲନ୍ତି, ପ୍ରିୟେ ଏ ତୋର ସଞ୍ଚ ଉଚ୍ଚ କୁଚ,
ଏ ମୋତେ କମ୍ପାଇ ଭୟଦାତା ହୋଇ ତନୁରେ ରଚୁଛି ରୋମାଞ୍ଚ ।।୬।।

ଛାଡ଼ିବ ଜୀବ ତୋର ବିନୁ ମୃଗାକ୍ଷୀ ଜାଣ ଏ ମୋର ନୋହେ ମିଛ,
ନିରନ୍ତରେ ପ୍ରାଣେ ନେବାକୁ ବସିଲେ କୋକିଳ ବିନୁ କା କୁଛ ।
ସଦାତ, ମଧୁ ଲମ୍ପଟେ ନୋହେ ସ୍ୱଚ୍ଛ,
ଏହୁ କବଚ କଲ ମୋତେ ହରଣ ବାଣ ମୋକ୍ଷରେ ଲକ୍ଷ ଲକ୍ଷ ॥୭॥

ପୁଣି ବୋଲନ୍ତି କୋକିଳକୁ ଅନାଇ ତୁ ଅଟୁ ମୂର୍ଖ ଓଚ୍ଚ ଦ୍ୱିଜ,
ଏହୁ ଅଭଙ୍ଗର ମନ୍ତ୍ର ଜପାଉଛୁ ଜୀବ କି ନେବୁ ମୋର ଆଜ ।
ଏଥିତ୍ରେ, ହୋଇବ ତୋର କିସ କାର୍ଯ୍ୟ,
ବିରହୀ ମାର ପାପ ମୁଣ୍ଡେ ବହିବୁ ଦ୍ୱିଜ କି ପାଇବୁ ତୁ ଲାଜ ॥୮॥

କ୍ଷୀଣବସନା ପ୍ରାଣପ୍ରିୟା ମୋହର ବାସେ ନାହିଁ ତୁମ୍ଭେ ନ ବୁଝ,
ଦ୍ୱିଜ ତୁ ମୁଁ ଜାଣ କ୍ଷତ୍ରିବର ମୋ ସଙ୍ଗେ କରିବୁ କି ଯୁଝ ।
ହେ ଦ୍ୱିଜ, ଆସ ତୁ କି ପାପ ସୁବଝ,
ଯେବେ ପଣ୍ଡିତ ପଣ ଅଛି ତୋହର ସେ ହିଜ ରଣ ଆଜ ଯୁଝ ॥୯॥

ଏହୁ ମଧୁ ପଳାଶ ଏହା ବିଶ୍ୱର ନେଉଅଛୁ ମୋର ଜୀବନ,
ଏଣୁ ସହଜେ ଦସ୍ୟୁଶ୍ରୀନ କୋକିଳ ଏହୁ ତ କାଳର ନନ୍ଦନ ।
ଏ ମଧୁ, ସଙ୍ଗୀ ମଦନ ନିଶାଟନ,
ବିଷ ସଙ୍ଗ ଏହୁ ମଳୟ ପବନ ସହଜେ ଏ ଅଟେ ପିଶୁନ ॥୧୦॥

ତୁ ତ ଦ୍ୱିଜବର ସୁଧାର ଆକର କିମ୍ପା ଦେଉଅଛୁ ସଙ୍କଟ,
ଅମୀୟ କର ବିଷକର କରିଣ କିମ୍ପା ଦହୁଅଛୁ ହୃଦତଟ ।
ସୀତାଂଶୁ, ଶୀତଳ ଖ୍ୟାତ ତୋ ପ୍ରକଟ,
ସ୍ୱୟମ୍ଭୂ ସୁତ ହୋଇ ପ୍ରାଣ ନାଶୁଛୁ ତ ବ୍ରିତ ନୋହୁ କାମ ଭଟ ॥୧୧॥

ହାହାରେ ଚନ୍ଦ୍ରଆନନୀ କେଣେ ଗଲୁ ବସି ମୋ ଥିଲୁ ହୃଦପୀଠ,
ପଲ୍ଲବ ଶଯ୍ୟାରେ ଯାଇ କି ଶୋଇଛୁ ଚରଣ ଧରୁଛି ତୁ ଉଠ ।
ପ୍ରିୟାରେ, ଜୀବ ନେଉଛି କାମଶଠ,
ତୋର ଅଧର ଅମୀୟ ପାନ ଦିଅ ନକର ଏଥେ କ୍ଷଣେ ମଠ ॥୧୨॥

ଆହାରେ ଡ଼ମ୍ବରୁ ମଥା କେଣେ ଗଲୁ ନାଶୁଛି ମୋତେ କାମଷଡ଼,
ଜୀବ ଜୀବନ ମୋତେ ଯେ କାଳୁଥିଲୁ ଗୋଡ଼ାଇ ଆସିଲୁ ଝାଡ଼ ।
ପ୍ରିୟାରେ, ତା ବିନୁ ମୋର ନାହିଁ ବଡ଼,
କାମ ଅନଳ ଦହୁଛି ମୋର ତନୁ ପାରିଲେ ଏହୁ କଷ୍ଟୁ ଫେଡ଼ ॥୧୩॥

୧୨।୨- ୦ସ୍କାରେ୦

ତୋର ସଘନ କୁଚ ହୃଦେ ଲଗାଇ ସ୍ନେହଭରେଣ ଭିଡ଼ ଗାଢ଼,
ଫେର ଟେକଛୁ ଦଂଶିବ କାମ ଅର ପକାଇଗଲୁ ତାର ତଡ଼ି ।
ବାଳାରେ, ଅଧରାମୃତ କର ଦତ୍ତ,
ଆସି ହସି ମୋତେ ଅଳପ ଅନାଇ ମୋ ଅଙ୍କେ କର ଆରତ ॥୧୪॥

ପ୍ରିୟା ଏବେ ଜାଣ ତୋ ବନୁ ପରଶ ଦହୁଅଛି ଟୀକା ମରଣ,
ତା ତନୁ ସମାନ କରିଛି ମୋ ତନୁ ପେଷିଣ ତାର ଚୂତ ବାଣ ।
ବାଳାରେ, ନୁହଁଇ ଏ ଜାଣ ସୁଜାଣ,
ପ୍ରାଣଗଣକୁ କାଟୁଅଛି ଅନଶ ତୋ ବିନୁ ନାହିଁ ମୋର ତ୍ରାଣ ॥୧୫॥

ଦମ ରୁଚ ଶୁଚ ତୋ ବସ୍ତ୍ରର ରୁଚ ରୁଚ କରନାହିଁ ସନ୍ତତ,
ତୋର ମୁଖକୁ ହାର ପାଶେ ନ ଆସେ ସେ ମୋ ନେଉଅଛି ଜୀବତ ।
ବାଳାରେ, ଶୁଚକର ଏହୁ ଶୁଚତ,
ଅତନୁ ତନୁ ସିହୁଛି ଏହୁ ମାର ଟିପେ ଟିପେ କେ ଏ ଦୂଷିତ ॥୧୬॥

କେତକୀ କର୍ଣ୍ଣିକା ତନୁ ମୋ ଉତ୍ତରୀ ତନୁ ପୂରଣେ ମନୋରଥ,
କର ମନେ ତନୁ ତୋ ତନୁ ବହୁନେ ଏଣେ ଦେଖାଏ ସାମରଥ ।
ବାଳାରେ, ଏବେ ଏ ହେଉଛି ଅନର୍ଥ,
ମୋର ଜୀବ ତୋର ସଙ୍ଗତେ ପାଡ଼ଣଥାନ୍ତ ଜାଣନ୍ତ ତୋର ପଥ ॥୧୭॥

ମୋ ଅଙ୍ଗ ବେଗେ କରୁଅଛି ବିଖଣ୍ଡ ମଦ ଭରେ କାମ ଦ୍ୱିରଦ,
ତାଙ୍କୁ ସହି ନ ହେବାରୁ ବଳଆଇ ମୋ ତନୁ ହେଲେ କଲି ଭେଦ ।
ବାଳାରେ, ତୋର କଟାକ୍ଷ ଅନୁଛେଦ,
କର କରୀନ୍ଦ୍ର ଗମନା ଅନୁକ୍ଷଣେ ମାନସ ପଦ୍ମେ କଲା ଖେଦ ॥୧୮॥

ମୁଁ ତ ନ ଜାଣଇ ତୋଠାରେ ପ୍ରିୟରେ କରିଛି କେହୁ ଅପରାଧ,
କାମ ହାତେ ମରଇ ତୋହର ଏଥୁ ବାନ୍ଧବ କେଉଁ ସଧ ।
ବାଳାରେ, ତୁ ମୋର ପରାଣର ଅଧ,
ଦୋଷହୀନ ପ୍ରାଣଧବକୁ ତେଜିଲୁ ନ କଲୁ ମନେ ଅନୁରୋଧ ॥୧୯॥

ଦେଖ କେଶର କୁସୁମ ଗନ୍ଧ ଭର ତୋ ତନୁ ଗନ୍ଧେ ଏ ଶୋଭନ,
ଏ କେଶର କେଶ ପର ଧର ପ୍ରିୟା ମୋଠାରେ ହୋଇଣ ସୁମନ ।
ବାଳାରେ, ଏ ମୋର ନୟନ ନୟନ,
ଦୟିନ୍ମି ବିଶ୍ୱ ମୋହକାରୀ ଜୀବନ ଦେବାରେ ହୁଅ ପରସନ ॥୨୦॥

ତୋ ତନୁ କୁସୁମ ମଞ୍ଜରୀ ମୋ ନେତ୍ର ମଧୁରେ ଲୋଲୁପ,
ନ କରି ପାନ କରି କରୀଗମନୀ ଏବେ ଲଭୁଅଛୁ ସନ୍ତାପ ।
ବାଳାରେ, କରୁଛୁ ମନେ ଅତି କୋପ,
ମୋ ତନୁକୁ ଟିକି ଟିକି କରୁଅଛୁ ପେଷି ମାରଶର କଳାପ ॥୨୧॥

ମୋ ତନୁ କାଟିବାକୁ ନାହିଁ ବିଗ୍ରହ ତୁ ଯେ ଅଛୁ ମୋ ହୃଦ ଗୁମ୍ଫ
ତୋତେ ନକ ବାଜ ଗିଳି ଯାଇଥାଇ ଦୋଷ ନ ଜାଣେ କାମ ରେଫ ।
ବାଳାରେ, ଏହୁ ଶିଲମୁଖ ଦ୍ୱିରେଫ,
କାମ ଦହନ ଦହନ କଲର ଏ ଲଭିବା ଅବା ମାଳ ବାଫ ॥୨୨॥

ସତେ କପି ମୋ ତନୁ ତୋ ତନୁ ଲଭିବ ଏହା କରିବ କି ଦଇବ,
ଦେଇ ଦୁଃଖ ଭାର ସେ କନ୍ଦର୍ପେ ଖଣ୍ଡିବ ଅଭବ୍ୟ ତାହାର ସ୍ୱଭାବ ।
ବାଳାରେ, ସହଜେ ନ ଜାଣେ ସେ ଭାବ,
ଭାବବନ୍ତ ପ୍ରିୟା ଅଭାବ କରଇ ଜାଣି ଛେଦିଲା ଉମାଧବ ॥୨୩॥

ଅଚିର ଭାବ ଶର କଲା ମୋହର ଜଣେ ହୋଇଥିଲା ସୁଲଭ,
ଯେହୁ ମୋର ହୃଦ ତଟ ତୁ ନ ଚେତୁ ସେ ମୋ ହେଲୁ ଦୁର୍ଲଭ ।
ବାଳାରେ ଏଥୁ ମୋହର କିସ ଲଭ,
ଅଶୁଭ କ୍ଷଣ କରିବ ଫୁଲ ଧନୁ ମୁଖୁଁ ରଖ ଉମା ବଲ୍ଲଭ ॥୨୪॥

ପ୍ରଚଣ୍ଡ ତପନସୂନ ଦେଖ ପ୍ରିୟେ ଏବେ ଏ ହେଲା ମୋର ଯମ,
ଜୀବ ହରଣେ ହୋଇଛୁ ଉଦତ କରେ ଯେ ମୋର ଜୀବଭ୍ରମ ।
ବାଳାରେ, ଜଗତ କରୁଛୁ ବିଭ୍ରମ,
ତୁ ଏବେ ମୋତେ ଏ କାଳମୁଖେ ଦେଇ କାହିଁ ରହିଲୁ ହୋଇ ଶ୍ୟାମ ॥୨୫॥

ଦାବଦବଦାବ କରୁଛି ଅଭାବ ଦହୁଛି ଏ ଗିରି ଚୟ,
ମୋ ତନୁ ଅତନୁ ବନରେ ହେମନ୍ତ ଅନଙ୍ଗ ସୂଚୀ କରେ ରୟ ।
ବାଳାରେ, ତୁ ସର୍ବ ଗୁଣର ଆଳୟ,
ବଚନ ଅମିୟ ଦାନେ ଶାନ୍ତକର ତୁ ଅଟୁ ସଦୟ ହୃଦୟ ॥୨୬॥

ତୃଷାର୍ତ୍ତୀ ମୋ ମନ ମୃଗର ମୃଗାକ୍ଷୀ ହୋଇଲୁ ତୁ କି ମୃଗନୀର,
ଅନବରତେ ଭ୍ରମରେ ଭ୍ରମ ହୋଇ ମଣୁଅଛୁ ଜଳପୂର ।
ବାଳାରେ, ବିହି ଅଟଇ ନିଶାଚର,
ତୋତେ ହରିନେଇ ମୋ ପ୍ରାଣ ଖାସ୍ତବ କରିବାକୁ କଲା ବିସ୍ତର ॥୨୭॥

ଚପଳଚପଳ ତାପରେ ଉପୁକର ଭ୍ରମନ୍ତି କୁଣ୍ଡଳ ମଣ୍ଡଳ,
ଝପୁ ଉପୁ ଚୂଡ଼ ଶିଖିମା ମଣ୍ଡଳୀ ସଙ୍ଗତେ ହୋଇଛନ୍ତି ମେଳ ।
ଶିଖିମା, ରବ କର ତାପେ ଆକୁଳ,
କୁଣ୍ଡଳୀ କୁଣ୍ଡଳୀ ସେ ଉପୁଦାୟୀ ନୋହେ ହୋଇଅଛି ତୃଷା ବହ୍ୱଳ ।।୨୮।।

ଜୀବନ ଆଶାରେ ଜୀବନ ପାଇଁ ସେ ଭ୍ରମୁଛନ୍ତି କଣ୍ଠୀରବ,
ସନ୍ତାପିତ ଡରେ ଆସକତ ହୋଇ କରୁ ନାହାନ୍ତି ଆଉ ରବ ।
ସଙ୍ଗାତ, ପତଙ୍ଗ ଲଭେ ମୂଢ଼ଭାବ,
ହରିଣ ହରିଣୀ ନିରନ୍ତରେ ନୀର ଖୋଜି ତେଜିଲେ କେଳିଭାବ ।।୨୯।।

ଏ ଋତୁକୁ ଦେଖି ସହରଷ ହୋଇ କ୍ଷଣେ ହେଁ ନ ତେଜୁ ମୋ ପାଶ,
ସଚନ୍ଦ୍ର ଚନ୍ଦନ ମୋ କରେ ଦେଇଣ ଲେପୁଥାଇ ତୋ କୁଚ ଦେଶ ।
ସଙ୍ଗାତ, ହେଲି ମୁଁ ଏବେ କାମବଶ,
ଯେବେ ତୁ ମୋର ପାଶେ ଥିଲୁ ରମଣୀ ମୋର ଯେ ହୋଇଥିଲି ଦାସ ।।୩୦।।

ସ୍ନେହ ଅନୁରାଗ ବେନି ମିଶାଇଣ ମୋତେ ମାଗୁଥାଉ ସୁରସ,
ମୁଁ ହସି ଚୁମ୍ବ ଆଲିଙ୍ଗନ ମାଗନ୍ତେ ହଉ ଅଳପ ହସହସ ।
ପ୍ରିୟାରେ, କେ ଜାଣିବ ମୋର ସରସ,
ତୋ ବିନା ବିନା କାମେ ଏବେ ଅତନୁ ତନୁ କରୁଛି ଅବଶେଷ ।।୩୧।।

ମୋର ପ୍ରୀତିଭାବେ ମଗ୍ନ ହୋଇଥାଉ ନୟନେ ନ କରି ନିମିଷ,
କ୍ରୀଡ଼ା ଅନୁରାଗେ ତୋ ଭୁଜ ଲତିକା କରିଥାଉ ମୋ କଣ୍ଠଦେଶ ।
ପ୍ରିୟାରେ, ତେଜିବ ଏବେ ସେ ରସ,
କାମ ରୋଷକୁ ହୃଦେ ଠାବ ନାହିଁ ତୁ ପୁଣି କରିଅଛୁ ରୋଷ ।।୩୨।।

ହାହାରେ ହରିଣ ନୟନା ବିମନା ଏବେ ହୋଇଲାଣି ଦୁଃସହ,
ନିମିଷରେ ହସି କହୁଥିଲୁ ଯାହା ଏବେ ହସି ସେ ଦୟାବହ ।
ହାହାରେ, ଶମ୍ଭୁ ତୋର ସେହୁ ରବ,
ଆସି ନିଜ ମୁଖ ହୋଇତ ରହିଲୁ ଦମି ବାଣୀ ମୋରେ ନହ ।।୩୩।।

ଶ୍ରୀରାମ ବିଳାସ ଏକତ୍ରିଂଶ ଛାନ୍ଦ ମନ ଦେଇଣ ଶୁଣ ଦକ୍ଷ,
ବର୍ଣ୍ଣାବଳି ରସୋଦ୍ଭବ ଋତାଗମ ପବନ ଭାବରେ ଏ ଅଛ ।
ଶ୍ରୀରାମ, ପାଦପଙ୍କଜ କରି ଲକ୍ଷ୍ୟ,
ନୃପତି ଧନଞ୍ଜୟ ଭଞ୍ଜ ଭଣିଲେ କମଳାପତି ରକ୍ଷ ରକ୍ଷ ।।୩୪

# ଦ୍ୱାତ୍ରିଂଶ ଛାନ୍ଦ

## (ରାଗ—କେଦାର)

ଏଥି ଅନନ୍ତରେ ଶୁଣ ସୁଜନ । ରାମ ଦେଖିଲେ ସର୍ବ ଋତୁଗଣ ॥୧॥
ସୀତା ଠାବରେ ଚିତ୍ତ ନିବେଶିଣ । କଷ୍ଟ କଷ୍ଟରେ ନେଲେ କେତେଦିନ ॥୨॥
ଭାଇ ବୋଲନ୍ତି ଦେଖ ସଉମିତ୍ରୀ । ପଙ୍କ ଆବିଳ ତେଜିଲା ଧରିତ୍ରୀ ॥୩॥
ଆମ୍ଭ ବିଷୟୁ ବିଳମ୍ବ ବିଧାନ । କଲା ମୈତ୍ରୀ ସୁଗ୍ରୀବର ରାଜନ ॥୪॥
ତୁମ୍ଭେ ତାଙ୍କ ସମୀପକୁ ଗମିଣ । କହ ବେଗେ ଆଣ ସେ କପିଗଣ ॥୫॥
ରାଜ ସମ୍ପଦେ ହୋଇଅଛି ମତ୍ତ । ମୋର ଦୁଃଖ ତ ନ ଚିହ୍ନିଲା ମିତ ॥୬॥
ବୋଲଅଛି କରିବ ଉପକାର । ତାହା ଏଥେ ନ ଦିଶିଲା ତାହାର ॥୭॥
ରାମ ଯେସନ ଆଜ୍ଞା ସେ ଲକ୍ଷ୍ମଣ । ବୀର ଧଇଲା କରେ ଧନୁବାଣ ॥୮॥
ବେନି ତୂଣୀର କଟିତଟେ ଛନ୍ଦି । କାମେ ଚନ୍ଦ୍ରହାସକୁ ବେଗେ ବାନ୍ଧି ॥୯॥
ରାମ ଚରଣେ ପ୍ରଣାମ କରିଣ । ବେଗେ କଲେ କିଷ୍କିନ୍ଧାକୁ ଗମନ ॥୧୦॥
ଯାନ୍ତେ ଅତି ପ୍ରଖରେ ପାଦଗତି । ବେଗେ ମାକ୍ଷିଗଣେ ପଛେ ଗୋଡ଼ାନ୍ତି ॥୧୧॥
କର୍ମି ବାରେ ବରଷନ୍ତି କୁସୁମ । ତେଣେ ଦିଶେ ସଉମିତ୍ରୀ ସୁଷମ ॥୧୨॥
କେତେବେଳେ ଅନ୍ତରେ କିଷ୍କିନ୍ଧାରେ । ଯାଇ ପ୍ରବେଶ ହୋଇଲେ ସଧୀରେ ॥୧୩॥
ପୁର ଦିଶଇ ଅତ୍ୟନ୍ତ ଶୋଭନ । ଯେହ୍ନେ ଦିଶେ ବାରସ୍ପତ ଭୁବନ ॥୧୪॥
ଶିରେ ଶୋଭିତ ସୁବର୍ଣ୍ଣ କଳସ । ଚୀର କେତନ ଉଡ଼େ ନଭଦେଶ ॥୧୫॥
ବରହର ଲକ୍ଷଣ ସୌଧପୁର । ସୁଧା ଲେପନେ ଦିଶେ ମନୋହର ॥୧୬॥
ମଣିମୟୂ ବାତାୟନେ ରଞ୍ଜନ । ଭିତ୍ତିଗଣ ଗଜଦନ୍ତେ ରଚନ ॥୧୭॥
ଦେଖି ପ୍ରଶଂସା କରନ୍ତି ଲକ୍ଷ୍ମଣ । ଧନ୍ୟ ଧନ୍ୟ ପୁରବର ଶୋଭନ ॥୧୮॥
ଏହା ଦେଖି ଅଯୋଧ୍ୟା ମନୁଗଲା । ବିଶ୍ୱକର୍ମା କୁଶଳେ ନିର୍ମାଣିଲା ॥୧୯॥
ଏଡୁ ପୁର ସେ ଯାହାରେ ପ୍ରାପତ । ତାକୁ ମନେ ନକଲା ରବିସୁତ ॥୨୦॥
ଦେଖି ରାଜମଦ ଏଡ଼େ ଅସାର । ଯେଣୁ ପାସୋରିଲା ସେ ଉପକାର ॥୨୧॥
ଏତେ ମନେ ବିଚାରିଣ ଲକ୍ଷ୍ମଣ । ଉଭା ହେଲା ଯାଇ ପୁର ଦ୍ୱାରେଣ ॥୨୨॥
ପ୍ରତିହାରୀକ ରହିଁଣ କହନ୍ତି । ରାଜା ଆଗେ କହ ତୁମ୍ଭେ ତଡ଼ିତ ॥୨୩॥

ରାମ ପାଶୁ ଆସିଅଛୁ ସୁମିତ୍ରୀ । ଯାହା ସଙ୍ଗେ କରଣ ଅଛୁ ମୈତ୍ରୀ ॥୨୪॥

ରଘୁବୀର ବାଣୀରେ ପ୍ରତିହାର । ବେଗେ ଚଳିଲ କପିରାଜପୁର ॥୨୫॥

ଦେଖି ସିଂହାସନେ ଅଛୁ ନୃପତି । ବେଢ଼ି ବସିଅଛନ୍ତି ବୀରମନ୍ତ୍ରୀ ॥୨୬॥

ଖଣ୍ଡେ ଦୂରହୁଁ ପ୍ରଣମିତ କଲା । ବେନପାଣି ଶିରେ ଦେଇ କହିଲା ॥୨୭॥

ହେ ଦେବ ହୋଇବା ସାବଧାନ । ସିଂହଦ୍ୱାରେ ରହିଛନ୍ତି ଲକ୍ଷ୍ମଣ ॥୨୮॥

ରାମ ଆଦେଶ ଘେନିଛନ୍ତି ଆସି । ଶୁଣି ଉଠିଲା ଦିବାକର ଶଶୀ ॥୨୯॥

ସଙ୍ଗେ ସକଳ ମନ୍ତ୍ରୀଗଣ ଘେନି । କଛି ଭକ୍ତିଭରେ ସେ କପିମଣି ॥୩୦॥

ପୁରଦ୍ୱାରେ ଲକ୍ଷ୍ମଣଙ୍କୁ ଦେଖିଣ । ଷଡ଼ଅର୍ଘ୍ୟେ ପୂଜିଣ ତତକ୍ଷଣ ॥୩୧॥

ଆଲିଙ୍ଗନ କରିଣ ବାଣୀ କହି । ଦିବ୍ୟ ଆସନେ ବସାଇଲା ନେଇ ॥୩୨॥

ପୁଣି ବୋଲଇ ଶୁଣିମା ସୁମିତ୍ରୀ । ଆଜ ହୋଇଲା ମୋ ପୁର ପବିତ୍ରୀ ॥୩୩॥

ଆଜ ଦିବସ ହେଲା ମୋର ଧନ୍ୟ । କେତେ କରି ବା ଥିଲି ମୁହିଁ ପୁଣ୍ୟ ॥୩୪॥

ତେଣୁ ଦେଖିଲି ତୁମ୍ଭର ବଦନ । ତୁମ୍ଭେ ଅଟ ରଘୁନାଥ ସମାନ ॥୩୫॥

କିସ ଆଜ୍ଞା ଆଣିଛ ତୁମ୍ଭେ ଘେନି । ମୋର ଆଗେ କହ ସେହୁ ସୁବାଣୀ ॥୩୬॥

କପିବର ମୁଖୁଁ ଶୁଣି ବଚନ । ହସି କହନ୍ତି ସୁମିତ୍ରା ନନ୍ଦନ ॥୩୭॥

ତୁମ୍ଭ ତହୁଁ ନାହିଁ ନା ମହାଭାଗ୍ୟ । ହେଲା ଚରିତ କଲ ଏବେ ଆଗ ॥୩୮॥

ମୁହିଁ ଜାଣିଲି ତୁ ଅଟୁ ମୂରୁଖ । ଯହୁଁ ଲଭିଲୁ ତୁ ଯେ ରାଜସୁଖ ॥୩॥

ସେହୁ ରାମ ମନେ ତୋ ନ ପଡ଼ିଲା । ଯାହା କାଣ୍ଡରେ ବାଳି ବୀର ମଲା ॥୪୦॥

ଏହା ଶୁଣି କମ୍ପିଲା ସୁଗ୍ରୀବର । ମୁଖୁଁ ନ ଆସଇ କିଛି ଉତ୍ତର ॥୪୧॥

କ୍ରୋଧେ ଅତି ପ୍ରଜ୍ୱଳିତ ଲକ୍ଷ୍ମଣ । ନେତ୍ର ଉଦୟ କାଳର ଅରୁଣ ॥୪୨॥

ତାଙ୍କ କ୍ରୋଧ ଦେଖିଣ ମନ୍ତ୍ରୀଗଣ । କେହି ନ କହଇ ଡରେ ବଚନ ॥୪୩॥

ଅନ୍ତଃପୁରୁ ବାହାର ତାରାଦେବୀ । ନିଜ କାନ୍ତ ଶୁଭକୁ ମନେ ଭାବି ॥୪୪॥

ଅର୍ଘ୍ୟଥାଳି ହସ୍ତରେ ଘେନିକରି । ପୁରବରୁ ବାହାରଇ ଚତୁରୀ ॥୪୫॥

ଆସି ଲକ୍ଷ୍ମଣ ସମୀପେ ମିଳିଣ । ପୂଜା କଲା ଯଥାବିଧି କରିଣ ॥୪୬॥

ବୋଲେ ଶୁଣିବା ଏବେ ବୀରବର । ତୁମ୍ଭେ ବୋଲଇ ଅତି ଅବିଚାର ॥୪୭॥

ଯାହା କରିଣଥାନ୍ତି ବଡ଼ଲୋକେ । ତା କି ବୋଲୁଥାନ୍ତି ନିଜ ମୁଖେ ॥୪୮॥

ତୁମ୍ଭେ ତ୍ରୈଲୋକ୍ୟର ଅଟ ଠାକୁର । ସବୁ କଥା ହୋଏ ତୁମ୍ଭ ଆଜ୍ଞାର ॥୪୯॥

ଯମ କୁବେର ବରୁଣ ସୁରେଶ । ଏହି ସମସ୍ତି ଅଟଇ ବିଶେଷ ॥୫୦॥

ଏହା ତୁମ୍ଭେ ହେ ମିନା ଦେଇଅଛ । ଏବେ ହୋଇଛ ଦଶରଥ ବଶ୍ୟ ॥୫୧॥
କପିକିନ୍ଧ୍ୟା ହୋଇ ଯେଉଁ କନ୍ଦର । ତହିଁ କରିଛ କପି ନୃପବର ॥୫୨॥
ଏହା ତୁମ୍ଭର କହି ନ ଯୋଗାଇ । ରାମ ସମାନେ ସୁଗ୍ରୀବର ଭାଇ ॥୫୩॥
ଏବେ ଯେବେ ସେ କଲା ଅପରାଧ । ମନେ କିମ୍ପା ଧରିଅଛ ବିରୋଧ ॥୫୪॥
ଯେହୁ ବିଷଗଛକୁ ପାଳି ଥାଇ । ତାହା ଛେଦ କି ସେହୁ ବଗୁରଇ ॥୫୫॥
ଏହାଠାରେ ହୋଇବା ପରସନ । ଏହି ନୋହନ୍ତୁ ଅଣଅବଧାନ ॥୫୬॥
ଦୂତ ପେଷି ଅଛଇ ସର୍ବଦେଶ । ନିକଟରେ ମିଳିବେ କପିଈଶ ॥୫୭॥
ଏହୁ ନିକ ଏ ରାଜନ ପୟାଣ । ତୁମ୍ଭ ଅବା ଏଥେ କିସ ନଜାଣ ॥୫୮॥
କାଳ ନୋହୁଛି ଏବେ ଉତକ୍ରମ । ଏହାଠାରେ ତୁମ୍ଭର ତୋଷ ଧର୍ମ ॥୫୯॥
ତାରବାଣୀ ଶୁଣିଣ ରଘୁମଣି । କିଛି ଲଜ୍ଜା ଲଭିଣ କହେ ବାଣୀ ॥୬୦॥
ରାମ ବେଦନା ନୟନେ ଦେଖିଣ । ତେଣୁ ବୋଇଲି ମୁଁ ଏହୁ ବଚନ ॥୬୧॥
କ୍ରୋଧ ବୋଲିଣ ନାହିଁ ଏହୁ ବାଣୀ । ଚିତ୍ତ ଥିର କର ଶୁଣ ସୁଶ୍ରୋଣି ॥୬୨॥
ତାର ବଚନେ ତୋଷ ସଉମିତ୍ରୀ । ଦିବ୍ୟପୁରେ ବଞ୍ଚିଲେ ସେହୁ ରାତ୍ରି ॥୬୩॥
ନିଶି ଅନ୍ତେ ଉଦେ ହେଲା ସବିତା । ସୁଗ୍ରୀବର ଲଭିଲା ମନେ ଚିନ୍ତା ॥୬୪॥
ଏହୁ ସମଏ ପରବେଶ ଦୂତ । ରାଜା ସମ୍ମୁଖରେ କହେ ଯୋଡ଼ି ହସ୍ତ ॥୬୫॥
ଦେଶ ବିଦେଶ ସର୍ବ କପିବୀରେ । ତୋର ଆଜ୍ଞାରେ ମିଳିଲେ ସତ୍ୱରେ ॥୬୬॥
ଶୁଣି ରବି ସୁତ ତୋଷ ହୋଇଲା । ଯାଇ ଲକ୍ଷ୍ମଣ ସମ୍ମୁଖରେ କହିଲା ॥୬୭॥
ଦେବ ପ୍ରବେଶ ହେଲେ କପିସୈନ୍ୟ । ଦେଖି ମୂରୁଛି ଅବନୀ ଗଗନ ॥୬୮॥
ଏବେ ବିଜେ କରିବା ରଘୁରାଣ । ଯାଇ ଦେଖିବା ଶ୍ରୀରାମ ଚରଣ ॥୬୯॥
ଏତେ ବୋଲି ଆରୋହି ଦିବ୍ୟଯାନ । ସଙ୍ଗେ ଘେନି ସୁଲକ୍ଷଣ ଲକ୍ଷ୍ମଣ ॥୭୦॥
ଧୀରେ ଧୀରେ ଗମନ କରିଆନ୍ତି । ଆଗେ ପଛେ କପିବୀରେ ଅଛନ୍ତି ॥୭୧॥
ମାଲ୍ୟବନ୍ତେ ହୋଇଲେ ପରବେଶ । ଖଣ୍ଡେ ଦୂରୁ ଦେଖିଣ ରଘୁଶିଷ ॥୭୨॥
ରଥ ଶିବିକାରୁ ବେଗେ ଓହ୍ଲାଇ । ହସ୍ତ ଧରାଧରି ସେ ବେନିହୋଇ ॥୭୩॥
ରାମ ଚରଣେ କଲେକ ଦର୍ଶନ । ଉଭା ହେଲେ ହୋଇଣ ଅବଧାନ ॥୭୪॥
ଦେଖି କପିବର ନତ ବଦନ । ଉଠିଣ କଲେ ରାମ ଆଲିଙ୍ଗନ ॥୭୫॥

ବୋଲେ ଶୁଣିମା ତପନ ନନ୍ଦନ । ମିତ୍ର କାର୍ଯ୍ୟରେ ତୁମ୍ଭେ ସାବଧାନ ॥୭୬॥
ଏହୁ ଅଟଇ ଦଇବ ଘଟିତ । ଶୁଭ କାର୍ଯ୍ୟରେ ବିଘ୍ନ ହୋଏ ଜାତ ॥୭୭॥
ରାମ ବଚନ ଶୁଣି କପିପତି । ଶୁଣି ପାଦେ ପ୍ରଣାମ କରି ଧାତି ॥୭୮॥
ବୋଲେ ଶୁଣିମା ହେ ରଘୁନନ୍ଦନ । ଦେଖ ଆଣିଛୁ ମୁହିଁ ଏତେ ସୈନ୍ୟ ॥୭୯॥
ଏକେ ଏକେ ବୀରମାନେ ପ୍ରଚଣ୍ଡ । ଯେହ୍ନେ ଆସିଅଛନ୍ତି ଯମଦଣ୍ଡ ॥୮୦॥
ଦେଖ ସୁଷେଣ ନାମେ ଏହୁ ବୀର । ପାରିଯାତ୍ର ପର୍ବତେ ଏହା ଘର ॥୮୧॥
କୋଟି କୋଟି ସିଂହର ଏହା ବଳ । ଏହୁ ହେଲେ ଜିଣିଛୁ ଭୂ ଅତଳ ॥୮୨॥
ଯେବେଳେ ଜିଣିଛୁ ଦିଗଦନ୍ତୀଗଣ । ଜାଣ ଏହୁ ଧନ୍ୱନ୍ତରି ନନ୍ଦନ ॥୮୩॥
ଏହୁ କେଶରୀ ହନୁମନ୍ତ ପିତା । ବଳେ ଅଟଇ ଏହୁ ଅପ୍ରମିତା ॥୮୪॥
ସୁର ଗିରିରେ ଏହାର ମନ୍ଦିର । ଏହୁ ଆସିଛୁ ତୁମ୍ଭର କାର୍ଯ୍ୟର ॥୮୫॥
ଏହା ରୂପେ ଅଛନ୍ତି କୋଟିକୋଟି । ତାହା ଚହ୍ନାଇ ଦେଲେ ଗୋଟିଗୋଟି ॥୮୬
ଏହା ଦେଖି ରଘୁବୀର ଆନନ୍ଦ । ମୁଖ ବିକାଶେ ଯେତେ ପୂର୍ଣ୍ଣଚନ୍ଦ୍ର ॥୮୭॥
ମନେ ବିଚାର କରେ ରଘୁମଣି । ନିଶ୍ଚେ ମରିବ ପାପିଷ୍ଠ ରାବଣ ॥୮୮॥
ଯାହା ସେ କହିଥିଲି ମିତ୍ରବର । କଲି କାଳେ ସେହି ରୂପେ ବିଚାର ॥୮୯॥
ଏହୁ ଶ୍ରୀରାମ ବିଳାସ ବତିଶ । ଛାନ୍ଦ ସେ ହେଲା ଶୁଣ ସୁରେଶ ॥୯୦॥
ସେହି ଶ୍ରୀରାମ ପାଦେ ନିତ୍ୟ ଧ୍ୟାୟି । ନୃପ ଧନଞ୍ଜୟ ଭଞ୍ଜ ଭଣଇ ॥୯୧॥

●

# ତ୍ରୟସ୍ତ୍ରିଂଶ ଛାନ୍ଦ

## ରାଗ—କନଡ଼ା

ଏଥୁ ଅନ୍ତରେ ସୁଗ୍ରୀବର ବାଣୀ
ଶୁଣିଣ ସେ ରଘୁନନ୍ଦନ,
ଜଳ ଦେଖି ହେଲେ ତୋଷମନ ।
ବୋଲନ୍ତି ଧନ୍ୟ ଧନ୍ୟ ତୁ କପିରାଜ
ଭଲ ପାଳନ୍ତୁ ଏତେ ସୈନ୍ୟ ହେ, ସଙ୍ଗାତ ।।୧।।

ଏବେ ଯେଉଁ କଥା ଆମ୍ଭର ବାଞ୍ଛିତ
ତାହା କର ତୁମ୍ଭେ ବହନ,
ମିତ୍ର ଉପକାରେ ତୁମ୍ଭେ ସୁଜାଣ ।
ଜନକ ନନ୍ଦିନୀ ମାର୍ଗଣ ନିମନ୍ତେ
ପେଷିବା ଦୂତ ଚତକ୍ଷଣ ହେ, ସଙ୍ଗାତ ।।୨।।

ରଘୁନାଥ ବାଣୀ ଅମୀୟୁ କର୍ଣ୍ଣରେ
ପାନ କରି ରବି ନନ୍ଦନ,
ମନ ହୋଇଲା ଅତ୍ୟନ୍ତ ପ୍ରସନ୍ନ ।
ରବିକର ଲାଗି ଯେସନେ ଆନନ୍ଦ
ଲଭେ ପଙ୍କଜ କାନନ ସେ, ସୁଗ୍ରୀବ ।।୩।।

ଯୂଥପତିମାନେ ଡାକିଣ ବୋଲନ୍ତି
ସର୍ବଦିଗେ କର ଗମନ,
ଖୋଜ ନଗର ଅରଣ୍ୟ କାନନ ।
ପୁଷ୍ପ ମଣ୍ଡି ଗୁଳ୍ମ ଲତାଙ୍କ ଉଦରେ
ଯେହୁ ରାବଣର ପୁରମାନ ହେ, ଯୂଥପ ।।୪।।

କେଉଁଠାରେ ଥିବ ଜନକ ନନ୍ଦିନୀ
ଲୁଚାଇ ସେହୁ ନିଶାଚର,
ଯେ ସେ ମାୟାବୀମାନଙ୍କ ଈଶ୍ୱର ।
ନାକ ନାଗ ଲୋକ ଅବନୀ ମଣ୍ଡଳ
ସବୁ କରନ୍ତି ଅତି ଆକୁଳ ସେ, ରାବଣ ।।୫।।

ତାହାର ଜନକ ସୁଷେଣଙ୍କୁ ଡାକ
ମଧୁର କହେ ସୁଗ୍ରୀବର,
ବେନି କରଯୋଡ଼ି ଶିର ଉପର ।
ବୋଲନ୍ତି ରାମ ପତ୍ନୀ ତୁମ୍ଭେ ଖୋଜିବ
ଉଦୀଚ ଦିଗେ ସତ୍ଵର ହେ, ରାଜନ ।।୬।।
ମହୀନ୍ଦ୍ର ଦ୍ବିବିଦ ବେନି ବୀର ଡାକ
ପୁଣି ବୋଲନ୍ତି ହସିବାଣୀ,
ତୁମ୍ଭେ କୁଳ ବୀର ଅଗ୍ରଣୀ ।
ମହେନ୍ଦ୍ର ଦିଗେ କର ବେଗେ ଗମନ
ଖୋଜ ରାମ ପାଟରାଣୀ ହେ, ସେନାନି ।।୭।।
ସଭର ଶତ ବଳ ବେନି ବୀରଙ୍କୁ
ଆଲିଙ୍ଗନ କରି କହନ୍ତି,
ତୁମ୍ଭେ ଯୂଥପତିଙ୍କ ଯୂଥପତି ।
ପ୍ରାଚୀ ଦିଗର କର ତୁମ୍ଭେ ଗମନ
ଖୋଜ ରାବଣ ଦୁର୍ମତି ହେ, ସେ ନାରୀ ।।୮।।
ବାଳି ତନୟ ଅଙ୍ଗଦ କୁମରଙ୍କୁ
ଡାକିଣ କହନ୍ତି ବଚନ,
ବାବୁ ତୁମ୍ଭେ ତ ସହଜେ ସୁଜାଣ ।
ରାମ କାର୍ଯ୍ୟ ତୁମ୍ଭେ କର ତତକ୍ଷଣ
ଗମ ଯେ ଦିଗ ଦକ୍ଷିଣ ହେ, କୁମର ।।୯।।
ସଙ୍ଗତେ ଜାମ୍ବବ ହନୁମନ୍ତ ବୀର
ନୀଳ, ନଳ, ଗବୟ, ଗବାକ୍ଷ,
ଦକ୍ଷ ଦକ୍ଷେ ଅଟନ୍ତି ସର୍ବଦକ୍ଷ ।
ବଳବନ୍ତ ପଣେ ଏ ତିନି ଭୁବନେ
ପାରେ ନାହିଁ ସମକକ୍ଷ ହେ, କୁମର ।।୧୦।।
ସୀତାଙ୍କୁ ନ ଦେଖି ଯେବେ ନ ବର୍ତ୍ତିବ
ମାସକ ଭିତରେ ପ୍ରାଣ,
ଏଥୁ ବଳିଲେ ଦଣ୍ଡ ଦେବ ଜାଣ ।
ଏକଥା ବିଚାରି ଏକ ଆରକରେ
କରିବା ବେଗେ ପ୍ରୟାଣ ହେ, ଯୂଥପ ।।୧୧।।

---

୧୧।୧ ଭ- ୦ନ ବଞ୍ଚିବ
୧୧।୨ ଙ- ୦ପ୍ରମାଣ
୧୧।୪ ଙ- ୦ଏ କଥାରୁ କଲେ

ରାଜା ଆଜ୍ଞା ଶିରେ   ଘେନଣ ତତ୍‌କ୍ଷଣ
ବାହାର ହେଲେ ବୀରମାନ,
ବନଷଣ୍ଡରେ ଗମିଲେ ତତକ୍ଷଣ ।
ଏହି ସମୟରେ   ହନୁକୁ ଡାକଣ
କହନ୍ତି ସେ ରଘୁମଣି ହେ, ସୁଜନ ॥୧୨॥

ଏକାନ୍ତକୁ ନେଇ   ଅନେକ ପ୍ରଶଂସି
ବୋଲନ୍ତି ଶ୍ରୀରାମ ବଚନ,
ଏକ ମନେ ଶୁଣ ପ୍ରାଣ ନନ୍ଦନ ।
ଆହେ ଅବଶ୍ୟ   ଭେଟିବ ମୋର ପ୍ରିୟା
ତୁ ମୋର ପ୍ରାଣ ସମାନ ହେ, ମାରୁତି ॥୧୩॥

ଘେନ ଏହୁ ମୋର   କରର ମୁଦ୍ରିକା
ନାମାକ୍ଷରେ ମୋର ଅଙ୍କିତ,
ସୀତା ତେବେ ସେ କହିବ ଉଦନ୍ତ ।
ଦେଖିନାହୁଁ ତାଙ୍କୁ   କେମନ୍ତେ ଜାଣିବୁ
କହିବା ଏକ ସଙ୍କେତ ହେ, ମାରୁତି ॥୧୪॥

ପୂର୍ବେ ଚିତ୍ରକୂଟେ   ଏକାନ୍ତରେ ବସି
କସ୍ତୁରୀ ମାଂସ ଶୁଖାଇ,
ଇନ୍ଦ୍ରସୁତ କାକ ତହିଁ ମିଳଇ ।
ଆହେ ମୂଢ଼ମତି   ବିଭ୍ରମ ହୋଇଲା
ଜାନକୀର ମୁଖ ଚୁମ୍ବିଁ ସେ, ମାରୁତି ॥୧୫॥
ଚରଣ ନଖ ଘେନ   କରି ସୀତାୟା
ବାମ କୁଚେ କଲା ପ୍ରହାର,
ତେଣୁ କ୍ଷତ ଜାତ ଧାତୁକାର ।
ଆରେ ପ୍ରିୟ ମୋର   ଏତେ ନ ସହିଲି
ପେଷିଲି କାଇଁଶିକା ଶର ହେ, ମାରୁତି ॥୧୬॥

---

୧୨।୧ ଖ- ୦ଆଜ୍ଞାରେ ତତ୍‌କ୍ଷଣ ବାହାର
୧୨।୨ ଖ- ହେଲେ ସର୍ବ୦
୧୨।୩ ଖ- ୦ମିଳିଲେ୦
୧୩।୪ ଖ- ଆହେ ତୁମ୍ଭେ୦
୧୪।୧ ଖ- ୦କର ମୁଦ୍ରିକାକୁ
୧୪।୪ ଖ- ୦ଜାଣିମୁ କହିବା
୧୪।୫ ଖ- ଯେକ ସଙ୍କେତ୦
୧୫।୪ ଖ- ୦ଅତି ବିଭ୍ରମ୦
୧୫।୫ ଖ- ସୀତେଙ୍କର୦
୧୬।୩ ଖ- ୦ସେ ପ୍ରତିକାର
୧୬।୪ ଖ- ଆରେ ପ୍ରିୟତମା ଏତେକ ନସହିଲ
୧୬।୫ ଖ- ପେଷିଲଇସିକ୦

ସେହୁ ବ୍ରହ୍ମାଣ୍ଡେ ସ୍ଥାନେ ସ୍ଥାନେ ଭ୍ରମିଣ
ସ୍ଥାନ ନ ପାଇଲା ବାୟସ,
ବେଗେ ଗମିଲା ସେହୁ ବ୍ରହ୍ମା ପାଶ ।
ତାର ପଛେ ମୋର ଶର ଗୋଡ଼ାବନ୍ତେ
ଲଭିଲେ ସକଳେ ତ୍ରାସ ସେ, ମାରୁତି ॥୧୭॥

ସେ ପୁଣି ଅନ୍ତ କାର୍ପଣ୍ୟ ହୋଇ ସୀତା
ଚରଣେ ଶରଣ ପଶିଲା,
ମୋତେ ହସି କମ୍ବାଧରୀ ଭଷିଲା ।
ଆହେ ଏହା ରକ୍ଷଣ କରବା ମହାବାହୁ
ଏହୁ ମନ୍ଦ ନ ଜାଣିଲା ହେ, ବାନ୍ଧବ ॥୧୮॥

ମୁହିଁ ବୋଇଲି ଶୁଣରେ ପ୍ରାଣପ୍ରିୟା
ବୃଅର୍ଥ ମୋ ଶର ନୁହଇ,
ଏକ ଅଙ୍ଗ ଏ ଦେଉ ପ୍ରାଣ ସହି ।
ତୋର କୃପାଲୋକ କଟାକ୍ଷ ଯାଉ
ଏହା ତନୁ ନୋହୁ ଦହରେ, ସୁନ୍ଦରୀ ॥୧୯॥

ଏହା କହିବୁ ତୁହି ପ୍ରାଣ ବଲ୍ଲଭୀ
ଶୁମୁରେ ମୋର ହେ ପାବେନ,
ତେବେ ପ୍ରତେ ପାଇବ ମୋ ଭାବନା ।
ଯାଅ ତୋର ପଥେ ଶୁଭ ହେଉ ବୀର
ପଥେ ରକ୍ଷୁ ଚକ୍ରପାଣି ହେ, ମାରୁତି ॥୨୦॥

ଏହି ସମୟରେ ବାଳିର ନନ୍ଦନ
ସକଳ ସେନାପତି ସେନ,
ସଙ୍ଗେ ଅଛନ୍ତି ତା ନଳ ନଇନ ।
ଆହେ ସୁଗ୍ରୀବରକୁ ଓଳେଟ ମେଳଇଣ
ଗମିଲେ ତକ୍ଷଣେ ଶୁଣି ସେ, ଅଙ୍ଗଦ ॥୨୧॥

---

୧୭।୧ ଖ- ୦ବ୍ରହ୍ମାସ୍ତ୍ରଂ
୧୭।୪ ଖ- ଆଗେ ପଛେପଛେଂ
୧୭।୫ ଖ- ୦ତୋଷ ହେ
୧୮।୪ ଖ- ୦ରକ୍ଷଣକ ସିନା୦
୧୮।୫ ଖ- ଏହୁ ଅବଜ୍ଞା ଭ୍ରମିଲ୦
୧୯।୦ କ- ୦ଏହାତ
୧୯।୫ କ- ନୁ ଯେହୁ୦

ଶ୍ରୀରାମ ମୁଦ୍ରିକା ଘେନି ବାନ୍ଧିଣ
ଏଣେହି ପବନ ନନ୍ଦନ,
ବେଳୁବେଳ ବଳ ହୋଇଲ ଦ୍ୱିଗୁଣ ।
ରାମ ପାଦରେ ପ୍ରଣାମ ବେଗେ କରି
ବିହରି ଘୋର ଗଗନ, ସେ ମାରୁତି ॥୨୨॥

ମଳୟ ମନ୍ଦର ବିଂଧ୍ୟ ଆଦିକରି
ଖୋଜନ୍ତି କପିବୀରମାନେ,
ଏକ ଦେଖିଲେ ମହାସତ୍ତ୍ୱ ବନେ ।
ଗିରିବର ସମ ଦିଶଇ ଶରୀର
ବିଚରନ୍ତି ଜଣେ ଜଣେ ସେ, ସେନାନୀ ॥୨୩॥

କେ ବୋଲଇ ଏହୁ ଅଟଇ ରାକ୍ଷସ
କେହୁ ବୋଲଇ ମହୀଧର,
କେହୁ ବୋଲଇ ଏହୁ ଦଶଶିର ।
ସୀତାଙ୍କୁ ହରି ଆଣିଛୁ ଏ ପାମର
ରହିଛୁ ବିଂଧ୍ୟ ଗିରିର ସେ, ସେନାନୀ ॥୨୪॥

ଏସନ ତାହାର ମୂରତି ଦେଖିଣ
ଅତି କୋପେ ବାଳି ନନ୍ଦନ,
ମୁଥ ପ୍ରହାର କଲେ ତତକ୍ଷଣ ।
ପ୍ରାଣ ଯାନ୍ତେ ଘୋର ରାବ କରି ବନେ
ଗୁଡ଼ିଲ ଅଙ୍ଗ ବଦନ ସେ, ଦନୁଜ ॥୨୫॥

ସୀତାଙ୍କୁ ଖୋଜି ଖୋଜି ଖୋଇ ନ ପାଇ
ପ୍ରଚଣ୍ଡ ତପ ତାପ ଲାଗି,
କଣ୍ଠ ଶୁଖି ହୋଇଲେ ଦୁଃଖଭାଗୀ ।
ଜଳ ଅନ୍ୱେଷଣେ ସଭିଏଁ ଚଞ୍ଚଳ
ଖୋଜନ୍ତି ସେ ବେଗିବେଗି ହେ, ସୁଜନେ ॥୨୬॥

---

୨୨।୪- ୦ବେଗେ ପ୍ରଣାମ୦
୨୨।୫- ବିହରି ବେଗେ୦
୨୩।୪- ୦ସହି ସଇ ସହିର
୨୩।୫- ବିଗ୍ଭରଇ୦
୨୪।୧ ଖ- କେହୁ ବୋଲଇ ସେହୁ ଦୁଷ୍ଟ୦
୨୪।୨ ଖ- କୋ ବୋଲଇ ମୁଁ୦
୨୪।୩ କ- ୦ବୋଲଇ ଦଶ୦
୨୪।୪ ଖ- ଆହେ ସୀତାଙ୍କୁ୦
୨୫।୫ ଖ- ୦ଅମୁର ବଦନ୦
୨୬।୪ ଖ- ଆହେ୦ ୦ସର୍ବେ ହେ୦

ଦେଖିଲେ ପୃଥିବୀ ଭିତରେ ବିମ୍ବର
ତୃଣରେ ହୋଇଛି ଆଚ୍ଛନ୍ନ,
ତହିଁ ଜଡ଼ ଆସନ୍ତି ଚନ୍ଦଗଣ ।
ପକ୍ଷୀମାନଙ୍କରେ ଜଳବନ୍ଦ ମାନ
ଲାଗି କରେ ବରଷଣ ସେ, ସୁଜନେ ॥୨୭॥

ବସ୍ତୁର କରନ୍ତି ବସି ସବଂଶରେ
ଏହୁ ବିମ୍ବରେ ଅଛି ନୀର,
ଏଥେ ପଶିବା ଆସ ଧାଣ୍ଡକାର ।
ଏତେ ବୋଲିଣ ସର୍ବେ ହୋଇ ଆତୁର
ପଶିଲେ ସେ ମହାବଳ ହେ, ସୁଜନେ ॥୨୮॥

ଅଗ୍ରେ ପବନ ସୁତ ହୋଇ ଅଛଇ
ତଥି ପଛରେ ଜାମ୍ବୁବନ୍ତ,
ତଥି ପଛେ ଅଙ୍ଗଦ ବଳବନ୍ତ ।
ତଥି ପଛେ ନୀଳ ତଥି ପଛେ ନଳ
ଗୁନ୍ଥିଲା ମାଳ ସଂଜାତ ହେ, ସୁଜନେ ॥୨୯॥

ଏକ ଆରକେ ଧରାଧରି ହୋଇଣ
ପଶିଲେ ଘୋର ଅନ୍ଧକାର,
ଯହିଁ ରବିକର ନୋହେ ପ୍ରଚୁର ।
ଆପଣା ଜୀବନ ତେଜ୍ୟା କରନ୍ତି
ଲଭିବେ ଅମୃତ ସାର ସେ, ସେନାନୀ ॥୩୦॥

ଏମନ୍ତେ କଷ୍ଟେ କଷ୍ଟେ କେତେ ଦୂରରେ
ଦେଖିଲେ ସ୍ୱୟଂପ୍ରଭା ପୁର,
ପୁର ନଗ ରଶ୍ମିରେ ଦିବାକର ।
ସୁବର୍ଣ୍ଣର ନାନା ବୃକ୍ଷ ଶୋଭା ଦିଶେ
ଫଳ ଫୁଲ ଅନ୍ତ ଭାର ନଏ, ଜାଣନ ॥୩୧॥

---

୨୭।୧ ଦ- ଭିତରେ
୨୭।୨ ଝ- ଭୋଟରେ
୨୭।୩ ଙ- ଭିତ୍ତିରୁ ଚନ୍ଦ୍ରବାକଗଣ
୨୭।୦ ଖ- ଅହେ ପକ୍ଷୀ
୨୭।୫ ଭ- ଭରେ
୨୮।୧ ଙ- ବିସ୍ମରବସ୍ତୁ ଭଟିକାରେ
୨।୫ ଙ- ସେନାନୀ
୨୯।୧ ଙ- ଜମ୍ବୋବନ୍ତ
୨୯।୪ ଙ- ନଳ ନୀଳ
୩୦।୩ ଙ- ନୋହେ ସଞ୍ଚାର
୩୧।୧ ଙ- ପାଇଲେ

ମାଣିକ୍ୟ ପ୍ରବାଳ ମରକତ ଛଳ
ମୁକୁତା ପ୍ରସୂନେ ଶୋଭିତ,
ଦିବ୍ୟ ମଣି ଫଳରେ ଅବନତ ।
ମକରନ୍ଦ ଲୋଭେ ଉଡ଼ନ୍ତି ଭ୍ରମର
ଧିର ଅବନୀ ସଂଗତ ହେ, ସୁଜନେ ।।୩୨।।

ଦିବ୍ୟ ମଧୁପାନେ ଲମ୍ବିଣ ଅଛନ୍ତି
କୈଶିକ ମୈରିୟ ଅବଶ୍ୟ,
ଯାହାପାନେ ଗନ୍ଧର୍ବେ କରେ ସ୍ତବ ।
ଅନେକ ତପସ୍ୟା କରି ସଞ୍ଚିଅଛି
ଦାନବମାନଙ୍କ ଦେବ ହେ, ସୁଜନେ ।।୩୩।।

ପୁଣି ଦେଖିଲେ ପଦ୍ମିନୀ ଶୋଭିତୟ
ହୋଇଛି ରୁଚିର ନଳିନୀ,
ସ୍ୱର୍ଣ୍ଣ ମରାଳ କରେ ମଞ୍ଜୁଧ୍ୱନି ।
ନୀଳମଣିର କୂର୍ମ କୁଳ ଶୋଭନେ
ମୋହୁଅଛି ସ୍ମରମୁନି ହେ, ସୁଜନେ ।।୩୪।।

ରତ୍ନ ଜଡ଼ିତ ଶଙ୍ଖଚୟ ଖେଳେ
କରକା ଦିବ୍ୟ ମଣିଚୟ,
କୋମଳତା କରିଛନ୍ତି ଉଦୟ ।
ଅମୃତ କରେ ଅମୃତ କରେ ସମ
ଦେଖିଲେ ବାନରଚୟ ସେ, ସୁଜନେ ।।୩୫।।

ତହିଁ ପାଶରେ ଦେଖିଲେ ଦିବ୍ୟପୁର
ମଣିମାନଙ୍କରେ ରଞ୍ଜନ,
ତହିଁ ବସିଅଛି ଶମାରଚନ ।
କୁଟିଳ କୁନ୍ତଳ ଜଟା ଭାର ଶୋହେ
ଜ୍ୟୋତିରେ ନିନ୍ଦେ ତପନ ସେ, ସୁଜନେ ।।୩୬।।

---

୩୨।୧ କ,ଖ- ମର୍କତ ଛଦ
୩୩।୨ ଖ- ମେ ଭୟ ଆତୁରେ
୩୩।୪ ଖ- ୦ରହିଅଛି
୩୩।୫ କ- ଦାନବଙ୍କ୦
କ- ୦ଧୂନି
୩୪।୩ ଖ- ୦ମଧୁଧ୍ୱନି
୩୪।୪ ଖ- ୦ତୁଲ୍ୟ ମୋ କୋଳେ୦
୩୪।୫ ଖ- ମୋହୁଛୁ ସେ୦
୩୫।୧ ଝ- ୦ପଙ୍କର କୁଳ୦
୩୫।୨ କ- କରକାଦମ୍ଭ୦
୩୬।୫ ଖ- ଅଛେ୦ ୦ଶୋଭେ

ତାକୁ ଯାଇଣ ପ୍ରଣମିତ କରଣ
ବୋଲନ୍ତି ଏ ପୁର କାହାର,
ଆମ୍ଭ ଆଗେ କହ ତୁ ସମାଚର ।
ଏ ପୁରେ ଥାଇ ତପସ୍ୟା ଆରମ୍ଭିଛୁ
କସ କାରଣ ଏଥିର ରେ, ସୁନ୍ଦରି ||୩୭||

ଶୁଣି କପିବର- ମାନଙ୍କ ବଚନ
ବୋଲନ୍ତି ସେହୁ ସମାମଣି,
ସାବଧାନେ ଶୁଣ କପି ଅଗ୍ରଣୀ ।
ଆହେ କେମନ୍ତେ ଏପୁର ତୁମ୍ଭେ ଠାବକଲ
ଯେହୁ ଅଗମ୍ୟ ସରଣି ହେ, ବାନରେ ||୩୮||

ଏ ଦିବ୍ୟ ଭୁବନ ଅତି ବିଲକ୍ଷଣ
ତୁମ୍ଭର ଏଥେ କସ କାର୍ଯ୍ୟ,
ଏହା କରଛୁ ଦନୁଜଙ୍କ ରାଜ ।
ଏଥିରେ ଥିଲେ ଲଭିବଟି ନିଧନ
କରିବା ଗମନ ଆଜ ହେ, ବାନରେ ||୩୯||

ପୂର୍ବେ ହେମା ନାମେ ଅପସରବର
ଶମ୍ଭୁ ସେବାରେ ତତପର,
ନାହିଁ ନାହିଁ ନାକ ଲୋକେ ସୁନ୍ଦର ।
ବର କରି ତାକୁ ଦେଲେ ସୁନା ଶିର
କଶ୍ୟପ ସୁତ ମୟୂର ହେ, ବାନରେ ||୪୦||

ଦେବ ବର ସରେ ଅନେକ ବରଷ
ତାର ତୁଲେ ସେ କଲ ଲୀଳା,
ସେ ଅବଳା ବାଳା ଗୁରୁଶୀଳା ।
ଏ ପୁର ତାହାପାଇଁ ସେ ନିର୍ମାଣିଲା
ଦନୁଜ ସେ ଅନର୍ଗଳା ହେ, ବାନରେ ||୪୧||

---

୩୭।୧ ଖ- ୦ବନ୍ଧିଣ ପ୍ରଣିପାତ୦
୩୮।୨ ଖ- ୦ଶୁଣ୦
୩୮।୪ ଖ- ୦ଠାବ ତୁମ୍ଭେ ଏହୁ
୩୮।୫ ଖ- ୦ଅଗମ୍ୟ ସାରଣୀ୦
୩୯।୧ ଖ- ୦ଅତ ଅକ୍ଷଣ
୪୦।୩ ଖ- ୦ତନଲୋକେ୦
୪୦।୫ ଖ- ୦ମୟୂର୦

ତୁମ୍ଭେ କେଉଁଠୁ ଅବା ଆଇଲ ଏଥକୁ
କେଉଁ କଲା ଅବା ପ୍ରେଷଣ,
ମୋର ଆଗେ କହ ସତ୍ୟ ବଚନ ।
ମିଥ୍ୟା କହିଲେ ଏ ପୁରେ ଭସ୍ମ ହୋନ୍ତ
ଏସନ ଧାତା ନିର୍ମାଣ ହେ, ବାନରେ ||୪୨||

କରପଦ୍ମ ଯୋଡ଼ି ବୋଲଇ ମାରୁତ
ଅତି ଚତୁଷାଭର ହୋଇଣ,
ଆମ୍ଭେ ବୁଲୁଣ ଥିଲୁ ବନେ ବନ ।
ଏ ବନେ ଦେଖିଲୁ ପକ୍ଷୀଙ୍କ ସଞ୍ଚାର
ଜଳ ପନ୍ଥରେ ରଞ୍ଜନ ରେ, ସୁନ୍ଦରି ||୪୩||

ଏବେ ଆମ୍ଭଠାରେ ଅନୁଗ୍ରହ କର
ଆମ୍ଭେ ଯେ ଶ୍ରୀରାମର ଦୂତ,
ସୀତା ମାର୍ଗଣେ ହୋଇଛୁ ଆଗତ ।
ଦଇବ ବଶେ ଆମ୍ଭେ ଏଥେ ମିଳିଲୁ
ରକ୍ଷାକର ତୁ ତୁରିତ ରେ, ସୁନ୍ଦରି ||୪୪||

ଶୁଣି ତାଙ୍କ ବାଣୀ ଚିନ୍ତି ସେ ଯୋଗିନୀ
ଜାଣିଲା ସକଳ ଚରିତ,
କପିଙ୍କୁରେ ହୋଇଲା କୃପାଚିତ୍ତ ।
ବୋଲଇ ଭୁଞ୍ଜ ଏ ଦିବ୍ୟ ଫଳମୂଳ
ଏଣେ ହୁଅ ତୋଷଚିତ୍ତ ହେ, ବାନରେ ||୪୫||

ତାର ଆଜ୍ଞା ପାଇ ଅତି ହୃଷ୍ଟ ହୋଇ
ଫଳମୂଳ କଲେ ଭୋଜନ,
ଜଳପାନେ ଲଭିଲେ ଶାନ୍ତମନ ।
ବୋଲନ୍ତି ଏବେ କେମନ୍ତେ ଏଥୁ ଯିବୁ
କହ ତୁ ଏବେ ବିଧାନ ରେ, ଯୋଗିନୀ ||୪୬||

---

୪୨|୨ କ- ୦କେ ଅବା୦
୪୨|୨ ଖ- ୦କଲ୍ଲ ପେଷଣ୦
୪୨|୪ ଖ- ଆହେ୦ ୦ଭସ୍ମ କମା ହୁଅନ୍ତା
୪୩|୫ ଖ- ୦ପକ୍ଷରେ ରଂଜନୀ ଦେଖିରେ୦
୪୪|୧ କ- ୦ଅନୁଗ୍ରହ୦
୪୪|୩- ଖ- ୦ମାର୍ଗରେ ହୋଇଅଛୁ୦
୪୪|୪ ଖ- ଆହେ୦
୪୫|୪ ଖ- ୦ଫଳ ସ୍ୱେଚ୍ଛା
୪୫|୫- ଖ- ହୁଅ୦
୪୬|୧ ଖ- ୦ହୃଷ୍ଟ ହୋଇ
୪୬|୨ ଖ- ୦ଅସନ
୪୬|୩ ଖ- ୦ହୃଦୟେ ତୋଷମନ

ବୋଲେ ସ୍ୱୟଂପ୍ରଭା ଶୁଣ କପିବୀରେ
ନୟନ ବୁଜ ତତକ୍ଷଣ,
ତେବେ ଏଥିରୁ ହୋଇବୁ ମୋକ୍ଷଣ
ନୋହିଲେ କାହା ବଳେ ଯାଇ ନୋହେ
କରଅଛୁ ସୁରଗଣ ହେ, ବାନରେ ।।୪୭।।

ଦେବୀ ବାଣୀ ଶୁଣି ସେହୁ କପିଶ୍ରେଣୀ
ସମସ୍ତେ ବୁଜନ୍ତେ ନୟନ,
ଆସି ମିଳିଲେ ସେ ବୀର କାନନ ।
ନୟନ ଫେଡ଼ି ଅନାବନ୍ତେ ଦେଖିଲେ
ସାଗର ଅନ୍ତ ବହନ ସେ, ବାନରେ ।।୪୮।।

ଶ୍ରୀରାମ ବିଳାସ ଏହୁ ତେତିଶ
ଛାନ୍ଦ ଏ ସମ୍ପୂର୍ଣ୍ଣ ରୁଚିର,
ବିଳ ପ୍ରବେଶନ ନାମ ଏହାର ।
ରଘୁବର ପାଦ ଚିନ୍ତିଣ ଭଣିଲେ
ଧନଞ୍ଜୟ କ୍ଷିତୀଶ୍ୱର ହେ, ସୁଜନେ ।।୪୯।।

---

୪୭।୩ ଖ- ଏବେ ଏଠାରୁ
୪୮।୩ ଖ- ବିଂଧେ
୪୮।୪ ଖ- ଆହେ
୪୮।୫ ଖ- ଉହନ
୪୯।୧ ଖ- ଏକତ୍ରିଂଶ
୪୯।୩ କ- ବୀର
୪୯।୪ ଖ- ନମିଲେ
୪୯।୫ ଖ- କ୍ଷତ୍ରୀଶ୍ୱର

# ଚଉତ୍ରିଂଶ ଛାନ୍ଦ

## (ରାଗ—କଳସା)

ଏଥୁ ଅନନ୍ତରେ କପି ବଂଶ ଗିରି ପରେ
ପ୍ରବେଶ ହୋଇଲେ ଯାଇ ଅତି ଖେଦଭରେ ।
ବୋଲନ୍ତି ମାସକ ଏବେ ହେଲା ଅତିକ୍ରମ
ନଷ୍ଟଏ ଦଣ୍ଡ କହିବ କଟିକି ଉତ୍ତମ ॥ ୧ ॥

ବାଳିର ତନୟ ତହିଁ ବୋଲେ ଚିନ୍ତାଭରେ
ଶତ୍ରୁପୁତ୍ର ବୋଲି ଦଣ୍ଡ ଦେବେ ସେ ମୋହରେ ।
ନଷ୍ଟଏ ତେଜିବି ମୁହିଁ ପ୍ରିୟ ଯେ ଜୀବନ
ତୁମ୍ଭେ ଯାଅ କପିବୀରେ କିଷ୍କିନ୍ଧ୍ୟା ଭୁବନ ॥ ୨ ॥

ବୋଲନ୍ତି ଜାମ୍ବବ ତୁମ୍ଭେ ଶୁଣ ଯୁବରାଜ
ନ କର କେସନେ ସିଦ୍ଧ ଶ୍ରୀରାମର କାର୍ଯ୍ୟ ।
ଏହିଠାରେ ପ୍ରାଣ ଉପବେଶ ଯେ କରିବା
ରାଜା କମ୍ପାଇ ଦଣ୍ଡିବେ ଆପଣେ ମରିବା ॥ ୩ ॥

ଏତେ ବୋଲି ଦର୍ଭଚୟ ଘେନି କପିବୀରେ
ଶେଯା ସେ ରଚିଲେ ଏକ ଆରକରେ ।
ଉଦୀଚ ଦିଗକୁ ଶିର କରିଣ ଶୋଇଲେ
ମରଣ ସେ ବର ବୋଲି ମନେ ବିଚାରିଲେ ॥ ୪ ॥

ଏହି ସମୟରେ ତହିଁ ଥିଲେ ଗୃଧ୍ରରାଜ
ସମ୍ପାତି ବୋଲି ପକ୍ଷୀରାଜଙ୍କ ତନୁଜ ।
ଆହାର ନିମନ୍ତେ ସେହୁ ବୁଲନ୍ତେ ସେ ବନେ
ଦେଖିଲା କପିବୀରଙ୍କ ଭୂମିରେ ଶୟନେ ॥ ୫ ॥

ବିଚାରିଲା ଆହାର ମିଳିଲା ଏତେକାଳେ
ଭ୍ରମୁଥିଲି ମୁହିଁ ହୋଇ କ୍ଷୁଧାର ଆକୁଳେ ।
ଏମନ୍ତ ବିଚାରି ତାଙ୍କୁ ଖାଇବାକୁ ଗଲେ
ଦେଖି କପିବୀରମାନେ ମନେ ବିଚାରିଲେ ॥ ୬ ॥

---

୧।୪ ଖ-ଦେବଙ୍କ ଉତ୍ତମ
୨।୧ ଖ-୦କପିରାଜ
୨।୩ କ-୦ପ୍ରାୟଂ
୪।୧ ଖ-୦କହି କୁଶଶଯ୍ୟା କରିଂ
୪।୨ ଖ-ଯାଯାରେ ଶୋଇଲେଂ
୪।୩ ଙ-୦ଲଗାଇ
୪।୪ ଙ-୦ଭଲ ବୋଲିଂ
୫।୨ ଖ-୦ବୋଇଲେଂ
୬।୩ ଙ-୦ଯେ ବନ

ମହା ସତ୍ୟ ଅଛଇ ଏ ମେରୁର ସମାନ
ଜ୍ୱଳନ୍ତ ଅନଳ ପ୍ରାୟେ ଦିଶୁଛି ବଦନ ।
ଆମ୍ଭଙ୍କୁ ଖାଇବ ଏହୁ ଆସୁଅଛି ଧାଇଁ
ରାମ କାର୍ଯ୍ୟ ନକରି ସ୍ୱଅର୍ଥେ ମରୁଥାଇ ॥ ୭ ॥

ଧନ୍ୟ ସେହୁ ଜଟାୟୁଷ ଅଟେ ପୁଣ୍ୟବନ୍ତ
ଶ୍ରୀରାମ କାର୍ଯ୍ୟରେ ସେହୁ ତେଜିଲା ଜୀବତ ।
ଏହା ଶୁଣିକରି ସେହୁ ବୋଲେ ପକ୍ଷୀବର
କାହିଁ ଜଟାୟୁଶ କାହିଁ ତେଜିଲା ଶରୀର ॥ ୮ ॥

ତୁମ୍ଭେମାନେ କି ବୋଇଲ ଏହା ମୋତେ କହ
ଏହା ଶୁଣିକଷ ଯେ ଆକୁଳ ମୋର ଦେହ ।
ମୋହର ସେହୁ ଅନୁଜ ଅଟ ବଳବନ୍ତ
ତାହାକୁ କେ ମାଇଲା କେମନ୍ତେ ହେଲା ହତ ॥ ୯ ॥

ଆମ୍ଭେ ବେନଭାଇ ପୂର୍ବେ ଅହଙ୍କାର ହେନ
କାହା ବଳ କେତେ ବୋଲି ଗ୍ଭଡ଼ିଲୁ ଅବମା ।
ସୁରପୁର ଅଭିକମି କଲୁ ଯେ ଗମନ
ବୋଇଲୁ ସେହୁ ଲଭିବ ଗ୍ରୁସ୍ବାର ଚରଣ ॥ ୧୦ ॥

ତାହାକୁ ସେ ବୋଲିବା ସବୁହୁଁ ବଳଅର
ସେହୁ ସେ ହୋଇବ ଜାଣ ପକ୍ଷୀଙ୍କ ଈଶ୍ବର ।
ସାନଭାଇ ମୋହର ଯେ ପାଇଲା ସନ୍ତାସ
ସୂର୍ଯ୍ୟ ମଣ୍ଡଳର ସେହୁ ନ ଗମିଲା ପାଶ ॥ ୧୧ ॥

ମୁହିଁ ଅତି ଗର୍ବ କରି ଛୁଇଁଲି ତା ଜାନ
ରବି କର ଲାଗି ପକ୍ଷୀ ହୋଇଲା ଦହନ ।
ଚେତନା ହାରଣ ଆସି ପଡ଼ିଲି ବିଂଧ୍ୟର
ଅନେକ କାଳରେ ଜ୍ଞାନ ହୋଇଲା ମୋହର ॥ ୧୨ ॥

ଦ୍ରୋଣ ନାମେ ଋଷିବର ଥିଲେ ଏହିଠାରେ
ତାଙ୍କ ଆଶ୍ରମରେ ମୁହିଁ ମିଳିଲି ସତ୍ବରେ ।
ମୋତେ ଦେଖି ଧ୍ୟାନରେ ସେ ଜାଣି ମୁନିବର
ବୋଇଲେ କଲୁ ତୁ ଅତି ପାମର ବର୍ବର ॥ ୧୩ ॥

---

୭।୨ ଖ-ସମାନଂ
୮।୧ ଖ-ଂଜଟାୟୁଧ
୯।୩ ଡ-ଂଅନୁଜ ବଳଂ
୯।୪ ଡ-ଂକାହ୍ବାରଂ
୧୦।୧ ଖ-ଂଅଂକ୍ୟାରଂ
୧୦।୪ ଖ-ଂସେହ୍ଲେ ଲଭିବା ଗ୍ରସ୍ବାର ରମଣ

ମୁଁ ବୋଇଲି କେମନ୍ତେ ସେ ହୋଇବ ମୋ ପକ୍ଷ
ତୁମ୍ଭେ ଋଷିବର ମୋତେ କରିବା ପକ୍ଷ ।
ଶୁଣିଣ ବୋଇଲେ ସେହୁ ମରିଚ ଅସନ
କଳ୍କିକାଳେ ତୋହର ହୋଇବ ପକ୍ଷୀ ଜାଣ ॥ ୧୪ ॥

ଅନେକ ଯୁଗ ଅନ୍ତରେ ରାବଣ ନିଧନେ
ବିଷ୍ଣୁ ଅବତାର ହେବେ ଏ ଭୂମି ଭୁବନେ ।
ଦଶରଥ ଘରେ ରଘୁବଂଶ ଅବତରି
ତେବେ ସେ ନାଶ ହୋଇବ ରାଜା ଦଶଶିରି ॥ ୧୫ ॥

ତାହାଙ୍କ ଦୂତକୁ ତହିଁ ଯେବେ ସେ ଛୁଇଁବୁ
ତେବେ ତୋର ନିଜ ପକ୍ଷ ଭାବକୁ ଲଭିବୁ ।
ତୁମ୍ଭେ ତ କହିଲ ମୋର ଭ୍ରାତର ନିଧନ
କେମନ୍ତେ କରିଣ ଆଜ କରିବ ଅଶନ ॥ ୧୬ ॥

ଧରାଧରି କରି ତୁମ୍ଭେ ମୋତେ ଘେନିଯାଅ
ସାଗର ଜଳରେ ନେଇ ସ୍ନାହାନ କରାଅ ।
ଶୁଣିକରି କପିମାନେ ତାଙ୍କୁ ଘେନିଗଲେ
ଜଳନିଧି ଜଳରେ ସ୍ନାହାନ କରାଇଲେ ॥ ୧୭ ॥

ତକ୍ଷଣେ ପକ୍ଷୀ ତାହାର ହେଲା ଉତପନ
ଦେଖିକରି ଆନନ୍ଦେ ସେ ବୋଲଇ ବଚନ ।
ଜାଣିଲି ନିଶ୍ଚୟେ ତୁମ୍ଭେ ଶ୍ରୀରାମର ଦୂତ
ତେଣୁ ମୋର ପକ୍ଷୀଗଣ ହୋଇଲେ ଉଦ୍ଗତ ॥ ୧୮ ॥

ବୋଇଲା ସେ ଶ୍ରୀରାମର କାର୍ଯ୍ୟେ ଜଟାୟୁଷ
ନିଧନ ହୋଇଲା ସେହୁ ଗରୁଡ଼ର ଶିଷ୍ୟ ।
କେହୁ ତାକୁ ମାଇଲା ଏ ଚରିତ କେବଣ
ଶୁଣିବି ତୁମ୍ଭ ମୁଖରୁ ଭ୍ରାଥର ମରଣ ॥ ୧୯ ॥

---

୧୪।୧ କ-୦ମୋ ପୃଷ୍ଠ
୧୪।୩ ଖ-୦ଆସନ
୧୪।୪ କ,ଖ-କଳୁକାଳେ
୧୬।୨ ଖ-୦ପକ୍ଷୀ ଭାବକୁ ବହିବୁ
୧୮।୧-୦ସେ ବୋଲନ୍ତି
୧୮।୩-୦କରେଂ
୧୮।୪-ତେଣେ
୧୯।୪-୦ତୁମ୍ଭର ମୁଖୁ ଜାଣିବଂ

ବୋଲନ୍ତି ସେ କପିବୀରେ ଶୁଣ ପକ୍ଷୀରାଜ
ସୀତାଙ୍କୁ ହରି ନିଅଛନ୍ତି ରାବଣ ଦନୁଜ ।
ଶ୍ରୀରାମ ପାଟରାଣୀ ଜନକ ନନ୍ଦିନୀ
ତାଙ୍କୁ ରକ୍ଷା କରିଥିଲେ ତହିଁ ପକ୍ଷୀମଣି ॥ ୨୦ ॥

ମାୟାରୂପେ ମାରୀଚ ସେ ମୃଗ ତନୁ ଧରି
ଲୋଭେ ଗୋଡ଼ାଇଲେ ତାଙ୍କୁ ଦାଶରଥି ମାରି ।
ପର୍ଣ୍ଣ କୁଟି ଭିତରୁ ସେ ହରିଲା ରାବଣ
ବାଟେ ପକ୍ଷୀବୀର ସେ କଲେକ ଘୋର ରଣ ॥ ୨୧ ॥

ତାହାଙ୍କୁ ନିଧନ କରି ଗଲା ସେ ଗଗନେ
ନ ଜାଣୁ ସେ ରାବଣ ତା ପୁରି ଅବା କେଉଁଣେ ।
ସୀତାଙ୍କୁ ଖୋଜିଣ ଆମ୍ଭେ ବୁଲୁଅଛୁ ବନ
ଭାଗ୍ୟବଶେ ଆସି ହେଲା ତୁମ୍ଭ ଦରଶନ ॥ ୨୨ ॥

ଜାଣିଥିଲେ ଏହା ସେ କହିବା ପକ୍ଷୀରାଜ
ତୁମ୍ଭେ କରିବା ହୋଉ ଶ୍ରୀରାମର କାର୍ଯ୍ୟ ।
ବୋଲନ୍ତି ସମ୍ପାତି ତୁମ୍ଭେ ଶୁଣ କପିବୀରେ
ଅନେକ ଦିନରୁ ବଞ୍ଚିଥିଲି ମୁହିଁ କଷ୍ଟରେ ॥ ୨୩ ॥

ନୂଆ ହୋଇ ଏବେ ମୋର ହେଲା ପକ୍ଷୀମାନ
ଛୁଇଁବି କେମନ୍ତେ କରି ବନ୍ଧୁର ଚରଣ ।
ମୁହିଁ ଶୁଣିଅଛି ଲଙ୍କାପୁରେ ଅଛି ସୀତା
ହରି ନେଇଅଛି ତାଙ୍କୁ ଦୈତ୍ୟ ରଣଜିତା ॥ ୨୪ ॥

ମୋହର ନନ୍ଦନ ମୋତେ କହିଅଛି ପୂର୍ବେ
ଜାନକୀଙ୍କି ହରି ସେହୁ ନେଉଥିଲା ଯେବେ ।
ପବନ ପଞ୍ଚମ ମାର୍ଗେ ଥିଲା ସୁତ ମୋର
ଦୁର୍ଜୟ ନିଶାଚରକୁ ଛାଡ଼ିଲା ସେଠାରେ ॥ ୨୫ ॥

ଏହିକ୍ଷଣି ମୋ ସୁତ ଆସିବ ଏ ସ୍ଥାନ
ତୁମ୍ଭଙ୍କୁ ସେ ଦେଖାଇବ ରାବଣ ଭୁବନ ।
ପାରାବାର ମଧ୍ୟେ ତାର ଅଟଇ ନଗର
ଶତେ ଯୋଜନ ମାର୍ଗ ଅଟି ଦୁସ୍ତର ॥ ୨୬ ॥

---

୨୦।୧ ଙ-୦ପକ୍ଷୀବୀରେ୦
୨୦।୪ କ-ତାଙ୍କୁସ୍ଵ୦
ଗ-ତାହାଙ୍କୁ ହେଂ୦
୨୧।୧ ଙ-୦ରୂପ୦
୨୪।୧ ଗ-୦ହୋଇଲ ମୋହର୦
୨୪।୨ ଖ-୦କେସନେ ମୁଁ୦
୨୪।୪ ଖ-୦ଯେ ରାବଣେ୦
୨୬।୪ ଖ-୦ଦୂରନ୍ତର

ଏମନ୍ତ ବୋଲଣ ମନେ ସୁମରନ୍ତି ସୁତ
ପ୍ରବେଶ ହୋଇଲା ଆସି ପକ୍ଷୀ ବଳବନ୍ତ ।
ମହାଗିରି ସମାନ ସେ ଦିଶେ ଭୟଙ୍କର
ପିତାର ଚରଣେ ଆସି ନିବେଦିଲା ଶିର ॥ ୨୭ ॥

ବୋଲନ୍ତି ସମ୍ପାତି ବାବୁ ସୁପାର୍ଶ୍ୱ ଶୁଣ
ଏହୁ ରଘୁନାଥ ଦୂତ ଜାଣ ବଡ଼ ଜ॰ ।
ଏହାଙ୍କୁ ଦେଖାଅ ତୁମ୍ଭେ ରାବଣ ମନ୍ଦିର
ଯେଉଁଠାରେ ଅଛୁ ସୀତା ରମଣୀଙ୍କ ବର ॥ ୨୮ ॥

ଶୁଣିକରି ସନମତ କରି ପକ୍ଷୀବର୍ଯ୍ୟେ
ପକ୍ଷୀଙ୍କ ଅନୁରୂପେ ବସ୍ତ୍ରାଗଲେ କାର୍ଯ୍ୟେ ।
ପଞ୍ଚବୀର ବସାଇଲା ପୃଷ୍ଠପରେ ଆଣି
ଉଡ଼ିଲା ଗଗନେ ବ୍ୟାପି ପକ୍ଷୀଙ୍କ ଅଗ୍ରଣୀ ॥ ୨୯ ॥

ବୋଇଲା ଏ ଦେଖ ତୁମ୍ଭେ ରାବଣ ମନ୍ଦିର
ତ୍ରିକୁଟ ଗିରି ଶିରରେ ଦିଶଇ ସୁନ୍ଦର ।
ଦେଖ ଏ ଅଶୋକ ବନିକା ଅଟଇ ରୁରୁ
ସୁବର୍ଣ୍ଣ ଶିଂଶପା ବୃକ୍ଷ ଏହୁ ମହାଗୁରୁ ॥ ୩୦ ॥

ଏଥି ମୂଳେ ସୁବର୍ଣ୍ଣ ବେଦିକା ପରେ ବସି
ଅଛଇ ଦେଖ ଜାନକୀ ଶ୍ରୀରାମ ମହିଷୀ ।
ବେଢ଼ି ବସିଛନ୍ତି ସହସ୍ରେ ରକ୍ଷସୁଣୀ
ଅତି କୃଶ ହୋଇ ଧରିଅଛୁ ଏକ ବେଣୀ ॥ ୩୧ ॥

କପିଏ ବୋଲନ୍ତି ଶୁଣ ସମ୍ପାତି ନନ୍ଦନ
ତୁମ୍ଭଙ୍କୁ ଦିଶୁଛି ତୁମ୍ଭେ ଦୂର ଦରଶନ ।
ଆମ୍ଭର ନୟନକୁ ଏ ହୋଏ ଅଗୋଚର
ପାର ନାହିଁ ଭୟଙ୍କର ଦିଶେ ଅକୂପାର ॥ ୩୨ ॥

---

୨୭।୩ ଖ-୦ଅଢ଼ଂ
୨୮।୪ ଖ ୦ସୀତା ଅଛୁଂ
୨୯।୧ ଖ-କପିଙ୍କଂ
୨୯।୪ ଖ-୦ବ୍ୟାପିଲାଂ
୩୦।୨ ଖ-୦ଶିଖରେ
୩୦।୩ ଝ-୦ବନିତାଂ
୩୦।୪ ଖ-୦ସେହୁ ମହାଯେରୁ
୩୧।୪ ଖ-୦କୃଶଂ
୩୨।୨-୦ଚିରଂ
୩୨।୪-୦ଡେଟେଂ

ଏମନ୍ତ ଶୁଣିଣ ତାଙ୍କ ବାଣୀ ପକ୍ଷୀବର
ନିଜ ସ୍ଥାନେ ଆଣି ତାଙ୍କୁ କଲା ଧାଡକାର ।
ଅନେକ ପ୍ରବୋଧି ତାଙ୍କୁ କହିଣ ବଚନ
ପିତା ଯେନ ହୃମବନ୍ତେ କଲକ ଗମନ ।। ୩୩ ।।

ବହୁର କରନ୍ତ କଟିଙ୍ଗରେ ତହିଁ ବସି
ଆମ୍ଭଙ୍କୁ ତ ଅଗୋଚର ହେଲା ଶୁଭ୍ରକେଶୀ ।
ଦିଗନ୍ତ ଦେଖାଇ ଦେଇଗଲା ପକ୍ଷୀସୁତ
ଶତେକ ଯୋଜନ ବୋଲି କହିଲା ନିଅତ ।। ୩୪ ।।

ଆମ୍ଭେମାନେ ଏକେ ଏକେ ଅତି ବଳୀୟାର
ଶତେକ ଯୋଜନ କେତେ ଲଙ୍ଘିବା ସାଗର ।
ଏମନ୍ତ ହୋଇଣ ତହିଁ ଏକରୁଣ୍ଡ ହୋଇ
ପାରାବାର ତୀରରେ ପ୍ରବେଶ ହେଲେ ଯାଇଁ ।। ୩୫ ।।

କେ ବୋଲଇ ମୁହିଁ ଯିବ ଦଶ ଯେ ଯୋଜନ
କେ ବୋଲଇ ମୁହିଁ ଯିବ ପଞ୍ଚାଶ ଯୋଜନ ।
କେ ବୋଲଇ ମୁହିଁ ଯିବ ଗବ୍ୟୂତି ଷାଠିଏ
କେ ବୋଲଇ ମୁହିଁ ଯିବ ଦୁଇ ଯେ ଷାଠିଏ ।। ୩୬ ।

ବୋଲନ୍ତ ଅଙ୍ଗଦ ମୁହିଁ ଯାଇ ଯେ ପାରିବ
ଲେଉଟିଣ ବଡ଼ ବେଗେ ଆସି ନ ପାରିବ ।
ଜାମ୍ବେବ ବୋଲନ୍ତ ଆମ୍ଭେ ହୋଇଲୁଁ ବୃଦ୍ଧ
ଶତେକ ଯୋଜନ ଏ ବାରିଧି ଅର୍ଦ୍ଧ ଅର୍ଦ୍ଧ ।। ୩୭ ।।

ସେଉଁକାଳେ ନିର୍ବଚନ ହେଲେ ନାଗସ୍ଥାଣ
ତିନିବାର ତାଙ୍କୁ କରଅଛୁ ପ୍ରଦକ୍ଷିଣ ।
ତୁମ୍ଭେ କପିଙ୍କରେ ସର୍ବେ ତୂନି ହୋଇଥାଅ
ଲଙ୍କାକୁ ଯିବାକୁ ଏଥି କେହି ନାହିଁ ରହ ।। ୩୮ ।।

---

୩୫।୩-ବୋଲନ୍ତିଂ
୦୫।୪-ତୀରେ ପ୍ରବେଶ ହୋଇଲେଂ
୩୬।୩-ପଞ୍ଚ ଯେ ଷାଠିଏ
୩୬।୪ ଭ-କେ ଯୋଷୀଏ

୩୭।୧ ଖ-ବୋଲଇଂ
୩୭।୩ ଖ-ବୋଲନ୍ତିଂ
୩୮।୨ ଖ-ପ୍ରଦକ୍ଷିଣ
୩୮।୪ ଖ-ନାହିଁ ରହ

ଅଞ୍ଜନ ଶଳାକା ଯେସ୍ନେ ନେତ୍ର ପାଶେ ଥାଇ
ପାଶକୁ ଦୃଶ ନୋହଇ ଦୂରକୁ ଦଶଇ ।
ସେହିମତ ହୋଇ ଯେତ୍ତୁ ଜୀବ ପାଶେ ଅଛୁ
କହି ସନ୍ତକ ଦେଇଛୁ ଦଶରଥ ବଚ୍ଛୁ || ୩୯ ||

ଏତେ ବୋଲି ବୋଲନ୍ତି ହୋ ପବନ କୁମର
ଭୁହି ସିନା ବୀରଙ୍କ ଉପରେ ବୀରବର ।
ଶ୍ରୀରାମର କାର୍ଯ୍ୟ ତୁମ୍ଭେ କରିବା ସତ୍ୱର
ବିଳମ୍ବ ଏଠାରେ ସେ ନ କର କପିବର || ୪୦ ||

ବୋଲନ୍ତି ସେ ହନୁମନ୍ତ ଶୁଣ ଆଜ ତୁମ୍ଭେ
ଜାଣିଲକ ରାମକାର୍ଯ୍ୟ କରିବଇଁ ଆମ୍ଭେ ।
ଶ୍ରୀରାମ କାର୍ଯ୍ୟରେ ଏହୁ ବ୍ରହ୍ମାଣ୍ଡ କେତେକ
ବୁଲିପାରି ଆସଇ କ୍ଷଣକେ ତିନଲୋକ || ୪୧ ||

ବାଳୁତ କାଳରେ ମୁଁ ଛୁଇଁଲି ମାରତଣ୍ଡ
ବଜ୍ର ବାଜ ହତ ଯେ ନୋହିଲା ମୋର ପିଣ୍ଡ ।
ହନୁରେ ବାଜିଣ କଚ୍ଛୁ ଲଭିଲି ବିକାର
ତେଣୁ ହନୁମନ୍ତ ନାମ ଦେଲେ କୁଶଧର || ୪୨ ||

ତୁମ୍ଭର ଆଜ୍ଞାରେ ମୁହିଁ କରିବ ଗମନ
ଦେଖିବ ସେ ରାବଣର ବିଚିତ୍ର ଭୁବନ ।
ଜନକ ନନ୍ଦନୀ ସେ ଯେ ଦେଖି ଆସିବଇଁ
ମୋର ବୀରପଣ ଯେ ପୃଥ୍ୱୀରେ ଥିବ ରହି || ୪୩ ||

ଏତେ ବୋଲି ସମସ୍ତଙ୍କୁ କଲେ ଆଲିଙ୍ଗନ
ଜାମ୍ବୁବନ୍ତଙ୍କ ଚରଣେ ଯେ କଲେକ ବନ୍ଦନ ।
ମନ୍ଦର ପର୍ବତ ଶିଖ ଉପରେ ବିରଜେ
ଦୃଷ୍ଟି ମାରତଣ୍ଡ ପ୍ରାପ୍ୟେ କପିବୀରରାଜେ || ୪୪ |

---

୩୯।୧ ଖ-ଅଜନ ସକାଶୁଂ
୩୯।୨ ଖ-ଂଅଦୃଶ୍ୟ ହୋଇଂ
୨୯।୩ ଖ-କପି ପାଶେଂ
୪୦।୩ ଗ-ଶ୍ରୀରାମ କାର୍ଯ୍ୟକୁଂ
୪୧।୧ ଗ-ବୋଲୁଛୁଂ ୦ କାର୍ଯ୍ୟଂ
୪୧।୨ ଖ-ଶୁନିଲକଂ
୪୨।୨ ଗ-ଂହୋଇଲାଂ
୪୨।୩ ଖ-ଂକାତର
୪୪।୩ ଖ-ମନ୍ଦର ଶିଖଂ
୪୪।୪ ଚ-ଦ୍ୱିଜ ୦ ଂକପିବରଂ

ବଡ଼ବା ଅନଳ ସମ ବସ୍ତାଗଲ ପାଟି
କୃମ୍ଭଣ କରୁଛୁ କ ଆକାଶ ଯିବ ଘୋଟି ।
ମନରେ ରାମ ଲକ୍ଷ୍ମଣ ସୀତାଙ୍କୁ କରି ନତି
ସୁଗ୍ରୀବରକୁ ପ୍ରଣାମ ବହିଲ ମାରୁତି || ୪୫ ||

ଦେନ କର୍ଣ୍ଣ ଖୋସି ଉପରକୁ ଟେକଦେଲ
ଅକାଶକୁ ଭୟଙ୍କର କରି ଅନାଇଲ ।
ଶିର ଉପରେ ବରାଜଇ ପୁଚ୍ଛଦଣ୍ଡ
ଉଦୟ ଗିରରେ କ ଶୋଭିତ ମାରତଣ୍ଡ || ୪୬ ||

ବେନକର ପ୍ରସାରଣ ଆକାଶେ ଖେପିଲ
ପାଦେ ଗିରବର ଯେ ଅବନୀଗତ ହେଲ ।
ନୃତ୍ୟ କଲ ପ୍ରାୟେକ ଦଶିଲ ଗିରଗଣ
ଆକାଶ ମାର୍ଗରେ ବୀର କରଇ ଗମନ || ୪୭ ||

କୁସୁମିତ ତରୁଗଣ ସୁବର୍ଦ୍ଧ ପରାଏ
ଉଦ୍‌ବେଗେ ଗୋଡ଼ାଇଣ ଅଛନ୍ତ ସଭଏ ।
ଥୋକାଏ ଦୂରେଣ ସେହୁ ପଡ଼ଲେ ସାଗର
ଅମ୍ବରେ ଗମନ କଲେ ପବନ କୁମର || ୪୮ ||

ଦେଖିକର ତହିଁ ବସ୍ତୃରନ୍ତି ସୁରଗଣ
ଲଙ୍କାକୁ ଏ ଯାଉଅଛୁ ପବନ ନନ୍ଦନ ।
ଅତି ଦୁର୍ଜୟ ସେ ଜାଣ ରାବଣର ପୁରୀ
ରାମକାର୍ଯ୍ୟ କରି ଏହୁ ପାରିବ କ ହରି || ୪୯ ||

ଏମନ ବୋଲଣ ସୁରମାକୁ ଆଜ୍ଞା ଦେଲେ
ଏହାର ବଳ ସୁନ୍ଦରୀ କଳ ଗୋ ବୋଇଲେ ।
ଶୁଣି ସୁରଗଣ ବାଣୀ ଅଇଲେ ଯୋଗିନୀ
ପଥ ବେଗେ ଆଗୋଳଲେ ପ୍ରଚଣ୍ଡ ପାବେନୀ || ୫୦ ||

ବୋଲଲ ମୋହର ମୁଖେ ହୋଇଲୁ ପ୍ରବେଶ
ନଷ୍ଟପୁରେ କପି ଭୁଦ୍ଧ ଚଲୁ ଆଜ ନାଶ ।
ଦେବୀ ବାଣୀ ପୁଣି କହେ ପବନ ନନ୍ଦନ
ଶ୍ରୀରାମର ଦୂତ ମୁହିଁ କରୁଛୁ ଗମନ || ୫୧ ||

---

୪୫।୧-୦ପ୍ରାସ୍ଯେଂ
୪୫।୩ ଭ-୦ଭିନତ
୪୭।୩ ଖ-୦ଦଶିଲେ କପିଗଣ
୪୮।୨ ଖ-୦ଦୋଉଣ୍ଡ ଅଛନ୍ତ ସର୍ବହେ
୪୯।୩-୦ଯେସେ ରାବଣଂ
୫୧।୩-୦ଧଇଲାଂ
୫୧।୪-୦ମୁଁ ଯେଂ

ସୀତା ଖୋଜ ଆସି ତୋର ହୋଇବ ଆହାର
ପ୍ରଭୁର ସନ୍ଦେଶ ନ କ କରିବ ବଧୂର ।
ଶୁଣିକରି ସୁରସା ଯେ ବୋଲଇ ବଚନ
ମୋର ମୁଖେ ପଡ଼ି କେହ୍ନେ କରିବ ଗମନ ॥ ୫୨ ॥

ଏତେ ବୋଲି ପାଟି କଲା ତିରିଶ ଯୋଜନ
ଷାଠିଏ ଯୋଜନ ହେଲା ପବନ ନନ୍ଦନ ।
ପୁଣି ସେ ସୁରସା ପାଟି କଲା ଶତେଯୁଣ
ଅଙ୍ଗୁଷ୍ଠି ସମ ହୋଇଲା ପବନ ନନ୍ଦନ ॥ ୫୩ ॥

ପାଟିରେ ପଡ଼ିଣ ଲର୍ଣ୍ଣିବାଟେ ଗଳିଗଲା
ଯାଉଛୁ ଡାକିଣୀ ବୋଲି ନମସ୍କାର କଲା ।
ବୋଲନ୍ତି ସେ ନାଗମାତା ଶୁଣ କପିବୀର
ବଳ ତୋର ଜାଣି ପେଷିଥିଲା ସୁନାସୀର ॥ ୫୪ ॥

ଶୁଭ ହେଉ ବୋଲି ତୋର ଗଲା ସେ ମୃଗାକ୍ଷୀ
ପୁଣି କେତେଦୂର ଗଲା ପବନର ବନ୍ଧି ।
କହନ୍ତେ ମଣିନାଗକୁ ଶତେବାର କରି
ଜଳଦ ଉପର ଯାଏ ଶ୍ରୀରାମ ସୁମରି ॥ ୫୫ ॥

କେତେବେଳେ ଚନ୍ଦ୍ରପ୍ରାୟେ ହୋଇ ବିରାଜଇ
କେତେବେଳେ ଘନଗଣ ଉଦରେ ପଶଇ ।
ଏମନ୍ତ ପ୍ରକାରେ ସେହ୍ନେ ଗମେ ବେଗ କରି
ଛାଇକି ତାର ଧଇଲା ବିପ୍ରଚଣ୍ଡ ନାରୀ ॥ ୫୬ ॥

ଗମନ୍ତେ ପବନସୁତ ହୋଇଲୁ ଥକିତ
କିସ ଏହ୍ନ ବୋଲି ଦୃଷ୍ଟି କଲା ଅଧୋଗତ ।
ଦେଖିଲା ଛାଇକି ଧରିଅଛି ରାକ୍ଷସୁଣୀ
ତାର ଶିରେ ଚରଣ ମାଇଲା କପିମଣି ॥ ୫୭ ॥

ପ୍ରାଣଛାଡ଼ି ସିଂହିକା ଯେ ପଡିଲା ବହନ
ସୁବଳସ୍ଥାରେ ମିଳିଲା ଅଞ୍ଜନା ନନ୍ଦନ ।
ଏହ୍ନ ଶ୍ରୀରାମ ଚରିତ ଛାନ୍ଦ ଚଉତ୍ରିଂଶ
ଶୁଣିଣ ରସିକ ଜନେ ହୋଇବା ହରଷ ॥ ୫୮ ॥

---

୫୨।୨-୦ବଧୂରଂ
୫୩।୪-ଅଙ୍ଗଂଷ୍ଠଂ
୫୪।୧-୦ବର୍ଣ୍ଣୁଦେଇଂ
୫୪।୨ ଖ-୦ପାବେଷ୍ଣଂ
୫୬।୪ କ-ପୋଥିରେ ନାହିଁ
୫୭।୧-୩ କ-ପୋଥିରେ ନାହିଁ

ନୃପ ଧନଞ୍ଜୟ ଭଜ ଏହୁ ରସେ କହି
ରଘୁପତି ଚରଣ ଯୁଗଳେ ମନ ଦେଇ ।
ଭବଭୟ ନିବାରଣ ଯାହାର ଯେ ନାମ
ସୀତାୟା ବଲ୍ଲଭ ସେହୁ ଅଟନ୍ତି ଶ୍ରୀରାମ ॥ ୫୯ ॥

●

# ପଞ୍ଚତ୍ରିଂଶ ଛାନ୍ଦ

## ( ରାଗ—ଆହାରୀ )

ଏଥୁ ଅନନ୍ତରେ ପବନ ନନ୍ଦନ
ସୁବଳୟେ ହେଲା ପ୍ରବେଶ
ଏହି ସମୟରେ ଅସ୍ତାଚଳ ଗିରି
କରଣେ ମଣ୍ଡିଲେ ଦିନେଶ
ଦେଖିଣ, ଅଭିସାରୀ ହେଲେ ଆନନ୍ଦ
ଚକ୍ର ଚକ୍ରବାକୀ ଲଭିଲେ ବିଷାଦ
ପଦ୍ମ ତେଜିଲେ ଭୃଙ୍ଗବୃନ୍ଦ ॥ ୧ ॥

କ୍ରମେ କ୍ରମେ ସନ୍ଧ୍ୟା ଅରୁଣେ ରାଗିଣୀ
ରାଗିଣୀ ପରାଏ ଶୋଭିଲା
କୁସୁମେ ରଞ୍ଜିତ ଅମ୍ବରେ ରାଜିତ
କାନ୍ତ ଚନ୍ଦ୍ରକୁ ଇଚ୍ଛା କଲା
କୁଟିଳ, ଅନ୍ଧକାର କେଶେ ଶୋଭନ
ଦିଶେ ସେ ବିରଳ ତାରକା ପଟଳ
ନୟନରେ ହେଲା ରଞ୍ଜନ ॥ ୨ ॥

---

୫୯।୧-୦ଧନଞ୍ଜୟ ଭକ୍ତ୦

---

୧।୧ କ-୦ଅନ୍ତରେ୦
୧।୨ ଖ-୦ହୋସ୍ତେ୦
୧।୩ ଖ-ଏହି୦
୧।୫ ଖ-ଦେଇସେ ଅଭିସାର୦
୧।୭ ଖ-ଜଳ୦
୨।୭ ଖ-ଜନରେ୦

ମଧୁର ନାନାପକ୍ଷୀ- ଙ୍କର ବିରୁତେ
କହିଲି ପରସ୍ପେ ହୋଇଛୁ
ବିଚ୍ଛେଦ ନାୟକ ବିଚ୍ଛେଦି ନାୟିକା
ଧଇର୍ଯ୍ୟ ତରୁକୁ ଛେଦୁଛୁ ।
ଶୋଭିତ, ରବି କୁରୁବନ୍ଦ ନସିକ
ଅସ୍ତ ମହୀଧର ଏକ କୁଚ କରି
ସ୍ପୃହୁନ୍ତ୍ରି ରହିରେ ବିବେକ ।। ୩ ।।

ଏମନ୍ତେ କ୍ରମେ କ୍ରମେ ସନ୍ଧ୍ୟା ଅରୁଣ
ବେଳକୁ ବେଳ ହୋନ୍ତେ ନାଶ,
ଅବନି ଗଗନ ଅଙ୍ଗେ ଆଚ୍ଛାଦନ
ରଜନୀ ବାଳା ପରବେଶ
ନବଡ଼, ତମ ତମ ବସ୍ତ୍ରେ ରଞ୍ଜନ
ତାରକା ପଟଳ ମୁକୁତା ସୀମନ୍ତ
କେଶ ଉପରେ ଶୋଭିବନ ।। ୪ ।।

କୁମୁଦ ମୁଦ ମୁଖରେ ମୁଦବଣ୍ଟ
ହୋଇଛୁ ନିଃଶେଷ ବାଞ୍ଛାରୁ
ଭ୍ରୂ ଅଧର ସ୍ତନ ଅପ୍ରକାଶ କଲି
ସପତ୍ନୀଗଣଙ୍କ ଲଜ୍ଜାରୁ ।
ଏମନ୍ତ, ରଜନୀ ଦେଖି କପିବୀର
ବିଚାରନ୍ତି ଏହି ସମୟେ ମୁଁ ବେଗେ
ପ୍ରବେଶ ହେବି ଲଙ୍କାପୁର ।। ୫ ।।

ଖର୍ବ ତନୁ କରି ଅତି ଗର୍ବ ଧରି
ପୁରେ ପ୍ରବେଶ ବେଗେ ହରି
ଦେଖି ଲଙ୍କାର ଲକ୍ଷ୍ମୀ ଆଗୋଳଣ
ବୋଲଇ ସେହୁ ଖରଖର
କାହିଁର, ପ୍ରବେଶ ହୋଇଲୁ ବାନର ।
ଏତେ ବୋଲି କରି ଅତି ରୋଷ ଧରି
ବେଗେ ପ୍ରହାରିଲି ପୟର ।। ୬ ।।

---

୩।୩-୦ନାଇକା ୦ ନାଏକା
୪।୬-ବେଳ ହୋଇଅନ୍ତେଂ
୪।୭-କେଶରଂ ୦ ଶୋଭିତ
୫।୫ ଖ-୦କପିବର
୫।୬ ଖ· ବିଗ୍ଭରଇ ମୁହିଁ ସମସ୍ତରେଂ
୫।୭ ଖ-୦ହେବଇ
୬।୭ ଖ-୦ରୋଷଭରି

ପାଦ ବାଜନ୍ତେ          କଟିମଣି ସଘୋଷ
ହୋଇ ମାଇଲେ ମୁଖେ ମୁଥ ।
ବାଜନ୍ତେ ଅବନୀ          ଗତ ହେଲା ବାଳି
ମୁଣ୍ଡୁ ଉଦ୍‌ଗାରନ୍ତ ଶୋଣିତ ।
ଉଠିଣ, ବୋଲଇ ଭୁହୋ ରାମଦୂତ
ପୂର୍ବେ ଏହା ମୋତେ          କହିଥିଲେ ଧାତା
ସେ କଥା ହୋଇଲା ସତ୍ୟତ          ॥ ୭ ॥

ବୋଲିଥିଲେ ଆରେ          ଅବଳା ବଳରେ
ତୋତେ ସେ ଭର୍ତ୍ସନା କରିବ
ସେହିକାଳେ ଭୁହି          ଚରେ ଧରିଥିବୁ
ତେବେ ରାବଣ ବଧ ହେବ ।
ଜାଣିଲି, ବିଷ୍ଣୁ ହୋଇଲେ ଅବତାର
ଅବନି ଭାର          ଖଣ୍ଡିବାକୁ ଅବନି
ପୁରେ ଦଶରଥ କୁମର          ॥ ୮ ॥

ମାୟା ମାୟାରେ          ଧରିଅଛି ସ୍ୱରୂପ
ଜନେକ ନନ୍ଦନୀ ନିଷ୍ଠଏ
କାଳ ଜାଣି ତାକୁ          ନ ଜାଣି ବିଭ୍ରମେ
ହରି ଆଣିଲା ଲଙ୍କରାଏ ।
ଥୋଇଛି, ଅଶୋକ ବିପିନ ମଧ୍ୟର
ନିଷ୍ଠଏ ତାହାକୁ          ଦେଖି ଜୟ କରି
ବେଗେ ତୁ ଯାଅ କପିବର          ॥ ୯ ॥

ଏମନ୍ତ ବୋଲି          ଅନ୍ତର୍ହିତ ହୁଅନ୍ତେ
ଦେଖି ହନୁ ହେଲା ହରଷ
ମନେ ବିଚାରିଲା          ରାମ ବିଶ୍ୱନାଥ
ଗଲା ମୋ ମନୁ ଅବିଶ୍ୱାସ ।
ବିଚାରେ, କେତେମାତ୍ର ଏହୁ ରାବଣ
ରାମ ଆଜ୍ଞା ଯେବେ          ମୋତେ ଦେଇଥାନ୍ତେ
ମାରି ନଆନ୍ତି ତତକ୍ଷଣ          ॥ ୧୦ ॥

---

୭।୬-୦ନେଇ ମୁଥ          ୧୦।୫-୦କେତେ ଅବ୦
୯।୧-୦ଧରିଛି ସ୍ୱସ୍ୱଂରୂପ

ଏମନ୍ତ ବୋଲି        କିଛି ଦୂର ଅନ୍ତରେ
    ଦେଖିଲା ଅତି ଭୟଙ୍କର
କେ ସିଂହ ବଦନ        କେ ବ୍ୟାଘ୍ର ସ୍ୱରୂପ
    ବସିଲେ ଟଂକି ନିଶାଚର ।
  କେ ଚଢ଼ି, ହେମ ଗିରି ଶାଳ ସମାନ
ନେତ୍ର ନଗ୍ନ ଘୋର        ଧୂମ୍ର ଘନ ଦିଶେ
    କେ ଦିଶେ ପର୍ବତ ରଞ୍ଜନ        ॥ ୧୧ ॥

ଦିବ୍ୟ ପୁରମାନ        ଦେଖି ଦେଖି ଚଢ଼ି
    ନ ଦେଖି ଜନକ ନନ୍ଦନୀ
ଦୁର୍ଗସ୍ଥ ପ୍ରକାରେ        ପ୍ରବେଶ ହୋଇଲା
    ଯହିଁ ଅଛନ୍ତି ନାନାବର୍ଣ୍ଣୀ ।
  ପ୍ରଥମେ, ଦେଖେ କୁମ୍ଭକର୍ଣ୍ଣ ମନ୍ଦିର
ଅନ୍ତକାୟ ଇନ୍ଦ୍ର-        ଜିତ ଖର ବୀର
    ବିଭୀଷଣର ପୁରବର        ॥ ୧୨ ॥

ଏମନ୍ତ ପ୍ରକାରେ        ସର୍ବ ପୁରମାନ
    ଭ୍ରମି ଭ୍ରମି ବାୟୁ ନନ୍ଦନ
ନ ପାଇ ଜାନକୀ        ନ ଲଭେ ଧରଣୀ
    ପୁଣି ବିଚାରେ ମନେମନ ।
  ଦେଖିବି, ଏବେ ଏ ଦୁର୍ଗସ୍ଥ ପ୍ରାକାର
ଏତେ ମନେ ଧରି        କ୍ଷୁଦ୍ର ରୂପ ଧରି
    ସେ ପୁରେ ପଶେ ମହାବୀର        ॥ ୧୩ ॥

ଅତି ଭୟଙ୍କର        ଅସୁର ନିକର
    ଦେଖିଲା ହୋଇଛନ୍ତି ଜଗି
କରେ ଧନୁଶର        ଶିରରେ ମୁକୁଟ
    ଜଳଦ ଅନଳର ପ୍ରଭା ।
  ବାହୁରେ, ଏହୁତ ଅତି ଅଦ୍ଭୁତ
ସଜଳ ଜଳଦ        ଚଞ୍ଚଳ ଚିହ୍ନରେ
    କେତ୍ତେ ଦାବାଟସ୍ଥ ଶୋଭିତ        ॥ ୧୪ ॥

---

୧୧।୧-୦କିଛି ଛବେ୦
୧୧।୪-ବସିଲେଣ ପଢ଼୦
୧୨।୬-୦ଘୋର ଜଳ ଚଢ଼ି
୧୩।୩ ଖ-୦ନ ପାଇ ଧରଣୀ
୧୩।୪ ଖ-ପୁରେ୦
୧୩।୬ ଖ-୦ମନେ କରି୦
୧୪।୧ ଖ-୦ଅସୁର ଅପୁଷ୍ଟ ପୁର
୧୪।୨ ଖ-୦ଶୋଭା
୧୪।୪ ଖ-ଜଳ ଢେଖ୦
୧୪।୬ ଖ-୦ଚଞ୍ଚଳ ଉପରେ
୧୪।୭ ଖ-୦ବରାଉରା୦

ପୁଣି ବସ୍ତୁରେ ନୋହନ୍ତ ଘନାକୁଳ
କ ଏ ନଦୀର ଗିରଚୟ
ଉଲ୍ଲୋଳ କରଣେ ବଶୁଛି ପ୍ରଖର
ପବନେ ଶୁଭ କରେ ରୟ ।
ପୁଣି ସେ, ନରେଖି ଦେଖେ ମହାବୀର
ବୋଇଲା ନଷ୍ଟସ୍ୱେ ରାକ୍ଷସ ସଙ୍କୁଳ
ମଣି ମୁକୁଟରେ ଉଜ୍ଜ୍ୱଳ ॥ ୧୫ ॥
ଦ୍ୱାର ନରୋଧି ଅଛନ୍ତ ବୀରେ ରହି
କେମନ୍ତେ ପଶିବ ଭିତର,
ଅଛ ପରଖର ପାଶେ ବାନ୍ଧୁଛନ୍ତ
ପବନର ନାହିଁ ପ୍ରଚୁର ।
ଏସନ, ବସୁର ରାମଙ୍କୁ ଚନ୍ତିଲା
ନୟନ ଅଦୃଶ୍ୟ ରୂପ ଧରି ବୀର
ଅନ୍ତଃପୁର ମଧ୍ୟେ ପଶିଲା ॥ ୧୬ ॥
ବୋଇଲେ ରାକ୍ଷସେ ଏକେ ଏବେ ଚହିଁ
କେହୁ ପଶିଲା ସେ ଭିତର
କେ ବୋଲଇ ଯହିଁ ସମୀର ନ ଯାଇ
ଏଥେ ଆନର କ ପ୍ରଚୁର ।
ଏମନ୍ତ, ଶୁଣି ହସଇ ହନୁମନ୍ତ
ବୋଇଲା ଏହୁ ରାବଣ ଅନ୍ତଃପୁର
ମୁଁ ବେଗେ ଖୋଜିବି ସମସ୍ତ ॥ ୧୭ ॥
ଦେଖିଲା କଟୁ ଦୂରରେ ଦିବ୍ୟପୁର
ମାଣିକ୍ୟେ ହୋଇଛି ନିର୍ମାଣ
କେଉଁ ସ୍ଥାନରେ ଇନ୍ଦ୍ରନୀଳ ଘଟିତ
କାହିଁ ଶୋଭେ ହୀରା ପାଷାଣ ।
ସେ ପୁରେ, ପଢ଼ୁଛି ଦାନପଦଗଣ
କେଉଁଠାରେ ଖାଇ ଅଛି ଦଶଶିର
କାହିଁ ହେଉଅଛି ରଞ୍ଜନ ॥ ୧୮ ॥

---

୧୫।୧-୦ରୋହଇ୦
୨୫।୨-୦ଶିରଚୟ
୧୫।୩ ଖ-ହଲ୍ଲ
୧୫।୪ ଖ-ପବନର ସୂଚୀକର ସେ
୧୬।୧ ଖ-୦ଏହୁସ୍ୱର
୧୬।୪ ଖ-୦ସଞ୍ଚାର
୧୬।୫ ଖ-ଯେସନ୦
୧୬।୭ କ-ଅନ୍ତସ୍ପୁର
୧୭।୭ ଖ-୦ରାବଣ ଏହୁ୦
୧୭।୮ ଖ-ପ୍ରବେ
୧୮।୩ ଖ-୦ଇନ୍ଦ୍ରପୁର୦

ପୁଣି ସେ ପୁରବର ଦିଶୁ ଅଛଇ
ଅମରାବତୀର ସମାନ
ଗନ୍ଧର୍ବ ଗଣ ଯାନରେ ମନୋହର
ସୁମନା ସୁମନା ମଣ୍ଡନ ।
ରୁଚିର, ଦିଶଇ ସୁର ତରଙ୍ଗିଣୀ
ଶିବବରଙ୍କ ପ୍ରସ୍ତରରେ ପୁଣ ସେ
ହୋଇଛି ଅଛି ଶୋଭାବନୀ ॥ ୧୯ ॥
ସୁକାନ୍ତି ସୁକାନ୍ତ- ରେ କର ରୁଚିର
ଗୃହକେଶୀରେ ଶୋଭାକର
ମନୋରମା ବଳା ବଳା ମନୋହର
ରମ୍ଭୋରୁ ବନା ସେ ରୁଚିର ।
ମଧୁର, ପୁରରେ ଅଛି ଶୋଭାବନ
ଷଟ୍ପଦ ମାନଙ୍କରେ ହୋଇଛି ରଞ୍ଜନ
ବାଳାଗଣରେ ମନୋହର ॥ ୨୦ ।
ପୁଣ ସେ ଚର୍ଯ୍ୟା- ଗଣରେ ଶୋଭାକର
ଦିବ୍ୟ ମଣିଗଣେ ପ୍ରକାଶ
ଶୁକଗଣର ହୋଇଛି ସବଦିତ
ବହୁଅଛି ରତ୍ନ ବିଳାସ ।
ଦିଶୁଛି, କ ଳଭେ ଅତି ମନୋହର
ପବନେ ସୁରେ ହୋଇଛନ୍ତି ମୋହିତ
କରିଅଛି ମନ୍ଦ ହୃଷ୍ଟର ॥ ୨୧ ॥
କଦମ୍ବ କଦମ୍ବେ ଦିଶୁଛି ଶୋଭନ
ପ୍ରିୟୁ ପ୍ରିୟୁକରେ ରଞ୍ଜିତ
ବନ୍ଧୁ ନିକର କରେ ଶୋଭା ଦିଶୁଛି
ମଙ୍ଗଳ ଶଙ୍କାରେ ଶୋଭିତ ।
ଶୋଭନ, ଯହିଁରେ ବକର ନିକର
ରୁଚିର କୁନ୍ତଳା ବଳୀଆର ଶରେ
ଦିଶୁଅଛି ଏହୁ ରୁଚିର ॥ ୨୨ ॥

---

୧୯।୩ ଖ-ତୋସ୍ଵନରେ।
୧୯।୭ ଖ-ହରହରଙ୍କ ପ୍ରସ୍ତରେ ପୁଣ ସେ ଯେ।
୧୯।୭ ଖ-ଅତି।
୨୦।୧ ଖ-କର।
୨୦।୪ ଖ-ବଳାସେ।
୨୦।୬ ଖ-ମାତଙ୍ଗରେ।
୨୦।୭ ଖ-ଦେଶେଧନ
୨୧।୪ ଙ-ନାଳାରେ।
୨୧।୬ ଖ-ଶର।
୨୨।୭ ଖ-ଅତି।

ପୁଣି ଏ ଦିଶୁଛି ଅଳକା ପୁରର
ସମାନ ଅତି ମନୋହର
କୁବେରରେ କରି ଅତି ବିରାଜିତ
ଚନ୍ଦ୍ରମା ଧୀରେ ଶୋଭାକର ।
ହୋଇଣ୍ଟି, ଦରି ମଧ୍ୟରେ ପରିପୂର୍ଣ୍ଣ
ଶୂଳୀ ବିଳାସେ ହୋଇଅଛି ଅଦୃଶ୍ୟ
ନଦୀଗଣେ ସେ ଶୋଭିବନ ॥ ୧୩ ॥

ଶକ୍ରଧରର ବିଳାସକୁ ଦହୁଛି
ତଡ଼ିତ ଗର୍ଜରବେ ଧୀର
ବିପୁଳ ବୃକ୍ଷ କରିଅଛି ଉଦୟ
ସୀତା ଧାରଣେ ଅତି ଭାର ।
ବନରେ, ହୋଇଅଛି ସେହୁ ମଣ୍ଡିତ
ଏମନ ପ୍ରକାରେ ରାବଣ ମନ୍ଦିର
ଦେଖଇ ଅଞ୍ଜନାର ସୁତ ॥ ୧୪ ॥

ତହୁଁ କେତେଦୂର ଅନ୍ତରେ ମାରୁତି
ଦେଖିଲା ରାବଣ ଶୟନ
ମହା ଗିରିବର ପାଦପ ଗଣରେ
ଦିଶଇ ଏସନ ରଞ୍ଜନ ।
ମସ୍ତକ, ଶୃଙ୍ଗଗଣ ପ୍ରାୟେ ରୁଚିର
ଲୋହ ପରିଘ ସମାନ ଭୁଜଦଣ୍ଡ
ଗଢ଼ିବାରେ ଅତି ସୁନ୍ଦର ॥ ୧୫ ॥

ଉଦଧି ଫେନ ରୁଚିର ଅମ୍ବରରେ
ଶୋଭା ପାଉଛି ଦଶଶିର
ରତ୍ନ ଅଙ୍ଗଦେ ଦିଶଇ ମନୋହର
ଦିଶୁଥାଏ କାଳ ଭୟଙ୍କର ।
ଧବଳ, ଜଳଦ ସମାନ ବରନ
ଆଲିଙ୍ଗନ କରି ଅଛି ଏଣନାକ୍ଷୀ
ସୁଶୋଭିତ ଯାମିନୀ ରଞ୍ଜନ ॥ ୧୬ ॥

---

୧୩।୨ ଖ-ମୂଳଂ
୧୪।୧ ଖ-୦ବହୁଛି
୧୪।୩ ଖ-୦ବୃକ୍ଷ କରି ଉଦୟ ଅଛି
୧୫।୩ ଖ-୦ଡାପରେ
୧୫।୪ ଖ-୦ଯେସନେ୦
୧୫।୭ ଙ-ପଢ଼ୁବାରେ୦
୧୬।୧ ଖ-୦ଅମ୍ବର ରୁଚିରରେ
୧୬।୩ ଙ-ରତ୍ନ୦
୧୬।୨ ଖ-ଅଙ୍ଗଦ୦

ପାଶେ ବେଢି ଶୋଇ- ଛନ୍ତି ବାରଙ୍ଗନା
ରତି ଶ୍ରମରେ ଖେଦଭରେ,
ବିଲୁଳିତ କେଶ ପାଶ ଅସମ୍ଭାଳ
ଭୁଟି ପଡ଼ିଣ ମୋତି ଜଳେ ।
ସୁବର୍ଣ୍ଣ, ବେଶ ଅଳଙ୍କାରେ ରାଜନ୍ତି ।
ଦନ୍ତୀ ମର୍ଦିଲ୍ଲ କମଳିନୀ କାନନ
ପ୍ରାୟେକ ଅବଳା ଶୋଭନ୍ତି ॥ ୨୭ ॥
କି ଅବା ଚନ୍ଦ୍ର ସମୂହ ଛାଡ଼ିକରି
ପଡ଼ିଅଛନ୍ତି ଅବନିରେ,
ସରସ ମୁଖ ମଣ୍ଡଳ ଶୋଭାବନ
କିବା ନଶାନ୍ତି ସୁଧାକର ।
କେ ତନ୍ବୀ, କରୁଛି ମର୍ଦଳାଲିଙ୍ଗନ ।
ଅତି ପ୍ରିୟରେ କାନ୍ତରେ ଯେସନେ
ଆଲିଙ୍ଗନ ପାଏ ଶୋଭନ ॥ ୨୮ ॥
କେ ତନ୍ବୀ ବଲ୍ଲକୀ ହୃଦେ ଦେଇଅଛି
ତେଣୁକରି ଶୋଭା ଧରିଛି,
କି ଅବା ବେନି କୁଚ ଯନ୍ତେ ଦାରୁଣ
ତା ପାଶେ ଶରଣ ପଶିଛି ।
କେ ତନ୍ବୀ, ଧରିଣ କଚ୍ଛପ ସାରଙ୍ଗୀ,
ଭିଡ଼ିବାରେ କୁଚ ଚକ୍ର ସମ ଦିଶେ
ତେଣୁ ହୋଇଛି ଅତିରଙ୍ଗୀ ॥ ୨୯ ॥
କି ଅବା କାନ୍ତ ସ୍ୱରରେ ଖେଳୁଅଛି
ଚକ୍ର କଚ୍ଛପ ହୋଇ ମେଳ,
ଏ ଶୋଭା ଦେଖିଲେ ଶିବ ବଶ ହେବ
ବସ୍ତୁରେ କପି ମହାବଳ ।
ଏମନ୍ତେ, ସବୁ ପୁର ଯାଇଁ ଭ୍ରମିଲା,
ସୀତାଙ୍କୁ ନ ଦେଖି ଅତି ଆକୁଳରେ
ପୁଣି ମନରେ ବିଚାରିଲା ॥ ୩୦ ॥

---

୨୭।୧ ଗ-ପାଶେକ ରତଂ
୨୮।୫ ଖ-ସୁବର୍ଣ୍ଣଂ
୨୭।୬ ଖ-୦ମର୍ଦିଲ୍ଲଂ
୨୮।୫ ଖ-୦ମର୍ଦିଲ୍ଲ...
୨୮।୭ ଖ-୦ଦଶେଂ
୨୯।୧ କ-୦ବଲକଂ
୨୯।୫ ଚ-୦ଧରିଛିଂ
୨୯।୬ ଙ-ଭିଡ଼ିବାରେ ସମ ଚକ୍ରଦିଶେ ତେଣୁ
୨୯।୭ ଚ-ହୋଇଅଛିଂ
୩୦।୫ ଙ-୦ଯାଇଂ

ସେ ପୁର ଅନ୍ତକେ  ଦେଖିଲ୍କ ଭୂମି
ଶଯ୍ୟାରେ ରମଣୀ ରତନ,
ତନୁ ଜ୍ୟୋତିରେ  ନିନ୍ଦୁଅଛି ଦାମିନୀ
ରମା ଯେସନେ ଶୋଭାବନ ।
ଦେଖିଣ, ବଗୃରେ ପବନ କୁମର,
ଯେତେକ ରୂପ ଗୁଣ  ଶ୍ରୀରାମ କହିଲେ
ଅଛୁ ତ ଏହୁ ସମାଚାର  ।। ୩୧ ।।

ଏ ନିଶ୍ଚେ ଜାନକୀ  ଜନେକ ନନ୍ଦନୀ
ଯେହୁ ଶ୍ରୀରାମ ମନୋହାରୀ,
ଏ ନିଶ୍ଚେ ରାମ  ପ୍ରତି ଆଶା ଛାଡ଼ିଲ
ଭଜିଲା ଭାବେ ଦଶଶିରୀ ।
ରାବଣ, ସମ୍ପତ୍ତିରେ ବଶ ହୋଇଲା,
ନୋହିଇ ଅବା  ହୁଅଇ ମନ ଶଙ୍କା
କରି ସନ୍ନିଧିରେ ମିଳିଲ  ।। ୩୨ ।।

ଅସାଦ୍ଧ ବାସ ମୁଖୁଁ  ହୋଏ ପ୍ରକାଶ
ଜାଣି ବୋଇଲା ଏ ନୋହିଇ,
ଯାହା ମୂଢ଼ପଣେ  ବୋଇଲ ବଗୃର
ମେ ଲକ୍ଷ୍ମୀ ଏହୁ ସମ କାହିଁ ।
ମୋହର, ଛୁଣ୍ଡେ ଚଶୁ ଏବେ ବହନ,
ନିନ୍ଦା କରି ଯାହା  ସୀତାଙ୍କୁ ବୋଇଲ
ଏଣେ ଅର୍ଜିଲ ପାପମାନ  ।। ୩୩ ।।

ଏମନ୍ତ ବଗୃର  ସେ ସ୍ଥାନରୁ ଯାନ୍ତେ
ଶୁଣିଲା ସୁସ୍ୱର ଶବଦ,
କଟୀ କଙ୍କିଣୀ  ନୂପୁର କଳଧ୍ୱନି
ରମଣୀଗଣେ କାମ ଖେଦ ।
କସ ଏ, ବୋଲି ସେ ସ୍ଥାନେ ହେଲା ଯାଇ
ଦେଖିଲା ଉଦୟ  କାଳର ମିହିର
ସମାନ ବମାନେ ଅଛଇ  ।। ୩୪ ।।

---

୩୧।୧ ଖ-୦ଯାଇ
୩୧।୨ ଖ-ଭୂମିଂ ୦ସେ ରଞ୍ଜନ
୩୧।୩ ଖ-୦ଦାମିନୀର
୩୧।୪ ଖ-ଯେସନେଂ
୩୧।୭ ଗ-୦ଯେଦ୍ଧେଂ
୩୨।୧ ଖ-ଏମନ୍ତେ ଜାନକୀଂ
୩୨।୨ ଖ-ଯେହୁ ରାମଂ
୩୩।୧ ଖ-ଆସନ୍ନ ବାସ ହୋଏ ମୁଖୁଁ
୩୩।୪ ଖ ୦ଯେହେଂ

ହୋଇଛି ଦେବ କୁସୁମେ ବିଭୂଷିତ
ଦିବ୍ୟ ମଣିଗଣେ ଶୋଭନ,
ଛବି ଚନ୍ଦ୍ରାଗ ଗଣରେ ରଞ୍ଜନ
ଏହୁ ରାଜରାଜ ଆସନ ।
ତହିଁରେ, ଆରୋହିଲେ ସେ କପିବୀର ।
ମନେ ବଚୁରେ ନ ଦେଖିଲ ଜାନକୀ
ହୋଇଛି ଘୋର ଅନ୍ଧକାର ॥ ୩୫ ॥

ଏହୁ ଶ୍ରୀରାମ ବିଳାସ ନାମରେ
ପଞ୍ଚବିଂଶ ଛାନ୍ଦ ସମ୍ପୂର୍ଣ୍ଣ,
ରାବଣ ମନ୍ଦିର ବରଣନ ନାମ
ଦୋବର୍ଲୀରେ ଏ ରଞ୍ଜନ ।
ଶ୍ରୀରାମ, ପାଦ ପଙ୍କଜ ଚିନ୍ତି ମନେ
ନୃପତି ଧନଞ୍ଜୟ ଭଞ୍ଜ ଭଣିଲେ
ଦୋଷ ନ ଧର ସାଧୁଜନେ ॥ ୩୬ ॥

●

## ଷଡ୍‌ବିଂଶ ଛାନ୍ଦ

### ( ରାଗ—ନଳିନୀ ଗୌଡ଼ା )†

ଏଥୁ ଅନ୍ତରେ ଶୁଣ ବିଚିତ୍ର ରହସ୍ୟ ।
ସୀତା ଖୋଜି ନ ପାଇଲ୍ ପବନର ଶିଷ୍ୟ ଯେ ॥୧॥
ବିଚାର କରଇ ଏହୁ ପୁରତ ଅଗମ୍ୟ ।
ତିମିର ଗହନେ ଅବଦତ ମାର୍ଗମାନ ଯେ ॥୨॥
ଏମନ୍ତ ସମୟେ ଶାନ୍ତି କରଣ ପ୍ରକାଶି ।
ବିସ୍ତୁ ପଦ ଛୁଇଁଣ ବିବେକ କାନ୍ତି ଦଶି ॥୩॥

୩୫।୨ ଖ-ଶଣବାଣେ ଯେଂ
୩୫।୩ ଖ-୦ତା ଶରେଂ
୩୫।୬ ଖ-୦ହୃଦେଂ
୩୫।୭ ଖ-୦ସ୍ୱେ ଘୋର ଅଷ୍ଟର
୩୬।୪ ଖ-ଗଦାମଧରେଂ

† କ-ନରଣ ଗଉଡ଼ା
୧।୧ ଖ-୦ଅନ୍ତରେ ୦ରସ
୧।୧ ଖ-୦ସେଉିସ୍ୱର ତୋରସ୍ମ
୩।୧ ଖ-ପ୍ୟୁ ସକସ୍ୱେଂ
୩।୨ କ, ଖ-୦କଚ୍ଛୁଂ

କିବା ପ୍ରାଚୀ ନାୟିକେଶ କେତକର ଦଳ ।
ସୁମନା ପୁଷ୍ପ ପାଟଳ ପ୍ରାୟେକ ମଞ୍ଜୁଳ ଯେ ||୪||
କି ଅବା ସୀମନ୍ତ ଚନ୍ଦ୍ରଝୂର୍ମିର ପଟିକା ।
କିବା ବଞ୍ଜୁଳି ହସ୍ତରେ କର୍ପୂର ଚୂର୍ଣ୍ଣିକା ଯେ ||୫||
କିଛି କଳାକର କଳା ହୋଇଲା ଉଦିତ ।
ଦିଗଙ୍ଗନା ଲଲାଟ କି ଚନ୍ଦନ ଭୂଷିତ ଯେ ||୬||
ନିଶାନାୟିମାନ ତମ କର ପରଶରେ ।
ନାଶ କଲା ବଧୂ ଯେ ବଧୂର ତେଜଭରେ ||୭||
ଏମନ୍ତରେ ପ୍ରକାଶ ହୋଇଲା ଦ୍ୱିଜପତି ।
କିରଣ ଦୂତ ପେଷିଲା ସକଳ ଜଗତି ଯେ ||୮||
କେ ତହିଁ ପାଡ଼ିଲା ଯାଇଁ କୁଳଟାର ପଥ ।
କେହୁ ଉଲ୍ଲାସିତ କଲେ ଦ୍ୱିଜ ପକ୍ଷ ରଥ ||୯||
କେହୁ ଖଣ୍ଡିଲା ବେଗରେ ପଦ୍ମଙ୍କର ଶିଖ ।
କେହୁ ନେଲେ ଚକ୍ରବାକ ପ୍ରେମଧନ ଜୂର ଯେ ||୧୦||
କେହୁ ବସ୍ତ୍ରପ୍ରଦ ତହିଁ ବହିଲେ ମାର୍ଜନ ।
କେହୁ ତହିଁ କଲେ ତମ ତସ୍କର ନାଶନ ଯେ ||୧୧||
କେହୁ ଗୁମ୍ଫାଛଳେ ତିମିରକୁ ବନ୍ଦୀ କଲା ।
କେହୁ କାଳ କୋକିଳକ ବର୍ଣ୍ଣ ହରିନେଲା || ୧୨||
କେ ତହିଁ ମାନିନୀ ମାନ କଲେକ ଖଣ୍ଡନ ।
କେ ତହିଁ ବିଳାସ ସିନ୍ଧୁ କଲେ ଉଲ୍ଲାସନ ||୧୩||
ସହଜ ପରମହଂସ ହଂସ ଦୂର କଲା ।
କର ପ୍ରସାରିଣି ନଭ ସରେ ବିରାଜିଲା ||୧୪||
ହରି ହରି ପଦକୁ କରିଣ ଅବରୋହଣ ।
ବିଶେଷରେ ଚନ୍ଦ୍ର ଦର କରରେ ଶୋଭନ ||୧୫||
ପରମ ଶିଷ୍ଟକ କରିଅଛି ଆଲିଙ୍ଗନ ।
ଅଙ୍କ ଶ୍ରୀ ବକ୍ଷରେ କରି ଦଶଇ ଶୋଭନ ||୧୬||

---

୫,୭ 'ଖ' ରେ ନାହିଁ
୪।୧ କ-୦ପାଠକ ଭହିଂ
୯।୨। ଖ-୦ଦ୍ୱିଜସ୍ୱନ୍ତ୍ରଂ
୧୦।୨ ଖ-୦ପ୍ରେମଧୂନ୍‌୦
୧୧।୨ ଖ-୦କଲେ ଧିରେ୦
୧୨।୧ ଖ-୦ଜାସ୍ୱା ଭୁଲେ୦
୧୪।୨ କ-ନାହିଁ
୧୫।୨ କ-୦ଢରରେ୦
୧୬।୨ ଖ-୦ବକ୍ଷରେ ଦଶଇ୦

ପୀତ ଅମ୍ବରରେ ଏହୁ ଅତି ମନୋହାରୀ ।
ରମାଭିରାମାରେ ହୋଇଅଛନ୍ତି ଶୋଭାଧାରୀ ॥୧୭॥
ଦ୍ୱିଜବର ହୋଇ ଦ୍ୱିଜ ଖଣ୍ଡନେ ଉଦ୍ଧତ ।
ଅନଙ୍ଗ ବିଳାସ ହୋଇ ଅଙ୍ଗରେ ଶୋଭିତ ॥୧୮॥
ବଳଭଦ୍ର ନୋହେ ଏହୁ ରେବତୀ ରମଣ ।
ଦ୍ୱିଜରାଜ ହୋଇ ବସ୍ତୁଚ୍ଛେଦ ବିଳଂଘନ ଯେ ॥୧୯॥
ଶିତକର ହେଲେ ଏହୁ ଶିତିର କରଣ ।
ଦିବ୍ୟ ଭୂଷଣ ନୋହଣ ଦିବ୍ୟର ଭୂଷଣ ଯେ ॥୨୦॥
ନୋହେ ପୁରନ୍ଦର ସୁତ ତାରାର ରମଣ ।
ଅବ୍ଜ ହୋଇ ଅବଜର ଶିର କରେ ହୀନ ଯେ ॥୨୧॥
ରାମ ହୋଇ ହୋଇଅଛନ୍ତି ରୋହିଣୀ ରମଣ ।
ଦୋଷାକର ହେଲେ ଦୋଷାକର ନୋହେ ପୁଣ ଯେ ॥୨୨॥
ଦ୍ୱିଜବର ହୋଇ ଏହୁ ମିତ୍ର ନାହିଁ ହରେ ।
ଋଷିପୁତ୍ର ହୋଇ କାମ ପ୍ରଚୁରକୁ କରେ ଯେ ॥୨୩॥
ଏମନ୍ତ ରଜନୀକର ଉଦୟକୁ ଦେଖି ।
ସମୀରଣ ସୁତ ମନେ ହେଲ ଅତି ସୁଖୀ ଯେ ॥୨୪॥
ଗଗନ ମଣ୍ଡଳେ ବିକ୍ରୀଡ଼ା ଅତି ଖରେ ।
ଖେଳେ କି ରାଜ ମରାଳ ଦିବ୍ୟ ସରସୀରେ ଯେ ॥୨୫॥
ତାରକା କୁଳ କୁମୁଦକୁ ମୁଦ ପ୍ରକାଶିଲ ।
କିରଣ ସୁଧାରେ କି ଜଗତ ଧବଳିଲ ଯେ ॥୨୬॥
କାମଦେବ ତାକୁ କହି କଳଙ୍କ ଆପଣା ।
ଜଗତ ଜୟ ନିମନ୍ତେ କରନ୍ତି କାମନା ଯେ ॥୨୭॥
କରେ ନୋଳିଲକ ସେହୁ ଦିବ୍ୟ ପୁଷ୍କରିଣୀ ।
ତମ ଟଙ୍କ ଉଦ୍ଧାରଣ କଲ ଦ୍ୱିଜମଣି ଯେ ॥୨୮॥
କି ଅବା ସେ ଲଙ୍କାପୁରୀ ନାରୀ ଏ ଯେ ହୋଇ ।
ବିଶଦ ଅମ୍ବରେ ଅଛନ୍ତି ଅତି ଦୁଃଖେ ବହି ॥୨୯॥

---

୧୮।୨-ରମା ରମରେ ଯେହୁଂ
୨୦।୧ କ-୦ଦିବଂ
ଖ-ଦିବ୍ୟ ଭୁବନଂ
୨୧।୨ କ-ରେ ନାହିଁ
୨୨।୨ ଖ-୦ମୋହେଂ
୨୩।୧ ଖ-୦ମିତ ନାହବରେ
୨୪।୧ ଖ-୦ଉଦୟ ରଜନୀକଂ
୨୭।୧ ଖ-୦ଦେଖିଂ
୨୬।୧ ଖ-୦ତାକୁ ତହିଂ
୨୮।୧ ଖ-୦ପୁଷ୍କରଣି
୨୯।୧ ଖ-୦ପୁରକ ନାରୀ ଲେଉଁ ହୋଇ
୨୯।୨ ଖ-ବରଷଂ ୦ଦହି

ଚନ୍ଦ୍ରକାନ୍ତ ମଣି ଛଳେ ତେଜୁଛୁ ଲୋତକ ।
କହୁଅଛୁ ଦଶଗ୍ରୀବ ମରଣ ସୂଚକ ଯେ ॥୩୦॥
ଏମନ୍ତ ଭ୍ରମ କରନ୍ତୁ ସାହା କର ପାଇଁ ।
ସୀତା ମାର୍ଗଣେ ମାରୁତ ମନକୁ ବଳାଇ ଯେ ॥୩୧॥
ଦେଖିଲ ଉତ୍ତର ପାର୍ଶ୍ୱରେ ଦିବ୍ୟବନ ।
ହୋଇଅଛୁ ନାନା ତରୁ ଲତା ଗଣେ ଘନ ଯେ ॥୩୨॥
ଉଡ଼ୁଅଛୁ ମକରନ୍ଦ ଧୂଳି ପବନରେ ।
ପିକକୁଳ ଧ୍ୱନି ଯେ କରନ୍ତି ଉଚ୍ଚସ୍ୱରେ ॥୩୩॥
ବସୁରିଲା ଖୋଜନାହିଁ ଏହୁ ଯେ କାନନ ।
ଏତେକ ବୋଲଣ ବୀର ତେଜିଇଲା ବଦନ ଯେ ॥୩୪॥
ଦେଖିଲା କୁସୁମ ଭରେ ଅବନ ନ୍ଦୂରତ ।
ସଉରଭ ଭରରେ ହରୁଛି ମୁନିଚତ୍ତ ଯେ ॥୩୫॥
ତହିଁ ମଧ୍ୟେ ଦେଖିଲା ଯେ ଏକ ମହୀଧର ।
ନାନା ରତ୍ନ ପାଷାଣରେ ହୋଇଛି ରୁଚିର ଯେ ॥୩୬॥
କ୍ରୀଡ଼ନ୍ତି ବିବିଧ ପକ୍ଷୀ ଅତି ମନୋହର ।
ନାନା ରତ୍ନେ ନିର୍ମାଣ କରନ୍ତି ପୁରବର ଯେ ॥୩୭॥
ନାନାରତ୍ନ ବଚନ ଦିଶନ୍ତି କୁରଙ୍ଗିମା ।
ନାନାରତ୍ନେ ଧାଙ୍ଗ ବୃକ୍ଷମାନଙ୍କେ ଶୋଭିମା ଯେ ॥୩୮॥
ଅତି ହିଁ ଦୁର୍ଲଭ ଲୋହା କରିଛନ୍ତି ନିର୍ମାଣ ।
ସୁର ପୁରୁଙ୍ଗ ବଳେ ହରି ଆଣିଛନ୍ତି ରାବଣ ଯେ ॥୩୯॥
ଏମନ୍ତ ହୋଇଅଛନ୍ତି କ୍ରୀଡ଼ା ଯେ ଶଇଳ ।
ଷଡ଼ଋତୁ ଯହିଁ ରହିଛନ୍ତି ଏକମେଳ ଯେ ॥୪୦॥
ଭ୍ରମନ୍ତ ଭ୍ରମର କୁଳ ମଧୁପାନ ଭରେ ।
କେତେ ଝଡ଼ ପଡ଼ୁଛନ୍ତି ଅବନି ମଣ୍ଡଳେ ଯେ ॥୪୧॥
ଏମନ୍ତେ ଅଶୋକ ବନେ ବୁଲେ ହନୁମନ୍ତ ।
ନର୍ତ୍ତିତ ପକ୍ଷୀଗଣକୁ କଲାକ ଉଦ୍ଧତ ଯେ ॥୪୨॥
ତହିଁ ମଧ୍ୟେ ଦେଖିଲା ଶିଂଶପା ତରୁବର ।
ନାନାରତ୍ନ ପତ୍ରଗଣେ ହୋଇଛି ରୁଚିର ଯେ ॥୪୩॥

---

୩୦। ୨ ଖ-୦ସକ୍ତକ ଯେ
୩୦। ୨ ଖ-୦ଯହୁଁ ୦
୩୨। ୨ ଖ-୦ଚନ୍ଦ୍ରଭିଂ
୩୭। ୨ ଖ-୦ପାବଳ୍ଛରେଂ
୩୭। ୨ ଠାରୁ ୩୦। ପର୍ଯ୍ୟନ୍ତ 'ଖ'ରେ ନାହିଁ
୦। ୨ ଖ-୦ରୁଚିଂ

ମୋତି କୁସୁମରେ କରି ହରେ ମୁନିମନ ।
କୋଶେକ ବିସ୍ତାର ତାର ଅଛି ଶାଖାମାନ ଯେ ।।୪୪।।
ତଥିତଳେ ନିର୍ମାଣିଛି ସୁବର୍ଣ୍ଣର ବେଦୀ ।
କରଣ ହରୁଛି ମନ ଅବନିକି ଭେଦି ଯେ ।।୪୫।।
ତଥିପରେ ବସିଛି ଶରଦ ଚନ୍ଦ୍ରମୁର୍ତ୍ତି ।
ଶ୍ରୀରାମ ବିଚ୍ଛେଦୁ ଏକ ବେଣୀ ଅଛି ବନ୍ଧି ଯେ ।।୪୬।।
ତନୁ ତନୁ ଏକ ଶଶିଲେଖାର ସମାନ ।
ନୟନୁ ଲୋତକ ଧାର ତେଜେ ଅନୁକ୍ଷଣ ଯେ ।।୪୭।।
ମଳିନ ବେଶ ବନେ ହୋଉଛି ଶୋଭନ ।
ହା ରାମ ବୋଲିଣ ମୁଖେ ବୋଲଇ ବଚନ ଯେ ।।୪୮।।
କାନ୍ତ ବିଚ୍ଛେଦରୁ ଜୀବ ତେଜିବା ମନରେ ।
ଉପରଣ ବାସ ଲଗାଇଲା ଶାଖାପରେ ଯେ ।।୪୯।।
ମରଣେ ନ ଜାଣେ ସ୍ତ୍ରୀ ଆନ ଯେ ଉପାୟ ।
ଗଳପାଶ ଏକା କରିଥାନ୍ତି ସମୁଦାୟ ଯେ ।।୫୦।।
ଏହି ସମୟରେ ତହିଁ ପବନ ନନ୍ଦନ ।
ପ୍ରବେଶ ହୋଇଲା କ୍ଷୁଦ୍ର ରୂପକୁ ଧରିଣ ।।୫୧।।
ପର୍ଣ୍ଣର ତଳରେ ସେହୁ ଆଚ୍ଛନ୍ନ ରହିଲା ।
ଏହୁ ସୀତା ହେବ ବୋଲି ମନେ ବିଚାରିଲା ।।୫୨।।
ଏ ଯେବେ ମରିବ ଗଳେ ଫାଶ ଯେ ଲଗାଇ ।
ଶ୍ରୀରାମକୁ କସଟି କହିବ ମୁହିଁ ଯାଇ ଯେ ।।୫୩।।
ସବ ଲକ୍ଷଣେ ସମ୍ପୂର୍ଣ୍ଣ ଏହୁ ସେ ଜାନକୀ ।
ସେହିମତି ଦିଶୁଅଛି ହୋଇବ ନାହିଁକି ଯେ ।।୫୪।।
ଯେ ନ କହିଲେ ମୋତେ ରଘୁର ଈଶ୍ୱର ।
ତହୁଁ ଶତେଗୁଣେ ଏତ ଦିଶେ ମନୋହର ।।୫୫।।
ଏହି ସମୟେ ରାବଣ ସପନ ଦେଖିଲା ।
ରାମ ଦୂତ ସୀତା ପାଶେ ପ୍ରବେଶ ହୋଇଲା ।।୫୬।।
ନିଦ୍ରା ତେଜି ଚେଇଁଣ ଉଠିଲା ଦଶଶିର ।
ପୁର ପାରୁଶରେ ଛନ୍ତି ନାରୀଗଣେ ପୂରି ।।୫୭।।

---

୪୫।୨ ଢ-୦ତରୁଛୁ ବନଂ
୪୮।୨ ଗ-ରାମଂ
୪୯।୨ ଗ-୦ନ ପାଇଲାଂ
୫୦।୧ ଖ-୦ସ୍ଥାନଂ
୫୦।୨ ଖ-ଗଳପାସଂ
୫୩।୧ ଢ-୦ଫାସ ଦେଇ
୫୫।୧ ଖ-୦ରଘୁନ୍ଦଂ
୫୬।୧ ଢ-୦ହୋଧଇବଂ

ସୁଗନ୍ଧ ତଇଲ ଯେନ ଜାଳନ୍ତି ମଶାଲ ।
ସୀତାଠାରେ ମନ ବଳାଇଲା ଲଙ୍କପାଳ ଯେ ।।୫୮।।
କେତୁ ନକ ନେଇଥାଇ ସୀତାଙ୍କୁ ଗ୍ଭେଶଇ ।
ଏତେ ବୋଲି କରି ଧୀରେ ଆସେ ମତ୍ତ ହୋଇ ଯେ ।।୫୯।।
ଗ ବନ୍ତ ଗାଏଣୀମାନେ ସୁସ୍ୱର ଧ୍ୱନିରେ ।
ମଞ୍ଜୀର ମେଖଳା ରବ ଚରେ ଦିଗନ୍ତରେ ।।୬୦।।
କରିଣୀବୃନ୍ଦ ମଧ୍ୟରେ ଯେହ୍ନେ ଗଜବର ।
କି ଅବା ସୁର କାମେଣୀ ମଧ୍ୟେ ପୁରନ୍ଦର ଯେ ।।୬୧।।
ମୁକୁଟ କୁଣ୍ଡଳ କରି ଅତି ବିରାଜିତ ।
ମନ୍ଦୋଦରୀ କରେ କର କରିଛି ମଣ୍ଡିତ ହେ ।।୬୨।।
ନାରୀ ମୁଖ ରବ ଶୁଣି ବିସ୍ମୟରେ ପାବେଣୀ ।
ଏ କିସ ଧ୍ୱନି ଶୁଭୁଛି ଦିଗେ ବିରାଜମୀ ଯେ ।।୬୩।।
ଏମନ୍ତ ବୋଲିଣ ଦ୍ୱାର ଦେଲା ଯେ ଅନାଇ ।
ଦେଖିଲା ଆସୁଛି ପଥେ ମନ୍ଦୋଦରୀ ସାଇଁ ଯେ ।।୬୪।।
ବିଚିତ୍ର ଭୂଷଣ ଥିଲେ ଦିଶେ ଭୟଙ୍କର ।
ଶମଶାନ ପାଶ ଚୈତ୍ର ବୃକ୍ଷର ଆକାର ଯେ ।।୬୫
ମଣିମା ମଣିମା ବୋଲି ଡାକନ୍ତି ତରୁଣୀ ।
ସୀତାପାଶେ ପ୍ରବେଶ ହୋଇଲା ବଂଶପୋଣି ।।୬୬।।
ବୋଇଲା ଆରେ ସୁନ୍ଦରୀ ମୁଁ କାମେ ଆକୁଳ ।
କମାଇ ମୋ ମନବାଞ୍ଛା କରିବୁ ସଫଳ ।।୬୭।।
ଦେଖ ଚନ୍ଦ୍ରମୁଖି ମୋର ପ୍ରିୟ ନାରୀଗଣ ।
ତେବେ ସେ ତୋର ପାଶୁ ନ ଛୁଡ଼ଇ ମୋର ମନ ।।୬୮।।
ହସିଣ ଚୁମ୍ବନ ଦେଇ ରଖ ମୋର ପ୍ରାଣ ।
ନିର୍ଦ୍ଦୟା ହୋଇଣ ମୋତେ ନ କହ ବଚନ ।।୬୯।।
ତିନପୁରେ ମୋର ସମ ନାହିଁ ଜାଣ ସଖି ।
ମୋତେ କମା ନ ଭଜୁଛୁ ପୂର୍ଣ୍ଣଚନ୍ଦ୍ରମୁଖି ।।୭୦।।

---

୫୯। ଖ-ଠମନେ ଆସେ ରାବଣ ଧୀରେ
୬୦। ଖ-ମଞ୍ଜିର ଖେଳାଇ ରବ କରେ
୬୧। ଖ-ଠଗଜବର
୬୨। ଖ-ଠଦେଇଛୁ ସଂଯୁତ
୬୩। ଖ-ଠଶୁଭୁଛୁ ବୋଲି
୬୫। ଖ-ଶମଶାନ ପାଶରେ ଠ
୬୬। ଖ-ଠକନ୍ଦ୍ରନ୍ତି
୬୭। ଖ-କମାଇ ତୁ
୭୦। ଖ-ଠନ ଲଭୁ

ତୋର ବନ୍ଧୁ କାମ ମୋର ଧ୍ୱଂସୁଅଛି ଅଙ୍ଗ ।
ତୋର ହୃଦ ମୋର ହୃଦ କର ବେଗ ସଙ୍ଗ ॥୭୧॥
ସେ ରାମ ତୋର ତ ପୁଣି ଭିକ୍ଷା ମାଗି ଖାଇ ।
ତାହାକୁ ତୁ କେସନେ ରସିକ କହୁ ବଇଦେହୀ ॥୭୨॥
ସେ କାହୁଁ ଜାଣିବ ସଖି କାମକେଳି ରଙ୍ଗ ।
ମୁହିଁ ସେ ଜାଣଇଁ ରଙ୍ଗ ନ କର ବିରଙ୍ଗ ॥୭୩॥
ତୋର ତାର ଭେଟ ଆଉ ହୋଇବ କେସନେ ?
ରାମ ପକ୍ଷୀ ନୋହେ ଉଡ଼ି ଆସିବ ଗଗନେ ॥୭୪॥
ଏ ଭୋଗ ବିଳାସ ମୋର ହୁଅ ପାଟରାଣୀ ।
ଏହୁମାନେ ଶୁଣ ଖଟିଥିବେ ମନଜାଣି ଗୋ ॥୭୫॥
ଏସନ ରାବଣ ବାଣୀ ଶୁଣିଣ ଜାନକୀ ।
ବୋଲନ୍ତି ତୁ ରାମ ତୁଲେ ସରି ନୋହୁଁ ନକରେ ॥୭୬॥
ଯାହାର କାଣ୍ଡରେ ଜାଣ ମଲା ମାରି ବାଳି ।
ଯେହୁ ଜଣିଅଛି ବାଟେ ପର୍ଶୁ ମହାବଳୀ ॥୭୭॥
ପିତା ଘରେ ମୋର ଶିବ ଧନୁ ଥିଲା ଜାଣୁ ।
ଯଉଁ ଧନୁ ଦେଖି ଅର୍ଜୁନର କମ୍ପେ ତନୁ ॥୭୮॥
ଯଉଁ ଧନୁ ଦେଖି ସୁରରାଜ ଗଲା ଡରି ।
ତୁହି ପରା ପଳାଇ ଅଇଲୁ ଲଙ୍କାପୁରୀ ॥୭୯॥
ସେ ଧନୁଟି ଭାଙ୍ଗିଅଛି ଦଶରଥ ସୁତ ।
ତୁ କେସନେ ତାହାର ସମାନେ ହୋଉ ଯୁତ ॥୮୦॥
ସିଂହର ସମାନେ କେହ୍ନେ ହୋଇବ ଜମ୍ବୁକ ।
ହସ୍ତୀ ତୁଲେ ତୁ କାହିଁକି ଖର ହୋଉ ଯୋଖ ॥୮୧॥
ଶ୍ୱାନ କାହିଁ ବ୍ୟାଘ୍ର ସଙ୍ଗେ ହୋଇବ ସମାନ ।
ରାମର ତୋହର ତାରତମ୍ୟ ଏତେ ଜାଣ ॥୮୨॥
ଏହୁ ରାମ ନ ଥିବାରୁ ତୁ ଆଣିଲୁ ହରି ।
ରାମ ଦେଖିଥିଲେ ତୁ ଦେଖନ୍ତୁ ଯମପୁରୀ ॥୮୩॥

---

୭୩।୨ ଖ-ସେହୁ ସେ ଜାଣେଇ ରଙ୍ଗନରେ ବିରଙ୍ଗ ଗୋ
୭୨।୭୩-'ଖ' ରେ ନାହିଁ
୭୪।୧ ଖ-ଂଯେସନ
୭୬।୨ କ-ଏହ୍ନମଏଂ
୭୭।୨ ଖ-ସେହୁ ଜଣିଛୁ ବାଟରେଂ
୭୮।୨ ଖ-ଂଜାନୁ
୮୦।୨ ଖ-ଂସଙ୍ଗତେ ହେଉ ଯୋଟ
୮୧।୨ ଖ-ଂକାହ୍ନିକ ରୂଂ
୮୨।୨ ଖ-ଂସଙ୍ଗେ ସରହେଉ ସେହ୍ନମତଂ
୮୩।୧ ଖ-ଂମୋତେ ଧର

ଭୃଣ ସାକ୍ଷୀ କରି ସୀତା ବଚନ କହଇ ।
ନୟନରୁ ଲୋତକ ଧାର ନଦୀ ଯେହ୍ନେ ବହି ॥୮୪॥
ମହୀସୁତା ବାଣୀ ଶୁଣି କୋପିତ ରାବଣ ।
ଚନ୍ଦ୍ରହାସ କରେ ଧରି ବୋଲଇ ବଚନ ॥୮୫॥
ମାସକରେ ଯେବେ ତୁ ରାମକୁ ନ ଆଣିବୁ ।
ତେବେ ସେ ସୁନ୍ଦରୀ ମୋର ଘରଣୀ ହୋଇବୁ ॥୮୬॥
ନୋହିଲେ ତୋ ମୁଣ୍ଡକାଟି ପକାଇବ ତଳ ।
ଏତେ ବୋଲି କରେ ଝମକାଇ କରବାଳ ॥୮୭॥
ଦେଖିଣ ବୋଲନ୍ତି ତହିଁ ମୟଦୈତ୍ୟ ସୁତା ।
ଅତି ଦୁଃଖୀ ଅଟଇ ଏ ଶ୍ରୀରାମର କାନ୍ତା ॥୮୮॥
ବନଗୃହୀ ଏଥି ପ୍ରଭୁ ଅଛୁ କେଉଁ ସୁଖ
କାନ୍ତର ବିହୁନେ ଏହୁ ଲଭୁଅଛୁ ଦୁଃଖ ॥୮୯॥
ଆସ ଆସ ମୋହ ତୁଲେ କର ଅଭିଳାଷ ।
ଏତେ ବୋଲି ଆଲିଙ୍ଗନ କରି ପ୍ରାଣେଶ ॥୯୦॥
ଆକର୍ଷିଣ ଘେନିଗଲା ମନ୍ଦିରେ ତରୁଣୀ ।
ରାବଣ ଡାକିଣ ବୋଲେ ସର୍ବ ରାକ୍ଷସୁଣୀ ॥୯୧॥
ସୀତାକୁ ଭୟ ଦେଖାଇ କର ଯେ ତର୍ଜନା ।
ମୋହଠାରେ ଯେମନ୍ତ ହୋଇବ ତୋଷମନା ॥୯୨॥
ଏତେ କହି ନିଜପୁରେ ପ୍ରବେଶ ରାବଣ ।
ରାକ୍ଷସୀ ମିଳିଲେ ଆସି ତାର ସନ୍ନିଧାନ ॥୯୩॥
ବୋଲଇ ସୁମୁଖୀ ତୋତେ ଖାଇବୁ ଗୋ ଆଜ ।
ଛାଗମୁଖୀ ବୋଲେ ଆଜ୍ଞା ଦେଲା ଲଙ୍କରାଜ ॥୯୪॥
ମେଷମୁଖୀ ବୋଲେ ମୁଁ ଖାଇବି ଏହା ମୁଣ୍ଡ ।
ବ୍ୟାଘ୍ରମୁଖୀ ବୋଲେ ବିନାଶିବି ଏହା ପିଣ୍ଡ ଯେ ॥୯୫॥
କେ ବୋଲଇ ବେଢ଼ିକରି ଏହାକୁ ଖାଇବା ।
କେ ବୋଲଇ ଶୋଣିତ ପିଇଣ ସୁଖୀ ହେବା ॥୯୬॥
ଏମନ୍ତ ଶୁଣିଣ ସେହି ରାକ୍ଷସୀଙ୍କ ବାଣୀ ।
ବୋଲନ୍ତି ଜାନକୀ ଖାଅ ହେଉ ଶୁଭବାଣୀ ॥୯୭॥

---

୮୪।୨ କ-୦ଯେହ୍ନେଶ୍ରେ୦
ଖ-୦ନଦୀ ଯେ ବୁହଇ
୮୬।୧ ଖ-ମାସକ ଭିତରେ୦
୯୦।୧ ଖ-୦ଆଜ ମୋର୦
୯୨।୨ ଙ-ମୋହରେ ଯେମନ୍ତେ ସ୍ନେ୦
୯୬।୧ ଖ-୦ବାଣ୍ଟିଣ କରି
୯୭।୨ ଗ-ବୋଲଇ ଜାନେକୀ ବୋଲି ତୁଅ୦

ଏ କଷ୍ଟରେ ଥିବାର ମରିବା ସବୁ ଭଲ ।
ହୃଦ ବିଦାରୁଛୁ ଲଙ୍କପତି ବାଣୀ ଛେଲ ॥୯୮॥
ଶ୍ରୀରାମ ବିହୁନେ ମୋତେ ହେଉ ଯେ ମରଣ ।
ବୋଲୁଅଛୁ ଏକଥା କି କରିବେ ଈଶାନ ॥୯୯॥
ଏମନ୍ତ ବୋଲିଣ ରାମା କରନ୍ତି ରୋଦନ ।
ତ୍ରିଜଟା କହନ୍ତି ରାକ୍ଷସୀଙ୍କି ଡାକି ଶୁଣ ॥୧୦୦॥
ଆଜର ନିଶାରେ ମୁହିଁ ଦେଖଇ ସପନ ।
କୁଟିଳ ଖାଖର କେଶ ବିକଟ ଦଶନ ॥୧୦୧॥
କୃଷ୍ଣବର୍ଣ୍ଣ ରୂପ ତାର ହସ୍ତେ ପାଶ ଧରି ।
ବାନ୍ଧିନେଲା ରାବଣ ସଗୋତ୍ର ଆଦିକରି ॥୧୦୨॥
ଗୋମୟ ହ୍ରଦରେ ନେଇ ବୁଡ଼ାଇଣ ଅଛି ।
ରାକ୍ଷସଙ୍କୁ ବାନ୍ଧିକରି ଆକର୍ଷି ରହିଛି ॥୧୦୩॥
ଏକା ବିଭୀଷଣକୁ ଦେଖିଲି ତହିଁ ନାହିଁ ।
ଶ୍ରୀରାମ ନାମରେ ସର୍ବେ ହୋଇଲେକ ଦହି ॥୧୦୪॥
ଏ ସୀତାଙ୍କୁ ଘେନି ରାମ ଶ୍ୱେତହସ୍ତୀ ପରେ ।
ବିଜେ କରିଛନ୍ତି ଏହା ଦେଖିଲି ସ୍ୱପ୍ନରେ ॥୧୦୫॥
ଏହାକୁ ଭର୍ତ୍ସନା ତୁମ୍ଭେ ନ ବୋଲ ଲୋ କେହି ।
ଶ୍ରୀରାମ ନିଶ୍ଚଏ ବିଷ୍ଣୁ ଲକ୍ଷ୍ମୀ ବଇଦେହୀ ॥୧୦୬॥
ଏବେ ଏହାର ଚରଣେ ପ୍ରଣାମ କରିଣ ।
ଅପରାଧମାନ ଯେ ଛଡ଼ାଅ କେହି ପୁଣ ॥୧୦୭॥
ଏହାକୁ ଖାଇବା ପାଇଁ ଯେବେଟି ବିଚାର ।
ଯେ ଯାହାର ନିଜ ମାଂସ କର ଗୋ ଆହାର ॥୧୦୮॥
ଏସନ ତ୍ରିଜଟା ବାଣୀ ଶୁଣି ଭୟ କରି ।
ସୀତାପାଦେ ପ୍ରଣାମ ବିହିଲେ ନିଶାଚରୀ ॥୧୦୯॥
କାରୁଣ୍ୟ ହୋଇଣ କହି ଦୋଷ ଛଡ଼ାଇଲେ ।
ଏ ସମୟେ ଗ୍ରହ୍ୟାପତି ଗଗନେ ମଣ୍ଡିଲେ ॥୧୧୦॥

---

୯୯।୨ ଖ-ମୋହରେ ଯେମନ୍ତେ ସ୍ୱେଂ
୧୦୦।୧ ଖ-ଏସନଂ
୧୦୦।୨ ଖ-୦ଶୁଣ
୧୦୧।୧ ଖ-୦ରଜନୀରେ ମୁହିଁ ଦେଖିଲିଂ
୧୦୨।୧ ଖ-୦କେଶଂ
୧୦୩।୧ ଖ-୦ହ୍ରଦରେଂ ଭସାଇଣଂ
୧୦୩।୨ କ-୦ଆକ୍ରୋଷିଂ
୧୦୬।୨-୧ ଖ-୦ତର୍ଜନାଂ
୧୦୭।୨ ଖ-୦ତହିଁ ପୁଣ
୧୧୦।୨ ଖ-୦ମଣ୍ଡିଲେ

ସ୍ନାନ କରିବାକୁ ଗଲେ ରାକ୍ଷସୀ ସକଳ ।
ଏତେ ଅପରୂପେ ପାଇଲା ମହାବଳ ।।୧୧୧।।
ବର୍ଣ୍ଣଣ ରାମ ବୋଲ ବୋଇଲା ବଚନ ।
ସୀତଯ୍ୟା କର୍ଣ୍ଣରେ ପ୍ରବେଶ ହେଲା ସ୍ୱନ ।।୧୧୨।।
ଉଠିକରି ଚଉଦିଗେ ଅନାଇଁ ବୋଇଲା ।
ମଲା ପ୍ରାଣୀକି କେହୁ ଜୀବଦାନ ଦେଲା ।।୧୧୩।।
ଦରିଦ୍ର ବାଞ୍ଛନ୍ତେ କେହୁ ଦେଲା କୋଟିନିଧି ।
ଦଗଧ ବନରେ କି ଅମୀୟ ସିଞ୍ଚେ ବିଧି ।।୧୧୪।।
ଯେ କହିଲା ରାମ ବୋଲି ଆଉ ବୋଲୁ ସେହୁ ।
ଦେବତା କି ଆନ କେହି ପ୍ରତ୍ୟକ୍ଷ ସେ ହୋଉ ।।୧୧୫।।
ଏମନ୍ତ ବୋଲନ୍ତେ ହନୁ ବୋଲେ ରାମ ରାମ ।
ସୀତାର ଚରଣେ ଆସି କଲାକ ପ୍ରଣାମ ।।୧୧୬।।
ଦେଖିଲା ଜାନକୀ ଆଗେ ଶିଶୁବଳି ମୁଖ ।
ବୋଇଲେ ତୁ କେହୁ କଲୁ ମୋର କର୍ଣ୍ଣସୁଖ ।।୧୧୭।।
ବୋଇଲୁ ଯେ ରାମକୁ କି ଦେଖିଅଛୁ ରାମ ।
ତାର କେସନ ସ୍ୱରୂପ କହ ବେଗେ ସୋମ ।।୧୧୮।।
ସେହୁ ତ ମନୁଷ୍ୟ ତୁହି ଅଟୁ ବନଚର ।
ତାର ତୋର ଭେଟ ଅବା ହେଲା କଉଁଠାର ।।୧୧୯।।
ମୋତେ ଭୁଲାଉଛୁ ତହୁଁ ପ୍ରତ୍ୟକ୍ଷେ ରାବଣ ।
ମୂର୍ଖପଣେ ତୁହି କହୁଅଛୁ ଏ ବଚନ ଯେ ।।୧୨୦।।
ବୋଇଲା ମାରୁତି ମୁହିଁ ନୋହଇ ରାକ୍ଷସ ।
ସୁଗ୍ରୀବର ସଚିବ ମୁଁ ଶ୍ରୀରାମର ଦାସ ।।୧୨୧।।
ବାଳିକି ମାରିଣ ରାମ ସୁଗ୍ରୀକି ରାଜା କଲେ ।
ତୋତେ ଖୋଜି ଆସିବାକୁ ଆମ୍ଭଙ୍କୁ ପେଷିଲେ ।।୧୨୨।।
ଯେବେ ତୋହର ସଂଶୟ ହୋଇଲା ମନର ।
ଦେନ ଏହୁ ଶ୍ରୀରାମର ମୁଦ୍ରିକା ରୁଚିର ।।୧୨୩।।

---

୧୧୧।୨ ଖ-୦ଅପସର ଯେ୦
୧୧୫।୧ ଖ-ଯେ ବୋଇଲ୦ ସେହି
୧୧୬।୧ ଖ-୦ସିସୁବଳୀ୦
୧୧୭।୨ ଖ-୦କହିରୂ୦
୧୧୮।୧ ଖ-୦ରାମ ତୁ କି କେ୦
୧୨୦।୧ ଙ-୦ନଷ୍ଟେ ତୁ୦
୧୨୧।୨ ଖ-୦ସୁନ୍ଦା ମୁହିଁ୦
୧୨୨।୨ ଙ-୦ଖୋଜିବାକୁ ଅମ୍ଭମାନଙ୍କୁ୦
୧୨୩।୦ ଖ-୦ଦେଖ୦

ଆହୁରି କହୁଅଛନ୍ତି ଗୂଢ଼ତର ବାଣୀ ।
ସାବଧାନେ ତୁମ୍ଭେ ଶୁଣ ଜନେକ ନନ୍ଦିନୀ ॥୧୨୪॥
କସ୍ତୁରୀ ମାଂସ ଖଣ୍ଡକୁଟେ ଶୁଖାବନ୍ତେ ।
ଇନ୍ଦ୍ର ସୁତ କାକ ଯେ ମିଳିଲା ତୋ ଅଗ୍ରତେ ॥୧୨୫॥
ନଖ ଦେଇ ତୋର ଉରଜକୁ ଷତ କଲା ।
ଏହା ଦେଖି ରାମ ଶସ୍ତ୍ର ତାରେ ପ୍ରହାରିଲା ॥୧୨୬॥
ଏତେ କହି ସୀତା ହସ୍ତେ ଦେଲା ମୁଦ୍ରି ନେଇ ।
ଦେଖିଣ ଅତି ହରଷ ହେଲେ ବଇଦେହୀ ॥୧୨୭॥
ବୋଲଇ ପବନ ସୁତ ଆଜ୍ଞା ମୋତେ କର ।
ଶ୍ରୀରାମ ଛାମୁକୁ କସ ଉଦନ୍ତ ବଗୃର ॥୧୨୮॥
ଏହା ଶୁଣି ହସି ସୀତା କହନ୍ତି ବଚନ ।
ତୁ ଅଟୁ ରାମ ବିଶ୍ୱାସ ପବନ ନନ୍ଦନ ॥୧୨୯॥
ଏହୁ ମଣି ମୋର ତୁମ୍ଭେ ଦିଅ ରାମପାଶେ ।
କହିବୁ ରଖିଛୁ ଜୀବ ଆଗମନ ଆଶେ ॥୧୩୦॥
ଯାଅ ତୋର ମଙ୍ଗଳ ଯେ ହେଉ ହନୁମନ୍ତ ।
ଯେମନ୍ତ ଆସନ୍ତୁ ବେଗେ ମୋର ପ୍ରାଣକାନ୍ତ ॥୧୩୧॥
ଏସନ ଶୁଣିଣ ହନୁ ପ୍ରଣାମ କହିଲା ।
ଫଳ କିଛି ଖାଇଯିବି ବୋଲି ବଗୃରିଲା ॥୧୩୨॥
ଛତିଶ ଯେ ଛାନ୍ଦ ଏହୁ ଶ୍ରୀରାମ ବିଳାସ ।
ଜାନକୀ ସଙ୍କେତ ଦାନେ ହୋଇଛି ପ୍ରକାଶ ॥୧୩୩॥
ଶ୍ରୀରାମ ସୀତା ଚରଣ କରଣ ଧିଆନ ।
ଭଣେ ନୃପ ଧନଞ୍ଜୟ କରଣ ସ୍ମରଣ ॥୧୩୪॥

●

---

୧୨୪।୧ ଖ-୦ଗୁହ୍ୟ ବାଣୀ
୧୨୪।୨ ଖ-୦ଶୁଣ ତୁମ୍ଭେ୦
୧୨୭।୧ ଖ-୦ତୋ ଉରରେ୦
୧୨୭।୨ ଖ-୦ଶରେ୦
୧୩୧।୨ ଖ-୦ବେଗେ ମୋହର ଅଟେ୦
୧୩୨।୨ ଖ-୦କିଛୁ ଖାଇବି୦
୧୩୩।୨ ଖ-୦ସଙ୍କେତେ୦
୧୩୪।୨ କ-୦ଧନଞ୍ଜୟ୦
ଖ-୦ଏ ଗୀତ ରଚଇ୦

# ସପ୍ତତ୍ରିଂଶ ଛାନ୍ଦ

## ( ରାଗ—ବସନ୍ତ )

( ଆଷାଢ଼ ଶୁକ୍ଳ ବାଣୀରେ ଗାଇବ )*

ଏଥୁ ଅନନ୍ତରେ ପବନ ସୁତ
ହର୍ଷର ମନେ କଲେକ ଚିନ୍ତିତ
ଦେଖିଲି ଜାନକୀ ଶ୍ରୀରାମ କାନ୍ତା
ମୋର ତ ଗଲା ଏବେ ମନ ଚିନ୍ତା
ସଙ୍କେତ ଲଭିଲି
ପ୍ରଭୁ କାର୍ଯ୍ୟ ମୋର ସୁଫଳ ହେଲା ॥୧॥

ଚୋର ରୂପରେ ପଶିଲି ଲଙ୍କାର
ଏହି ରୂପେ ଗଲେ କି କାର୍ଯ୍ୟ ମୋର
ଦେଖିବି ରାବଣର ସମାର୍ଜନ
ଦେଖାଇବି ତେବେ ମୋ ବୀରପଣ
କରିବି ଯେସନ
ଦେବଗଣେ କରୁଥିବେ ବଖାଣ ॥୨॥

ଏତେକ ମନେ ଚିନ୍ତି ମହାବୀର
ବୃକ୍ଷମାନଙ୍କୁ ଝାଙ୍କିଲା ସତ୍ୱର
ଦିବ୍ୟ ଫଳମାନ କଲା ଭୋଜନ
ଅତି ଆନନ୍ଦେ ବଦରେ କାନନ
ସେ ପବନ ସୁତ
ତରୁଗଣମାନ କଲା ଖଣ୍ଡିତ ॥୩॥

କ୍ଷଣକେ ଧ୍ୱଂସିଲା ତେଜେ ବିପିନ
ସୀତା ରହିବା ଠାବକୁ ଛାଡ଼ି
ପ୍ରାସାଦ ଉପରେ ବସିଲା ସତ୍ୱର
ଘାତ ପ୍ରହାରେ ତାହା କଲା ଚୂର
ସେ ବୀର ପଡ଼ିଲା
ଶବଦେ ମେଦିନୀ ସବୁ ପୂରିଲା ॥୪॥

---

* 'ଭ'ରେ ଗାଇ

୨।୨ ଖ-ଚିନ୍ତିଲା ମନରେ ହରଷ

୨।୮ ଖ-ବେଳୁ ଅଗ୍ରେ

୪।୨ ଖ-ଗୋପନରେ

ଯେସନେ ପୁରନ୍ଦର ବଜ୍ରଘାତେ
ମହାଗିରି ଶୃଙ୍ଗ ପଡ଼େ ଭୂତଳେ
ଶୁଣି ଧାଇଁଲେ ଆରାମ ପାଳକ
ଧରିଛନ୍ତି କେହୁ ଅସି ଫଳକ
ଶୂଳ ମୁଦ୍‌ଗର
ବେନି ଦଶନ୍ତି ଅତି ଭୟଙ୍କର ||୫||

ଦେଖିଲେ ପ୍ରାସାଦ ଭଗ୍ନ ପଡ଼ନ୍ତି
ଏକ କପିବୀର ତହିଁ ବସିଛି
ତୋରଣ ଖମ୍ବକୁ କରି ଅବଲମ୍ବ
ଦେଖନ୍ତା ଜନର ହରୁଛି ଦମ୍ଭ
ଅନଳ ସ୍ୱରୂପ
ଭାଙ୍ଗି ପକାଉଛି ତରୁ କଳାପ ||୬||

ଦେଖି ବୋଲନ୍ତି ରଜାର କଙ୍କର
କାହୁଁ ଏ ମିଳିଲା କପି ଚାମର
ନୃପ ଆସନ ଭାଙ୍ଗି ପକାଇଲା
ଅଶୋକ ବନକୁ ବିଧ୍ୱଂସ କଲା
ମାରିବା ଏହାକୁ
ଶୁଣିଲେ ରଜା ଦଣ୍ଡିବ ଆମ୍ଭଙ୍କୁ ||୭||

ଧାଇଁ ଯାଇଁଣ ଏକ ରାକ୍ଷସୁଣୀ
ତୋଟା ପାଳକଙ୍କୁ ସଙ୍ଗତେ ନେଇ
କହିଲା ଦଶ ବଦନ ଛାମୁର
ଦୂରରୁ ଶିରେ ଯୋଡ଼ି ବେନିକର
ଶୁଣ ଲଙ୍କପତି
ବହୁଛି ଭେଳେ ଦେବ ବିଟପ ଗତି ||। ||

---

୫।୨ ଖ-୦ପଡ଼େ
୬।୧ ଖ-୦ଭାଙ୍ଗି
୬।୪ 'ଖ'ରେ ନାହିଁ
୬।୬ ଗ-୦ଚୋରେ୦
୭।୨ ଖ-୦ଅଧମ
[ ] ଅନ୍ତର୍ଗତ ଅଂଶ 'ଗ'ରେ ନାହିଁ
୮।୪ ଖ-ଶିରରେ ପୁଣ୍ଡ୦

କାହୁଁ ଅଇଲା ଏକଇ ବାନର
ଜାନକୀର ଭୁଲେ କଲା ବର୍ବ୍ବର
ଅଶୋକ ବନକା ସବୁ ଭାଙ୍ଗିଲା
ସୀତା ବିଶ୍ରାମ ସ୍ଥାନ ହିଁ ଛାଡ଼ିଲା
ଗର୍ଜିଲା ଜଗତ୍ରି
ପ୍ରଳୟ କାଳ ସମାନ ମୂରତି ।।୯।।

ଶୁଣିଣ ବର୍ବ୍ବରିଲା ଲଙ୍କପାଳ
କପିମାନଙ୍କେ ଛନ୍ତି ମହାବଳ
ଆମ୍ଭର ତାଙ୍କର ବିରୋଧ ନାହିଁ
ଏଥେ ବା ସେହୁ ଆସିବେ କିମ୍ପାଇ
ସେ ବଳିଷ୍ଠ ତିନ
ବାଳି ସୁଗ୍ରୀବ ଭଣଜା ପାବେଣି ।।୧୦।।

ଏ ତିନ ଜଣୁ ଜଣେ ଆସିଥିବ
ଜାଣିଲେ ସିନା ସମ୍ପ୍ରତେ ହୋଇବ
ଆଜ୍ଞା ଦେଲେ ସେହୁ କିଙ୍କରଗଣ
ସେହୁ ବାନରକୁ ବାନ୍ଧିଣ ଆଣ
ରାଜା ଆଜ୍ଞା ପାଇ
ବେଗେ ଧାଇଁଲେ ଦୈତ୍ୟବଳ ତହିଁ ।।୧୧।।

ହୋଇଲେ ତୋଟା ପୁରରେ ପ୍ରବେଶ
ଦେଖିଲେ ବସିଛି କପିଙ୍କ ଈଶ
ଆରେ ରେ ବାନର ଭାଙ୍ଗିଲୁ ବନ
ରାଜାର ଏହୁ ପ୍ରିୟ କେଳିସ୍ଥାନ
ମଲୁରେ ପାମର
ଏତେ ବୋଲି ଶର କଲେ ପ୍ରହାର ।।୧୨।।

ଯେତେ ଶସ୍ତ୍ରମାନ କଲେ ସେ ବୃଷ୍ଟି
ଅଦୃଶ୍ୟ କଲେ ତହିଁ ସବୁ ସୃଷ୍ଟି
ଦେଖି ହନୁମନ୍ତ କ୍ଷୋଭ ନ କଲା
ଏକ ବୃକ୍ଷ ଜଗତ୍ରିରୁ ଘେନିଲା
ରାକ୍ଷସ ସଇନ
ପିଟିଣ ଚୂର୍ଣ୍ଣ କଲା ସେ ପାବେଣି ।।୧୩।।

---

୯।୪ ଖ-ଠସ୍ଥାନକୁ ୦    ୧୦।୩ ଖ-ଠସେ ସେଂ
୯।୫ ଖ-ଭଜିଲଂ

ଲଙ୍କର ବଳ ସବୁ ହେଲେ ହତ
ଦେଖି ରାକ୍ଷସୀ ଗମିଲେ ତ୍ୱରିତ ।
ବୋଲନ୍ତି ଶୁଣ ଦୈତ୍ୟ ଅଧିପତି
କପି ତୋ ସୈନ୍ୟ ମାରିଲା ବକୋତ୍ତି ।
ଅତି ପରଚଣ୍ଡ,
ସ୍ତମ୍ଭ ଧରିଛି ଯେସନେ କାଳଦଣ୍ଡ ।।୧୪।।

ଶୁଣି ରାବଣ ଅତି କ୍ରୋଧ କରି
ପେଷିଲା ସେନାପତିଙ୍କି ହକାରି ।
ପାଞ୍ଚ ସେନାପତି ଗମିଲେ ଖରେ
ଯେ ଯାହା ଅସ୍ତ୍ର ଧରିଛନ୍ତି କରେ
ବଳ ଅପ୍ରମିତ
ହନୁମନ୍ତକୁ ଭେଟିଲେ ତ୍ୱରିତ ।।୧୫।।

ତୋରଣପରେ ବସିଅଛି ମାରୁତି
ମନେ ହେଁ କାହାକୁ ନାହିଁ ତା ଭୀତି ।
ଜୃମ୍ଭଣ ବୀର କରେ ଘନ ଘନ
ଲାଞ୍ଜ ଶବଦେ ପୂରୁଛି ଗଗନ
ଦେଖି ଦୈତ୍ୟ ବୀର
ବେଢ଼ିଲେ ତାକୁ କରି ଶତେ ପୁର ।।୧୬।।

ଅସ୍ତ୍ର ପ୍ରହାରେ ଲୁଟିଲା ମିହିର
ବରଷା ପ୍ରାୟେ ପଡ଼େ ଶର ଧାର ।
ଦେଖି କୋପ କଲା ପବନସୁତ
ସ୍ତମ୍ଭ ବୁଲାଇ ପିଟିଲା ତ୍ୱରିତ
ରାବଣର ସୈନ୍ୟ
ନିମିଷ ମାତ୍ରକେ କଲା ନିଧନ ।।୧୭।।

---

୧୪।୧ ଖ-୦ରଜନେ୦
୧୪।୨ ଖ-୦ରାକ୍ଷସ ମିଳିଲେ୦
୧୪।୬ ଭ-୦ଯେସ୍ତେ୦
ଖ-ଶମ୍ଭ୦
୧୫।୪ ଗ-୦ଶସ୍ତ୍ର୦
୧୭।୨ ଖ-ମନରେ୦

ଦେଖି ଧାଇଁଲେ ପାଞ୍ଚ ସେନାପତି
ପାଞ୍ଚ ଅଗ୍ନି ସମ ତାହାଙ୍କ ମୂର୍ତ୍ତି ।
ଦେଖି ପାବେମା କ୍ଷୋଭ ନ ପାଇଲ
ସେହି ପ୍ରମନ୍ତ ଯେନ ତାଙ୍କୁ ପିଟିଲ
କରଣ ସମର
ସେ ପାଞ୍ଚେ ଗଲେ ଯମବମ ପୁର ॥୧୮॥

ସ୍ମର କହନ୍ତେ କୋପେ ଲଙ୍କପତି
କୁମର ଅକ୍ଷୟ ଗଣ ପେଷନ୍ତି ।
ବୋଲଇ ତୁ ତାକୁ ବାନ୍ଧଣ ଆଣ
ଆଣି ନ ପାରଲେ ଯେନ ପରାଣ
ପିତା ଆଜ୍ଞା ପାଇ
ବସିଲ ବୀର ରଥେ ସଜ ହୋଇ ॥୧୯॥

ଅନେକ ସୈନ୍ୟ ସଙ୍ଗତେ ଅଛନ୍ତି
ମୁଖ ରବରେ ଆକାଶ ପୂରନ୍ତି ।
ବୋଲଇ ମାର କେ ବୋଲେ ଧର
ଏମନ୍ତେ ମିଳଲେ ସେହୁ ଠାବର ।
ଦେଖି ହନୁମନ୍ତ
ମନେ ମନେ ସେ ଚିନ୍ତେ ବଳବନ୍ତ ॥୨୦॥

ଏହୁ ଦିଶୁଅଛି ଅତି ସୁନ୍ଦର
ଯେଜ ଚେତେହେ ବ ରାବଣ କୁମର
ସମ୍ପତ୍ତିର କର ପାଜଛି ଶୋଭା
ଗଞ୍ଜ଼ୁ ଛି ହେଲେ ମାରତଣ୍ଡ ପ୍ରଭା
ଏ ହେବ ନିଧନ
ତେବେ ମୋ ବଳ ଜାଣିବ ରାବଣ ॥୨୧॥

ଏହି ସମୟରେ ରାବଣ ବଳ
ମାରୁତି ଉପରେ ଆରମ୍ଭିଲେ ଗୋଳ
ଛେଳ ତହବାଣ ପଞ୍ଚିଶମାନ
କପିବରରେ କଲେ ବରଷଣ ।
ଦେଖି ହନୁମନ୍ତ
ଯୋଣା ଉପରୁ ଡେଇଁଲା ତୁରିତ ॥୨୨॥

୧୮।୧ ଖ-୦ପାଞ୍ଚଜେଁ
୧୮।୪ ଖ-୦ପମ୍ନ୦ ୦ଯେଟିଲ
୨୨।୧ ଛ-୦ସ୍ରକ୍ଷସ୦
୨୨।୪ ଖ-୦କରେ୦

ରଥ ଉପରେ କଚ୍ଚାଡ଼ିଲ ରଥ
ଗଜେକ ଧରି କଲିକ ଉଧତ ।
ଦୈତ୍ୟପରେ ଦୈତ୍ୟ କଲା ପ୍ରହାର
ସାଗର ଯେହ୍ନେ ମନ୍ଥଇ ମନ୍ଦର
ଘଡ଼ିକ ଭିତରେ
ସକଳ ସୈନ୍ୟ ପେଷେ ଯମପୁରେ ॥୨୩॥

ଦେଖି ରାବଣ ସୁତ କ୍ରୋଧ କଲା
ମାରୁତି ପରେ ଶର ପ୍ରହାରିଲା
ତାହା ଦେଖିକରି ପବନସୁତ
ଲାତ ମାରିଣ ଚୂନା କଲା ରଥ
ସେହୁ ମହାରଥ
ବଳେ ବଢ଼ିମିଲା ଆକାଶ ପଥ ॥୨୪॥

ଦେଖିଣ ହନୁମନ୍ତ ଡେଇଁଗଲା
ଆକାଶେ ତାକୁ ଆକର୍ଷି ଧଇଲା ।
ବୁଲାଇ କଚାଡ଼ିଲା ମହୀପର
ପ୍ରାଣ ଛାଡ଼ିଣ ପଡ଼ିଲା କୁମର
ଶେଷ ବଳ ତାରେ,
ରାବଣ ଆଗେ ବାରତା କହିଲେ ॥୨୫॥

ମହାବୀର ସେହୁ ଅଟେ ବାନର
ହେଲେ ମାଇଲା ଅକ୍ଷୟ କୁମର ।
ପ୍ରଳୟ କାଳ ସମାନ ତା ବର୍ତ୍ତି
ଏଥି ବିଚାର କର ଦଶାନନ ।
ସେ ଶୁଣି ନୃପତି
କଷ୍ଟ ଲୋଭ ତାର ଲଭିଲା ମତି ॥୨୬॥

---

୨୩।୧ ଖ-ଉପରେ କଚ୍ଚାଡ଼ିଲକ
୨୩।୨ ଖ-ଗଜକୁ
୨୩।୬ ଖ-ପେଷେ ସଞ୍ଚିବମାନ
୨୪।୧ ଖ-ଶର ଭେଦ
୨୪।୨ ଖ-ହନୁଙ୍କର ଅଙ୍ଗ ବୁଲନ୍ତି ଭେଦ
୨୪।୪ କ-......ତ କପିମନୁ
୨୪।୫ କ-ଘନ୍ତ ପ୍ରହାରରେ
୨୪।୬ କ-ଅଣ୍ଟ ସାରଥି ମାଇଲା ସତ୍ୱର
୨୬।୬ ଖ-କଲୁ

ଆଜ୍ଞା ଦେଲା ତହୁଁ ଶକ୍ରଜେତାରେ
ବୀରବର ତୁ ଯାଅ ଧାଡିକାରେ ।
ବନ୍ଧନ କରି ତାକୁ ବେଗେ ଆଣ
ମୁହିଁ ଜାଣୁଅଛି ସେ ବଡ଼ଜଣ
  କାହାରି ବଳରେ
ତାହାକୁ ଜିଣି ନୁହଇ ସମରେ ।।୨୭।।

ପିତା ଆଜ୍ଞାରେ ବୀର ଇନ୍ଦ୍ରଜିତ
ବେଗେ କଲା ଦେବଦଳନ ରଥ ।
ଅନେକ ରଥ ଅଛଇ ସଙ୍ଗର
ମିଳିଲା ଅଶୋକ ବନ ମଧ୍ୟର
  ବୀର ହନୁମନ୍ତ
ଖଣ୍ଡେ ଦୂରୁ ସେ ଦେଖିଲା ଯେମନ୍ତ ।।୨୮।।

ଏଣୁ ଆସୁଅଛି ବଳିଷ୍ଠ ବୀର
ଲୁଚିବ ଯାଇଁ ଲତାର ଉହାର ।
ଏତେ ବୋଲିକରି ସାମାନ୍ୟ ହୋଇ
ପତ୍ର ଉହାଡ଼ରେ ଲୁଚେ କପିସାଇଁ
  ଆସି ଇନ୍ଦ୍ରଜିତ
ଆଜ୍ଞା ଦେଲା ସେ ଯୋଦ୍ଧାଙ୍କୁ ତୁରିତ ।।୨୯।।

କହିଁ ଆଡ଼େ ଅଛି ଖୋଜ ସେ କପି
ମୁଁ ମଣୁଛି କି ସେ ମାୟା ସ୍ୱରୂପୀ ।
ତୁମ୍ଭେ ତ ବୋଇଲ ଥିଲେ ଏଠାର
ନୋହୁଛି ମୋର ସେ ନେତ୍ର ଗୋଚର
  ଦେଖ ଏଣୁ ବନ
ଶୁଣି ଦୈତ୍ୟଗଣେ ଖୋଜ ବହନ ।।୩୦।।

---

୨୭।୧ ଖ-୦ସନ୍ତୁଁ ଦେଲ ଶଙ୍କଜତରେ
୨୭।୪ ଖ-୦ମଣୁଛୁ ସେହୁଁ
୨୮।୩ ଖ-୦ଭଥାଁ
୨୮।୫ ଖ-ଦେଖିଁ
୨୮।୬ ଖ-ମନରେ ଭୟ କଲାକ ତୁରିତ
୨୯।୬ ଖ-୦ସେ ଦେଖି

୩୦।୧ ଖ-୦ରେ
୩୦।୨ ଖ-୦ମଣୁଅଛୁ
୩୦।୩ ଖ-୦ଅଛୁ ଋଠାର
୩୦।୪ ଖ-୦ଅଗୋଚର
୩୦।୫ ଖ-ଦେଖୁ
୩୦।୬ ଖ-୦ଖୋଜନ୍ତି

ପଥ ପଥ କରି ଖୋଜନ୍ତି ବୀର
ମନେ ବିଚାରେ ପବନ କୁମାର ।
ଥୋକାଏ ବଳ କରିବି ବିନାଶ
ଯେଡ଼େ ବୀର ଜାଣିମି ବିଶେଷ
      କରି ଗରଜନ
ବୃକ୍ଷରୁ ବୀର ଡେଇଁଲା ବହନ ||୩୧||

ଦେଖି ପଳାଇଲେ ସର୍ବ ସଇନ
କେହୁ ଶର ତହିଁ ନ ପାରେ ଯେନ ।
ଶୁଣି ଧାଇଁଲା ବୀର ଇନ୍ଦ୍ରଜିତ
ନାରାଚେ ଚୂରାଇଲା କି ବିଗନ୍ତ
      ବୃକ୍ଷମାନ ଧରି
ଥୋକାଏ ବଳ ବୀର ହତ କରି ||୩୨||

ଅତି ଘୋରତର ଛାଡ଼ିଲା ରଡ଼ି
ଗଗନ ମାର୍ଗେ ବୀର ଗଲା ଉଡ଼ି ।
ଦେଖି ଇନ୍ଦ୍ରଜିତ ବିନ୍ଧିଲା ଶର
ଲକ୍ଷ ନୋହିଲା ପବନ କୁମର ।
      ସେ ବିଚାରେ ମନେ
ରହିଅଛି ମହାବୀର ଗଗନେ ||୩୩||

ବିଚାରଇ ହନୁ ଆକାଶେ ଥାଇ
ରାବଣ କେଉଁଠେ ଦେଖିବି ମୁଁ ଯାଇ ।
କେମନ୍ତେ ତାହାର ନୀତି ବେଭାର
ସେ ସଭାରେ ଅଛି କେ ଅବା ସାର
      ଯେସନ ଚିନ୍ତଣ
ପ୍ରକାଶ ହେଲା ପବନ ନନ୍ଦନ ||୩୪||

ଦେଖିଲା ମେଘନାଦ ନଭେ ହରି,
ମନେ ବିଚାରେ ଇନ୍ଦ୍ରର ଅରି ।
ଆନ ଶରରେ ସେ ନୋହେ ବନ୍ଧନ
ମହାବୀର ଏହୁ କପି ନନ୍ଦନ
      ପେଷି ବ୍ରହ୍ମଶର
ଏହାକୁ ମୁହିଁ ପେଷିବି ସତ୍ୱର ||୩୫||

ଏତେ ବୋଲି ଶର କମାଣେ ଯୋଡ଼ି<br>
ହନୁକୁ ବୀର ବନ୍ଧିଲା ଆମର୍ଷ ।<br>
ପବନର ସୁତ ପାଶ ଅଇଲା<br>
ବ୍ରହ୍ମାର ବୋଲେ ଦେହେ ନ ବାଜିଲା<br>
 ଦେଖି ହନୁମନ୍ତ<br>
ଶସ୍ତ୍ରକୁ ବେଗେ ହୋଇଲେ ପ୍ରଣିପାତ ॥୩୬॥

ଆପଣା ଇଚ୍ଛାୟେ ଦେହେ ବେଢ଼ିଲା<br>
ଆକାଶୁ ନାଦ କରଣ ପଡ଼ିଲା<br>
ଦେଖି ହରଷ ହେଲା ଇନ୍ଦ୍ରଜିତ<br>
ବୋଇଲା ଆସରେ ବାନ୍ଧ ତୁରିତ ।<br>
 ନେବା ରାଜପୁର<br>
ଦେଖି ସନ୍ତୋଷ ହେଉ ଦଶଶିର ॥୩୭॥

ଏତେ ବୋଲି କରି ସେନାଏ ଗଲେ<br>
ରାବଣ ଛାମୁରେ ପ୍ରବେଶ ହେଲେ ।<br>
ବୋଲଇ ରାବଣ ପ୍ରଶସ୍ତ ଶୁଣ<br>
ପଚ୍ଛର ଯେତୁ କପିରେ ବନ୍ଧନ<br>
 ସେ କାହାର ଦୂତ<br>
କମ୍ପାଇ ମୋ ବଳ କଲା ସେ ହତ ॥୩୮॥

ବୋଲଇ ପ୍ରଶସ୍ତ ଶୁଣ ବାନର<br>
କମ୍ପା ପ୍ରବେଶ ହେଲୁ ଲଙ୍କାପୁର ।<br>
କାହାର ଦୂତ ତୁ କହ ନିଶ୍ଚିତ<br>
କମ୍ପାଇ ରାଜା ସୈନ୍ୟ କଲୁ ହତ<br>
 ବୋଲେ ହନୁମନ୍ତ<br>
ମୁହିଁ ଅଟଇ ରଘୁନାଥ ଦୂତ ॥୩୯॥

ବାଳିକି ରାମ ସମରେ ବଧ କରି<br>
ସୁଗ୍ରୀବକୁ ଦେଲେ କିଷ୍କିନ୍ଧାପୁରୀ ।<br>
ସୀତା ଖୋଜିବାକୁ ପେଷିଲେ ମୋତେ<br>
ତେଣୁ ମୁଁ ଏଥି ମିଳିଲି ତୁରିତେ<br>
 ମୁଁ ପବନ ସୁତ<br>
ଅଞ୍ଜନା ଗର୍ଭରୁ ହେଲି ସମ୍ଭୂତ ॥୪୦॥

ଆସି ଉପବନେ ଖାଆନ୍ତେ ଫଳ
ମୋର ସଙ୍ଗେ କଲେ ଦନୁଜେ ଗୋଳ
ମୋର ପ୍ରାଣକୁ ମୁଁ ରକ୍ଷାର ପାଇଁ
ନିଧନ କଲି ରାଜା ବଳ ଚହିଁ
ଶୁଣିଣ ରାବଣ
ବୋଲଇ ଏହୁ ସହଜ କାରଣ ।।୫୧।।

ଯେବେ ସେ ଦୂତ ଆସି ନ କହିଲୁ
ଚୋର ରୂପେ ଅନ୍ତଃପୁରେ ପଶିଲୁ ।
ସେ କଥା ଉଚିତ ନୁହଇ ଚୋର
ଏଥିକୁ ଦଣ୍ଡ ଦେନରେ ଯାମର
ଶୁଣି ହନୁମନ୍ତ
ବୋଲଇ ଏକଥା ଅଟେ ଉଚିତ ।।୫୨।।

ବୋଲଇ ତହିଁ ବିଭୀଷଣ ବାଣୀ
ଶୁଣିମା ହେଉ ଲଙ୍କ ଶିରୋମଣି ।
ଦୂତରେ ଦଣ୍ଡ ନୁହଇ ଉଚିତ
ସେହା ତ କହିଛନ୍ତି କୁଶହସ୍ତ
ବାନରଙ୍କ ଶିଖି
ଲାଙ୍ଗୁଳକୁ ପୋଡ଼ିଦିଅ ଦଶଶିର ।।୫୩।।

ହେଉ ବୋଲି ରାଜା କଲି ସମ୍ମତ
ବୋଲେ ଲାଙ୍ଗୁଳେ ଦିଅ ଅଗ୍ନି ଧାତ ।
ଆଜ୍ଞା ପାଇ ତହିଁ କିଙ୍କରମାନେ
ଫାଡ଼ି ବସନ ବାନ୍ଧିଲେ ବହନେ
ଅଗ୍ନି ଦେଇ କର
ଲାଙ୍ଗୁଳ ପୋଡ଼ିଦେଲେ ପାପେମାର ।।୫୪।।

ଦେଖି ଇନ୍ଦ୍ରଜିତ ଶସ୍ତ୍ର ସଂହାର
ବୋଲଇ ଏହାକୁ ବୁଲାଇ ପୁର
ଆଜ୍ଞା ପାଇଣ ଦେନଗଲେ ବେଗେ
ଓଟାରି ବୁଲାଇ ବଡ଼ ସରାଗେ
କଲେ ସିଂହଦ୍ୱାର
ଦେବ ପରଜ ଦେଖି ହସେ ବୀର ।।୫୫।।

କ୍ଷୁଦ୍ର ମୂର୍ତ୍ତି ହୋଇଲେ ପବନ ସୁତ
ଖସିଣ ପାଶେ ପଡ଼ିଲେ ଭୂଗତ
ଦେଖି ପରଘ କରରେ ଧଇଲା
ପାଶ ଧରନ୍ତା ଲୋକ ସେ ମାଇଲା
ବେଗେ ଡେଇଁଯାଇ
ବସିଲା ଗୋପୁର ଉପରେ ଯାଇଁ ।।୪୬।।

ଅନଳ ଲଗି ସେ ହେଲା ଦହନ
ତହୁଁ ଡ଼େଇଁଲା ପବନ ନନ୍ଦନ
ଆକାଶେ ରହି ଲାଞ୍ଜ ବଢ଼ାଇଲା
ରାବଣ ପୁର ସର୍ବ ନାଶ କଲା
ବଳୀଷେଣ ପୁଷ୍ପ
କୁମ୍ଭକର୍ଣ୍ଣ ପୁର ଛାଡ଼ଣ ହର ।।୪୭।।

ଲଙ୍କା ଦହନ କରି ହନୁମନ୍ତ
ସୀତାଙ୍କ ପାଦେ କଲା ପ୍ରଣିପତ୍ୟ ମିତ
ମେଲାଣି ମାଗି କଲାକ ଗମନ
ସୁବଳସ୍ଥାରେ ହଣି କଲାକ ସ୍ନାନ
ଉଦେ ମାରତଣ୍ଡ
ଶ୍ରମେ ମାରୁତ ଟେକ ପୁଚ୍ଛଦଣ୍ଡ ।।୪୮।।

ସାଗର ଉପରେ କରେ ଗମନ
ଦେଖି ବୋଲନ୍ତି ଲଙ୍କାପୁର ଜନ ।
କେ ବୋଲଇ ଦେଖ ଏ ଲଙ୍କପୋଡ଼ା
ଆମ୍ଭ ଶିରୀ ନାଶି ଯାଉଛି ମୋଡ଼ା
କେ ବୋଲେ ନ ବୋଲ
ଲେଉଟଇ ଟିକ କପିକୁଳ ମଲ୍ଲ ।।୪୯।।

ପାଦଘାତେ ନାଶୁଅଛି ତ୍ରିକୂଟ
ଆକାଶେ ଗମେ ରଘୁନାଥ ଭେଟ
କରି ବାରତା ଦେବ ତତକ୍ଷଣ
ମିଳଲା ଯହିଁ ଥିଲେ କପିଗଣ
ଦେଖି ହରଷିତ
ତକ୍ଷଣେ ହେଲେ ନୀଳ ଜାମ୍ବୋବନ୍ତ ।।୫୦।।

ମହେନ୍ଦ୍ର ପରେ ବିଶ୍ରାମେ ମାରୁତି
ଭରେ ପଶିଲ ଗିରି ବସୁମତୀ ।
ଦେଖି ଅଙ୍ଗଦ ହୋଇଲ ଆନନ୍ଦ
ସୁଷେଣ ମଇନ୍ଦ୍ର ଯେ ଦୁରବନ୍ଦ
ପ୍ରେକ ଆରକରେ,
ଆଲିଙ୍ଗନ ଯାଇ କଲେ ନିର୍ଭରେ ॥୫୧॥

ମଳୟ ପର୍ବତ ପରେ ବସିଲେ
ସମସ୍ତେ ବସି ବାର୍ତ୍ତା ପୃଚ୍ଛିଲେ ।
କହନ୍ତି ହନୁ ସକଳ ଚରିତ
ଲଙ୍କାରେ ଯେସନ୍ତେ ରାକ୍ଷସଙ୍କ ହତ
ସୀତା ଦରଶନ
ଶୁଣି ଲଭିଲେ ବୀର ତୋଷମନ ॥୫୨॥

ଅଙ୍ଗଦକୁ ଗୁହିଁ ବୋଲନ୍ତି ହସି
ତୁମ୍ଭେ ଯୁବରାଜ ବାଳିଙ୍କ ଶିଷି ।
ସେଥିକୁ ଆମ୍ଭଙ୍କୁ ଦିଅ ବଧାଇ
ସୀତାଙ୍କୁ ଦେଖି ମୁଁ ଅଇଲି ଧାଇଁ ।
ବୋଲଇ ଅଙ୍ଗଦ
ମାଗ ଦେବି ମୁହିଁ ରାଜ ସମ୍ପଦ ॥୫୩॥

ଶୁଣି ବୋଲଇ ପବନ ନନ୍ଦନ
କ୍ଷୁଧା ତ ହୋଇଅଛୁ କପି ସୈନ୍ୟ ।
ତୋର ବାପର ମଧୁବନ ତୋଟା
ତହିଁ ଲମ୍ବିଛି ମଧୁ ଗୋଟା ଗୋଟା
ଏହୁ ଆଜ୍ଞା ହେଉ,
ମଧୁ ଖାଇ ଆମ୍ଭେ ସନ୍ତୋଷ ହେଉ ॥୫୪॥

ସନମତ କଲା ବାଳି ନନ୍ଦନ
ଶୁଣି ଗମନ କଲେ କପିମାନ ।
କ୍ଷଣକେ ମିଳିଲେ ମଧୁବନର
ଦ୍ରବ୍ୟ ମଧୁପାନ କଲେ ଆହାର
ବାରେ ତୋଟାପାଳ
କେଉଁ ଧରି ତା ଉପାଡ଼ନ୍ତି ବାଳ ॥୫୫॥

ଦଧିମୁଖ ବୋଲି ତୋଟା ଅଧିପ
ସେହୁ ଧାଇଁଲା କରି ମହାକୋପ
ତାହାକୁ ମାଳ ଧରି ଯେନଗଲା
ଦେବ ମାର୍ଗକୁ ବେଗେ ଦେଖାଇଲା
ଦେଲା ଫୋପଡ଼ାଇ
ତୋଟା ବାହାରେ ସେ ପଡ଼ିଲା ଯାଇଁ ॥୫୬॥

ଶ୍ରୀରାମ ବିଳାସ ଅତି ରହସ୍ୟ
ଏହୁ ଛାନ୍ଦ ନାମ ସପ୍ତବିଂଶ ।
ହନୁ ଆଗମନ ଅଟଇ ସ୍ନେହୁ
ସୁଜନ ଜନଙ୍କ ହୃଦରେ ରହୁ
ସେ ରାମ ଚରଣ
ଧ୍ୟାୟି ଭଣେ ଗୀତ ଭଞ୍ଜ ରାଜନ ॥୫୭॥

# ଅଷ୍ଟାବିଂଶ ଛାନ୍ଦ

## ( ରାଗ—ମାଳବ )

ଏଥୁ ଅନନ୍ତରେ କପିବରଙ୍କ ଭର୍ତ୍ସନା
ଲଭିକରି ଦଧିମୁଖ ହୋଇ ଖେଦମନା ॥୧॥

ତପୋବନ ପାଳକଙ୍କୁ ଘେନି ସଙ୍ଗତର
ପ୍ରବେଶ ହୋଇଲେ ଯାଇ ମାଲ୍ୟ ଯେ ବନ୍ତର ॥୨॥

ଦୂରୁମୂଖ ନନ୍ଦନକୁ ପ୍ରଣାମ ବିହିଲା
ହେ ଦେବ ହେ ଦେବ ତ୍ରାହି ତ୍ରାହି ଯେ ବୋଇଲା ॥୩॥

ଯେଉଁ ମଧୁବନ ବାଳିଙ୍କର ପ୍ରିୟତର
ଭୁମ୍ଭର ସେହି ସ୍ୱରୂପ କପିଙ୍କ ଈଶ୍ୱର ॥୪॥

ଦକ୍ଷିଣ କଟକୁ ଗଲେ ଯେତେକ ବାନର
ଅଙ୍ଗଦକୁ ସଙ୍ଗେ ଘେନି ମିଳିଲେ ସେଠାର ॥୫॥

ଦିବ୍ୟ ଫଳମୂଳମାନ ସର୍ବେ ଭକ୍ଷ କଲେ
ମୁହିଁ ନିବାରନ୍ତେ ମୋତେ ମାଡ଼ ଯେ ମାଇଲେ ||୬||

ଗାଲ ଧରି ମୋତେ ଦେବମାର୍ଗ ଦେଖାଇଲେ
ଯା ଯା ତୋର ରାଜାକୁ ରେ କହସି ବୋଇଲେ ||୭||

ଶୁଣିକରି ଦଧିମୁଖ ବାଣୀ ସୁଗ୍ରୀବର
ଅନେକ ଧନ ରତନ ଦେଲେ ଧାତକାର ||୮||

ସଙ୍ଗତେ ଘେନିଣ ସେହୁ କଲେକ ଗମନ
ଯାଇଣ ଦର୍ଶନ କଲେ ଶ୍ରୀରାମ ରାଜନ ||୯||

ବୋଲନ୍ତି ହେ ପ୍ରଭୁ ଶୁଣ ହେଲା ତୁମ୍ଭ କାର୍ଯ୍ୟ
ଦକ୍ଷିଣ ଦିଗରୁ ଦୂତ ହେଲେ ଆସି ଆଜ ||୧୦||

ଯେଉଁ ମଧୁବନ ତୋଟା ଅତି ମନୋହର
ମୋର ଆଜ୍ଞା ବିନୁ କେହି ନ ପଶେ ତହିଁର ||୧୧||

ସେ ଥାନେ ପ୍ରବେଶ ହୋଇ ମଧୁନ୍ତ ଖାଇଲେ
ବାରିଲେ ଢ୍ରତିହାଙ୍କୁ ମାଡ଼ ଯେ ମାଇଲେ ||୧୨||

ଏଣୁ ନିଶ୍ଚେ ଜାଣିଲି ମୁଁ କଲେ କାର୍ଯ୍ୟ ସିଦ୍ଧି
ଯେତେକ ଯାଇଣ ଥିଲେ ସର୍ବେ ମହାଯୋଧି ||୧୩||

ଏହି ସମୟରେ ଗଗନେ ଶୁଭିଲା ଶବଦ
ମେଘଚୟେ ପ୍ରାୟେକ ଦିଶିଲା କପିବୃନ୍ଦ ||୧୪||

ଅଙ୍ଗଦକୁ ଆଗ କରି ହୋଇଲେ ପ୍ରବେଶ
କାର୍ଯ୍ୟ ଗଉରବେ ଲଭି ଅଛନ୍ତି ହରଷ ||୧୫||

ଶ୍ରୀରାମ ଚରଣ ତଳେ ସେବଲେ ପ୍ରଣାମ
ସୁଗ୍ରୀବର ପାଦେ ନମି କହି ନିଜ କାମ ||୧୬||

ବୋଲନ୍ତି ହେ କପିବର ତୋହର ଆଜ୍ଞାର
ବୁଲିଲୁ ଦକ୍ଷିଣ ଦିଗେ ଅତି ମହାଘୋର ||୧୭||

ଶ୍ରୀରାମର ପ୍ରିୟବଣ୍ଟା ନେଇଛି ରାବଣ
ଲଙ୍କାରେ ରଖିଛି ଅଶୋକ ଉପବନ ||୧୮||

ତହିଁ ଯାଇଁ ମାରୁତି ସୀତାଙ୍କୁ ଠାବ କଲା
ଶ୍ରୀରାମ ଆଜ୍ଞାରୁ ତାର ସଫଳ ହୋଇଲା ||୧୯||

ତହୁଁ କପିବୀରେ ହନୁମନ୍ତ ସଙ୍ଗେ ଘେନି
ରାମ ପାଦେ ବେଗେ ନିବେଶିଲେ କମ୍ବୁ ଧ୍ୱନି ||୨୦||

ଦେଖିଣ ହନୁମନ୍ତଙ୍କୁ ବସ୍ୱରନ୍ତ ସମ
ଭଲ ବା କହିବ ଅବା କହିବ ବାମ ||୨୧||

ଏମନ୍ତ ଚିନ୍ତିଣ ତାର ମୁଖକୁ ଚାହିଁଲେ
ପ୍ରସନ୍ନ ବଦନ ଦେଖି ପୁଣି ପଚାରିଲେ ||୨୨||

କହ ହେ ମାରୁତ ମୋର ଦେଖିଲ କି ସୀତା
ପ୍ରାଣେ ଜୀଇ ଅଛନ୍ତି କି ଜନେକ ଦୋହିତା ||୨୩||

ମୋର ବିନୁ ସ୍ୱେଚ୍ଛା ହୋଇ କେମନ୍ତେ ବଞ୍ଚୁଛି
ତୋତେ ଦେଖି ମୋ ଦୁଃଖ କି ଚିନ୍ତିଲା ମୃଗାକ୍ଷୀ ||୨୪||

ବୋଲନ୍ତି ଶିରରେ କର ଦେଇ ହନୁମନ୍ତ
ସ୍ୱେଚ୍ଛମନେ ହୋଇ ଶୁଣ ଏଥିର ଉଦନ୍ତ ||୨୫||

ଅନେକ ଖୋଜିଣ ଆମ୍ଭେ ନ ପାଇଲୁ ସୀତା
ତେଣୁ କରି କଲୁ ଆମ୍ଭେ ମରଣେ ମମତା ||୨୬||

ଜଟାୟୁଷ ଭାଇ ମୁଖୁ ବାରତା ଶୁଣିଲୁ
ଲଙ୍କାରେ ଜାନେକୀ ଅଛି ନିଶ୍ଚୟେ ଜାଣିଲୁ ||୨୭||

ତାର ଆଜ୍ଞା ଘେନ ମୁହିଁ ଲଂଘିଲି ସାଗର
ପ୍ରବେଶ ହୋଇଲି ଯାଇ ଲଙ୍କା ନାମେ ପୁର ||୨୮||

ନିଶିରେ ତହିଁ ପଶିଣ ସମସ୍ତ ଖୋଜିଲି
ସୀତା ନ ଦେଖି ରାବଣ ହଂସରେ ମିଳିଲି ||୨୯||

ଦେଖିଲି ରାବଣ ପୁରେ ପଦ୍ମିନୀ ଅବଳା
ତହିଁ ନ ଦେଖିଲି ପ୍ରଭୁ ତୁମର ମହିଳା ||୩୦||

ତହୁଁ ଯାଇ ମିଳିଲି ସେ ଅଶୋକ ବନର
ଦେଖିଲି ଶିଂଶୁପା ମୂଳେ ତରୁଣୀଙ୍କ ବର ||୩୧||

ସହସ୍ରେ ରାକ୍ଷସୀ ବେଢ଼ିଛନ୍ତି ଚଉପାଶ
କାହାଙ୍କୁ ଅବଳାମଣି ନ ଦିଏ ସନ୍ଦେଶ ||୩୨||

ଏହି ସମୟରେ ଆସି ମିଳିଲା ରାବଣ
ଅନେକ କାର୍ପଣ୍ୟ ହୋଇ ବୋଇଲା ବଚନ ||୩୩||

ଅବନୀକୁ ଅନାଇ ସେ ନ କହିଲେ କଥା
ଅନେକ ଭର୍ତ୍ସନା ବୋଲି ଗଲା ଦଂଶମଥା ||୩୪||

ଏଣୁ ଅନ୍ତେ ମୁହିଁ ଯେ ଭେଟିଲି ବଇଦେହୀ
ଏକାକୀ ଦେଖି ସେ ରାକ୍ଷସୀ ଥିଲେ ନାହିଁ ||୩୫||

ତୁମ୍ଭର ଶ୍ରୀମୁଖ ବାଣୀ କହ ମୁହିଁ ଦେଲି
ଅନେକ ବିନୟ କହ ଚରଣେ ନମିଲି ||୩୬||

ତେଣେ ପ୍ରତେ କରି ରାମ ଦେଲେ ମଥାମଣି
.................................... ||୩୭||

ଏମନ୍ତ ବୋଲି ଶ୍ରୀରାମ ହସ୍ତେ ନେଇ ଦେଲି
ଅପରାଧ କ୍ଷମା ପ୍ରଭୁ କରିବା ବୋଇଲି ||୩୮||

କହିଛନ୍ତି ସୀତା ଯେବେ ମାସକେ ନ ଯିବ
କଷ୍ଟରେ ଯୁଦ୍ଧସ୍ୱାମିଣି ଜୀବନ ତେଜିବ ||୩୯||

ପ୍ରିୟା ମଣି ହସ୍ତେ ଘେନି ରଘୁକୁଳ ପତି
ଅତି ସ୍ନେହେ କଣ୍ଠତଟେ ଲଗାଇଲେ ଧାତି ||୪୦||

ବୋଲନ୍ତି ହେ ମଣି ତୁ ରେ କାହିଁକି ଅଇଲୁ
ପ୍ରାଣ ବାନ୍ଧବୀକି ମୋର ଯେକା କରି ଦିଲୁ ||୪୧||

ତୋତେ ଦେଖି ମଣୁଅଛି ମୋର ପ୍ରିୟା ପରି
ରତି କେଳିରେ କରଇ ମୋର କଣ୍ଠହାରି ||୪୨||

ଏମନ ପ୍ରକାରେ ରାମ କରିଣ ରୋଦନ
ବୋଲନ୍ତି ହୋ ସୁଗ୍ରୀବର ତୁହି ସୂର୍ଯ୍ୟନାନ |୪୩||

ସୂର୍ଯ୍ୟବଂଶ ହେଉଅଛି ତାର ଦେଖ ନାଶ
ନ ଲଭିଲେ ସୀତା ଜୀବ ତେଜିବ ଅବଶ୍ୟ ||୪୪||

ଶୁଣିଲ ତ ହନୁମନ୍ତ କହୁଅଛି ଯାହା
ତୁମ୍ଭେ ଗୁଣବନ୍ତ ବେଗେ ହୁଅ ମୋତେ ସାହା ||୪୫||

ଚାଲ ଯିବା ଦେଖିବା ଯେ ସରିତଙ୍କ ପତି
ତାହାର ଲଙ୍ଘନେ ପୁଣ କରିବାକୁ ମତି ||୪୬||

ରାମ ଆଜ୍ଞା ପାଇ ସୁଗ୍ରୀବର ତୋଷମନ
ଆଜ୍ଞା ଦେଲା ମନ୍ତ୍ରୀଗଣେ ସାଜ ବେଗେ ସୈନ୍ୟ ||୪୭||

ଏହି ସମୟରେ ବ୍ରହ୍ମାସୁତ ଆସି କହେ
ଅଭିଜିତ ମୁହୂର୍ତ୍ତ ମାହେନ୍ଦ୍ର ବେଳ ହୋଏ ||୪୮||

ଶୁଭକରି ଆନନ୍ଦିତ ହୋଇ ରଘୁପତି
ସୁଗ୍ରୀବର ହାତ ଧରି ଉଠିଲେ ତତ୍‌କ୍ଷତି ||୪୯||

ବୋଲେ ସେ ରବିସୁତ ଶୁଣ ରଘୁମଣି
ହନୁମନ୍ତ କାନ୍ଧେ ତୁମ୍ଭେ ବିଜେ କର ପୁଣି ||୫୦||

ଅଙ୍ଗଦକୁ ଆବେଦଣ କରୁ ସଉମିତ୍ରୀ
ଯାନ ଚଢି ବିଜୟ ହୁଅନ୍ତୁ କପିପତି ||୫୧||

ବେଗେ ଯାନ୍ତୁ ପାଦ ଗତି ବାନର ସଇନ
କୋଟି ଶଙ୍ଖ ସେନ ହୋଇ ଆଗୁଆଣି ||୫୨||

ଦକ୍ଷିଣ ପାରୁଶେ ଆଉ ମହେନ୍ଦ୍ର ଦ୍ୱିବିଦ
ବାମ ପାଖେ ରହୁ ଆଜ କପିଙ୍କର ଇନ୍ଦ୍ର ||୫୩||

ପଶ୍ଚିମ ପାରୁଶରେ ରହିଥାଉ ଶତବଳୀ
ସ୍ୱେମନ୍ତ ବୋଲଣ ବଳ ସେନଯାନ୍ତେ ଚଳ ||୫୪||

ଯେଉଁ ବୃକ୍ଷେ ବସିଥିଲେ ସେହୁ କପିଗଣ
ସେହୁ ସେହୁ ବୃକ୍ଷ ସେନ କଲେକ ପ୍ରୟାଣ ||୫୫||

କାହା କରେ ଗିରିବର କାହା କରେ ଶିଳ
ଅତି ସମ୍ଭର ହୋଇଣ ଚଳେ କଟିବଳ ||୫୬||

କେହୁ ଡହିଁ ଡଅଁନ୍ତି ସେ ଗର୍ଜୁଛନ୍ତି କେହି
ଆକାଶରେ ଉଡ଼ ଥୋକେ ପ୍ରକାଶିଲେ ଦେହି ||୫୭||

ନାନା ବାଦ୍ୟ ମୁଖରେଲେ କମ୍ପଇ ଅବନୀ
ଶ୍ରୀରାମଙ୍କୁ ବୋହି ମଧ୍ୟେ ଶୋଭିତ ପାବେନୀ ||୫୮||

ଅଇରାବତ ଆରୋହି ଯେହ୍ନେ ପୁରନ୍ଦର
ଏଥି ଅଗ୍ରେ ରଥ ଚଢ଼ି ରଘୁବର କୁମର ||୫୯||

ରାମ ପଛେ ଶୋଭାପାଏ ସୁମିତ୍ରା ନନ୍ଦନ
ବୃଷଭ ଚଢ଼ିଣ ଯେହ୍ନେ ଆସନ୍ତି ଈଶାନ ||୬୦||

ପାଦଭରେ ଟଳଟଳ ହୋଇଲେ ବସୁନ୍ଧରା
ଅତି କଷ୍ଟେ ଶେଷଦେବ ବହିବ ସେ ଭାର ||୬୧||

ଭରେ କର ବହୁଅଛି ନୟନରୁ ନୀର
ରାମ ଚନ୍ଦ୍ରତେ ଯେ କ ଆନନ୍ଦେ ଅଶ୍ରୁଧାର ||୬୨||

ଧୂଳି ଉଡ଼ିବାରେ ଲୁଚିଲେ ମାରତଣ୍ଡ
କେଳି ତେଜ ଚକ୍ରବାକ ଲଭିଲେ ସେ ଦଣ୍ଡ ||୬୩||

ଅଭିସାରୀ ଜଣା ଜାଣି କଲେ ଅଭିସାର
ସାରସ ମୂର୍ଚ୍ଛିତ ହେଲେ ରବି ବଚ୍ଛେଦର ||୬୪||

ସେ କାଳେ ଶୋଭା ପାଇଲା ବୃନ୍ଦ ନାଗ ପର
ଯେଣେ କରିବ ଲେଖକ ହେଲେ ତହିଁ ତାର ||୬୫||

ପାରାବାର ପ୍ରାୟେ ରାମର ସୈନ୍ୟ ପରଚଣ୍ଡ
ମଗର ସମାନ ସେ ବାଜନ୍ତି କପିଷଣ୍ଡ ॥୬୬॥

ରାମରଚୟ କଲ୍ଲୋଳ ପ୍ରାୟେକ ବାଜନ୍ତି
ଶ୍ୱେତଛତ୍ର ଯେସନେ ହଣ୍ଡିର ପନ୍ତପନ୍ତି ॥୬୭॥

ମୁଖରାବ ଗର୍ଜ୍ଜନେ ହୋଇଛି ଭୟଙ୍କର
ଜଳେଶ୍ୱର ସ୍ୱରୂପ ଦିଶେ ରଘୁକୁଳବର ॥୬୮॥

ପାର ନାହିଁ ଯେ ପୁଚ୍ଛେ ପୁଚ୍ଛେ ଏଣୁ ଆର
ଅଦୃଶ୍ୟପଣେ ଅଗାଧ ସ୍ୱରୂପ ଏହାର ॥୬୯॥

ଯେମନ୍ତେ ବଳ ଚଳଣ କେତେଦୂର ଗଲେ
ସୁସ୍ଥ ସ୍ଥାନେ ସ୍ଥାନ ନିବେଶନ ଆଚରିଲେ ॥୭୦॥

ସାଗର ତୀରରେ ଯାଇଁ ପ୍ରବେଶ ହୋଇଲେ
ବେଳି ସାଗର ସଙ୍ଗମ ପ୍ରାୟେକ ଶୋଭିଲେ ॥୭୧॥

ହନୁମନ୍ତ କନ୍ଧୁ ଓହ୍ଲରିଲେ ସୀତାସାଇଁ
ଅଙ୍ଗଦ କନ୍ଧୁ ଓହ୍ଲାଇ ସୁମିତ୍ରା ତନୟି ॥୭୨॥

ଯେ ଯାହା ବାହାନୁ ଓହ୍ଲରିଲେ କପିଗଣେ
ଦୁଷ୍ଟାକର ରହିଲେ ପାରାବାର ତୀରେ ॥୭୩॥

ଦେଖିଲେ ଶ୍ରୀରାମ ସେ ଉଦଧି ବଡ଼ପଣ
କଲ୍ଲୋଳ ମାଳୀରେ ଛୁଇଁଅଛି ସେ ଗଗନ ॥୭୪॥

ଲହରୀ ହସ୍ତରେ କିଏ ବୋଲୁଅଛି ଆସ
ବେଗେ ଏ ଦନୁଜ ରାବଣକୁ କର ନାଶ ॥୭୫॥

ଗ୍ରାହମାନଙ୍କରେ ହୋଇଅଛି ଭୟଙ୍କର
ତିମିଗିଳ ମାନଙ୍କରେ ଦିଶଇ ଅପାର ॥୭୬॥

ଗମ୍ଭୀରତା ଗୁଣରେ ବଢ଼ାଉଅଛି ଘର
ଦ୍ୱିତୀୟ ଆକାଶ ପ୍ରାୟେ ହୋଇଛି ସୁନ୍ଦର ॥୭୭॥

ଅମ୍ବରକ କର କଣ୍ଠ ଛୁଇଁଅଛି ଆସି
ଉଦୟ ହୋଇଛି ଶଶି କିରଣ ପ୍ରକାଶି ॥୭୮॥

କ ଯେ ବଧିକୃତ କରିଅଛି ଯେତ୍ତୁ ମାଳ
ସିତ ଶୋଣ କୁସୁମେ କ ଦିଶଇ ମଞ୍ଜୁଳ ॥୭୯॥

ରବ ନଶି ହୋଇଛନ୍ତି ଯେତ୍ଥିର ସ୍ତବକ
ତେଣୁକରି ଶୋଭା ଦିଶୁଅଛି ସୁରଲୋକ ॥୮୦॥

ଏଥୁ ଅନନ୍ତରେ ରାମ ବୋଲନ୍ତି ବଚନ
ଦେଖ ଦେଖ ସୁଗ୍ରୀବର ଜଳଧି ରଞ୍ଜନ ॥୮୧॥

ଏଥି ମଧ୍ୟେ ଅଛି ଲଙ୍କା ବୋଲୁଅଛି ହନୁ
ଶୁଣି କମ୍ପମାନ ମୋର ହେଉଅଛି ତନୁ ॥୮୨॥

କେମନ୍ତେ ଲଭିବି ମୋର ପ୍ରାଣର ସଜନୀ
ଏଥର ଭଲ ବିଚାର କହ କପିମଣି ॥୮୩॥

ଶୁଣି ବୋଲନ୍ତି ସୁଗ୍ରୀବ ଆହେ କପି ସୈନ୍ୟ
ପର୍ବତ ଘେନଣ ଏହା ପୋତ ତତକ୍ଷଣ ॥୮୪॥

ଶୁଣି କପିପତି ବାଣୀ ସୈନ୍ୟ ତୋଷ ହୋଇ
ସାଗର ଜଳରେ ନେଇ ଭୂଧର ପକାଇ ॥୮୫॥

କୋଟି କୋଟି କରି ତହିଁ ପକାଇଲେ ଶିଳ
ସମସ୍ତ ବୁଡ଼ି ରହିଲେ ସାଗର ଜଳର ॥୮୬॥

ବୋଲନ୍ତି ହେ ରାମ ଆଉ କର ଯେ ଉପାୟେ
ତୁମ୍ଭ ବୁଦ୍ଧି ତୁମ୍ଭେ କର ଏବେ ଦେବରାୟେ ॥୮୭॥

ଏମନ୍ତ ବୋଲଣ ରାମ କୁଶଶଯ୍ୟା କଲେ
ତିନରାତି ଜଳେଶ ଆଗମନ ନ ଦେଖିଲେ ॥୮୮॥

ଅତି କ୍ରୋଧ କରିଣ ବୋଲନ୍ତି ରଘୁବୀର
ଜାଣିଲି ସାଗର ତୋ ମୂର୍ଖରେ ବିଚାର ॥୮୯॥

ଅଗସ୍ତି ପିଇଲା ବେଳେ ନୋହିଲୁ ଗମ୍ଭୀର
ଏବେ ବୀର ଦେଖାଉଛୁ ମୋର ଠାର ॥୯୦॥

ଅଗ୍ନିଶର ପେଷିଣି ଶୁଖାଇ ପକାଇବି
ନିଶ୍ଚିନ୍ତେ ବାନର ବଳଯିବା ବିଚାରିବି ॥୯୧॥

ଏତେ ବୋଲି ବ୍ରହ୍ମ ଅଗ୍ନି ଅସ୍ତ୍ରକୁ ବସାଇ
ଗୁଣେ ବସାଇ ଯୋଚ ଓଙ୍କାର ଆଣନ୍ତି ରଘୁସାଇଁ ॥୯୨॥

ଅଗ୍ର ଅଗ୍ନି କ୍ଷୋଭ ପାଇ କହିଲା ସାଗର
ଅତି ଭୟ କରି ମିଳିଲା ଶ୍ରୀରାମ ଛାମୁର ॥୯୩॥

ସ୍ତୁତିକରି ରାମଙ୍କୁ କଲା ପ୍ରଣମିତ
ଦୋଷ କ୍ଷମାକର ବୋଲି ଯୋଡ଼ି ବେନିହସ୍ତ ॥୯୪॥

ତୁମ୍ଭରି ଆଜ୍ଞାରେ ମୁହିଁ ଅଗାଧ ହୋଇଛି
ସାଧି କେସନେ ବିଚାର ଦଶରଥ ବହ୍ନି ॥୯୫॥

ଏଥେ ଅଛନ୍ତି ମାଛମାନ ସହସ୍ର ଯୋଜନ
ତୁମ୍ଭେ ପକାଇଲା ଗିରି କଲେକ ଭୋଜନ ॥୯୬॥
ପୂର୍ବେ ମୁନିମାନଙ୍କର ତପସ୍ୟାର କାଳ
ସେ ସ୍ଥାନେ ମିଳିଲା ସେତୁ ବିଶ୍ୱକର୍ମା ବାଳ ॥୯୭॥
ତାଙ୍କ ପାତ୍ରମାନ ବୁଡ଼ାଇ ଜଳର
ଦେଖି ମୁନିମାନେ ହୃଷ୍ଟ ହୋଇଲେରେ ନଳ ॥୯୮॥
ଯେତେକ ଛୁଇଁବୁ ତୁହି ପାଷାଣ ସହିତେ
ଜଳରେ ଭାସିବ ଏହା ଧରିଥିବୁ ଚିତ୍ତେ ॥୯୯॥
ନଳକୁ ଛୁଆଁଇ ଏଥେ ପକାଅ ପର୍ବତ
ସୁଖରେ ବନ୍ଧ ବାନ୍ଧିବ ଶୁଣ ରଘୁସୁତ ॥୧୦୦॥
ଏତେକ କହି ବରୁଣ ରାମ ଲକ୍ଷ୍ମଣର
କବଚ ମୁକୁଟ ଦେଇ ଗଲେ ଜଳେଶ୍ୱର ॥୧୦୧॥
ଶୁଣି ଆନନ୍ଦିତ ହୋଇ ବାନ୍ଧିଲେ ସେ ବନ୍ଧ
ଚରଗଣେ ଯାଇ କହିଲେ ଦଶକନ୍ଧ ॥୧୦୨॥
ଅନେକ ପ୍ରକାରେ ବିଭୀଷଣ ଉଆରିଲା
ସୀତାଙ୍କୁ ଭେଟି ଦେବ ଦେବା ବୋଲି ଶ ବୋଇଲା ॥୧୦୩॥
ତେଣୁକରି କ୍ରୋଧେ ମାଇଲା ରାବଣ
ମୁଣ୍ଡ କାଟିଥିଲା ପଳାଇଲା ବିଭୀଷଣ ॥୧୦୪॥
ଶ୍ରୀରାମ ଚରଣେ ଆସି ଶରଣ ପଶିଲା
ଲଙ୍କା ଛେଦ ଭେଦମାନ ସବୁ ତ ଗାଇଲା ॥୧୦୫॥
ଶୁଣି ଅତି ହରଷରେ ଶ୍ରୀରାମ ଲକ୍ଷ୍ମଣ
ସୁଗ୍ରୀବର ବଳ ଘେନି କଲେକ ଗମନ ॥୧୦୬॥
ବନ ଶେଷେ ମିଳିଲେ ସେ ଗିରି ସୁବଳର
ଦେଖିଲେ ରାବଣ ପୁର ଅତି ମନୋହର ॥୧୦୭॥
ତ୍ରିକୂଟ ଉପରେ ସେତୁ ପାଉଅଛି ଶୋଭା
କିରଣରେ ଗଞ୍ଜୁଅଛି ମାରତଣ୍ଡ ପ୍ରଭା ॥୧୦୮॥
ଯେ ରାମ ବିଳାସ ଗୀତ ଅତି ମନୋରମ
ଛନ୍ଦରେ ଅଠତିରିଶ ସେତୁବନ୍ଧ ନାମ ॥୧୦୯॥
ସେ ସୀତା ରାମ ଚରଣ ବେନି ଧ୍ୟାନ କରି
ଭଣେ ନୃପ ଧନଞ୍ଜୟ ଅତି ଅନୁସରି ॥୧୧୦॥

# ଅଣଚାଳିଶ ଛାନ୍ଦ

## ( ରାଗ—ମଙ୍ଗଳ ଭୈରବ )

ଏଥୁ ଅନନ୍ତରେ ରଜନୀ ତହିଁ ହୁଅନ୍ତେ ଶେଷ ।
ନିତ୍ୟକର୍ମ ସାରି ବିଜୟେ ଦଶରଥଙ୍କ ଶିଷ୍ୟ ଯେ ॥୧॥

ପାଶରେ ଅଛନ୍ତି ବେଢ଼ିଣ କପିଙ୍କ ବୀରମାନେ ।
ଦେଖନ୍ତି ରାବଣ ନଗର ଅତିଅନ୍ତ ଶୋଭନେ ॥୨॥

ପନ୍ତି ପନ୍ତି ମୋଟ ଜଗତି ଦିବ୍ୟପୁର ସଞ୍ଚୟ ।
ଖେଳ ଅମ୍ବରେ ପତାକା ଗତେ କରନ୍ତି ରଯୁ ॥୩॥

ଅନେକ କଳେ ସେ ବିଚିତ୍ର ଚିତ୍ର ଦିଶଇ ପୁର ।
ମଣି ଗବାକ୍ଷ ମନୋହର ବିଭୂଷିତ ରୁଚିର ॥୪॥

କିରଣେ ମାରତଣ୍ଡ ଶୋଭା କରୁଅଛି ଗଞ୍ଜନ ।
ପ୍ରାକାରେ ବାଜଣ ପଡ଼ନ୍ତି ବାତ ବେଗରେ ଘନ ॥୫॥

ଚନ୍ଦ୍ରକାନ୍ତ ସୂର୍ଯ୍ୟକାନ୍ତ ଦିଶେ ଗୋପୁର ।
ନୀଳମଣି ରେଖ ରୁଚିର କାଙ୍ଗୁରାରେ ରୁଚିର ॥୬॥

ସୁବର୍ଣ୍ଣେ ସୁବର୍ଣ୍ଣ ହୋଇଛି ମେଘନାଦ ବରଣ ।
ଲାଗିଛି ବ୍ରହ୍ମଜାତ ହୀରା ଗଞ୍ଜେ ରବି କିରଣ ॥୭॥

ମନକୁ ଅଟଇ ଦୁର୍ଗମ ପକ୍ଷୀ ଉଡ଼ିବ କାହିଁ ।
ହରଶତ ଘୁଣ ଉତ୍ସର୍ଗ ଦେଖେ ସୀତାପ୍ରିୟ ସାଇଁ ॥୮॥

ହସିଲା ପ୍ରାୟେ ଶୋଭାବନ ଦିଶୁଅଛି ନଗର ।
ନାନା ଅଳଙ୍କାର ଥିଲେହେଁ ଶୋଭା କରୁଛି ଦୂର ॥୯॥

ପ୍ରବାସେ ପତି ନିଧନରେ ନାରୀ ନ ଶୋଭେ ଯେହ୍ନେ ।
ରାବଣ ନିଧନ ହୋଇବ ସୂଚି ଦିଶୁଛି ତେହ୍ନେ ॥୧୦॥

ଚନ୍ଦ୍ରକାନ୍ତମଣି ସ୍ରବବା ଛଳେ କରେ ରୋଦନ ।
ପତାକା ହସ୍ତେ ଶିରେ ତାଡ଼ି ଦିଶେ ବିମନ ମନ ॥୧୧॥

ସୂର୍ଯ୍ୟକାନ୍ତମଣି ରାଗରେ ହୋଇ ସକ୍ରୋଧଭର ।
ବିରହ କଣ୍ଠ ନିନାଦରେ ଉଚେ ରବେ ସୁସ୍ବର ॥୧୨॥

ଏମନ୍ତ ପ୍ରକାରେ ମାସେ ପୁର ଦେଖେ ରଘୁନନ୍ଦନ ।
ବୋଲନ୍ତି ଧନ୍ୟରେ ରାବଣ ପୁର ସ୍ଵର୍ଗ ସମାନ ॥୧୩॥

ଏତେ ସମ୍ପଦ ଅବସ୍ଥାରେ କଲୁ ଇଷିତେ ନାଶ ।
ଏହା ବିଧ୍ୱଂସିବ ତୋ ବଂଶ ଚର କରିବ ଧ୍ୱଂସ ।।୧୪।।

ସଂଗ୍ରାମ ସହିତେ ଯିବେ ଯମ ଭୁବନ ।
ଏତେ ବୋଲି ଧନୁ ଧରଣ କଲେ ପ୍ରତିଜ୍ଞାମାନ ।।୧୫।।

ବୋଲନ୍ତି ତୁମ୍ଭେ ଶୁଣ ଜଗ ପାଳକମାନେ ବଚନ ।
ନିଶ୍ଚୟ ସଂଗ୍ରାମ ମଧ୍ୟରେ ମୁଁ ମାରିବ ରାବଣ ।।୧୬।।

ନୋହିଲେ ଏ ଧନୁବର କରେ ଧରିବ ନାହିଁ ।
ନିଶ୍ଚେ ବିଭୀଷଣ ବୀରକୁ କରିବ ଲଙ୍କସାଇଁ ।।୧୭।।

ଯେଉଁ ସମୟରେ ରାବଣ ପୁରେ କହିଲା ସ୍ୱର ।
ଦେବ ସମୁଦ୍ରେ ବନ୍ଧ ବାନ୍ଧି ରାମ ହୋଇଲେ ପାର ।।୧୮।।

ସୁବଳଯ୍ୟା ଗିରି ଉପରେ କଲେ ଆସି ବିଶ୍ରାମ ।
ସୈନ୍ୟ ଅପ୍ରମିତ ଆସି ବେଢ଼ିଣ ସେ ଲଙ୍କଗ୍ରାମ · ।।୧୯।।

ଶୁଣି କ୍ରୋଧଭରେ ରାବଣ ଦେଶ ବଳ ସଞ୍ଚୟ ।
ଦେଖି ଧାଇଁଲେ କପିଗଣ ସେ କଥାରେ କେ ଭୟ ।।୨୦।।

ଦନୁଜ ବଳ ପ୍ରହାରନ୍ତି କଲେ ବିପୁଳ ଶିଳ ।
କେତେ ପେଷିଲା ତରୁବର ଶୁଭେ ଅତି ତହଲ ।।୨୧।।

ଶ୍ରୀରାମ ଲକ୍ଷ୍ମଣ ସୁଗ୍ରୀବ ଗଡ଼ ବେଢି ରହିଲେ ।
ଅନେକ ଦନୁଜ ବୀରଙ୍କୁ ସଞ୍ଜୀବନୀ ପେଷିଲେ ।।୨୨।।

ପୂର୍ବଦ୍ୱାରେ ସୁଗ୍ରୀ ବସିଲା ଦକ୍ଷିଣରେ ଅଙ୍ଗଦ ।
ପଶ୍ଚିମେ ବସିଲା ପାବେନୀ ହୋଇ ମନେ ସାନନ୍ଦ ।।୨୩।।

ଆପଣେ ଶ୍ରୀରାମ ଲକ୍ଷ୍ମଣ ଯାଇ ଉତ୍ତର ଦ୍ୱାର ।
ସଙ୍ଗେ ବିଭୀଷଣ ହେନଣ କଲେ ସମର ଘୋର ।।୨୪।।

ସୁରଦ୍ୱାରେ ବୀରେ ପଶିଲେ ବେଗେ ପାଚେରି ଡେଇଁ ।
ଯୁଝିଲେ ରାକ୍ଷସେ ସକଳେ ବାଣେ ପୂରିଲା ମହୀ ।।୨୫।।

ଏହି ସମୟରେ ରାବଣ ବଳ ଦେଖିବା ପାଇଁ ।
ଜଗତ ପରେ ବିଜେ କଲା ମନ୍ଦୋଦରୀର ସାଇଁ ।।୨୬।।

ଶ୍ରୀରାମ ବଳ ଅପ୍ରମିତ ଦେଖି ହେଲା ବିସ୍ମୟ ।
ଗଦା ମାରନ୍ତେ ବିଭୀଷଣେ ନେଲା ପବନ ପୁଅ ।।୨୭।।

ଜାଣି ଦଶରଥ ନନ୍ଦନ ଖଡ୍ଗ ସାୟକ ପେଷି ।
ରାବଣ ଶିର ଛଅ କାଟି ପକାଇଲେ ବିନାଶି ।।୨୮।।

# ଅଣଚାଳିଶ ଛାନ୍ଦ

## ( ରାଗ—ମଙ୍ଗଳ ଭୈରବ )

ଏଥୁ ଅନନ୍ତରେ ରଜନୀ   ଚହ୍ଁ ଦୁଅନ୍ତେ ଶେଷ ।
ନିତ୍ୟକର୍ମ ସାରି ବିଜୟେ   ଦଶରଥଙ୍କ ଶିଷ୍ୟ ଯେ ॥୧॥

ପାଶରେ ଅଛନ୍ତି ବେଢ଼ିଣ   କପିଙ୍କ ବୀରମାନେ ।
ଦେଖନ୍ତି ରାବଣ ନବର   ଅତିଅନ୍ତ ଶୋଭନେ ॥୨॥

ପନ୍ତି ପନ୍ତି ମୋତି ଜଗତି   ଦିବ୍ୟପୁର ସଞ୍ଝୟୁ ।
ଖେଳ ଅମ୍ବରେ ପତାକା   ଗତେ କରନ୍ତି ରସ୍ତୁ ॥୩॥

ଅନେକ କଳେ ସେ ବିଚିତ୍ର   ଚିତ୍ର ଦିଶଇ ପୁର ।
ମଣି ଗବାକ୍ଷେ ମନୋହର   ବିଭୂଷିତ ରୁଚିର ॥୪॥

କରଣେ ମାରତଣ୍ଡ ଶୋଭା   କରୁଅଛି ଗଞ୍ଜନ ।
ପ୍ରାକାରେ ବାଜଣ ପଡ଼ନ୍ତି   ବାତ ବେଗରେ ଘନ ॥୫॥

ଚନ୍ଦ୍ରକାନ୍ତ ସୂର୍ଯ୍ୟକାନ୍ତ   ଦିଶେ ଗୋପୁର ।
ନୀଳମଣି ରେଖ ରୁଚିର   କାଙ୍ଗୁରେ ରୁଚିର ॥୬॥

ସୁବର୍ଣ୍ଣେ ସୁବର୍ଣ୍ଣ ହୋଇଛି   ମେଘନାଦ ବରଣ ।
ଲାଗିଛି ବ୍ରହ୍ମଜାତ ହୀର   ଗଞ୍ଜେ ରବ କରଣ ॥୭॥

ମନକୁ ଅଟଇ ଦୁର୍ଗମ   ପକ୍ଷୀ ଉଡ଼ିବ କାହିଁ ।
ସ୍ୱରଗତ ଯୂଣ ଉତ୍ସର୍ଗ   ଦେଖେ ସୀତାୟା ସାଇଁ ॥୮॥

ହସିଲା ପ୍ରାୟେ ଶୋଭାବନ   ଦିଶୁଅଛି ନବର ।
ନାନା ଅଳଙ୍କାର ଥିଲେହେଁ   ଶୋଭା କରୁଛି ଦୂର ॥୯॥

ପ୍ରବାସେ ପତି ନିଧନରେ   ନାରୀ ନ ଶୋଭେ ଯେହ୍ନେ ।
ରାବଣ ନିଧନ ହୋଇବ   ପୁରୀ ଦିଶୁଛି ତେହ୍ନେ ॥୧୦॥

ଚନ୍ଦ୍ରକାନ୍ତମଣି ସ୍ରବବା   ଛଳେ କରେ ରୋଦନ ।
ପତାକା ହସ୍ତେ ଶିରେ ତାଡ଼ି   ଦିଶେ ବିମନ ମନ ॥୧୧॥

ସୂର୍ଯ୍ୟକାନ୍ତମଣି ରାଗରେ   ହୋଇ ସଂକ୍ରୋଧଭର ।
ବିରହ କଣ୍ଠ ନିନାଦରେ   ଡଢେ ରବେ ସୁସ୍ୱର ॥୧୨॥

ଏମନ୍ତ ପ୍ରକାରେ ମାସେ ପୁର   ଦେଖେ ରଘୁନନ୍ଦନ ।
ବୋଲନ୍ତି ଧନ୍ୟରେ ରାବଣ   ପୁର ସ୍ୱର୍ଗ ସମାନ ॥୧୩॥

ଏତେ ସମ୍ପଦ ଅବସ୍ଥରେ   କଲୁ ଇଷିତେ ନାଶ ।
ଏହା ବିଧ୍ୱଂସିବ ତୋ ବଂଶ   ଚର କରିବ ଧ୍ୱଂସ   ||୧୪||

ସଗୋଷ୍ଠ ସହିତେ ଯିବେ   ଯମ ଭୁବନ ।
ଏତେ ବୋଲି ଧନୁ ଧରିଣ   କଲେ ପ୍ରତିଜ୍ଞାମାନ   ||୧୫||

ବୋଲନ୍ତି ତୁମ୍ଭେ ଶୁଣ ଦିଗ   ପାଳକମାନେ ବଚନ ।
ନଷ୍ଟପୁ ସଗୋଷ୍ଠ ସହିତେ   ମୁଁ ମାରିବ ରାବଣ   ||୧୬||

ନୋହିଲେ ଏ ଧନୁବର   କରେ ଧରିବ ନାହିଁ ।
ନଷ୍ଟେ ବିଭୀଷଣ ବୀରକୁ   କରିବ ଲଙ୍କସାଇଁ   ||୧୭||

ଯେତେହି ସମୟରେ ରାବଣ   ପୁରେ କହିଲା ଚୂର ।
ଦେବ ସମୁଦ୍ରେ ବନ୍ଧ ବାନ୍ଧି   ରାମ ହୋଇଲେ ପାର   ||୧୮||

ସୁବଳୟା ଗିରି ଉପରେ   କଲେ ଆସି ବିଶ୍ରାମ ।
ସୈନ୍ୟ ଅପ୍ରମିତ ଆସି   ବେଢ଼ିଣ ଯେ ଲଙ୍କଗ୍ରାମ · ||୧୯||

ଶୁଣି କ୍ରୋଧଭରେ ରାବଣ   ଦେଶ ବଳ ସଞ୍ଚୟ ।
ଦେଖି ଧାଇଁଲେ କପିଗଣ   ଯେ କଥାରେ କେ ଭୟ   ||୨୦||

ଦନୁଜ ବଳ ପ୍ରହାରନ୍ତି   କଲେ ବିପୁଳ ଶୀଳ ।
କେତେ ପେଷିଲା ତରୁବର   ଶୁଭେ ଅତି ତହଲ   ||୨୧||

ଶ୍ରୀରାମ ଲକ୍ଷ୍ମଣ ସୁଗ୍ରୀବ   ଗଡ଼ ବେଢି ରହିଲେ ।
ଅନେକ ଦନୁଜ ବୀରଙ୍କୁ   ସଞ୍ଜୀବନୀ ପେଷିଲେ   ||୨୨||

ପୂର୍ବଦ୍ୱାରେ ସୁଗ୍ରୀ ବସିଲା   ଦକ୍ଷିଣରେ ଅଙ୍ଗଦ ।
ପଶ୍ଚିମେ ବସିଲା ପାବେନୀ   ହୋଇ ମନେ ସାନନ୍ଦ   ||୨୩||

ଆପଣେ ଶ୍ରୀରାମ ଲକ୍ଷ୍ମଣ   ଯାଇ ଉତ୍ତର ଦ୍ୱାର ।
ସଙ୍ଗେ ବିଭୀଷଣ ଘେନିଣ   କଲେ ସମର ଘୋର   ||୨୪||

ଚୂରିଦ୍ୱାରେ ବୀରେ ପଶିଲେ   ବେଗେ ପାଚେରି ଡେଇଁ ।
ଯୁଝିଲେ ରାକ୍ଷସେ ସକଳେ   ବାଣେ ପୂରିଲା ମହୀ   ||୨୫||

ଏହି ସମୟରେ ରାବଣ   ବଳ ଦେଖିବା ପାଇଁ ।
ଜଗତି ପରେ ବିଜେ କଲା   ମନ୍ଦୋଦରୀର ସାଇଁ   ||୨୬||

ଶ୍ରୀରାମ ବଳ ଅପ୍ରମିତ   ଦେଖି ହେଲା ବିସ୍ମୟ ।
ଗଦା ମାରନ୍ତେ ବିଭୀଷଣେ   ନେଲା ପବନ ପୁଅ   ||୨୭||

ଜାଣି ଦଶରଥ ନନ୍ଦନ   କ୍ଷିପ୍ର ସାୟକ ପେଷି ।
ରାବଣ ଶିର ଛଅ କାଟି   ପକାଇଲେ ବିନାଶି   ||୨୮||

ବିଂଶଭୁଜରେ ଶୋଭା ପାଉଛି ନାନା ଶସ୍ତ୍ର ନିଚୟ ।
ଯେହୁ ଜିଣିଛି ଅବହେଳେ ସେହୁ ମେଦିନୀଚୟ ॥୫୯॥

ଅଷ୍ଟଦିଗପାଳମାନଙ୍କୁ ରୋଷେ ବାନ୍ଧି ଆଣିଲା ।
ତିନିପୁରେ ଯେତେ ଭୋଗ ଲଙ୍କାପୁରେ ରଖିଲା ॥୬୦॥

ବିଚାର କାର୍ଯ୍ୟ କର ଏବେ ପ୍ରଭୁ ସୀତାପତି ।
ସାମାନ୍ୟ କ୍ଷତ୍ରୀ ଯେ ନୁହଇ ଜାଣ ଲଙ୍କା ନୃପତି ॥୬୧॥

ଏହି ସମୟରେ ରାବଣ ସର୍ବ ବଳ ରୁହାଇ ।
ଯେକାରଣେ ହୋଇ ପଶିଲା ମନେ ନିର୍ଭୟ ହୋଇ ॥୬୨॥

ଶର ବୃଷ୍ଟି ଘାତେ ଶ୍ରୀରାମ ସୈନ୍ୟ କଲା ନିଧନ ।
ଦେଖି କୋପକରି ଧାଇଁଲା ମାରତଣ୍ଡ ନନ୍ଦନ ॥୬୩॥

ରାମ ଲକ୍ଷ୍ମଣ ସହିତେଣ ଆସି ପଶିଲେ ରଣେ ।
ଧାଇଁଲେ କପିଗଣମାନେ ବେଢି ପାଡ଼ି ରାବଣେ ॥୬୪॥

ଯେବେ ମହୀଧର ଘେନିଣ ବେଗେ ଧାଇଁ ପାବନି ।
ରାବଣ ପରେ କଟୁଡ଼ିଲା କରି ବିପୁଳ ଧ୍ୱନି ॥୬୫॥

ଦେଖିଣ ତାହା ନାରାଚରେ ଲଙ୍କାପତି ଛେଦିଲା ।
ଶ୍ରାବଣ ବରଷା ପ୍ରାୟେକ କରି ଶର ବର୍ଷିଲା ॥୬୬॥

ଭୟ ନ କରି ହନୁମନ୍ତ ରଥେ ଚଢ଼ିଲା ଯାଇଁ ।
ରାବଣ ହାତୁ ଧନୁବାଣ ଘେନି ଦେଲା ପକାଇ ॥୬୭॥

ବୋଲଇ ଶୁଣରେ ରାବଣ ତୋତେ କରିବି ନାଶ ।
ଶୁଣି ସେହୁ ଲଙ୍କାପାଳ ଯେ ମନେ ବହିଲା ରୋଷ ॥୬୮॥

ହନୁ ହୃଦୟରେ ବେଗେ ମୁଷ୍ଟି କଲା ପ୍ରହାର ।
ବାଜନ୍ତେ କଟୁ କମ୍ପମାନ ମତ୍ତ ହେଲା ବିହ୍ୱଳ ॥୬୯॥

ସଚେତ ହୋଇ ରାବଣକୁ ସେହୁ ମାଇଲା ମୁଥ ।
ବାଜନ୍ତେ ମୋହ ଯାଇ ବୀର ତଳ ପଡ଼ିଲା ରଥ ॥୭୦॥

ପୁଣି ଚେତନା ପାଇକରି ବୋଲେ ଧନ୍ୟରେ କପି ।
ଏତେ ବୋଲି ପୁଣ ସେ ଶର କଲେ ପ୍ରହାରେ କୋପି ॥୭୧॥

ବାଜନ୍ତେ ଅଚେତ ହୋଇଣ ହନୁ ମୋହେ ପଡ଼ିଲା ।
ଉଠନ୍ତେ ମାରିବି ବୋଲିଣ ରାବଣ ହସ୍ତା ଉଠିଲା ॥୭୨॥

ନୀଳ ଭୁଲେ ଯାଇ ସଂଗ୍ରାମ କରି ହେଲା ବିସ୍ମୟ ।
କୋପେ ଅଗ୍ନିବାଣ ପେଷିଲେ ବିଶ୍ରବାର ତନୟ ॥୭୩॥

ତାଙ୍କୁ ମୋହ କରି ସେଠାରୁ ବେଗେ କଲା ଗମନ ।
ଦେଖି କୋପକରି ଡାକଇ ସୁଗ୍ରୀବର ରାଜନ ॥୭୪॥

ସମ୍ଭାଳ ବୋଲିଣ ରାବଣ ଅଙ୍ଗେ କଲା ପ୍ରହାର ।
ତା ସହି କରି ଦଶଶିର ବେଗେ ବନ୍ଧିଲା ଶର ॥୭୫॥

ମୋହେ ଅଚେତନ ହୋଇଣ ପଡ଼େ ସୂର୍ଯ୍ୟ ତନୁଜ ।
ଦେଖିଣ ତାହା ଧାଇଁଲେ ଶ୍ରୀରାମର ଅନୁଜ ॥୭୬॥

ଅନେକ ଶର ପେଷି ତାର ଧନୁଃଶର ଛେଦିଲେ ।
ଅଶ୍ୱ ସାରଥି ହତ କରି ମର୍ମ ସ୍ଥାନେ ଭେଦିଲେ ॥୭୭॥

ଘାଏ ବିକଳିତ ହୋଇଣ ସେହୁ ଲଙ୍କା ନୃପତି ।
ଲକ୍ଷ୍ମଣଙ୍କୁ ମାଇଲା ଯେ ବ୍ରହ୍ମ ଦେଲା ଶକତି ॥୭୮॥

ବାଜନ୍ତେ ଅଚେତନ ହୋଇ ପଡ଼େ ସୁମିତ୍ରା ସୁତ ।
ଦେଖି ରଥରୁ ଓହ୍ଲାଇଲା ଇନ୍ଦ୍ରଜିତର ତାତ ॥୭୯॥

ଅନେକ ପ୍ରକାର ତୋଳିଣ ଟେକିଲା ନ ପାରି ।
ସେହି ସମୟରେ ଧାଇଁଲା ହନୁ ରୋଷକୁ କରି ॥୮୦॥

ରାବଣ ହୃଦରେ ବେଗେଣ ଆସି ମାରିଲା ବିଧା ।
ଆଣୁ ମାଡ଼ ହୋଇ ପଡ଼ିଲା ବେଗେ ସେ ଦଶମୂର୍ଦ୍ଧା ॥୮୧॥

ଚେତନା ଲଭ କରି ଯାଇ ବେଗେ ରଥେ ବସିଲା ।
ଲକ୍ଷ୍ମଣଙ୍କୁ ଘେନି ପାବନି ରାମ ପାଶେ ମିଳିଲା ॥୮୨॥

ସଚେତ ହୋଇଲେ ଲକ୍ଷ୍ମଣ ରାମ ହେଲେ ହରଷ ।
ଶ୍ରୀରାମ ବିଳାସ ନାମେଣ ଏହୁ ଗୀତ ସୁରସ ॥୮୩॥

ଛାନ୍ଦ ଏହୁ ଅଣସ୍ତ୍ରଳଣ ଶୁଣ ସୁଜନ ଜନ ।
ସେ ରାମ ଚରଣେ ସେବିଣ ଭଣେ ଭଞ୍ଜ ରାଜନ ॥୮୪॥

# ଚାଳିଶ ଛାନ୍ଦ

## ( ରାଗ—କାମୋଦୀ )

ଏଥୁ ଅନ୍ତେ ଲକ୍ଷ୍ମଣ ଦେଖି ଶୁଭ ଲକ୍ଷଣ
ଅତି ହରଷ ରଘୁରାଣ
ବୋଲନ୍ତି ରେ ରାବଣ ଚୋର ପ୍ରେ ନେଲୁ ପ୍ରାଣ
ଲକ୍ଷ୍ମଣ ପରଶନ୍ତି ତୋର ଶକ୍ତିବାଣ, ବିଲକ୍ଷଣ
ତୋ ପ୍ରାଣ କରିବି କେ କ୍ଷଣ
ଏତେ ବୋଲି କମାଣ ଧରି ସନ୍ଧିଲେ ବାଣ
ଧାଇଁଲେ କରିବାକୁ ରଣ ହେ ।।୧।।

ଧାମନ୍ତେ ପାଦଗତି ବୋଲଇ ସେ ମାରୁତି
ମୋ କନ୍ଧେ ବସ ଦେବ ଧାତି
ସେହୁ ଲଙ୍କ ନୃପତି ରଥେ ଅଛି କୁମତି
ଏ କଥା ନୋହେ ପ୍ରଭୁ ଖିତି ହେ, ରଘୁପତି
ଲଭିଣ ଅତି ତୋଷମତି
ଆରୋହି କପିପତି ଆସନ୍ତେ ସେ ତଡ଼ିତି
ବାଟେ ଭେଟିଲେ ଲଙ୍କପତି ।।୨।।

ବିଗ୍ରହେ ମାରିବ କି ଶୂଳ ବିଧା ପୁଣି କି
ଲକ୍ଷ୍ମଣ ନେଲୁ ମହାଯୋଦ୍ଧା
ସମେ କରିବି କଥା ହୋଇଛି ମୋ ଶରଧା
ବାହା ରଥ ମହା ବିବୁଧା ସେ, ଅତିକ୍ରୋଧା
ହାତେ ଖଞ୍ଜିଲ ନେଇ ଶୋଧା
ଯେସନେ ମୃଗ ଲୋଧା କରଇ ଅତି ରୋଧା
ପ୍ରବଳେ ହୋଇଅଛି ଯୁଧା ସେ ।।୩।।

ଅଶ୍ୱ ଦଉଡ଼ି ଧରି ଯନ୍ତା ସଧୀର କରି
ଅଶ୍ୱକୁ ବେଗେ ଦେଲ ଫେରି
ସଧୀରେ ଗମି ହରି ପାଇଲ ଭେଟ ହରି
ହରିରେ ବିରୋଧ ବଗୃହ ସେ, ବେଖି ହରି
ହରିରେ ହରିକ ବିଦାରି
ହୋଇଲ ହତଶିରି ପଡ଼ିଲ ଛୁଡ଼ି ହରି
ବିରସ ହେଲ ଦଶଶିର ହେ ।।୪।।

ଶୁଣି ରାମର ବାଣୀ ସେହୁ ରକ୍ଷସମଣି
ବନ୍ଧିଲା ତୀକ୍ଷ୍ଣ ଶର ଟାଣି
ଦେଖିଣ ରଘୁମଣି ପକାନ୍ତେ ତାହା ହାଣି
ସେଣୁ ସେ ବୀରଙ୍କ ଅଗ୍ରଣୀ ସେ, କହି ବାଣୀ
ଆସରେ ଆସରେ ଆରଣୀ
ସୀତା ଆସିବା ଶୁଣି ଯୁଦ୍ଧକୁ ଆସୁ ପୁଣି
ଭାଙ୍ଗିବି ଆଜ ତୋର ଆଣିରେ ।।୫।।

ବାଜିଣ ବାଣ କୋଟି ପଡ଼ିଲାକ କଟାକଟି
ଦଶମଉଳି ପରୁ ଲୋଟି
ଛାଡ଼ନ୍ତେ ଧନୁ କୋଟି ମୁଖେ କାଳିମା ଘୋଟି
କେଉଁ ବାଣେ ଫୁଟିଲା ପାଟି ସେ, ଜ୍ଞାନ ତୁଟି
ବେଗେ ପଡ଼ିଲା ରଥ ତଟୀ
ମର୍ମ ନାଶଯେ଼ ଫୁଟି ପଡ଼ିଲା ତା କଟାକଟି
ରଣରେ ହାରିଲା କପଟୀ ।।୬।।

ସାରଥି କରି ଛେଦ କଲେ ତା ମର୍ମଭେଦ
ବହିଲେ ତୁରଙ୍ଗେ ପ୍ରମାଦ
ଲଭି ଅତି ବିଷାଦ ଛାଡ଼ିଣ ନିଜ ମଦ
ପାଇଣ ସେ ବଡ଼ ଆନନ୍ଦ ସେ, ଆଦିକନ୍ଦ
ବୋଲେ ଲଭିଛୁ ଆଜ ଖେଦ
ତୋ ପ୍ରାଣ କଲେ ଭେଦ ହୋଇବ କି ସମ୍ପଦ
ହୋଇଛି ମନ୍ଦୋଦରୀ ପଦ ସେ ।।୭।।

ଏସନେ ବୋଲି ରାମ ହୋଇଣ ପୂର୍ଣ୍ଣକାମ
ବଞ୍ଚିଲେ ସୁବେଳସ୍ଥା ଧାମ
ହୋଇ ନିଷ୍ଫଳ କାମ ମନରେ ଲଭି ଭ୍ରମ
ପ୍ରବେଶ ହେଲେ ନିଜାଶ୍ରମ ସେ, ଲଙ୍କାପାଳ
ବୋଲଇ ଶୁଣ ଦୈତ୍ୟବଳ
କରିବ ମହାଗୋଳ କୁମ୍ଭକର୍ଣ୍ଣକୁ ତୋଳ
ତେବେ ମରିବେ କପିବଳ ସେ ।।୮।।

ଶୁଣି ରାଜା ଆଦେଶ ହେଲ ତାର ବିଶ୍ୱାସ
ଅମାତ୍ୟେ ମିଳି ତାର ପାଶ
ପ୍ରଖର ତା ନିଶ୍ୱାସ ନ ପାଇ ଅବକାଶ
ବଳ ସେ ଲଭିଲେ ପ୍ରୟାସ ସେ, ରାକ୍ଷସ
ଅକାରଣେ କରି ଆଶ୍ଳେଷ
କରନ୍ତି ନିତ୍ତ ଆଶ ମନେ ଲଭି ସାଧ୍ୱସ
ପ୍ରବେଶ ହେଲେ ତାର ପାଶ ହେ ||୯||

ବୋଲନ୍ତି ବୀରମାନ ମନରେ ଘେନି ମାନ
ନିଦ୍ରାରେ ସେହୁ ଅଚେତନ
କରନ୍ତି ଘନ ସ୍ୱନ କେହୁ ଚିପନ୍ତି କାନ
କେହୁ ମାରେ ଶକତି ସ୍ୱନ ସେ, କୁମ୍ଭକର୍ଣ୍ଣ
ହୋଇଛି ନିଦ୍ରାରେ ଅଜ୍ଞାନ
ଧୁଆଁଇ ଗଦମାନ କେହୁ କରନ୍ତି ଗାନ
ମାରନ୍ତି ଦ୍ୱିରଦ ରଦନ ଯେ ||୧୦||

ନିଦ୍ରା ନୋହିଲି ଭଙ୍ଗ ଦେଖି ଦୈତ୍ୟ ବିରଙ୍ଗ
କଲେ ଅବଳା କୁଚ ସଙ୍ଗ
ସବୁ ବଡ଼ ଅନଙ୍ଗ କଲା ତା ଶର ସଙ୍ଗ
ଛାଡ଼ିଲା ନିଦ୍ରାର ଆସଙ୍ଗ ସେ, ଗତଭୃଙ୍ଗ
ବେନି ନୟନ ତା ସୁରଙ୍ଗ
କୁଟିଳ ତା ଅପାଙ୍ଗ କରିବ ସ୍ୱରଭଙ୍ଗ
ବୋଲେ ବଚନ କରି ଖଙ୍ଗ ଯେ ||୧୧||

କାହେ ଦୈତ୍ୟ ନିଚୟ କମ୍ପାଇ କରି ଭୟ
ଭାଙ୍ଗିଲ ମୋ ନିଦ୍ରା ଉଦୟ
କାହା ସକାଶୁଁ ଭୟ ହୋଇଛି ସମୁଦାୟ
କହି ଲଙ୍ଘିଲ ମୋ ସମୟ, ସେ ହୃଦୟ
ହୋଇଲା ଅପଜୟ
ସୁରେ ଲଭିଛି ଜୟ କି କଲା ସେ ଅନ୍ୟାୟ
ମୋତେ ଲଗିଲା ଧ୍ୱେ ସଂଶୟ ||୧୨||

ବୋଲଇ କୁଳପାଂଶୁ ଶୁଣ ବିଶ୍ରବା ବଂଶ
କଲ୍ ତୋ ଗଲ ବୁଦ୍ଧି ଭ୍ରଂଶ
ହେଲା କୁଳରେ ଲାଞ୍ଛ ଦେଖ ଯେବେ ପ୍ରତ୍ୟକ୍ଷ
ରାମ ବସିଛନ୍ତି ଦ୍ୱାରକକ୍ଷ, ହେ ବୀର ମୋକ୍ଷ
ଏବେ ତୁ ଟେକ ଭ୍ରାତ ବକ୍ଷ
ସୀତା ହରିବ ଲକ୍ଷ୍ୟ ଲକ୍ଷ୍ମୀ ତୋହର ସାକ୍ଷ୍ୟ
ତୁ ତାର ଦୁଃଖ କର ମୋକ୍ଷ ।।୧୩।।

ଶୁଣି ସୁମନ୍ତ୍ରୀ ବାଣୀ ରାକ୍ଷସ ଶିରୋମଣି
ମିଳିଲ୍ ଯହିଁ ବଂଶପାଣି
କହଇ ଶିର ଝୁଣି ଯେ କ ଅନ୍ୟାୟେ ପୁଣି
ହରିଲୁ ରାମର ଘରଣୀ, ହେ ବୀରମଣି
ତୁ ତ ସକଳ ଧର୍ମଜାଣି
କଲେ ମୁହିଁ ଆରଣୀ ନୋହିବ ମଣ ପୂର୍ଣ୍ଣି
ସେ ରାମ ବୀରଙ୍କ ଅଗ୍ରଣୀ ।।୧୪।।

ଯେତେକ କହି ତହିଁ ଅଇଲ୍ ସଜ ହୋଇ
ଅଛି ବିପୁଳ ଶୂଳ ବହି
ରଥ ବୀର ଆରୋହି ଯୁଦ୍ଧେ ପଶିଲ୍ ଧାଇଁ
ଆପଣା ନାମ ଉଚ୍ଚେ କହି ସେ, ସନ୍ଦହି
ସୁଗ୍ରୀବ ପକାଇଲ୍ ମହୀ
ଆସନ୍ତେ ବେଗେ ବହି ଚେତନା ପାଇ ତହିଁ
ନାସା ଆଣିଲ୍ ସୁଗ୍ରୀ ଖାଇ ।।୧୫।।

ଦେଖିଣ ରାମଚନ୍ଦ୍ର କହିଣ ଧୂମ୍ରାମନ୍ତ୍ର
ବୋଲେ ଧନ୍ୟ ତୁ କପିଇନ୍ଦ୍ର
ସେହୁ ଅସୁର ଚନ୍ଦ୍ର ତେଜଛି ଯେହୁ ତନ୍ତ୍ର
ନାଶିବ ତାର ଶିର ଇନ୍ଦ୍ର, ସେ ମହୀଇନ୍ଦ୍ର
ପେଷି ମୁଁ ତାରେ ଅଧାଚନ୍ଦ୍ର
ହେଲେ ଦୈତ୍ୟ ପାରେନ୍ଦ୍ର ରକ୍ଷି ହେଉ ଉପେନ୍ଦ୍ର
କାଟିବ ତାର କଣ୍ଠ ସାନ୍ଦ୍ର ।।୧୬।।

ବୋଲି ଧାଇଁ ଆପଣ          ବନ୍ଧିଲ ତୀକ୍ଷ୍ଣ ବାଣ
କାଟିଲେ ତାର ଶିର ଖାଣ
ଛେଦନ୍ତେ ଭୁଜ ଗଣ          ପଡ଼ିଲା ସେହୁ ପୁଣ
ଗିଳିଲା ଧରି କପିଗଣ ସେ, ସୁରଗଣ
ଦେଲର ପେଷିଣ ମାର୍ଗଣ
କାଟିଲେ ତା ଚରଣ          ପଡ଼ିଲା ଦୈତ୍ୟରାଣ
ପୁଣି ତା ନେଲେ ନିଜ ପ୍ରାଣ          ।।୧୭।।

ଶୁଣି ତାହାର ହତ          ଦୁଃଖିତ ହୋଇ ଭ୍ରାତ
ପେଷିଲା ଭ୍ରାତ ସୁରସୁତ
ଯୁଦ୍ଧ ସେହୁ ଆଗତ          କରନ୍ତେ କପି ହତ
ଅତିକାୟେ ହେଲା ଉଦିତ ସେ, ରାମଭ୍ରାତ
ତାହାକୁ ରଣେ କଲେ ହତ
ଶୁଣିଣ କୋପଚିତ୍ତ          ଅଇଲା ଇନ୍ଦ୍ରଜିତ
ପେଷିଲା ବ୍ରହ୍ମଅସ୍ତ୍ର ତୁରିତ          ।।୧୮।।

ଜାଣି ଔଷଧି ବର          ଦେଲା ପ୍ରାଣ କୁମର
ଚେତନା ଲଭିଲେ ସତ୍ୱର
ଗଲା ଅଙ୍ଗ ବିକାର          ଲଭିଲେ ସେହୁ ବର
ପୁଣି ସ୍ୱିଁ କଲେ ସେ ସମର ହେ, କପିବୀର
ଜଣାଇ ଶୁଣ ବୀରବର
ଆମ୍ଭ ନିଧନେ ତାର          ଲଭିଣ ଶନ୍ତା ଭର
ମନରୁ ତେଜିଛନ୍ତି ଡର ସେ          ।।୧୯।।

ଆମ୍ଭଙ୍କୁ ଦୈତ୍ୟ ରାୟ          ହୋଇ ଦନୁଜରାୟ
ଯାଉ ବୋଇଲା ସେହୁ ରଣରାହୁ
ତା ପୁର ଅଗ୍ନି ଦହୁ          ସମ୍ପତ୍ତି ନାଶ ହେଉ
ସୀତା ଆଣିଲ ଫଳ ପାଉ ସେ, ମହାବାହୁ
ବିଳମ୍ବ ନ କରିବା ହେଉ
ରଜନୀ ନ ପାଉ          ଦୈତ୍ୟଙ୍କ ନାଶ ହେଉ
କାଲି ମାରିବା ବଂଶବାହୁ          ।।୨୦।।

ନ କର ମୁଖଶୋଳ ସମସ୍ତେ ହୋଇ ମେଳ
ଡେଇଁଲେ ପାଚେରି ବପୁଳ
ବାଜିଲା ରଣରୋଳ ଶୁଭିଲାକ ଚହଳ
ବାହାର ହେଲେ ରଥୀକୁଳ ସେ, ଶରଜାଳ
ପୂରିଲା ଗଗନ ମଣ୍ଡଳ
ପଡ଼ଇ ଅର୍ଗଳ ଶିଳ କହି ନୋହେ ସକଳ
ପ୍ରାଣ ଛାଡ଼ିଲେ ଦୈତ୍ୟବଳ ସେ ॥୨୧॥

ନ ଦିଶେ ଆଉପଥ ଅତି ସଂକୁଳ ରଥ
ଯୁଝନ୍ତି ଉଭୟ ସାମରଥ
ହେଉଅଛି ଅନର୍ଥ ବାହାର କପିଯୂଥ
ସେନାପଥ କୁଳଯୂଥ ସେ, ରଘୁନାଥ
ଜାଣି କଲେ ଶୋଣିତ ପାଥ
ପଡ଼େ ରାକ୍ଷସ ଲୋଥ କାହାର ଛିଡ଼େ ମାଥ
ସମର୍ଥେ ହୋଇଲେ ଅନାଥ ॥୨୨॥

ମାରନ୍ତି ଦେଖି ଦେଖି ହେଲେ ରାକ୍ଷସ ଦୁଃଖୀ
କପିବଳ ପଡ଼ିଲେ ସାକ୍ଷୀ
କେହୁ ପିଠି ନ ଦେଖି ଗଲେ ଜୀବନ ରଖି
ସାଖୀଙ୍କି କରଣ ନିରୀକ୍ଷି, କେ ଲଙ୍କାପେକ୍ଷି
ଯୁଦ୍ଧରେ ହୋଇ ସମ୍ମୁଖୀ
ଲାଗିଲା ରାଜପକ୍ଷୀ ନୋହିଲେ ଯେତେ ସଖୀ
ପଳାଇଲେ ରଣ ଉପେକ୍ଷି ॥୨୩॥

ପଡ଼େ ଶୃଙ୍ଗି ପାବେଳୀ ଧାମେ କେ ମହାବଳୀ
କେ ଦେହେ ଦେହେ ମିଳି
କାହାର ତନୁ ଗଳି ଗଲେ ନାଗଜ ଗଳି
ପଡ଼ନ୍ତେ କେ ପାଡ଼େ ବୋବାଳି, ସେ କରିକଳି
ବହୁତ ଲଭେ ମସ୍ତିଆଳୀ
ଉଡ଼େ ଚରଣ ଧୂଳି ଲୁଚିଲା ତାରାବଳୀ
ଅନ୍ଧଶ ହେଲେ ଦିଗପାଳ ॥୨୪॥

ଜାଳମା ଜଳୁବନ୍ତି    ଅତି ଅନ୍ଧାର ଅତି
ରାକ୍ଷସୀ ରମଣୀ ଜ୍ୟୋତି
ଚନ୍ଦ୍ରିମାରେ ଚକୋତି    କେତେ ପଡ଼ ଖାବନ୍ତି
କାହାକୁ ଦନୁଜେ ଚର୍ବନ୍ତି, ସେ ଅତିଶାନ୍ତି
ଲଭିଲେ ଦନୁଜେ ସନ୍ତତି
କରେ କେ ଖରମତି    କେତେ ଲଭିଲେ ମୃତି
କେ ବୋଲେ ରଖ ରଘୁପତି ॥୨୫॥

ଦେଖି କପି ସରମ୍ଭ    ତେଜିଲେ କପି ଦମ୍ଭ
କଲେକ ଗମନେ ଆରମ୍ଭ
କେତେ ପଶିଲେ ଅମ୍ଭ    କେ ଯାନ୍ତେ ହେଲେ ଥମ୍ଭ
କେତେ ଯେ ପ୍ରାଣର ବିଶ୍ରମ୍ଭ ସେ, କପିରମ୍ଭ
ଯେଣେ ବାହାର ମହାଖମ୍ଭ
ପିଟିଲା ଗଜକୁମ୍ଭ    ବଢ଼ିଣ ଥିଲା କୁମ୍ଭ
ଦେଖିବା ଅଇଲା ନିକୁମ୍ଭ ॥୨୬॥

ଏହୁ ଶ୍ରୀରାମ ନାମ    ବିଳାସେ ଅଭିରାମ
ଷୋଳଶ ଛନ୍ଦ ଅନୁପମ
ସେବେ ନୀଳାଦ୍ରି ଧାମ    ହୋଇଣ ପୂର୍ଣ୍ଣକାମ
ସୁଜନ ଜନ ମନୋରମ, ସେ ଅତିରମ୍ୟ
ବର୍ଣ୍ଣାବଳୀରେ ସେହୁ ସମ
ଭଣିଲେ ବୀରୋତ୍ତମ    ଭଞ୍ଜକୁଳ ସତ୍ତମ
ନୃପତି ଧନଞ୍ଜୟ ଶ୍ରମ ॥୨୭॥

●

# ଏକଚାଳିଶ ଛାନ୍ଦ

## ( ରାଗ—ବରାଡ଼ି )

( ବିପ୍ରସିନ୍ଧା ବାଣୀରେ )

ଏଥୁ ଅନନ୍ତରେ ତହିଁ ଧାବଣର ସାନଭାଇ
କହଇ ଶ୍ରୀରାମ ଆଗେ ଯାଇ
ବେନିକର ଶିରେ ଦେଇ ବୋଲଇ ଶୁଣ ଗୋସାଇଁ
ଏ ଠାବରେ ନୁହେଁ ପୁଣ୍ୟ ଦେହୀ ହେ, ରାମଚନ୍ଦ୍ର
ଦେଖ ଏ ଭୂମିର ଅତି ସାନ୍ଦ୍ର
ଦନୁଜେ ଅଟନ୍ତି ମନ୍ଦ କରିବେ ବିପୁଳ ଦ୍ୱନ୍ଦ୍ୱ
କପିମାନେ ନ ଜାଣନ୍ତି ଛନ୍ଦ ହେ ।।୧।।

ଆଜ୍ଞା ହେଉ ଯୂଥପତି ଡାକଣ ଦେବ ଚତୁରତି
ଲଗାନ୍ତୁ ଅନଳ ପୁରେ ଧାତି
ଝଶିବ ବଣ ସନ୍ତତି ମାରିବା ଆମ୍ଭେ ବିକୋଟି
ଦେଖ ଯାଉଛନ୍ତି ରଥପନ୍ତି ହେ, ରଘୁପତି
ଶୁଣିଣ ସନ୍ତୋଷ ହେଲେ ମତି
ଡାକଣ ସେ ଋକ୍ଷପତି ଆଜ୍ଞା ଦେଲେକ ଚତୁରତି
ଅନଳ ଲଗାଅ ଗୃହପନ୍ତି ସେ ।।୨।।

ପାଇଣ ସେ ରାମ ଆଜ୍ଞା କରିଣ ବୀରେ ପ୍ରତିଜ୍ଞା
ଗୃହଦ୍ୱାରେ ଲଗାନ୍ତି ଅନଳ
ହୋଇଲା ଅତି ପ୍ରବଳ ହୋଇଣ ପବନ ବଳ
ଦହିଲା ସେ ଗୃହଙ୍କର ଗୃଳ ହେ, କାଳାନଳ
ସମାନ ପ୍ରକାଶ ହେଲା ଜ୍ୟୋତି
ଯୋଡ଼େ ପଡ଼ନ୍ତି ସନ୍ତତି ସର୍ଗିପଡ଼େ ରତ୍ନଭିତ୍ତି
ରଡ଼ ଛାଡ଼ୁଛନ୍ତି କପିପତି ସେ ।।୩।।

ବଡ଼ଶ୍ରୀ ପୁରରେ କହି ଥିଲେ କାନ୍ତ କାନ୍ତା ଶୋଇ
ଆଲିଙ୍ଗନେ ତନୁ ଥିଲା ଜଡ଼ି
ଲାଗି ପ୍ରଚଣ୍ଡ ଅନଳ ନୋହିଲେ କିଛି ବିକଳ
ସଂଯୋଗ ବିଯୋଗୁ ଗଲେ ପୋଡ଼ି ସେ ରାମାକୁଳ
ପବନେ ପ୍ରବଳ ଶୁଚିକୁଳ
ଦହିଲା ପୁର ସକଳ ତେଜ ହୋଇଲା ପ୍ରବଳ
ଶିଖା ଆକାଶ ପୁର ମଣ୍ଡଳରେ ।।୪।।

ପୁର ସର୍ବ ଗଲା ପୋଡ଼ି ପ୍ରାସାଦ ପଡ଼ିଲା ଝଡ଼ି
ଶୁଭେ ଯେସନ୍ତେ ମେଘ ଘଡ଼ଘଡ଼ି
ଆସୁଛି ଅନଳ ମାଡ଼ି ପଳାବନ୍ତି ଦୈତ୍ୟ ମାଡ଼ି
ମଣିଲେ ସେ କାଳାନଳ ଧାଡ଼ି ସେ, ରକ୍ଷୋଗଣେ
ପଳାଇ ନ ପାରି ହେଲେ ଦଗ୍ଧ
କେ ବୋଲଇ ମଲି ଭାଇ କେ ବୋଲଇ କାହିଁ ସଗ୍ଧ
ଅନଳ ଆସୁଛି ବେଗେ ବଗ୍ଧ ସେ ||୫||

ଜୁଳନ୍ତି କ ଦନ୍ତୀ କୁଳ ଛିଣ୍ଡାଇ ଶିକୁଳି କୁଳ
ଅଗ୍ନି ଲଗି ହୁଅନ୍ତି ଆକୁଳ
ପଶନ୍ତି ଦକଳେ ଜଳ ତହିଁର ଦମ୍ଭେ ଅନଳ
ତେଣୁ ତହିଁ ଦହରନ୍ତି କୁଳ ସେ, ତୁରଙ୍ଗମ
ଅଗ୍ନି ଲଗି କେସନ୍ତେ ହେଲେ କ୍ଷୀଣ
ଦଗଧ ରଜତକୁଳ ମଣିଣ ତାହାକୁ ଜଳ
ପଶିବାରେ ଲଭିଲେ ନିଧନ ||୬||

ଲଭି ପ୍ରଚଣ୍ଡ ଅନଳ ଲଭିଲେ ବାଗ୍ଧିକୁଳ
ପନ୍ତି କକ୍ଷ ଧରି ନ ଛୁଡ଼ନ୍ତି
କେ ବୋଲଇ ଯିବା କାହିଁ କପି ଆସୁଛନ୍ତି ଧାଇଁ
ଭ୍ରାତାଏ ନ ଦଶେ କୁନ୍ଦଦନ୍ତୀରେ, ସହଚରୀ
ସେ ପୋଡ଼ିଯାଏ ପୋଡ଼ି ତ ଗାତ୍ର
ଦେଖ ରାକ୍ଷସ ଧାମନ୍ତି ନାରଜ ବାଜ ପଡ଼ନ୍ତି
ବାନା କାଯେଁ ନାଶିଗଲା ମୂଢ଼ ସେ ||୭||

ବୋଲନ୍ତି ସେ ପୁରଜନ ଅନ୍ୟାୟ କଲା ରାଜନ
ରାମ ବାଣେ ହୋଇବ ନିଧନ
ଆଣିଲା ତାହାର ନାରୀ ଘରେ ତ ପଶିଛି ଡରି
ତାରେ ହେଲା ସବୁରି ନିଧନ, ରେ ସହଚରୀ
ଦେଖ ଏହୁ ଦିବ୍ୟପୁରମାନ
ଦହୁଛି କୃଷ୍ଣବର୍ଣ୍ଣରେତ ନାବ ବୁଡ଼ିଲା ସମୁଦ୍ରନ୍ତ
କାହିଁଗଲେ ହୋଇବା ନିଧନ ରେ ||୮||

ବାଜନ୍ତି ସ୍ୱେ ରଣତୋଳ          ଧାଇଁଲେ ରାକ୍ଷସ ଦଳ
ରକ୍ଷ କପି ଯୁଦ୍ଧେ ପ୍ରବର୍ତ୍ତି
ବରଷିଲେ ଶାଳ ଶୀଳ          ଶବଳ୍କ ଶର ଉଲ୍ଲୋଳ
କେହୁ ଶସ୍ତ୍ର ଘୁଡ଼ୁ ହେଲେ ଦହି ସେ, ଘୁଣ୍ଟାଣ୍ଡା
କେ କାହାକୁ ପ୍ରହାରନ୍ତି ଖଣ୍ଡା
କେହୁ ପିଠେ ଲୌହଦଣ୍ଡା   ବାଜ କେହୁ ହେଲେ ଗୁଣ୍ଡା
ରଣରେ କେ ପଡ଼େ ମହାଷଣ୍ଡା ସେ          ।।୯।।

ବୈଶ୍ୱାନର ଯନ୍ତ୍ରଯନ୍ତ୍ର          ଲଗିଲେ ମେଢ଼ ଜଗଣ୍ଡି
ଉଠିଲେ ବା ବାଣ ପୁରେ ଯାଇ
ପୋଡ଼ୁଛି ବଟାଳ ପୁର          ରତ୍ନଗଣେ ସମାକୁଳ
ହୁତବହ ପତ୍କାଳିଲ ଦହି ସେ, ମନ୍ଦୋଦରୀ
ଦେଖିଣ ହୋଇଲ ଚକିତ
ଦେଳ ସପତଣୀ ଚଯୁ          ସଭସ୍ତ କଲଇ ଦେହ
ରହିଯାଏ ହୋଇଣ ଅକ୍ଳାନ୍ତ, ସେ          ।।୧୦।।

କାଦମ୍ବ ଅତି ବ୍ୟଳଳ          ଯେସନେ କୁରଙ୍ଗ କୁଳ
ପୁର ଯେବଣ୍ଡେ ଦହଇ ଅନଳ
କେଶ ବାସ ଅସମ୍ଭାଳ          ଫିଟିଛି କାହାର ଚୂଳ
ସ୍ୱେତେକେ ହୋଇଛି ଆକୁଳ ସେ, ନାରୀଗଣେ
ସ୍ୱପଥ ପଥ ନ ଜାଣିଲେ
ପବନେ ଜଳେ ଅନଳ          ପ୍ରବଳ ତା ଶିଖାଗଣ
ବ୍ୟୋମପୁ ଆକାଶ ସେ ମଣିଲେ ସେ          ।।୧୧।।

ଗବାକ୍ଷ ମାର୍ଗରେ କାହିଁ          ପଶେ ଅତି ବେଗ ହୋଇ
ଦହେ ରତ୍ନ ବିତାନ ଯନ୍ତ୍ରିତ
ଦିବ୍ୟ ମଣିଗଣ ଲାଗି          ହୋଇଛି କି ଅନୁରାଗୀ
ସୂର୍ଯ୍ୟକାନ୍ତେ ଦହନ ସଙ୍ଗତ ସେ, ବୃହଦ୍ଭାନୁ
ସ୍ୱଭାନୁରେ ପୂରିଲ ଦିଗନ୍ତ
ଉଠିଲ ଧୂମ ମଣ୍ଡଳୀ          ଯେସନେ ବରଷେ ଘନାବଳୀ
ଦେବେ ଧୂମେ ହେଲେ ଆକୁଳିତ ସେ          ।।୧୨।।

ନାଗପୁର ଦେବକୁଳ          ତେଜିଲେ ନୟନୁ ଜଳ
ଦେଖିଣ ସେ ଶ୍ରୀରାମ ପ୍ରବଳ
ଅନନ୍ତ ଅଶ୍ରୁ ଗହଳ          କଲେ ତେଣୁ ସମାକୁଳ
ଜାଣିଲେ ମରିବ ଲୋକପାଳ ସେ, ମହାତମ
ମଣି ଫଣାମଣି ପଳାଇଲା
ବାନ୍ତ କରନ୍ତେ ଗମନ          ସଙ୍ଗେ ଗଲେ ପତ୍ନୀଗଣ
ଜଳ ଲୋକ ନେବକୁ ରୁନ୍ଧିଲା ସେ          ||୧୩||

ଦେଖି ଧୂମ କଳେବର          ଭୟେ ଦିଗ ନାଗଚୟ
ମହାଦନ୍ତୀ ମଣି ପଳାଇଲେ
ଫେଣସ୍ଥ ନତ ବୁଡ଼ିଲେ          ଗୁହା ତେଜି କେଣେ ଗଲେ
କୂର୍ମ ମୂର୍ତ୍ତି ଦିଗନ୍ତ ଦେଖିଲେ ସେ, ଦିଗପାଳ
ମଣିଲେ କି ହୋଇଲା ପ୍ରଳୟ
ଧୂମ୍ର ଧୂମ୍ରରେ ପଶିଲ          ପାତାଳ ପୁରକୁ ଗଲ
ଧର୍ମ ଭାସି ହୋଇଲା ସଭୟ          ||୧୪||

ଲଭିଲେ ଅସୁର ଭୟ          ଲାଗି ଶିଖୀ ଶିଖାଚୟ
ଶତକଣ୍ଠ ଦଶେ ଶତସ୍କନ୍ଧ
ବଢ଼ିଛି ତାହାର ମନୁ          ହରଚ ଅଛଇ ହନୁ
ଧ୍ୟାନରେ ପଡ଼େ ଶତନେମୀ, ସେ କାଳନେମି
ଧନ ଧନ ମଣି ଗଲା
ଦ୍ରବ ଭାଙ୍ଗି ଲମ୍ଫ          ପାଶାଣୁ ପା ପୋଡ଼ିଗଲା
ସୁମୁଖର ମୁଖକୁ ବହିଲ          ||୧୫||

ଦେଖି ଦୁରଣ ପ୍ରଚଣ୍ଡ          ଅନଳ ଦେଖି ବଖଣ୍ଡ
ଥୋକାଏ ଡାହିଲା ତାର ପିଣ୍ଡ
କେ ବୋଲେ ସେ ବଡ଼ଦଣ୍ଡ          ସୈନ୍ୟ କଲା ଖଣ୍ଡ ଖଣ୍ଡ
କଳବାରେ ଯୁଦ୍ଧ ଅତି ଚଣ୍ଡ ସେ, କାଳଦଣ୍ଡ
ସତେ ଅବା ଜାତ ମାରତଣ୍ଡ
ମଣ୍ଡନ କୃତ କୋଦଣ୍ଡ          ପ୍ରବଳ ତା ଭୁଜଦଣ୍ଡ
ନାଶିବ ସେ ସକଳ ବ୍ରହ୍ମାଣ୍ଡ ସେ          ||୧୬||

ଦେବନ୍ତ ବାଳା ସୁମନ୍ତ  ଯେସନେ ହରଣୀଚକ୍ର
ଦାବାନଳେ ହୋଇଣ ଚଞ୍ଚଳ
ଶୁଖିଲ ମୁଖ ଗହଳ  ଘୂରିଲା ଲୋଚନ ତଳ
ନିଦ୍ରା ଭେଳ ଉଠେ ଲଙ୍କାପାଳ ସେ, ମହାବଳ
ଦେଖିଲ ପ୍ରଖର ବାଳାମାଳ
ବୋଲଇ ସ୍ୱେ ଜପ ଗୋଳ  ପୁରତ ଦହେ ଅନଳ
ସମସ୍ତେ ହୋଇଛ ଆକୁଳ ସେ ॥୧୭॥

ସ୍ୱେତେ ବୋଲି ଲଙ୍କପତି  ପୁତ୍ର ବାହାରେ ଚଉକ
ଆତେ ଜଳେ ; ମାନ ଛନ୍ତି
ବସିଲ ଆସନେ ଯାଇ  ବୋଲଇ ସଚୀବ ସ୍ୱର୍ଣ୍ଣ
କମ୍ପା ପୁର ଦହେ ସ୍ୱଧାନ୍ତ ହେ, ମନ୍ତ୍ରୀବର
କମ୍ପାଇ ଶୁଖୁଛି ମୁଖଗୋଳ
ଶୁଖୁଛି ମୁଖ ଚହଳ  ଧନୁ ଟଙ୍କାର କାହାଳ
ରାମଙ୍କୁ ତ ନାଶିଲ ମୋ ବାଳ ସେ ॥୧୮॥

ଶୁଣିଣ ରାଜା ବଚନ  କହନ୍ତି ମନ୍ତ୍ରୀ ସତ୍ତମ
ଶ୍ରୀରାମ ପଶିଛି ପୁରେ ତୋର,
କପି କରିଛନ୍ତି ଗୋଳ  ଭାଜିଲେ ଦନୁଜ ବଳ
ଲଗାଇଲେ ପୁରରେ ଅନଳ ହେ, ଦୈତ୍ୟପାଳ
ଶ୍ରୀରାମ ଅଟଇ ମହାବଳ
ଆମ୍ଭେ କଲେ ଘୋର ରୋଳ  କେବେହେଁ ନୋହେ ନବଳ
ନାଶିଲାଟି ବାଳ ମହାବଳ ହେ ॥୧୯॥

ବୋଲଇ ସେ ଦଂଶପାଣି  ଶୁଣ ମନ୍ତ୍ରୀ ମୋର ବାଣୀ
ଅଷ୍ଟ ବର୍ଷେ ଶ୍ୟାମର କାହାଣୀ,
ଆଣି ମୁଁ ତାହାର ରାଣୀ  କାର୍ଯ୍ୟ ଲୁଚ୍ଛଇବ ଶୁଣି
ନକ ତା ନଅଇ ରଘୁମଣି ହେ, ମନ୍ତ୍ରୀବର
ପେଷ ବେଗେ ସେଠାକୁ ପତ୍ତର
ସହଜେ କର ପୁର  ରଖ ତୁ ତାହା ସଙ୍ଗର
ଯେମନ୍ତେ ନ ପାନ୍ତି କପିବୀର ହେ ॥୨୦॥

ଶୁଣି ନୃପଙ୍କ ବଚନ ଧାଇଁଲେ ସେ ଦୈତ୍ୟଗଣ
ସୀତାଙ୍କୁ କଲେ ସେ ରକ୍ଷଣ,
ଏଥୁ ଅନନ୍ତରେ ପୁଣ ବୋଲଇ ହାକ ରାବଣ
ମାର ଦୈତ୍ୟେ ଶ୍ରୀରାମ ଲକ୍ଷ୍ମଣ ସେ, ରାଜା ଆଜ୍ଞା
ଲଙ୍କ ଗଡ଼ରେ ହୋଇଲେ ବାହାର
କେ ବସି ରଥ ଉପର କେ ହସ୍ତୀ ଚଢ଼େ ସତ୍ୱର
ଅଶ୍ୱ ଚଢ଼ି କେ ଧାଇଁଲା ଖର ସେ ।।୨୧।।

ପାଇଲେ ରାମଙ୍କୁ ଭେଟ ସର୍ବେ ସମରେ ଉତ୍କଟ
କୋଟି କୋଟି ରାବଣ ଭଟ,
ଧାଇଁଲେ କୁମ୍ଭ ଉତ୍କଟ ଉତ୍କଟ ବକ୍ର ଉଦ୍ଭଟ
ବାଣେ ନରୋଧିଲେ ନଭତଟ ସେ, ଦୈତ୍ୟବୀରେ
ଧଣ୍ଡଚଣ୍ଡ କ୍ରୋଧ ସେ ମନରେ,
କେହୁ ଗଜ ତୁରଙ୍ଗରେ ଆରୋହଣ କରି ଖଡ଼େ
ମିଳିଲେ ସେ ଶ୍ରୀରାମ ସମ୍ମୁଖରେ ।।୨୨।।

ପ୍ରଚଣ୍ଡ ବକ୍ର ଦଂଷ୍ଟ୍ର ନିକୁମ୍ଭ ସର୍ବ ସୁରାସ୍ତ୍ର
ତପନ ଯେ ନଳ କାଳକେତୁ,
ସୁନ ଅଶ୍ୱନ ପ୍ରଭବ ବିରୂପାକ୍ଷ ଶୃଷ୍ଟୁଦର୍ଭ
ଶତମୂର୍ଦ୍ଧା ଦ୍ୱିମୂର୍ଦ୍ଧା ସୁକେତୁ ସେ, ଘୋରରଣ
କଲେ ଶ୍ରୀରାମଙ୍କୁ ଆବୋରଣ
ବାଣଘାତେ କର୍ମେ ଧରା ପଡ଼ଇ ଯେସନେ ଧାରା
ସମସ୍ତେ ସେ ରଣରେ ନିପୁଣ ସେ ।।୨୩।।

ରାମ ହ୍ୱିଁ ବର୍ଷିଲେ ଶର ଯେସନେକେ ଜଳଧାର
ଅବକ୍ଷଣେ କରେ ବରଷଣ,
ନ ବଞ୍ଚିଲେ ଖଗଗଣ ରଜନୀ ଅନ୍ତ ଦାରୁଣ
ଦାଶରଥି ଲଭିଲେ ନିଧନ ସେ, ଦେଖି କୁମ୍ଭ
ଆବୋରିଲା ଆସି ସୈନ୍ୟରମ୍ଭ,
ବାଣ ଯାନ୍ତେ କଲା କ୍ଷୀଣ ଦେଖି ଭରଶେ ରାମ ସୈନ୍ୟ
ଦେଖି ଭାବେ ସର୍ବ ତା ସମ୍ମୁଖ ଯେ ।।୨୪।।

ତେଇଁ ଯାଇ ରଥେ ବସି ଘେନଇ ଧନୁ ଆକର୍ଷି
ଧରି ତାକୁ ପାଡଇ ତଳରି
ଯାନ୍ତି ଗଡ଼ାଗଡ଼ି ବେନି ଭରେ କମ୍ପଇ ମେଦିନୀ
ଯେହ୍ନେ ବେନି ସିଂହରି ସମର ସେ, ସୁଗ୍ରୀବର
ଦୈତ୍ୟର ଧଇଲା ବେନିପାଦ
ବୁଲାଇ କରିଣ ନାଦ ଫିଙ୍ଗିଣ ଦେଲା ଅଗାଧ
ପଡ଼ି ସେହୁ ନ ଲଭିଲା ବାଧ ସେ ।।୨୫।।

ପବନହୁଁ ବେଗେ ଆସି ସୁଗ୍ରୀବର ଅଙ୍ଗେ ମିଶି
ମୋଥେକ ମାଇଲା ଅଙ୍ଗେ ପୁଣି
କ୍ରୋଧ କରି କପିମଣି ଧରି ଦନୁଜକୁ ପୁଣି
ମୁଣ୍ଡରେ ତାଡ଼ିଲା ମୂର୍ଦ୍ଧ୍ନା ସେ, ଶତେଖଣ୍ଡ
ହୋଇଣ ଫାଟିଲା ଦୈତ୍ୟମୁଣ୍ଡ
ଧରାରେ ପଡ଼ିଲା ପିଣ୍ଡ ଯେହ୍ନେ ନସନ୍ତୁ ମାରତଣ୍ଡ
ଦେଖି ଭାଗେ ରାବଣ ଉଦ୍ଦଣ୍ଡ ସେ ।।୨୬।।

ଦେଖିକରି ଅତିରୋଷ ନିକୁମ୍ଭ ଲଭିଣ ତ୍ରାସ
ପରିଘ ଘେନିଣ ବେଗେ ଆସେ
ବୁଲଇ ଆକାଶ ଦେଶେ ନ ରହିଲେ କେହି ପାଶେ
କରିଣ ଲଗିଲା ସେ ଦଶେ, ମାରତଣ୍ଡ
ସହିତେ ସେ ବୁଲିଲା ବ୍ରହ୍ମାଣ୍ଡ
ସେହୁ ଅସ୍ତ୍ର ପରଚଣ୍ଡ ଦଶେ ଯେହ୍ନେ କାଳଦଣ୍ଡ
ତେଜ ଗଞ୍ଜୁଛି ମାରତଣ୍ଡ ସେ ।।୨୭।।

ଦେଖିଲା ସୈନ୍ୟର ଘାତ ବେଗେ ଧାଇଁଲା ମାରୁତି
ଚନ୍ଦ୍ରଲୋକେ ପାତିଲା ହୃଦୟ,
କରିଅଛି ଅତି କୋପ କେହି ନାହିଁ ଆଗେ ରହି
ଏକାପାରେ ପବନ ତନୟ ସେ, ଦୈତ୍ୟବର
ହନୁକୁ ଦେଖିଲା ପୁରତର
ପରିଘ କଲା ପ୍ରହାର ବାଜି ପଡ଼େ ମହାବୀର
ଟେକି ତାକୁ ଛେଦିଲା ରଥର ।।୨୮।।

ଯେନ ଯାନ୍ତେ ଲଙ୍କପୁର          ଚେତ ପବନ କୁମର
ଦୁଇକଣ୍ଠେ ଦେଲା ପାଦଭର
ଦୋର୍ଦ୍ଦଣ୍ଡେ ଯାକଲା ମୁଣ୍ଡ          ହୋଇଲା ସେ ବେନଖଣ୍ଡ
ଆକାଶୁଁ ପଡ଼ନ୍ତେ ତାର ପିଣ୍ଡ ସେ, ସୁଗ୍ରୀବର
ଦେଖିକରି ପ୍ରହାରିଲା ଲାତ
ବାଜ ହେଲା ହୃଦେ ଘାତ          ହୋଇଲା ଅବନୀଗତ
ଦେଖି ରାମ ହୋଇଲେ ଉଷତ ହେ          ।।୨୯।।

ପଳାଇ ଗଲେ ସଇନ          କହିଲେ ଦଶମୂର୍ଦ୍ଧନୀ
ନିକୁମ୍ଭକୁ ମାରିଲା ପାବେନୀ,
କୁମ୍ଭ କରୁଥିଲା ରଣ          ତାହାକୁ ରଘୁ ନନ୍ଦନ
ନଖେ ଯେନ ପକାଇଲା ଛିନ୍ନ ସେ, ଦୈତ୍ୟଈଶ
ଶୁଣିକରି ଲଭିଲେ ସନ୍ତାସ
କରଣ ବିପୁଳ ମନୁ          ପେଷିଲ ସେ ଖର ସୂନୁ
ବୋଲେ କେଗେ କର ରାମ ନାଶ ସେ          ।।୩୦।।

ପାଇ ନୃପତି ଆଦେଶ          ଧାଇଁଲା ମୂଢ଼ ରାକ୍ଷସ
ଶରେ କପି ସୈନ୍ୟ ନାଶ କଲା
ରଣରେ ସେ ଅନର୍ଗଳା          ବାଣ ତା ରଖିଲା ମାଳା
ଦେଖି ଭୃଗେ ଚବନର ବଳା ସେ, ରଥବେଗ
ପବନେ ପ୍ରେରିତ ଘନ ସମ
ବରଷୁଛି ଶରଧାର          ଧ୍ୱନ ଅଶନି ରୁଚିର
ଧନୁ ଶନ୍ଦ ଧନୁ ଅନୁପ୍ରାସ ସେ          ।।୩୧।।

ପତାକା ବଳାକାଯନ୍ତ୍ର          ଆଭରଣ ବିଦ୍ୟୁତକାନ୍ତ
ଶରପୂରେ ଜଳ ଭୟ ନଦ,
ପ୍ଲବ ପ୍ଲବ କଲା ଭେଦ          ଥୋକାଏ ଆଣିଲ ଖେଦ
ପ୍ରବଳ ଯେସନ ମହାନଦୀ, ଦେଖି ବଳ
ବଗୁଣି ଦେଖି ଧାଇଁଲେ ରଘୁପତି
ଯେସନେ ପ୍ରଳୟ ତପନ          କରେ ସର୍ବ ଜନ ଲୀନ
ସେହିମତ କଲେକ ତଡ଼ିତ ସେ          ।।୩୨।।

ଯେଷି ତାରେ ଶତ ଶର    କାଟିଲେ ସୈନ୍ୟ ହିଁ ତାର
ହାତ୍ର ତାର କାଟିଲେ କାର୍ମୁକ
ଯେଷି ବ୍ରହ୍ମ ଅଗ୍ନିବାଣ    ତତ୍କ୍ଷଣେ କଲେ ଦହନ
ଦେଖି ତୋଷ ହେଲେ ସୁରଲୋକ ସେ, ନିଶାଶେଷ
........................ ............
ହୁଅନ୍ତେ ସେ ଅଂଶୁମାଳୀ    ଦେଖିଲେ ପୁର କାପାଳୀ
କହିଯେ କରନ୍ତୁ କଳକଳା ସେ    ||୩୪||

ବୋଲନ୍ତି ହେ ରଘୁବୀର    ନ କର ଆଉ ସମର
ଆଜ ମଲେ ଦୈତ୍ୟ ମହାବୀର
ବଳ ଅବରୋଧ କର    ଯିବା ସୁବଳ କୁଧର
ଏତେ ବୋଲି ହୋଇଲେ ବାହାର ସେ, ରଘୁମଣି
ତେଜ ଗଞ୍ଜୁଛନ୍ତି ଦିନମଣି
ଦୈତ୍ୟତମ କରି ହତ    ହୋଇଅଛନ୍ତି ଉଦିତ
ଜୟ ଜୟ କଲେ ସୁରମୁନି ସେ    ||୩୫||

ବଳ ନିବେଷଣ କରି    ରହିଲେ ସେ ରାବଣାରି
ଲଙ୍କାପୁରି କଲେ ହୁରକୁରି
ରାବଣ ହୃଦ ବିଦାରି    ଛେଲ ହୃଦେ ରଖିକରି
ରହିଛନ୍ତି ପୁରକୁ ଆବୋରି ସେ, ରଘୁନାଥ
କଟା କରନ୍ତି ବରଗେ ମାଥ
ଘେନିଣ ଲକ୍ଷ୍ମଣ ସାଥ    ମାରି ଦୈତ୍ୟ ମହାରଥ
ସୁଗ୍ରୀବରେ ନିବେଶିଲେ ହାଥ ସେ    ||୩୬||

ଛାନ୍ଦ ଏକତ୍ରିଂଶ    ନାମ ଶ୍ରୀରାମ ବିଳାସ
ଲଙ୍କା ଦହନ ନାମ ରହସ୍ୟ
ସେବି ନୀଳାଦ୍ରି ନିବାସ    ହୋଇଣ ଅତି ହରଷ
ଭଣେ ଧନଞ୍ଜୟ ନରହରି ହେ, ସାଧୁଜନେ
ଯେ ଗୀତ କରିବ ପ୍ରକାଶ
ପର ଗୁଣେ ତୁମ୍ଭେ ତୋଷ ଥିଲେ ଯେବେ ମୋର ଦୋଷ
କହି ରେଖେ କର ପରକାଶ    ||୩୭||

# ଛୟାଳିଶ ଛାନ୍ଦ

## ( ରାଗ—କଉଶିକ )

ଏଥୁ ଅନନ୍ତରେ ନଗ୍ର ବିଧ୍ୱଂସନେ ରାବଣ ପାଇଲା ବିରସ
ଅତି କ୍ରୋଧଭରେ ବୋଲଇ ବଚନ ଡାକିଣ ଇନ୍ଦ୍ରଜିତ ପାଶ ।
ତୁ ଯେ କହିଲୁ , ମାଇଲି ମୂର୍ଚ୍ଛି ରଘୁନାଥ,
ତୁ ଯେବେ ମାଇଲୁ ରଣରେ ସେ ଆସି କମ୍ପାଇ କଲା ଅନରଥ ॥୧॥

ବୋଲେ ଇନ୍ଦ୍ରଜିତ ଶୁଣିମା କ୍ଷେ ତାତ ଦେଖିଥିଲେ ଦୈତ୍ୟ ସନ୍ତତି,
ଯେବେ ଜାଇ ଆସି ରାମ ଯୁଦ୍ଧ କଲା ମଣିଷ ନୋହେ ମଣେ ମତି ।
ଦେବାସୁରହି, ନ ଜାଅନ୍ତି ସେହୁ ବାଣେଣ
ତିନ ବେଳ କରି ପେଷିଲେ ସେ ଶସ୍ତ୍ର କାଟିଲା କପି ଜଣେ ଜଣ ॥୨॥

ମାୟାବଳେ ଏବେ ଯୁଧିଯେ କରିଣ ରାମକୁ ଦେବା ଘଉଡ଼ାଇ,
ତାର ପ୍ରାଣପ୍ରିୟା ସ୍ୱରୂପେ ନାରୀୟେ ବଧ କରିବ ରଣେ ମୁହିଁ ।
ଯେତେ ବୋଲିଣ, ଓଳେଗ ମେଲିଇ ଅଇଲା,
ବିନୁ ଜୀବ ନାମେ ଯେ ଏକ ମାୟାବୀ ତାହାକୁ ରାଇ ଆଜ୍ଞା ଦେଲା ॥୩॥

ବୋଇଲା ସୀତୟା ସ୍ୱରୂପ ନାରୀୟେ ମାୟାରେ ତରୁଣିୟେ କରିଆଣ,
ରଣରେ ତାହାକୁ ମୋହ କରାଇବା ବାହୁଡ଼ିଯିବ ରଘୁରାଣ
ଯେତେ ବୋଲନ୍ତେ, ଆଣି ସେ କଲା ମାୟା ସୀତା,
ରଥ ଅଗ୍ରେ ତାକୁ ବସାଇ ସାନନ୍ଦେ ରଥେ ଚଳିଲା ଶକ୍ରଜିତା ॥୪॥

ମାୟା ଗୋଳ କରି କପିଙ୍କି ସଂଗ୍ରାମେ ନାଶ କଲା ସେହୁ ଅପାର,
ଦେଖି କୋପ କରି ଗିରି କରେ ଧରି ମିଳିଲା ଅଞ୍ଜନା କୁମର ।
ଦେଖି ତାହାକୁ, କହେ ରାବଣୀ କ୍ରୋଧେ ବାଣୀ,
ତୁମ୍ଭ ଆମ୍ଭ ବାଦ ସରୁ ଏହୁଠାରୁ ପକାଉଅଛୁ ସୀତା ହାଣି ॥୫॥

ଏତେ ବୋଲି ନାରୀ କେଶ କରେ ଧରି ମାଇଲା ଚଳ ଚନ୍ଦ୍ରହାସ,
ବେନି ଖଣ୍ଡ ହୋଇ ପଡ଼ନ୍ତେ ଅବଳା ଦେଖି ପାଇଲା ହନୁ ତ୍ରାସ ।
ବେଗେ ତୋଳିଣ, ପକାଇଲା ସେହୁ ପର୍ବତ,
ରଥ ସାରଥି ରଥ ଚୂର୍ଣ୍ଣ ହୋଇଲା ଦେଖି ଅନ୍ତର ଇନ୍ଦ୍ରଜିତ ॥୬॥

ମନେ ବିଚାରିଲା ସଂଗ୍ରାମରେ ଥିଲେ ଜୟେ ନୋହିବ କପିଙ୍କର,
ମାୟା ରଥ ଆଣି ସମର କରଣ ପେଷିବ ସଙ୍ଗ ଯମପୁର ।
ଯେତେ ଚନ୍ଦଣ, ନିକୁମ୍ଭିଳା ମୂଳେ ପ୍ରବେଶ,
ବଳ ରକ୍ଷଣ କରଣ ଇନ୍ଦ୍ରଜିତ ଅଗ୍ରରେ ଥାପିଲା ହୁତାଶ ॥୭॥

ହନୁ ଇନ୍ଦ୍ରଜିତ ସମର ଶୁଣିଣ ଆସନ୍ତେ ବେଗେ ଜାମ୍ବବନ୍ତ,
ବାଟେ କପିବୀର କହିଲା ଭୁରିତ ସୀତାଙ୍କୁ କଲା ଦୈତ୍ୟ ହତ
ସେହୁ ସେନାନୀ, ଅତି ବିରସ ମତି ହୋଇ,
କହନ୍ତି ଶ୍ରୀରାମ ଛାମୁରେ ଯାଇଣ ନାଶ ହେଲା ତୋ ପ୍ରାଣସହି ॥୮॥

ଶୁଣି ଖେଦମନ ହୋଇ ରଘୁପତି ପଡ଼ିଲେ ଢଳି ବସୁମତୀ
ଦେଖି ସଉମିତ୍ରୀ ଦେଖିଣ ତଡ଼ିତ ବସିଛି ସଧୀରେ କପିପତି ।
ସଂଜ୍ଞା ଲଭିଣ, କରନ୍ତି ଶ୍ରୀରାମ ରୋଦନ,
ଆରେ କେଣେ ଗଲୁ ଚନ୍ଦ୍ରମା ବଦନୀ ମୋତେ ଯେଥେ ଏକା କରିଣ ॥୯॥

ତୋତେ ଲଭିବା ପାଇଁ ଜୀବ ମୋର ଥିଲା ଏବେ ମୁଁ ହୋଇବି ନିଧନ,
ତୋ ଲୀଳା ଖେଳା ରମଣୀ ରତନରେ ପୁଣି କେମନେ ଯିବ ଦିନ,
ମୃଗଲୋଚନୀ, ଆଜି ସେ ଗଲା ମୋ ସମ୍ପତ୍ତି,
ଛାତି ହତ ସଖୀ ଶିରିରୁ କ୍ଷରିତ ଆଜ ମୁଁ ହେଲି କୁନ୍ଦଦନ୍ତୀ ॥୧୦॥

ଆରେ ପାରେନ୍ଦ୍ର ମଧା ତୋତେ ନ ଦେଖି ରହିବ ଚେ ସ୍ଥାନ ଜୀବନ,
ରାମ ସକାଶୁ କୁଳେ ହୋଇଲି ଛନ୍ନ ମାରି ନ ପାରିଲି ରାବଣ ।
ମିଥ୍ୟା ହୋଇଲା, ତୁମ୍ଭ ବାଣୀ ଶୁଣ ସୁଗ୍ରୀବର
ବିଭୀଷଣଙ୍କୁ ନ କଲି ଲଙ୍କନାଥ ତେଜିବି ମୁହିଁ ତ ଶରୀର ॥୧୧॥

ଏମନ୍ତ ପ୍ରକାରେ ଅନେକ କାରୁଣ୍ୟ କରନ୍ତେ ପ୍ରିୟା ଗୁଣ ଗୁଣି,
ଏହି ସମୟରେ ପ୍ରବେଶ ହୋଇଲେ ଚହଲ ଶୁଣି ଦୈତ୍ୟମଣି ।
ବୋଲନ୍ତି ବଚନ, ସବୁରି ମୁଖ ବିରସ,
ଶ୍ରୀରାମ କମ୍ପା କରୁଛନ୍ତି ରୋଦନ ମୋର ଆଗେ କହ ପ୍ରକାଶ ॥୧୨॥

ବୋଲନ୍ତି ଲକ୍ଷ୍ମଣ ଶୁଣ ବିଭୀଷଣ ତୁମ୍ଭେ ତ ନ ଥିଲ ରଣରେ,
ଇନ୍ଦ୍ରଜିତ ଆସି ଘୋର ଯୁଦ୍ଧ କଲା ପବନ ସୁତ ସଙ୍ଗତରେ ।
ସେହୁ ପିଶୁନ, ପିଶୁନ ମତି ପ୍ରକାଶିଲା,
ବିନା ଦୋଷେ ସେହୁ ଶ୍ରୀରାମ ରମଣୀ ସୀତାଙ୍କୁ ଆଣି ବଧ କଲା ॥୧୩॥

ତେଣୁ ଶ୍ରୀରାମ ହୋଇଛନ୍ତି ଆକୁଳ ଶୁଣ ତୁ ଏହା ଲଙ୍କପାଳ,
ସୀତା ହତ ହେଲ କହାଇ ରହିବା ତରଣ ଯିବା ସିନ୍ଧୁ ଜଳ ।
ଶୁଣି ବୋଲଇ, ରାବଣ ଅନୁଜ ବଚନ,
ସୀତାଙ୍କୁ ଛୁଇଁବାକୁ ନାକ ଭାଜନ ହୋଇବ ଇନ୍ଦ୍ରଜିତ ଜାଣ ||୧୪||

ପ୍ରାଣ ଥିଲେ ହେଁ ସୀତାଙ୍କୁ ଦଶଶିର କେବେ ନ କରଇ ବିରୋଧ,
ପବନ ପଶି ନ ପାରଇ ଯହିଁକି କରିଛି ସେହୁ ଅବରୋଧ ।
ମାୟା ଦେଖାଇ, ତୁମ୍ଭଙ୍କୁ ଭଣ୍ଡିଲା ରାବଣି
ମାୟାରେ ମାୟାଙ୍କ ସ୍ୱେକ ନାଶ ଆଣି ପକାଇ ଗଲା ରଣେ ହାଣି ||୧୫||

ଏବେ ଯାଇକରି ନିକୁମ୍ଭିଲା ବଟ ତଳରେ କରୁଅଛି ହୋମ,
ଅଗ୍ନିରୁ ଜାତ କରଣି ରଥ ଚଢ଼ିଲେ ରଣରେ ଜିଣିବ ସେ ଯମ,
ଶୁଣି ରାଘବ, ମୋ ତୁଲେ ଦିଅ ଲକ୍ଷ୍ମଣ,
ଯାଗ ବିଧ୍ୱଂସିଲେ ମରିବ ସେ ଜାଣ ନୋହିଲେ ବଧ ନୁହେ ପୁଣ ||୧୬||

ଶୁଣି ଆଶ୍ୱାସିତ ହୋଇଣ ତୁରିତ ଜାଣିଲେ ସ୍ୱେ ସବୁ କପଟ,
ବୋଲନ୍ତି ଶ୍ରୀରାମ ଶୁଣ ବିଭୀଷଣ ସ୍ୱେ କଥା ନଷ୍ଟ ଦୈତ୍ୟକୂଟ ।
ଶୁଣ ସେମନ୍ତେ, ନାଶ ହୋଇବ ଇନ୍ଦ୍ରଜିତ,
ସମସ୍ତ ବୁଦ୍ଧିମାନ ତୁମ୍ଭେ ଜାଣ ତ ସେ ରୂପେ ବଗୁର ତୁରିତ ||୧୭||

ଶୁଣି ରାମବାଣୀ ସେହୁ ଦୈତ୍ୟମଣି ହନୁ ଜମ୍ବୁବ ସଙ୍ଗେ ଘେନି,
ଅପ୍ରମିତ ବଳ ଶୁଭେ ମୁଖରୋଳ ବାହାର ହୋଇଲେ ସେନାଣି
ରାମ ଚରଣେ, ପ୍ରଣାମ କରି ସଉମିତ୍ରୀ,
କରେ ଧନୁବାଣ କନ୍ଧେ ଭିଡ଼ ତୋଣ କୃପାଣ ଖଞ୍ଜିଲେ ତଡ଼ିତ ||୧୮||

ଅଙ୍ଗେ କବଚ ଶିରେ ଶୋଭେ କିରୀଟି ସଙ୍ଗତେ ଶୋଭେ ବୀର କୋଟି,
ଆସନ୍ତେ ବଳ ନ ଦିଶଇ ତଟି କେହୁ ଗଗନେ ଧାମେ ହୋଟି ।
ସେହୁ ଠାବରେ, ପ୍ରତିଜ୍ଞା କରଣ ଲକ୍ଷ୍ମଣ,
ଆଜ ମୋ ବାଣ କୋଟିରେ ଦୈତ୍ୟକୋଟି ଯିବେ ସଞ୍ଜୀବନୀ ଭୁବନ ||୧୯||

ସୁର ବ୍ରହ୍ମା ଇନ୍ଦ୍ର ହେଲେ ଆହବନ୍ଦ ରଖି ନ ପାରନ୍ତି ରାବଣି,
ଶୁଣ ରଘୁମଣି ସ୍ୱେ ମୋହର ବାଣୀ ଜିଣି ଆସିବି ଏହିକ୍ଷଣି ।
ସ୍ୱେତେ ବୋଲିଣ, ବାହାର ହେଲେ ବୀରବର,
କେତେଦୂରେ ଯାଇଁ ଦେଖିଲେ ବ୍ୟୂହ ସେ ରଚିଛି ରାବଣ କୁମର ||୨୦||

ବୋଲେ ବିଶ୍ରବା ନନ୍ଦନ ଶୁଣ ଦେବ ଧାନ ସେ କରୁଅଛୁ ଭବ,
ସେ ସୈନ୍ୟ ଶରେ ଭେଦିବ ସଞ୍ଜମିନୀ ତେବେ ରାବଣୀ ହତ ହେବ ।
ଶୁଣି ଲକ୍ଷ୍ମଣ, ପେଷିଲେ ରୋଷେ ଶର କୋଟି,
ଅବନୀ ଆକାଶ ଅଦୃଶ୍ୟ ହୋଇଲା, ବାଜ ପଡ଼ିଲେ ଦୈତ୍ୟ କୋଟି ॥୨୧॥

ଘୋର କରଣ ପକାନ୍ତ ଋକ୍ଷ କପି ଶାଳ ଶୀଳ ତାଳ ସଞ୍ଚୟ,
ବାଜନ୍ତେ ବୃକ୍ଷ ଯୁଦ୍ଧ ହୁଅନ୍ତେ ରାକ୍ଷସ ମଣ୍ଡଳ ଲଭିଲେ ଭୟ ।
ଦେଖିନ ମନ୍ତ୍ରୀ, ବାହାର ହେଲା ଶକ୍ରଜିତ,
ବଜ୍ର ସୁବର୍ଣ୍ଣେ ହୋଇଅଛି ଘଟିତ ସାରଥି କଲା ଆଣି ରଥ ॥୨୨॥

ତହିଁ ବିଜେ କଲା ରାବଣ ନନ୍ଦନ କରେ ଧରିଣ ଧନୁବାଣ,
କ୍ଷୁଧାର୍ତ୍ତ ହୋଇ ଯେମନ୍ତେ କଣ୍ଠୀରବ ଖୋଜେ ମୃଗ କାନନ,
ବାଣ ଜ୍ୱାଳାରେ, ଅଦୃଶ୍ୟ ହେଲା ନଭସ୍ଥଳ,
ଦେଖି ପର୍ବତ ଘେନିଣ ଓଗାଳିଲା କେଶରୀ ସୁତ ମହାବଳ ॥୨୩॥

ପଥର ବରଷଣେ କାର ଭାଜିଲା ସାରଥୀ ରଥ ଧ୍ୱଜ ଯାନ,
ଅନ୍ୟ ହାତ ହୋଇ ଯାଆନ୍ତେ ଲକ୍ଷ୍ମଣ କର୍ଣ୍ଣେ କହିଲା ବିଭୀଷଣ,
ଏହୁ ମାୟାବୀ, ଯୁଝ ଏହାକୁ ଆରୋହଣ,
ଏହି ଅବସରେ ସେ ବଧ ହୋଇବ ଲଙ୍କା ନ ଦିଅ ଯାଇ ପୁଣ ॥୨୪॥

ବିଭୀଷଣ ବାଣୀ ଶୁଣି ରଘୁମଣି ଓଗାଳ ତାକୁ ଯୁଦ୍ଧ କଲେ,
ବିଭୀଷଣ ମୁଖ ଚାହିଁ ଇନ୍ଦ୍ରଜିତ ବୋଇଲା ତାକୁ କ୍ରୋଧଭରେ
ସୁତ ବଧ କରୁଛୁ, ............
କୁଳ ଜାତି ଯାଇ ଶତ୍ରୁକୁ ଭଜିଲୁ ତେଣୁ ଅଟୁ ତୁହି ପାମର ॥୨୫॥

ବୋଲେ ବିଭୀଷଣ ଶୁଣରେ ନନ୍ଦନ ତୋର ପିତା କଲା ଅନୀତ,
ରାମ ବାଣରେ ସର୍ବେ ଯିବ ନାଶ ନୋହିଲେ ଦିଅ ତା ସ୍ୱବଶ,
ଶୁଣି କ୍ରୋଧରେ, ବନ୍ଧେ ଇନ୍ଦ୍ରଜିତ ନାରାଜ,
ଦେଖି ଆଗ ହରି ଶ୍ରୀରାମ ଅନୁଜ କାଟିଲେ ତାର ମହାଭୁଜ ॥୨୬॥

ଅସ୍ତ୍ରକୁ ଅସ୍ତ୍ର ପ୍ରତି ଅସ୍ତ୍ର କରିଲେ ବେଳୁବେଳ ବଢେ ସଂଗ୍ରାମ,
ବହିଲା ରକତ ପାରାବାର ତହିଁ ଯୋଦ୍ଧାମୁଖ ପଦ୍ମ ସୁଷମ,
ଫେନ ପ୍ରାୟେକ, ଭାସନ୍ତି ଉଷ୍ଣୀଷ ସନକର,
ଚର୍ମ ଆଢେଣୀ କଚ୍ଛପରେ କୁମ୍ଭୀର ଗଜ ହୟ ମକରେ ଭୟଙ୍କର ॥୨୭॥

ଗଣ ବାହୁଗଣ ଶ୍ରେଣୀର ସମାନ ଶସ୍ତ୍ରେ ମୀନ ପ୍ରାୟେ<br>
ରଥ ଘୋଟଗଣ କରଇ ଭ୍ରମଣ କେଶ ଶୈବାଳ ଶୋଭା ପ୍ରାୟେ<br>
ଉଡ଼ୁଅଛନ୍ତି, ଅନିମିଷେ ବୀର ଯୂଥଗଣ,<br>
କବନ୍ଧମାନେ କରେ ଧରି ଗୁରୁଜ ପ୍ରେ କଥା କେ କରେ ରଣ ||୨୮||

ଲକ୍ଷ୍ମଣ ଇନ୍ଦ୍ରଜିତ ଘୋର ସମରେ ହେବା ରଜନୀ ନୋହେ ବାଢ଼,<br>
ଜ୍ୟୋତିରିଙ୍ଗଣ ପ୍ରାୟେ ଗଗନେ ଶୋଭିତ ଗଗନ ମଣ୍ଡଳ ଧାଡ଼ ଧାଡ଼,<br>
ପ୍ରେକ ଆରେକେ, ବାଜ ଉଡ଼ୁଛନ୍ତି ଅନଳ,<br>
କିରଣ ସବୁ ହେଗନ୍ତେ ପ୍ରକାଶିଲା ଆକାଶୁ ଗଲେ ସୁରପାଳ ||୨୯||

ଏହି ସମୟରେ ଜନକାଣ୍ଡ ବାଛି ବନ୍ଧିଲ ଲଙ୍କପତି ସୁତ,<br>
ଲକ୍ଷ୍ମଣ କପୋଳେ ବାନ୍ଧଣ ଭୂଶତ ମୁଖଗଣେ ହେଶେ ଶୋଭିତ ।<br>
କ୍ରୋଧ ଲକ୍ଷ୍ମଣ, ଇନ୍ଦ୍ର ବେଲ ଶର ବସାଇ,<br>
ରାମଙ୍କୁ ସୁମରି ଶିରଚ୍ଛେଦ ବୋଲି କୋପେ ପେଷିଲ ରାମଭାଇ ||୩୦||

ଆଜ୍ଞା ପାଇ ଶର ବର ବେଗେ ଆସି ଇନ୍ଦ୍ରଜିତ କଣ୍ଠେ ପଡ଼ିଲା<br>
ସକୁଣ୍ଡଳ କରି ରାବଣ ସୁତର ମୁଣ୍ଡ ଅବନୀ ଲୋଟାଇଲା ।<br>
ଜୟ ଶବଦ, କରି ବାହୁଡ଼େ କପିବଳ,<br>
ଲକ୍ଷ୍ମଣ ଶିରେ ସୁଗନ୍ଧ ଦ୍ରବ୍ୟ ପୁଷ୍ପ ବୃଷ୍ଟି କଲେ ଆଖଣ୍ଡଳ ||୩୧||

ମେଘନାଦ ମେଘ ନାଦ ସମ ନାଦ କରି ପଡ଼ିଲା ଯେତେବେଳେ,<br>
ନ ରହି ଦନୁଜ ମାନେ ଛିନ୍ନଭିନ୍ନ ହୋଇ ପଶିଲେ ହେଗକୁଳେ,<br>
ଦୂତ କହିଲ, ରାବଣ ଛାମୁରେ ଯାଇଣ,<br>
ଶକ୍ରଜିତ ରଣେ ଜିଣି ତାଙ୍କୁ ଲକ୍ଷ୍ମଣ ପ୍ରାଣେ ହେନିଗଲ ବାଣେଣ ||୩୨||

ଶୁଣି ଦଶମୂର୍ଦ୍ଧା ମୋହେ ହେଲ ମୂର୍ଚ୍ଛା ମନେ ରାମଙ୍କୁ ଭୟ କଲ,<br>
ପୁଣି ବ୍ରହ୍ମବର ଚିହ୍ନଣ ସେ ବୀର ମାରିତ ରାମଙ୍କୁ ବୋଇଲ ।<br>
ସୈନ୍ୟ ହେନଣ, ହେଲ ପୁରୁବରୁ ବାହାର,<br>
ହାଥି ରଥୀ ତାରି କଳଣା ନ ଯାଏ ଆସି ପଶେ ରଣ ଭୂଇଁର ||୩୩||

ଏହି ରଘୁନାଥ ବିଳାସ ସୁରସ ଛାନ୍ଦ ପ୍ରେ ଜାଣ ବୟାଳିଶ,<br>
ଇନ୍ଦ୍ରଜିତ ବଧ ନାମ ଯେହୁ ଶେଷ ଶୁଣି ଜନେ ହୁଅ ସନ୍ତୋଷ,<br>
ସେହି ଶ୍ରୀରାମ, ଚରଣେ ମନ ଧ୍ୟାନ<br>
ନୃପତି ଧନଞ୍ଜୟ ଭଞ୍ଜ ଭଣିଲେ ପ୍ରତିପଦରେ ଯେହୁ ରଞ୍ଜନ ||୩୪||

●

# ତେୟାଳିଶ ଛାନ୍ଦ

## ( ରାଗ—ଚଳପଣ )

ଏଥୁ ଅନନ୍ତରେ ରାବଣ ସୁତ,　　ଋକ୍ଷ କପି ସୈନ୍ୟ କରଇ ହତ,
ଦେଖି ଧାଇଁଲେ ପବନ ନନ୍ଦନ,　　ବୋଇଲା ଆସିଣ ହୋ,
ମୋ ସଙ୍ଗେ ଯୁଦ୍ଧ ବହନ ସେ　　॥୧॥

ଦେଖି ଧାଇଁଲେ ମତ୍ତ ହନୁମନ୍ତ,　　ସୁଗ୍ରୀ ସଙ୍ଗେ ରଣ କଲା ଭୁରତ,
ବାଣ ଜ୍ୱାଳାରେ ଦୂରାଇଲା ମନ୍ତ୍ରୀ,　　ବୋଇଲା କେ ଅବା,
ଏ ଶର ଜାଳା ପାରୁ ସହ୍ୱ ସେ　　॥୨॥

ଶାଳ ଶିଳ ସୁଗ୍ରୀ କଲା ବରଷା,　　ଭାଙ୍ଗିଲେ ବନ ନ ପାଇ ପିଠିରକ୍ଷା,
ଦେଖି କପିବର ପରଚଣ୍ଡ,　　ବୋଇଲା ଦେଖନ୍ତୁ ହୋ,
ହସ୍ତେ ବୃକ୍ଷ କାଳ ଦଣ୍ଡ ସେ　　॥୩॥

ମତ୍ତ ରଥରେ ବସିଣ ଡେଇଁଣ,　　ଗୋଡ଼େ ନେଲା ସାରଥିର ପ୍ରାଣ,
ଶିଳ ଘାତେ ଅଶ୍ୱ କଲା ଗୁଣ୍ଡା,　　ବୋଇଲା ବେଗେଣ ହୋ,
ମାଇଲା ସେ କପି ଷଣ୍ଢ ସେ　　॥୪॥

ନ ସହ୍ୱ ମତ୍ତ ହକ୍କିଲା ନାଗଜ,　　ସେ ଶର ସହ୍ୱଣ ସୂର୍ଯ୍ୟତନୁଜ,
ମତ୍ତକୁ କ୍ରୋଧରେ ମାଇଲା ମୁଥ,　　ବୋଇଲା ପ୍ରାଣକୁ ସେ,
ହାରି ପଡ଼ିଲା ଭୂରତ ସେ　　॥୫॥

ଦେଖି ନ ସହ୍ୱ ଧାଇଁଲା ହନୁମନ୍ତ,　　ସୁଗ୍ରୀକ ବନ୍ଧେ ବେଗେ ବଳବନ୍ତ,
ଦେଖି ବାଳିର ପୁତ୍ର ନ ସହିଲା,　　ବୋଇଲା ବେଗେଣ ସେ,
ତା ଶିରେ ଶିଳ ମାଇଲା ସେ　　॥୬॥

ପ୍ରାଣ ହାରେଣ ପଡ଼ିଲା ହନୁମନ୍ତ　　ଦେଖି କୋପିଲା ମନ୍ଦୋଦରୀ କାନ୍ତ
ବରୂପାକ୍ଷକୁ ଦେଲା ପଠିଆଇ　　ବୋଇଲା ଦେଖସି ହୋ
ମଲେକ ତୋ ବେନ ଭାଇ ସେ　　॥୭॥

କମ୍ପାଇଁ ରହିଅଛୁ ତୂନି ହୋଇ　　ମାର କଟିକ ମାଣ୍ଡୁଳ ଭୁଜ ଯାଇ
ଶୁଣି ରାଜାବାଣୀ ଅଇଲା ଝରେ　　ବୋଇଲା ବେଗେଣ ସେ,
ମିଳିଲା ସୂର୍ଯ୍ୟ କୁମରେ ସେ　　॥୮॥

ଦେଖି ସୁଗ୍ରୀବର ସକ୍ରୋଧ ହୋଇ, ପର୍ବତ ଯେନ ମାଇଲା ବୁଲାଇ
ରଥ ସାରଥି ହୋଇଲେକ ଧୂଳି, ବୋଇଲା ଦେଖିଣ ଯେ,
କପି ହେଲେ ହୁଳହୁଳ ||୯||

ତାହା ନ ସହି ସେ ବିରୂପାକ୍ଷ ସୁଗ୍ରୀବରକୁ ମାଇଲା ଅଲକ୍ଷ
ଅସି ଚର୍ମ ଯେନ ଧାଇଁଲା ଖରେ ବୋଇଲା ସୁଗ୍ରୀବ ହୋ,
ଆସ ତୁ ଆଗେ ସମରେ ଯେ ||୧୦||

ପରଘ ଖଣ୍ଡା ଯେନ କଣ୍ଟିହାପଟ୍ଟ, ଶୁଣିଣ ଶୀଘ୍ରେ କଲା ସିଂହଗର୍ଜ,
ସମ୍ପାତି ବୋଲିଣ ବେଗେ ହାଣିଲା, ବୋଇଲା ଦେଖିଣ ହେ,
ବିରୂପାକ୍ଷ ତାହା ଆଡ଼ିଲା ଯେ ||୧୧||

ଦୁହେଁ ଦୁହିଁଙ୍କି ପ୍ରହାରିଲେ ଖଣ୍ଡା ଆଗେ ବାଜ ଦୁହେଁ ହୋଇଲେ ଗୁଣ୍ଡା
ଦେଖିଣ ସେ ଧରାଧର ହୋଇଲେ ହୋଇଲାକ ଯୁଦ୍ଧ ଯେ,
ବେଳେ ଫେରମ୍ଭ ଆରମ୍ଭିଲେ ସେ ||୧୨||

ମୁଣ୍ଡ କୋଡ଼ାକୋଡ଼ି ହୁଅନ୍ତି ବେନି, ଲୋଟୁଅଛନ୍ତି ସମରେ ମୂର୍ଚ୍ଛା
ତାହା ନ ସହିଲା ସେ କପିମଣି, ବୋଇଲା ଉଠିଣ ଯେ,
ବଜ୍ରପୋଡ଼େ ମାଇଲା ପୁଣି ଯେ ||୧୩||

ଗ୍ରୀବା ଭଙ୍ଗିଗଲା ହୋଇଲା ହତ ପୃଥ୍ୱୀରେ ପଡ଼ିଲା ସେ ବଳବନ୍ତ
ଦେଖିଣ ତାହା ମନ୍ଦୋଦରୀ କାନ୍ତ ବୋଇଲା ସମରେ ହୋ
ହେଲେ ଚଡ଼ିତ ଶବଦ ଯେ ||୧୪||

ମୁଁ ଏବେ ରାମ ଲକ୍ଷ୍ମଣ ମାରିବି, ତେବେ ସୀତାସ୍ତ୍ରୀଙ୍କୁ ସିନା ଲଭିବି
ଯେତେ ବୋଲି ରଥ ବାହିଲା ଖରେ, ବୋଇଲା ମିଳିଲା ସେ
ବେଗେ ଶ୍ରୀରାମ ଛାମୁରେ ଯେ ||୧୫||

ଘୋର ଯୁଦ୍ଧ କଲେ ଶ୍ରୀରାମ ଲକ୍ଷ୍ମଣ ହାତୁ ତାର କାଟିଲେ ଧନୁର୍ବାଣ
ବାନର ବୀରେ ବେଢ଼ିଲେ ଚଉପାଶ ବୋଇଲା ବେଗେଣ ସେ,
ଅଶ୍ୱକୁ କଲେ ବିନାଶ ସେ ||୧୬||

ଲକ୍ଷ୍ମଣ ଛେଦିଲା ସାରଥିର ଶିର, ବାଣେ ଛେଦିଲେ ରଥ ରଘୁବୀର
ବଜ୍ରତେଣ ବଚ୍ଛେ ମର୍ମରେ ଶର, ବୋଇଲା ଦେଖିଣ ସେ,
ଆତଙ୍କେ ଦଶଶିର ଯେ ||୧୭||

ମନେ ପୁଣ ଯେତ୍ତୁ କଲା ବିଚାର ଯେ ବିଭୀଷେଣ ଅଟଇ ପାମର
କହିଲା ଯେତ୍ତୁ ଛେଦ ଭେଦ ମୋର ବୋଇଲା ତେଣୁସି ହୋ,
ରାମ ଧ୍ୱଂସିଲା ମୋର ପୁର ଯେ ।।୧୮।।

ଶକତି ମାରି ନେବି ଏହା ପ୍ରାଣ ଯେ ମଲେ ହେବ ସକଳ କାରଣ
ଯେତେ ବୋଲିଣ ଧଇଲା ଶକତି, ବୋଇଲା ଦଶଇ ହେ,
ପ୍ରବଳ ଅନଳ ଜ୍ୟୋତି ଯେ ।।୧୯।।

ଧରି ବୁଲନ୍ତେ କମ୍ପିଲା ବ୍ରହ୍ମାଣ୍ଡ ରାବଣ କୋପେ ହଲାଇଲା ମୁଣ୍ଡ
ଶକତି ତେଜେ ଗଞ୍ଜେ ମାରତଣ୍ଡ, ବୋଇଲା ଦେଖିଣ ସେ,
ଭାଙ୍ଗିଲେ ଶ୍ରୀରାମ ଦଣ୍ଡ ଯେ ।।୨୦।।

ଲକ୍ଷ୍ମଣ ଦେଖିଲେ ଶକତି ବର ତେଜେ ଗଞ୍ଜୁଅଛି ଅମରପୁର
ବିଭୀଷଣରେ ହୋଇ ଦଇତର ବୋଇଲା ରାବଣ ସେ
ମୁଖେ ହେଲେ ଧାଡିକାରି ଯେ ।।୨୧।।

ବୋଲେ ଲଙ୍କପତି ଶୁଣ ସୌମିତ୍ରୀ, ତୁ ନୋହୁ ଯେଥେ ଆଦରିଣ ଛତ୍ରୀ
ବାଳୁତ ଅଟୁ ବିଚଳିତ ମତି, ବୋଇଲା କେମନ୍ତେ ହୋ,
ତୋତେ ପେଷିବି ଯେ ଶକ୍ତି ଯେ ।।୨୨।।

ବିଭୀଷେଣ ଅଟେ ଦୁରାଚାର ଯେ ଶକ୍ତି ନେଉ ତା ପ୍ରାଣ ସତ୍ୱର
ତୁ ଆଗୁ ଆଡ଼ ହୁଅ ରଘୁବୀର ବୋଇଲା କାଳର ଯେ,
ପ୍ରାଣ ହରିବ ସରବର ଯେ ।।୨୩।।

ବୋଇଲେ ଲକ୍ଷ୍ମଣ ଶୁଣ ଲଙ୍କପତି, ମାରରେ ଶକ୍ତି ଦୁର୍ମତି ତଡ଼ିତ
ତୋତ୍ରେ ମୁଁ ଆଜ କାଟିବି ବିକୋତି, ବୋଇଲା ଯେମନ୍ତ ସେ,
ଶର ପେଷେ ରଘୁପତି ସେ ।।୨୪।।

ଲକ୍ଷ୍ମଣ ଶରେ ହେଲା ଖଣ୍ଡ ଖଣ୍ଡ, କ୍ରୋଧେ ରାବଣ ହୋଇ ପରଚଣ୍ଡ
ଧରିଲା ଶକ୍ତି ଯେସନେ କାଳଦଣ୍ଡ, ବୋଇଲା ପେଷନ୍ତେ ସେ
ଭେଦିଲା ଲକ୍ଷ୍ମଣ ପିଣ୍ଡ ସେ ।।୨୫।।

ରଣ ଜୟ କରି ବାହୁଡ଼ି ଗଲା ମନେ ବିଚାରିଲା ଲକ୍ଷ୍ମଣ ମଲା
ବ୍ରହ୍ମା ଦେଇଅଛି ଯେବଣ ବର ବୋଇଲା ଯାଗରୁ ଯେ,
ରଥ କାଡ଼ିବି ସତ୍ୱର ଯେ ।।୨୬।।

ଏତେ ବୋଲ ବୀର ବସିଲ୍ ଯାଇ ହୋମ କଲକ ମନ୍ଦୋଦରୀ ସାଇଁ
ଏମନ୍ତେ ରଣେ ଭଗନ୍ତେ ରାବଣ ବୋଇଲ୍ ଦେଖିଣ ସେ
ବେଗେ ରଘୁକୁଳରାଣ ଯେ ||୨୭||

ମୋହେ ଅଚେତନ ଦେଖେ ସୌମିତ୍ରୀ ଶକତ ବାଜ ଫୁଟିଛୁ ଧରିତ୍ରୀ
ବୋଲନ୍ତ ରାମ ଶୁଣ ବୀରଗଣ ବୋଇଲା ଶକତ ପ୍ରେ
ବାହାର କର ବହନ ପ୍ରେ ||୨୮||

ଧଇଲେ ଯାଇ କପିବୀରମାନେ ଅଗ ତାର ଲଗିଅଛୁ ଗଗନେ
ଧରି ଝିଙ୍କନ୍ତେ କମ୍ପେ ବସୁନ୍ଧରା ବୋଇଲା ଦେଖିଣ ହେ,
ଶ୍ରୀରାମ ହେଲେ ଅଧୀର ପ୍ରେ ||୨୯||

ବାମ କରେ ଧରି ରଘୁନନ୍ଦନ ବେଗେ ଶକତ କଲେ ଉତ୍ପାଟନ
ମଧ୍ୟାହ୍ନେ ମାରତଣ୍ଡ ସମ ତେଜ ବୋଇଲ୍ ଧରିଣ ଯେ,
ଗର୍ଜିଲେ ସେ ରଘୁରାଜ ଯେ ||୩୦||

ବୋଲନ୍ତ କେସନେ ଜୀଇବ ଭାଇ ମୋତେ ଉପାୟ ତ ଦିଶଇ ନାହିଁ,
ଅଇଲୁ ଅଯୋଧ୍ୟାରୁ ତିନିଜଣ ବୋଇଲ୍ ସୀତପ୍ରା ଯେ,
ହରିଣ ନେଲା ରାବଣ ଯେ ||୩୧||

ସାହା ହୋଇକରି ଥିଲ ସୌମିତ୍ରୀ ତାକୁ ପ୍ରେବେ ନାଶିଲ୍ ଦୁର୍ମତି
କଲି ମୂର୍ଖ ତାରେ ସମର ବୋଇଲ୍ ମୋର ଯେ,
ତେଜିବ ଜୀବନ ମୋର ପ୍ରେ ||୩୨||

ବୋଲନ୍ତ ଶୁଣ ତୁମ୍ଭେ ସୁଗ୍ରୀବର ତୁମ୍ଭେ ସହଜେ ଯିବ ତୁମ୍ଭ ପୁର
ପ୍ରେ କଥା ହେଉଅଛୁ ମୋର ହସ୍ତର ବୋଇଲ୍ କେଶିକ ଯେ,
ଯିବ ବିଭୀଷଣ ବୀର ଯେ ||୩୩||

ଏମନ୍ତେ ବୋଲି କରନ୍ତେ ରୋଦନ କର ଯୋଡ଼ିଣ କହଇ ସୁଷେଣ
ନ କର ରୋଦନ ହେ ରଘୁରାଣ, ବୋଇଲା ନିଷ୍ଠପ୍ରେ ପ୍ରେ,
ଜୀବ ପାଇବ ଲକ୍ଷ୍ମଣ ଯେ ||୩୪||

ହନୁମାନ ଯାଉ ଗନ୍ଧମାର୍ଦନ ତହୁଁ ସେ ଆଣୁ ମହୌଷଧିମାନ
ନାସେ ଦିଅନ୍ତେ ବଞ୍ଚିବ ଲକ୍ଷ୍ମଣ ବୋଇଲା ଏ ରାତି
ଗଲେ ଆସିବ ରାବଣ ଯେ ||୩୫||

ରାମ ସନମତ ଜାଣି ମାରୁତି  କଲା ସେତୁ ନରେଶ ସମୀର ଗତି
ଜାଣି ଏହା ରାବଣ ଦୁର୍ମତି  ବୋଇଲା ବେଗେଣ ସେ
ମାୟାବୀ ପେଷିଲା ପାତି ସେ ||୩୬||

ଯାନ୍ତେଣ ଭରଥଙ୍କୁ ଦେଖି ପାବେନୀ  ରାମ ବୋଲି ପାଦେ କରେ ଦପ୍ତିମା
ଆକାଶେ କରିଗଲା ଘୋର ଧ୍ୱନି  ବୋଇଲେ ସକଳ ସେ,
ବାରତା କହୁଛୁ ପୁଣି ଯେ ||୩୭||

ବାଟେ ମାଇଲା କାଳନେମି ବୀର  ପ୍ରବେଶ ଯାଇ ହେଲା ଗିରିଜର
ସେଠାରେ ଗନ୍ଧର୍ବ ବାଳ ନାଶିଲା  ବୋଇଲା ସେ ବେଗେ,
ଗିରି ଶୃଙ୍ଗ ଆଣିଲା ଯେ ||୩୮||

ଦେଖି ଚିହ୍ନିଲେ ସୁଷେଣ  ଆଣିଣ ନାସ ଦେଲା ତତକ୍ଷଣ
ଲକ୍ଷ୍ମଣ ଜଗି ଉଠିଲେ ତତ୍କ୍ଷଣ  ବୋଇଲା ଦେଖିଣ ସେ,
ଆନନ୍ଦ ରଘୁବରେ ଯେ ||୩୯||

ରାମ ଆଜ୍ଞା ପୁଣି ଶିରେ ଘେନିଲା  ନିଜ ଆସନେ ଗିରି ଥୋଇ ଆସିଲା
ଆସନ୍ତେ ଜାଲ ଜଙ୍ଗକୁ ମାଇଲା  ବୋଇଲା ରାମର ସେ,
ପାଦେ ଦରଶନ କଲା ସେ ||୪୦||

ଯେମନ୍ତେ ଚରଗଣେ ବାରତା ପାଇଣ  କର ଯୋଡ଼ିଣ କହେ ବିଭୀଷଣ
ରାବଣ ତରୁ କରୁଅଛି ବନ୍ଦନ  ବୋଇଲା ବେଗେଣ ଯେ,
କପି କର ଭୂ ଧ୍ୱଂସନ ଯେ ||୪୧||

ଶୁଣିଣ ଶ୍ରୀରାମ ନେଲେ ସୀଉକାର  ପେଷିଲେ ତହିଁ ଚର ଦଶ ବୀର
ହନୁ ଅଙ୍ଗଦ ନୀଳ ଜାମ୍ବବନ୍ତ  ବୋଇଲା ସେ ଶଉରି
ଶତବାଳୀ ରେମାକାନ୍ତ ଯେ ||୪୨||

ମାହେନ୍ଦ୍ର ଦ୍ବିବିଦ ନଳକୁ ଘେନି  ଡେଇଁଲେ ବୀରେ କରି ଘୋର ଧ୍ୱନି
ଲଙ୍କାଗଡ଼ରେ ପ୍ରବେଶ ହୋଇଲେ  ବୋଇଲା ରାବଣ ସେ,
ବ୍ୟୂହ କରିଛି ଦେଖିଲେ ସେ ||୪୩||

ପ୍ରବଳ କାଳର ସମାନ ବଳ  ତହିଁ ପଶିଲେ କପି ମହାବଳ
ଧରି କରରେ ପ୍ରହାରିଲେ ଶିଳ  ବୋଇଲା ଚଢ଼ଇ ଯେ,
ତରୁବର ସମାନ କୁଳ ଯେ ||୪୪||

ଘଜ ସବଳ ଡଳ ପକାଇଲେ ରକତ ନଦୀମାନ ବୁହାଇଲେ
କଷ୍ଟେ କଷ୍ଟେ ତାହା ହୋଇଣ ପାର ବୋଇଲ ଦେଖିଲେ ସେ,
ବସି ଅଛଇ ଦଶଶିର ଯେ ।।୪୫।।

ଦଶ ଶିରରେ ସେ ଢଣେ ଶୋଭିତ ବପୁଳ ଶୃଙ୍ଗେ ଯେହ୍ନେ ହିମବନ୍ତ
ହସ୍ତ ତାହାର ପାଦପ ଶୋଭିତ ବୋଇଲ ଶିରରେ ସେ
କିଷ୍ଟୀଷ ସେ ରୂପେ କାନ୍ତ ଯେ ।।୪୬।।

ଗଙ୍ଗା ସମାନ ଢଣେ ମୋତିମାଳ କଳପ ପ୍ରାୟେ ବଦନ ମଞ୍ଜୁଳ
ଦଣ୍ଡୁଛି ଅତ ପ୍ରେ ଭୟଙ୍କର ବୋଇଲ ଯେସନ ପ୍ରେ
ପ୍ରଳୟ ମେଘର ଆକାର ସେ ।।୪୭।।

ଦେଖିଣ କପିଙ୍କରେ ଦେଲେ ରଡ଼ି କ ଅବା ଆକାଶ ପଡ଼ିଲା ଝଡ଼ି
ପାଟ ପାଟମାନ ଦେଲେ ପକାଇ ବୋଇଲା ଡାକନ୍ତି ସେ,
ଆସ ମନ୍ଦୋଦରୀ ପାଇଁ ଯେ ।।୪୮।।

କପିଙ୍କ ବୋଲ ନ ବହିଲା ଖଡ୍ଗ ବିଷ ନ ଥିଲେ ଯେସନେ ପନ୍ନଗ
ରଥ ତୋଳନେ କରିଅଛି ମତ ବୋଇଲା କେ ଦେହେ,
କ୍ରୋଧ ଲୁଚହିଁ ଦୈତ୍ୟପତି ଯେ ।।୪୯।।

ବୋଲନ୍ତି ହନୁମନ୍ତ ମତ ମହାବୀର ଶୁଣ ମୋହର ବାଣୀ ବାଳ କୁମର
ବେଗେ ତୁ ଯାଇ ପଶ ଅନ୍ତଃପୁର ବୋଇଲା ଧରଣ ହେ,
ଆଣ ପ୍ରିୟାକୁ ଏହାର ଯେ ।।୫୦।।

ଶୁଣି ହନୁମନ୍ତ ବାଣୀ ଅଙ୍ଗଦ ବେଗେ ଚଳିଲା କରି ଘୋର ନାଦ
ଅନ୍ତଃପୁରରେ ହୋଇଲା ପ୍ରବେଶ ବୋଇଲା ଧରିଣ ସେ,
ଆଣେ ମନ୍ଦୋଦରୀ କେଶ ଯେ ।।୫୧।।

ରାବଣ ସମ୍ମୁଖରେ ପ୍ରବେଶ କଲା ଦେଖରେ ତୋର ପ୍ରିୟାକୁ ବୋଇଲା
ରାମ ନ ଆଣେ ତୁ ଆଣିଲୁ ସୀତା ବୋଇଲ ଦେଖସି ହୋ,
ନେଉଛି ତୋର ବନିତା ଯେ ।।୫୨।।

ବୋଲେ ମନ୍ଦୋଦରୀ ଧିକ ଦଶାନନ ଜୀବନ ରଖିବାର ଅକାରଣ
ମୋହର ପିତା ଅଟେ ଦୈତ୍ୟଗଣ ବୋଇଲ ମରନ୍ତେ
ଥିଲା ମୋହର ଯେସନ ଯେ ।।୫୩।।

କପିଏ ନେଉଛନ୍ତି ବାଳ ଧରି ଥାଅ ତୁ ଅରଜକୁ କେତେ ଶିଖ
ସୁତ କାନ୍ତା ପାଇଁ ସମ୍ବାଦ ଇଚ୍ଛି ବୋଇଲା ତୁ ସବୁ ହୋ,
ଛାଡ଼ିଲୁ ବୀରବାବସ୍ଥି ହେ ॥୫୪॥

ଏସନେ ଶୁଣି ଗର୍ଜିଲା ରାବଣ ଦେଖିଲା କାନ୍ତାର କେଶ ଧରିଣ
କ୍ରୋଧରେ ମେହ୍ନ ବଢ଼ିଲା ଦ୍ୱିଗୁଣ ବୋଇଲା ଉଠିଣ ଯେ,
ମୋଥ ମାଇଲା ବଦନ ଯେ ॥୫୫॥

ମୋତେ ଅଚେତନ ବାଳି ନନ୍ଦନ ଦେଖିଲେ ଦୈତ୍ୟେ ହେଲେ କ୍ରୋଧମନ
ଅଙ୍ଗଦକୁ ହନୁ କାନ୍ଧେ ପକାଇ ବୋଇଲା ବେଗେଣ ସେ,
ଲାଙ୍ଗୁଡ଼େ ପିଟିଲା ନେଇ ସେ ॥୫୬॥

ବାଳି ରାବଣ ହୋଇଲା ବିସ୍ମୟ ବୋଇଲା ଧନ୍ୟରେ ପବନପୁଅ
ଆଜ ଯେତେକ ଥିଲେ କପିବୀର ବୋଇଲା ଜାଗର ସେ,
ନାମ କଲେ ଉପଗୁର ଯେ ॥୫୭॥

ଆକାଶ ମାର୍ଗେ କଲେ ଗମନ ଭେଟିଲେ ଯାଇ ରଘୁକୁଳରାଣ
ଚରଣେ ତାଙ୍କର କରି ପ୍ରଣାମ ବୋଇଲେ ସ୍ୱୋଦେବ ହେ,
ଯାଗ କରିବୁ ଧ୍ୱଂସନ ଯେ ॥୫୮॥

ଏହୁ ରାମଚନ୍ଦ୍ର ବିଳାସ ଗୀତ ଛାନ୍ଦ ଏ ତେୟାଳିଶ ସମାପତ
ନୃପ ଧନଞ୍ଜୟ ଭଣେ ଏ ରସ ବୋଲେ ରାମର ସେ
ଚରଣେ ଦେଇ ମାନସ ଯେ ॥୫୯॥

## ଚଣ୍ଡରାବଣ ଛାନ୍ଦ

### ( ରାଗ—ବସନ୍ତ )

ଏଥୁ ଅନନ୍ତରେ ମନ୍ଦୋଦରୀ ବାଣୀ
ଶୁଣି ରାବଣ ଦୁଃଖମନ,
ବୋଇଲା ସାଜଆଣ ମୋର ସୈନ୍ୟଗଣ
ନ ଜାଣି ମାରଣେ ରଘୁଗଣ,
ଆଜ୍ଞା ସେ, ପାଇ ସାଜିଲା ସୂତ ଯାନ
ନାନା ମଣିଗଣେ କରଣେ ଝଳନ୍ତ
ଶିର ଛୁଇଁଅଛି ଗଗନ ।।୧।।

ପତାକାକୁଳ ଚଞ୍ଚଳ ପବନର
ଦେଖି ଡରିଲା ସୁନାସୀର,
ସୁନାସୀର ସେନ ଆସୁଛି ରାବଣ
ଦକ୍ଷବ ସ୍ୱେତ୍ସ କେଉଁପୁର,
ବାଦନ୍ତି, ବିବିଧ ବାଦ୍ୟଗଣ ରଙ୍ଗ,
ଭାଟ ଚାରଣ ଭଳକେ ଘୋଷୁଅଛି
ଅବନୀ ବାଳା ଥିର ନୋହି ।।୨।।

ସେହି ସମୟରେ ମଙ୍ଗଳ ଅଷ୍ଟକ
ପଢ଼ନ୍ତି ଶୁକର ତନୟ,
ବଂଶବାହୁ ରଥେ ଚଳେ ଚଳା ଯାଇଁ
ରବି ଯେହ୍ନେ ଗିରି ଉଦୟ,
କର୍କଶ, ହୋଇ ବହିଲା ସମୀରଣ,
ଜମ୍ବୁକକୁଳ ଆକାଶୁ ଛୁଡ଼ପଡ଼ି
ରଥ ଆଗରେ କଲେ ରଣ ।।୩।।

ଝଟଭ ପବି ଧ୍ୱନି ଶୁଣି ସଘନେ
ଘନେ ବରଷିଲେ ଶୋଣିତ,
ଘୋରବର୍ଣ୍ଣ ହୋଇ ମୋର ତାପ ତନ୍ତ୍ରି
ଚଣ୍ଡାଂଶୁ ଚଣ୍ଡାଂଶୁ ଯୁତ,
ମଣ୍ଡଳୀ, କଲେ ଆକାଶ ଗୃଧ୍ରଗଣ,
ଯେଉଁଣେ ସେ ଯାଇ ରାବଣ ରଥବର
ଉପରେ କରନ୍ତି ଭ୍ରମଣ ।।୪।।

ଅନେକ ରଥ ପ୍ରାୟେ ହୋଇ ଭୂଷିତ
ରତ୍ନ ମଣ୍ଡଳେ ଅନୁକ୍ଷଣ,
ଶିଖେ ତା ଧ୍ୱଜା ଅନେକ ମତରେ
ନ ରହି ପବନେ ସ୍ୱନନ,
ପୃଥ୍ୱୀକୁ ବାହାର ହେଲା ବେଗ ହୋଇ,
ରଥୀ ହାତ ଅଶ୍ୱ ଚଳନା ନ ହୋଇ
ଯେସନେ ଗାର୍ବୀର ଧାଇଁ ॥୫॥

ଚଟାକାବୁକ ଭଟ୍ଟୋଳ ସମ ହଣ୍ଡେ
ବିଗ ସ୍ତୁତ ବୀଜ ଶୋଭେ,
କୂର୍ମର ହୟ ସଂକ୍ରେ ହୟଙ୍କର
ହୟ ବଲ୍ଲଭେ ହୟ ବୟେ
ପୂର୍ଣ୍ଣ ମେ, ହଣ୍ଡନ୍ତ ଅଚ୍ଚରଚାର୍ଣ୍ଣ
ଘୋଡା ମୁଖରବେ ହୋଇଛୁ ସରବ
ଭର୍ତ୍ତ ଦେଖିଲେ ଶର ହତ ॥୬॥

ଘୋର ବର୍ଷଣେ ପ୍ରାୟେ ବରଷଣ
ବରଷିଲେ ଶିଳା ସଞ୍ଚୟ,
ଶିଳୀମୁଖଚୟ ଚୟ ଜନ୍ତୁଜନ୍ତୁ
ହଣକରେ ହଣ ଉଦୟ,
ହଣଙ୍କି, ଦେଖି ହଣଗଣ ଧାଇଁଲେ,
ବେହେ ଦେହ ମିଶି କଲେ ଘୋର ରୋଳ
...ନଚୟ କାମ୍ପିଲେ ॥୭॥

ଲୁହାବୋଳ୍ହ ହୋଇ ଦଶେ ଭୂଧର
ଭୂଧର ପ୍ରାୟେକ ଭଞ୍ଜନ,
ଦନୁଜ ବଂଶ ବଂଶ ସଧ ଛୁଟର
ରଥ ବଂଶରେ ଶୋଭବନ ।
ବଳ ସେ, ବଳରେ ବଣନ୍ତ ଛୁଟର
ବଳମୁଖ ମୁଖ ମୁଖେ ପ୍ରହାରିଲେ
କୁଟଜ ଲେହ ମୁଦୁଗର ॥୮॥

ଗିରିକୂଟ କୂଟ ମାରନ୍ତି କେ ତକ୍ଷି
କୂଟେ ଥିଲ ଯେତୁ ପଡ଼ିଲ,
ଶାଖାମୃଗ ମୃଗଯୂାରେ କଲୁ ବୁଦ୍ଧି
ଶମନ ରୂପେ ପ୍ରାଣ ନେଲ,
କଳାପ, କୁଣପ କଲେ ବରଷଣ,
ଘନ ଘନ ଘନ ଘନ ପଡ଼ିବାରେ
ଘନ ଶବଦ କଲେ ଲ୍ନନ ।।୧୦।।

ମାର୍ଗଣ ମାର୍ଗଣ କଲେ ଦନ୍ତେର
ରୁଧିର ଧାରାରେ ମାର୍ଗଣ,
ସଇନ୍ଧବ ସଇନ୍ଧବ ଧର ଧର
ଅଧୀରରେ ହେଲେ ସେ ମଗ୍ନ
ଦେଖିଣ, ଶମ୍ବର ସମ୍ବର ଜଦୟୂ,
ଦେଖି ହର ହର ହରକ ଲଭନ୍ତେ
ଧାଇଁଲେ ଦଶରଥ ପୁଅ ।।୧୧।।

ଅଶର ଶର କଲେକ ବରଷଣ
ଲକ୍ଷଣ ଲକ୍ଷ୍ମଣ ଧରଣ,
ରାମ ରାମ ରାମ ଦୂରନ୍ତୁଁ ଦେଖିଣ
ଧାଇଁଲେ ନଶାଚର ଗଣ,
ସମର, ସମରକ୍ଷ ହେଲେ ଉଦ୍ଧତ,
ସାରଙ୍ଗ ସାରଙ୍ଗ ଧ୍ୱନରେ ବଗତ
ବଗତରେ ହେଲେ ପୂରତ ।।୧୨।।

ନଗେ ନଗଚଯୂ କେହୁ କଲ ସାର
ସାରଙ୍ଗେ କେ କଲ ବଞ୍ଚିନ,
ସାରଙ୍ଗ ତେଜ ଅତ ଭଯୂ କରଣ
ପଳାଇଲେ କୁଣ କେତନ
ସେ କାଳେ, ସମର ସମରୁ ହୋଇଲ,
ବାଜ ବାଜ ଗଜ କରେ ଅନୁକ୍ଷଣ
କେ କାକୁ ଧରଣ ମାଇଲ ।।୧୩।।

ଅସୁର ଅସୁର ଶରେ ହୀନ ହେଲେ
ପ୍ଳବ ପ୍ଳବ ଗଣ୍ଡ କରେଣି,
ଶାଖାମୃଗ ମୃଗ- ରାଜ ସମ ହୋଇ
ଦନୁଜ ମୃଗେ କଲେ ଦୁଃଖୀ,
ତହିଁରେ, ମହାରଥ ମହାରଥରେ,
ବସି ଆୟୁଧ କେ ଭସ୍ମ କରାଇଲେ
ଧନୁରେ ଶର ସନ୍ଧବାରେ ॥୧୪॥

ଶିଳୀମୁଖ ଶିଳୀମୁଖ ଧର ହୋଇ
ହର ମୁଖ ପଦ୍ମେ ବସିଲେ,
ମଧୁର ମଧୁ ସମନ ପ୍ରାପ୍ୟେ କରି
କ୍ଷତ କ୍ଷତଜ ପାନ କଲେ,
ଦେଖିଣ, ରାବ ରାବଣ ଦେଇକରି
ତରତର ଶର ପ୍ରହାର କରିଣ
ଅବନୀ ଲୋଟିଲେକ ହର ॥୧୫॥

ଅଧର ଅଧର କାହାର ଚେଚ୍ଛିଲ
ଭୁଜ ଭୁଜଙ୍ଗ କଲ କ୍ଷୀଣ
ନାରଜେ କାହାର ଉରଜ ଭେଦିଲ
କେତୁ ଚୁଡ଼ଣ ଗଲେ ରଣ,
ଦେଖିଣ, ସୁଗ୍ରୀ ସୁଗ୍ରୀ କୋପେ ଧାଇଁଲ
ଶୁଭ ଅଙ୍ଗଦ ଅଙ୍ଗଦ ବେଗ କରି
ବୃକ୍ଷ ପାଷାଣ ବୃଷ୍ଟି କଲ ॥୧୬॥

ଶତବଳୀ ବଳ ବଳାଲ କାହାକୁ
ବଳୀକ ପଳାଇଲ ଦଳ,
ସରଭଶରଭରକୁ ନ ଗଣିଲ
କେଉଁ ରଥୀକ କଲ ଧୂଳ ।
ସରମ୍ଭ, ସରମ୍ଭ ରମ୍ଭଦ କରି,
ଗଣ୍ଡକର କଣ୍ଠ ଯୂଥକୁ ପେଟିଲ
ବଳ ଶାଳ ଶିଳ ଧରି ॥୧୭॥

ହନୁ ହନୁ ଦେଶ     ଭଙ୍ଗେଲା କାହାର<br>
କାହାର ହୋଇ କେହୁ ଗଲା,<br>
କୁମୁଦ ମୁଦ     ଦାନବଙ୍କ ଭଙ୍ଗିଲା<br>
ବେଗ ଦର ମନ୍ଦର ଦେଲା,<br>
କେଶରୀ, କେ ସର ଅଟଇ ତାହାରେ,<br>
କେଶରୀ ଗତ     କରଣ ବଦାରିଲା<br>
କେ ଶର ଗଲା ତା କରେ ||୧୮||

ଅମାଳ ଅନଳ     ବେଗକୁ କରଣ<br>
କାଣ୍ଡ କାଣ୍ଡ କଲା ଖଣ୍ଡିତ,<br>
ନଳ ନଳ ବନ     ସମାନନ୍ଦ କୁଜ<br>
ମୋଡ଼ଣ ରଣେ ସେ ଖଣ୍ଡିତ,<br>
ପୁଣ ସେ, ନୀଳ ନୀଳବର୍ଣ୍ଣ ଦନୁଜ<br>
ନଳୀନ ନୀନ     ପାଷାଣ ବରଷଣେ<br>
ଯେ ପୁସେ ଅନଳ ତନୁଜ ||୧୯||

ଦଧି ମୁଖ ମୁଖ     କାହାର ଖୋଳିଲା<br>
ସୁଗ୍ରୀ ସୁଗ୍ରୀକାର ଭଙ୍ଗିଲା,<br>
ଅଙ୍ଗ ଅଙ୍ଗଦ     କାହାର ବଦାରିଲା<br>
ତାର ତାର ଗତ ଦଶିଲା,<br>
ଗବୟ, ଗବୟ ମଣେ ରାକ୍ଷସଙ୍କୁ<br>
ଗବାକ୍ଷ ଗବାକ୍ଷ     ସମ କାହା ତନୁ<br>
କରଣ ଯେନଲା ଅଶ୍ୱଙ୍କୁ ||୨୦||

ଗନ୍ଧ ମାରଦନ     ଗନ୍ଧମାର୍ଦ୍ଦନ ସମ ଗିର<br>
ଛେଦିଲା କା ମୂର୍ଦ୍ଧ୍ମା,<br>
ମୂର୍ଦ୍ଧ୍ମା ମାଡ଼ି     ପଡ଼ିଲା ଅବନୀର<br>
ନିରୁଦ ସମ କର ଧୂମ୍ର<br>
ପକସ, ପସ ସମ କାଣ୍ଡେ ହେଲା ନାଶ,<br>
ହେଳାରେ ଦନୁଜ     ବଳକୁ ନାଶିଲା<br>
ହିମୂର୍ଦ୍ଧା ପ୍ରାଣ କଲା ନାଶ ||୨୧||

ଡାଳମ୍ବ ଡାଳମ୍ବ ସମାନ କରଣ
ହାର ହୃଦ କଲା ବାରତା,
ବଜ୍ରମାଳ ବଜ୍ରମାଳ ସମ କର
ପେଷିଲା ରଣେ ଶରଗଣ,
ପ୍ରଜଙ୍ଘ, ଜଙ୍ଘ କାଟେ କେଉଁ କପିବୀର,
କାଳନେମି ନେମି ଧ୍ୱନ ଶୁଣି କର
ଭାଙ୍ଗିଲେ ରଣେ କପିବୀର ॥୨୨॥

ଅଶନ ଅସମ ସମ ନାଦ କଲା
ଢଙ୍କ କୋପ କୋପ ପ୍ରଚଣ୍ଡ,
କାଳଦଣ୍ଡ କାଳ ଦଣ୍ଡରେ ନସହୁ ଯେ
ମନ୍ଥିଲା କେଉଁ କପିମୁଣ୍ଡ,
ପ୍ରଚଣ୍ଡ, ପ୍ରଚଣ୍ଡ ତେଜେ ଆଲୋକିତ,
ମିତ ମିତ ସମ ତେଜେ ବିବର୍ଜିତ
ମିଳିଲା ଶ୍ରୀରାମ ପୁରତ ॥୨୩॥

ବିଶ୍ୱସେଣ ବିଶ୍ୱାସଣ ରୂପ ହୋଇ
ଗଦା ପିଟିଲା ଦନୁଜଙ୍କୁ,
ଚନ୍ଦ୍ର, ଚନ୍ଦ୍ରହାସ ହାସକୁ ହେଳଣ
କାହାର ଛେଦିଲା ଶିରକୁ,
ଦ୍ୱିରଦ, ଦ୍ୱିରଦ ପକାଇଲା ଛେଦି,
ଚଣ୍ଡ ଚଣ୍ଡ ଗଣ୍ଡ କରି ଯେ ତାହାର
କାହାର ଅଙ୍ଗେ ଗଲା ଭେଦି ॥୨୪॥

ଲକ୍ଷ୍ମଣ ଲକ୍ଷକ ପାଇଲେ ହନୁ ଯେ
ଶର ପେଷିଲେ ଲକ୍ଷ ଲକ୍ଷ,
କାଣ୍ଡ କୋଟିରେ କାଣ୍ଡ କୋଟି ନାଶିଲେ
ବିପକ୍ଷ ପ୍ରାଣ କଲେ ମୋକ୍ଷ,
ରାଘବ, ରାଘବ ସମାନ ହୋଇଣ
ଶୂନ୍ୟ ଶୂନ୍ୟ ଧୂରେ ପଶି ବିହରିଲେ
ଅନେକ ନିଶାଚର ପ୍ରାଣ ॥୨୫॥

ଶର ଧାର ଧାର ସମାନ ବରଷି
ବରଷି ସକଳେ ଖଣ୍ଡିତ,
ଦକ୍ଷିଣ ଦକ୍ଷିଣ ଦିଗକୁ ପେଷିଲେ
ତପସ୍ୱୀ ନିଶାଚର ସମସ୍ତ,
ସେ ଖଞ୍ଜ, ଖଞ୍ଜନ ରଣ କରେ ଦୂର,
ଆସି ଆସି ସାରରେ ଲୀନ କଲେ
ଛମ ଛମ କରେ ପ୍ରସ୍ୱର ॥୨୬॥

ଯେଉଁ ସୁଲକ୍ଷଣ ଜଳଧାର ସମ
ବିଚିତ୍ର ଧନୁ ରୁଚିର,
କର୍ଣ୍ଣରେ ଅବନ ପୁରେଇଲେ ଶୀତ
ଖଣ୍ଡ ସମାନ ସୁନ୍ଦର,
ସେ ପୁଣ, ଦେବ ତିନିଗୁଣେ ସଂଯୁତ,
ଅମ୍ବର ପରିଧାନରେ ବିରାଜିତ
ଚନ୍ଦ୍ରବର୍ଣ୍ଣ କଳା ପିନ୍ଧିତ ॥୨୭॥

ହୋଇଛି ରାଜହଂସୀ- ର ମୋଦକାରୀ
ଅଶନ ନୟନେ ବିପୁଳ,
କରୁଛି ନିରତେ ଧ୍ୱନି ବିବର୍ଦ୍ଧନ
କବନ୍ଧ ପ୍ରବୃରେ ଉଲ୍ଲୋଳ,
ସେ ପୁଣ, ସରବ କରେ ଅନ୍ଧକାରେ,
ପ୍ରକଟ କରିଛି ନୀଳକଣ୍ଠ କଣ୍ଠ
ନାଟ ଭଟ ଯେ ନାଶିବାରେ ॥୨୮॥

ପ୍ଳବଗମକୁ କରିଅଛି ପ୍ରକାଶ
ସୁମନା ମୋଦ ବଢ଼ାଉଛି,
ହାଲ ବିବରଣ କରିଛି ମାର୍ଗ
...ମାର୍ଗରେ ଖଣ୍ଡ ଅଛି,
ସେ ପୁଣି, କରେ କଉଶିକ ଆନନ୍ଦ,
ପରଚଣ୍ଡ ପଦ୍ମକୁ ବଢ଼ାଉଛି
ଦର କର କରେ ସାନନ୍ଦ ॥୨୯॥

ନନ୍ଦନ ଚନ୍ଦନ ତରୁ ପ୍ରହାରରେ
ହା ରବ ଦୈତ୍ୟଗଣ ଦେଲେ,
କାଳମୁଖ କାଳ ମୁଖରେ ଲଗାଇ
ଜମ୍ଭଜ କୁଳକୁ ଜିଣିଲେ,
ସ ନାଦ, ସନାଦରେ କଲା ତାଡ଼ନ,
ସମୁଷ୍ଟିକ ଶର ମୁଷ୍ଟିକ ମୁଷ୍ଟିରେ
ପେଷି ପକାଇଲା ଶରଣ ||୩୦||

ସୂତ ସୂତ ସେ ସ୍ରବଣର ନାଶିଲା
ଶିଳାଖଣ୍ଡ ଯେନ ତତ୍କ୍ଷଣ,
ବିନତ ବିନତ କାହାକୁ ଯେ କଲା
ମୂର୍ଦ୍ଧାଂଳ (?) କଲେଣ ମରଣ,
ତର୍ହିଁରେ, ଚନ୍ଦ୍ର ପଦ୍ମ ଦୈତ୍ୟ ନାଶିଲା,
ଦୁମରଷଣ ଦୁମର ଯର. ଏ
ଦୁର୍ଦ୍ଦିନ ଶିଳାଘାତେ କଲା ||୩୧||

କଞ୍ଚଣ କଞ୍ଚନ ବୃକ୍ଷ ଯେନକର
କୋଟି କୋଟି ଦ୍ୱିପ ନାଶିଲା,
ଶ୍ୱେତ ସେତ ଶୃଙ୍ଗ କରେ ଯେନକର
ରାକ୍ଷସ ବଳ ଚୂର୍ଣ୍ଣ କଲା;
କ୍ରୋଧନ, କ୍ରୋଧ ନ କରି ଦନୁଜରେ,
ଅର୍ଜ୍ଜନ ଅର୍ଜ୍ଜୁନ ଯେକଣ ପିଠିଲା
ବେଗେ ଦେଖାଇ ହସ୍ତପରେ ||୩୨||

ଅସ୍ତ୍ରକର୍ଣ୍ଣ ଅଶ୍ୱକର୍ଣ୍ଣ ଦେହେ ବାଜି
ବାଜି ଅବମାରେ ରଢ଼ିଲା,
ଅଶ୍ୱତ୍ଥ ଅସ୍ତ୍ର କରି ରାକ୍ଷସଙ୍କୁ
କଞ୍ଚଣ ଘାତେ ଶୋଭା କଲା,
ମହାନ୍ଦ, ଧନୁରେ ଧନୁ କଲା ଭଙ୍ଗ,
ପୌଲସ୍ତି ପୌଲସ୍ତ୍ୟ ମାନ ପ୍ରକାଶିଲା
ଶ୍ରୀମ ସେନାମାରେ ରଞ୍ଜିତ ||୨୩||

ନନ୍ଦୀ ଗଜାନନ ପରେ ଶୋଭୁଅଛି
କୁବେରେ ହୋଇଛି ସଯୁକ୍ତ
କ୍ରୋଡ଼ରେ, ପୁଣି ହୋଇଛି ଭୟଙ୍କର,
ବହୁ ଶିରରେ ପାଉଅଛି ରଞ୍ଜନ
ଯେସନେ ଧନଗଣ ରଞ୍ଜନ ।।୩୪।।

ପଳାସୀ ଗଣେ ହୋଇଛି ମନୋହର
ସିତ ବର୍ଣ୍ଣ କରେ ପ୍ରକାଶ,
ଧନୁଗଣରେ ଦଶୁଅଛି ରୁଚିର
ରସୁଭର ଭେକରେ ବାସ,
ଭଲ୍ଲେରେ, ନଚସ୍ୱେ ହୋଇଛି ଦୁର୍ଚ୍ଚର,
ଦଶିଲେ ସଙ୍କଟ କଟକେ ଗମନା
ଚନ୍ଦ୍ରହାସ କରେ ରୁଚିର ।।୩୫।।

ପର୍ବତ ଶବର ହୋଇଛି ଦୁର୍ଗମ
ଫଳକ କରଛି ପ୍ରକାଶ,
ବହୁତ ସଙ୍ଗରେ ହୋଇଛି ପ୍ରକାଶ
ଭୂଷଣ ଖରରେ ଯେ ପ୍ରକାଶ
ସ୍ପନ୍ଦନ, ଚଳନ ହୋଇଛି ଶୋଭନ,
ଗଗନରେ ଗଗନ ଏ ଆଚ୍ଛାଦଛି
···କରେ ରୁଚିର ।।୩୬।।

ଯେ ଚନ୍ଦ୍ରକଳା ଶ୍ରୀରାମ ବିଳାସ
ଛାନ୍ଦ ଶୁଣ ସର୍ବ ରସିକ,
ସକଳ ଯୁଦ୍ଧ ଜାଣ ନାମ ଯେହ୍ୱାର
ଅଟଇ ହରଷ ଦାୟକ;
ଶ୍ରୀରାମ, ପାଦ ପଦ୍ମରେ ଦେଇ ଚିତ୍ତ,
ନୃପ ଧନଞ୍ଜୟ ଭଞ୍ଜ ଭଣିଲେ
ଚିତ୍ର ପଦରେ ଗୀତଯୁତ ।।୩୭।।

# ପଞ୍ଚତ୍ରିଂଶ ଛାନ୍ଦ

## ( ରାଗ – ଶ୍ରେଖି )

ଏଥୁ ଅନନ୍ତରେ ତହିଁ ରାବଣ ଯୁଦ୍ଧନ୍ତେ ରହି
ଶରପେଷି ଋକ୍ଷକପି ବଳ ନାଶିଲ,
ପ୍ରବଳ ତା ଭୁଜଦଣ୍ଡ ମନ୍ଥିଲା ଶ୍ରୀରାମ ଦଣ୍ଡ
ଖଣ୍ଡ ଖଣ୍ଡ କରି ଚତୁରଙ୍ଗିଳ ନାଶିଲ,
ବୁହାଇଲ ଶ୍ରୋଣିତ ନଦ
ନଦକୁ ପାନ ସେ କଲ୍ପ କରଣ ଭେଦ ।।୧।

ପ୍ରବଳ ରାବଣ ବନ ପଲ୍ଲସେ ଦେଖି ଗହନ
ପ୍ରଚଣ୍ଡ ରାମ ଅନଳ ଦେଖି ଧାଇଁଲ,
ବାଣ ଶିଖାରେ ପ୍ରଚଣ୍ଡ ଭକ୍ଷଣେ ମାରୁତେ ଦଣ୍ଡ
ହୋଇକରି ଦଶଗ୍ରୀବ ହୃଦ ଦହିଲ,
ରଣ ଯାଗ ହେଲ ପ୍ରକାଶ,
ଅଧୈର୍ଯ୍ୟ ତହିଁରେ ହେଲେ କପିଙ୍କ ଈଶ ।।୨।।

ବ୍ରହ୍ମା ହେଲେ ଜମ୍ବୋବନ୍ତ ହୋତା ହେଲେ ହନୁମନ୍ତ
ମହାତ ବରୁଣ ହେଲେ ତହିଁ ଲକ୍ଷ୍ମଣ,
ପ୍ରଥମ ସ୍ଥାନ କ ସ୍ୱତ କଲେ ଅଙ୍ଗଦ ତତ୍ତ୍ୱତ
ଅତ ବନସ୍ଥି ହୋଇବେ ମନ୍ତ୍ରୀ ସୁଷେଣ,
ସାବଷୀ ହୋଇଲେ ଦ୍ୱିବନ୍ଦ
ଉଦ୍‌ଗାତା ହୋଇଲେ ମାଳ ପ୍ଲବଗଚ୍ଛନ୍ଦ ।।୩।।

ନଳ ହେଲେ ପ୍ରତିହର୍ତ୍ତା ଯହୁଁ ସେ ବଧ କରତା
ଶଙ୍ଖସ୍ୱ ହେଲେ ତହିଁ ଶୁଭ ବ୍ରାହ୍ମଣ,
ଶତବଳ ହେଲେ ପୋତା କେଶରୀ ତହିଁ ପ୍ରସ୍ତୋତା
ସୁଗ୍ରୀବ ସୁତ ହେଲେ ତହିଁ ଧୌମ୍ରନ ପୁଣ,
ଅଗ୍ନିପ୍ର ହୋଇଲେ ମହାନ୍ଦ,
ବ୍ରାହ୍ମଣ ଆଶିଷ ହେଲେ ବୀର କୁମୁଦ ।।୪।।

ରାମ କୋପାଗ୍ନି ପ୍ରଚଣ୍ଡ ରଣଭୂମି ଅଗ୍ନିକୁଣ୍ଡ
ସମିଧ କରି ଦହିଲା ରାକ୍ଷସ ପିଣ୍ଡ,
ଅସ୍ତ୍ର ହୋଇଲେ ଘୃତ ଉଚ୍ଚ ପାଞ୍ଚ ଡାକ ମତ
ଜଞ୍ଜ ରଣ କଲେ ସବେ ସଂଗ୍ରାମ ଷଣ୍ଢ,
ମହାଯୁଦ୍ଧ ଯୂବ ହୋଇଲେ,
ଶାଳ ଶିଳମାନ ସୋମ କଳସ କଲେ ।।୫।।

କପାଳ ହେଲେ କପାଳ ପୋରଡ଼ା ଶରୀର କୁଳ
ଦନ୍ତ ସଂଚୟ ତହିଁରେ କୁନ୍ତଳମାନ,
ହବି ପଶୁ ହେଲେ ମହାରଥ ମହାପଶୁ ଦଶମାଥ
ଏମନ୍ତ ପ୍ରକାରେ ଯାଗ ହେଲା ପ୍ରବଳ,
ଫଳ ତହିଁ ଜାନକୀ ଲଭ
ସେ ଯାଗ ଦେଖି ସନ୍ତୋଷ ଶଚୀବଲ୍ଲଭ ।।୬।।

ଦନୁଜ ବଦନ ସୋମ ପାନ ଆନନ୍ଦକ ସୋମ
ହୋଇଣ ଡାକଲେ ବୀରେ କାରେ କେ ରଣେ,
ସେ ଯାଗ ହେଲେ ସମ୍ପୂର୍ଣ୍ଣ କୀର୍ତ୍ତି ପୁଣ୍ୟ ଜଳେ ପୁଣ
ଅଭୃତ ସ୍ନାନ କରିବେ ରଘୁନନ୍ଦନ
ବିଭୀଷଣ ଦେଲେ ଦକ୍ଷିଣା,
ରଘୁନାଥ ରଣେ ହୋଇ ଅତି ସୁମନା ।।୭।।

ରାମ ଚକ୍ର ପ୍ରବର୍ତ୍ତିଲା କାଳ ଚକ୍ର ସମ ଭେଳା
ସେ ଚକ୍ରରେ ନାଭି ହେଲେ ଲକ୍ଷ୍ମଣ ବୀର
ଯୂଥପତି ହୋଲେ ଅର- ନେମି ବିଭୀଷଣ ତାର
ଦୈତ୍ୟ ରାଜା ହାତରେ ସେ ଉଦ୍ଧାମତାର
ତେଜୋମୟ କରଣମାଳି
ଶରେ ଶରେ ଭ୍ରମ କରେ ଦଗମଣ୍ଡଳି ।।୮।।

ମହାନନ୍ଦ ଦାଶକନ୍ଧ ଘନ ରଘୁକୁଳ ଇନ୍ଦ୍ର
ଘନ ଘନ ଶରଧାର କଲା ନିପାତ,
ପୂର୍ଣ୍ଣରେ କଲା ବିଖଣ୍ଡ କଳଳ ବେଗେ ପ୍ରଚଣ୍ଡ
କରି ମଣ୍ଡିଲା ଧରଣୀ ସେ ଭୂରିତ,
କ୍ଷୀଣ କଲା ହଂସ ପ୍ରଚୁର
ବାଣ ଜ୍ୟୋତି ଲତା ତହିଁ ଅତି ବିସ୍ତାର ।।୯।।

ନ ସହିଲା ରାବଣ ଆରମ୍ଭିଲା ଘୋର ରଣ
ଏକ ଆରେକରେ ଚାହିଁ ନୋହିଲେ ବାର,
ଦେଖି ବସ୍ତୁରନ୍ତ ଦେବ ଏହୁ ତ ନୋହେ ସମ୍ଭବ
ଜଗତ ପତ୍ତ ହୋଇଛୁ ଏ ପାଦ ରୁଚ,
ଏମନ୍ତ ସେ ଚିନ୍ତିଣ ମନ,
ଆଜ୍ଞା ଦେଲେ ମାତଳିକ ସୁର ରାଜନ ॥୧୦॥

ନିଅ ମୋ ବିଜୟୀ ରଥ ରାମରେ ଦିଅ ତୁରିତ
ଯେହୁଁଥି ବସି ଜୟ ସେହୁ କରନ୍ତୁ ରାବଣ,
ଶୁଣି ସୁର ସୁବଚନ କଲା ରଥ ରଣସ୍ଥାନ
କରଯୋଡ଼ି କହେ ଶୁଣ ହେ ରଘୁରାଣ,
ବିଜେ କର ଏହୁ ରଥର,
ଇନ୍ଦ୍ର ଦତ୍ତ ଯେଣେ ଜିଣ ରାବଣ ବୀର ॥୧୧॥

ପରୀକ୍ଷା କରିଣ ବସି ଉଦ୍ୟତ ସେ ରଘୁଶିରି
ରାବଣ ସଙ୍ଗରେ ରଣ କଲେ ଆରମ୍ଭ,
ଦେଖି ଭାଜିଲା ତା ଦମ୍ଭ କରିଥିଲେ ସେ ସରମ୍ଭ
ରାମବାଣ ମାଇକରି ଲଭିଲା ଥମ୍ଭ,
ମୋହେ ପୁଣ ହେଲା ଅଚେତ,
ପୁଣ ସଞ୍ଜ୍ଞା ଚେତ ଉଠେ ବିଶ୍ରବା ସୁତ ॥୧୨॥

ପୁଣି କଲେ ଘୋର ରଣ ଲାଗନ୍ତି ରଥ ରଥେଣ
ଅଶ୍ୱ ଅଶ୍ୱ ପରେ ଆସି କରେ ବିଶ୍ରାମ,
ଲାଗିଛି ଧନୁକୁ ଧନୁ କ୍ରୋଧରେ କମ୍ପଇ ତନୁ
ବଢିଛି ତା କରମନୁ ନାହିଁ ବିରାମ,
ପୁଣି କଲେ ଆକାଶେ ରେଳ,
କେତେବେଳେ ଅବନୀରେ ହୋଅନ୍ତି ମେଳ ॥୧୩॥

ସୁରକୁଳ ଲାଗିକରି ମୋହ ଯାନ୍ତି ଦଶଶିର
ଦେଖିଣ ସାରଥି ରଥ ଘେନିଣ ଗଲା,
ପଥେ ପାଇଲା ଚେତନା ସୂତରେ କଲା ଭର୍ତ୍ସନା
ତୁ ମୋହର ଯଶ ନାଶ କଲୁ ବୋଇଲା,
ରାମ ପାଶେ କର ମୋ ଯାନ,
ରଣେ ବଇରି ମୋତେ ଦେଖିଲା ସାନ ॥୧୪॥

ବାହିଲ ରଥ ସାରଥି  କରଇ ଗଗନେ ଗତି
ସଜଳ ପରାୟେ ଦଶେ···ରାବଣ
କିରୀଟ ବିଦ୍ୟୁତ ଶୋଭା  ସୁନାସୀର ଧନୁ ଆଭା
ଶର ପାର ଧାରା କରୁଅଛି ପତନ,
ରାମବେଗ ପ୍ରଚଣ୍ଡ ବାତ,
ଲକ୍ଷ୍ମଣ କ୍ଷଣକେ ସେହୁ ହେଲ ବିଗତ ।।୧୫।।

ଝଙ୍କାରେ ପୂରେ ବ୍ରହ୍ମାଣ୍ଡ  ମଣ୍ଡଳ କୃତ କୋଦଣ୍ଡ
ଆଧାମ ଧାନ ନୋହିଲ ଲକ୍ଷି,
ରାମବାଣ ପରଚଣ୍ଡ  ତେଜେ ଗଞ୍ଜେ ମାର୍ତ୍ତଣ୍ଡ
ଦେଖିଣ ଦଶ ବଦନ ବୁଜିଲା ଆଖି,
ବହିଲା ସ୍ରୋତ ପ୍ରଚଣ୍ଡ,
ଖଣ୍ଡ ଖଣ୍ଡ ହୋଇଗଲା ରାବଣ ପିଣ୍ଡ ।।୧୬।।

ବାଳକ ବନ୍ଧିଲ କାଣ୍ଡ  ବନ୍ଧିଲେ ଯୋଚ କୋଦଣ୍ଡ
ବାଜଣ ଛୁଡ଼ ପଡ଼ଇ ରାବଣ ଶିର,
ପୁଣ ହୋଏ ଉତପତ  ପୁଣି କାଟନ୍ତି ତତ୍‌କ୍ଷତ
ବନ୍ଧ ବନ୍ଧ ଶ୍ରମ ଲଭେ ରଘୁଙ୍କ ବୀର,
ସାୟେକ ଉତ୍ତର ବାର
ରାବଣ ମୁଣ୍ଡ କାଟିଲେ କୋଦଣ୍ଡ ଧର ।।୧୭।।

ବୋଲନ୍ତି ବିସ୍ମୟ ହୋଇ  ଶୁଣ ଇନ୍ଦ୍ରସୁତ ଭାଇ
କେତେ ବାଣ ମାଇଲ ନୋହିଲ ସେ ହତ,
ନୋହିଲେ କ ଯେ ଜଗତ  ସାଧିଥିଲ ଦଶମାଥ
କେମନ୍ତେ ହୋଇବ କହ ନୟୁତ,
ରାମ ବାଣୀ ଶୁଣି ମାତଳ,
ବୋଇଲ ରାମ ରାବଣ ଯେ ମହାବଳୀ ।।୧୮।।

ମୁଣ୍ଡ କାଟିଲେ ତାହାର  ବଧ ନୁହେଁ ରଘୁବୀର
ପୂର୍ବେ ଧାତା ଦେଇଅଛି ଯେସନ ବର,
ମାର ବେଗେ ବ୍ରହ୍ମଶର  ପୁଟାଅ ଏହାର ଉର
ତେବେ ପ୍ରାଣ ଛାଡ଼ିବ ଯେ ରାକ୍ଷସ ବର
ଶୁଣି ରାମ ଆନନ୍ଦ ହେଲେ
ଅଗସ୍ତି ଦେବା ଶରକୁ ଗୁଣେ ଯୋଚିଲେ ।।୧୯।।

ମନ୍ଦ ଉପରୁରେ ଭ୍ରମ ବଢ଼ିଛି ହୃଦରେ ତମ
ପ୍ରଳୟ ଅନଳ ଜାଣି ଶରର ତେଜ,
ମରଣରେ କଲା ଖେଦ ଜାଣିଲା ସେ ଲଙ୍କପତି
କୋଟି କୋଟି ଛେଦନେ ବନ୍ଧିଲା ନାଗଜ,
ଉତ୍ତୁଙ୍ଗଣ ରଘୁନାଥ ଏକ,
ରାବଣ ଉପରେ ପେଷେ ଘୋର ଶାୟକ ।।୨୦।।

ତାର ଶର ହତ କରି ନ ପାରିଲେ ଦଶଶିର
ହୃଦେ ଫୁଟି ଶରବର ନ କଳ ଗଲା,
ପାତାଳେ ହୋଇଲା ପ୍ରବେଶ ଦେଖିଣ ଦୂରୁଲେ ଶେଷ
ସମୁଦ୍ରେ ପଶିଣ ରାମ ତୂଣିରେ ହେଲା,
ଗଳଗାଜ ପଡ଼େ ରାବଣ,
ଏଗାର ଲକ୍ଷ୍ୟଳ ଦେହ କରି ପ୍ରମାଣ ।।୨୧।।

ଅନେକ ବାନର ଟାଣ ମାଡ଼ଣ ପଡ଼ିଲା ପୁଣ
ଦେଖିଣ ଆନନ୍ଦ ହେଲେ ତ୍ରିଦଶ ଗଣ,
କଲେ ସେହୁ ପୁଷ୍ପବୃଷ୍ଟି ନୃତ୍ୟଗୀତେ କଲେ ଗୋଷ୍ଠୀ
ଦୁନ୍ଦୁଭି ବାଦ୍ୟରେ ପୁରେ ହଗ ଗଗନ,
ଶୁଣି ଧାତା ହେଲା ବିସ୍ମୟ,
ବୋଇଲା ଏବେ ସେ ମଲା ବିଶ୍ରବା ପୁଅ ।।୨୨।।

ଏହୁ ଅତି ମରମ ରାବଣର ବଧ ନାମ
ଛାନ୍ଦରେ ଶେଷ ହୋଇଲା ପଞ୍ଚତ୍ରିଂଶ,
ଶ୍ରୀରାମ ବିଳାସ ରସ ନାନା ରସରେ ପ୍ରକାଶ
ଶୁଣିଣ ରସିକ ଜନ ହୁଅ ସନ୍ତୋଷ,
ସେ ରାମ ଚରଣକୁ ଚିନ୍ତି,
ଭଣିଲେ ଗୀତ ଧନଞ୍ଜୟ ନୃପତି ।।୨୩।।

●

# ଛୟାଳିଶ ଛାନ୍ଦ

## ( ରାଗ – ସିନ୍ଧୁଡ଼ା )

ଏଥି ଅନନ୍ତରେ ରାବଣ ନିଧନେ
ଆନନ୍ଦ ରଘୁନାଥଙ୍କ,
ଦେଖିଲେ ହୃଦୟ ଶମ୍ଭରେ ହୋଇଛି
ବାଜଣ ବହୁ ସାପ୍ୱେକ ଯେ
ବୋଲେ ଆହେ ଲକ୍ଷ୍ମଣ,
ଦେଖ ମଲାଟି ଦୁଷ୍ଟ ରାବଣ ହେ ॥୧॥

ଦେଖି ରାବଣ ବିନାଶ ବିଭୀଷଣ
ରାମଙ୍କୁ ପ୍ରଶଂସା କରି,
ବୋଇଲା ଧନ୍ୟ ଧନ୍ୟ ଦଶ ବଦନ
ହାରିଲୁ ବଅର୍ଥେ ଶିରୀ ହେ,
ମୋର ନକଲୁ ବୋଲ,
ଆହା ଛାଡ଼ିଗଲୁ ଲଙ୍କମଣ୍ଡି ହେ ॥୨॥

ତୋ ମୁଖ ଦେଖିଲେ ଡରେ ସୁନାସୀର
ଜଣିଥିଲୁ ସୁରପୁର,
ଅନ୍ୟାୟ ଆଚାର ଯେଣେ ଭୁଞ୍ଜି କଲୁ
ହତ କଲା ରାମ ଶର ହେ,
................
.................. ............ ॥୩॥

ଏ ଲଙ୍କା ଭୁବନ ଏ ରାଜ ସମ୍ପଦ
ହରାଇଲୁ କାସ ପାଇଁ,
ମନ୍ଦୋଦରୀକି ଯେବେ ଭୁଞ୍ଜ କାହାକୁ
ଦେଇଗଲୁ ଲଙ୍କସାଇଁ ହେ,
ଧିକ ଧିକ ମୋ ପ୍ରାଣ,
ରଣେ ହତ ଦେଖିଲି ରାବଣ ହେ ॥୪॥

ବୋଲେ ଧନ୍ୟ ଧନ୍ୟ   ହେ ରଘୁ ନାୟକ
ତୋ ବଳେ ହୁଅଇ ଯୋଦ୍ଧା,
ଯା ମୁଖ ଦେଖିଲେ   ଡରେ କାଳଦେବ
ସେହୁ ଏହୁ ବଂଶବାହା ହେ,
ଧନ୍ୟ ମିହିର ବଂଶ,
ଯହିଁ ରାମ ଏକ ଅବତଂସ ।।୫।।

ଶୁଣି ବିଭୀଷଣ   କାରୁଣ୍ୟ ବଚନ
ବେଗେ ମିଳେ କପିପତି,
ବୋଲେ ତୋହରେ   ଯେ ପଣ କଲେ ରାମ
ଯେବେ ହୁଅ ଲଙ୍କପତି ହେ
କର ଧଇର୍ଯ୍ୟ ସ୍ଥିର,
ତୁ ଯେ ଦୈତ୍ୟଙ୍କର ବୀରବର ।।୬।।

ବୋଲନ୍ତି ଶ୍ରୀରାମ   ଶୁଣ ବିଭୀଷଣ
କାରୁଣ୍ୟ କରୁ କମାଇ,
ରାବଣ ଠାରେ ତୋ   ଯେ ସ୍ନେହ ଜାଣିଲେ
ନ ମାରନ୍ତି ଲଙ୍କସାଇଁ ହେ,
ଯାନ୍ତି ଅଯୋଧ୍ୟାପୁର,
ସୀତା ଥାଆନ୍ତା ରାବଣପୁର ହେ ।।୭।।

ଭୟେ କରଣ   କ୍ରୋଧକୁ ସମ୍ଭାରଣ
ବୋଲଇ ସେ ବିଭୀଷଣ,
ତ୍ରୈଲୋକ୍ୟପତି   ଅଯୁଗତ କହିଲ
ସକଳ ଧର୍ମ ତ ଜାଣ ହେ,
ଶୋକ ନ କଲେ ମୂର୍ଖ,
ତୁମ୍ଭେ କାନ୍ଦନ୍ତ ସୀତାର ସାଇଁ ହେ ।।୮।।

ବେଳେ ବୋଲନ୍ତି   ଦୈତ୍ୟ ବଡ଼ ନିର୍ଦ୍ଦୟା
ସୋଦରେ ନ ଥାଇ ଦୟା,
ସହୋଦର ଭାଇଙ୍କ   କଥା ମରାଇଲା
ଏତେ ରହିଥିଲା ମାୟା ହେ,
ଏଣୁ କଲି ରୋଦନ,
ଲୋକ ବାଦୁଁ ହୋଇଲି ମୋକ୍ଷଣ ହେ ।।୯।।

ଆଜ୍ଞା ହେଉ ଏବେ ଆସ ତ ଶେ ପ୍ରଭୁ
ପାରୁଣେ ଜନକସୁତା,
ଅପାର ଦନ୍ତ ସେ ବାଞ୍ଛା କରଥିଲେ
ତେଙ୍କୁ ଦେଶ ହ୍ରଦୁ ଚନ୍ତା ହେ,
ଶୁଣି ବୋଲନ୍ତ ରାମ,
ତୁମ୍ଭେ ସକଳ କାର୍ଯ୍ୟରେ କ୍ଷମ ହେ ।।୧୦।।

ସେହି ସମୟେ ରବଣ ଅନ୍ତଃପୁରେ
କହିଲାକ ଅନୁଚର,
ରାମ ସଙ୍ଗେ କରି ବିଷମ ସମର
ମଲ ତୋ ପ୍ରାଣ ଈଶ୍ୱର ଗୋ
ଦେବୀ ଶୁଣିମା ବାଣୀ,
ନଷ୍ଟେ ଦେଖି ଅଇଲ ମୁଁ ଜାଣି ଗୋ ।।୧୧।।

ଭ୍ରତା ନିଧନ ଶୁଣିଣ ମନ୍ଦୋଦରୀ
ଘେନି ସପତଣୀ ଗଣ,
ରୋଦନ କରି ଅନ୍ତଃପୁରୁ ଆସନ୍ତେ
ତୁଟେ ନାନା ଆଭରଣ ଯେ,
କୁଚେ ତାଡ଼ନ୍ତ କର,
ହା ହା ନାଥ ବୋଲି ନିରନ୍ତର ଯେ ।।୧୨।।

ନୟନ ଲୋତକ ଅତି ଅସମ୍ଭାଳ
ଲୋଟନ୍ତ ବାଳା ଅବନୀ,
କୁଟିଳ କୁନ୍ତଳ ହୋଇଛି ମୁକୁଳ
ହା ରବ ମୁକୁଳ ଧ୍ୱନି ଯେ,
ବୋଲେ ଧନ୍ୟ ଏ ରାମ,
ଲଙ୍କପତି ଦେଲୁ ପୁର ଯମ ଯେ ।।୧୩।।

ବହୁକ୍ଷେଣରେ ବୋଲୁଥିଲ ବଚନ
ସଜଳକ ଲୁହ ନିଚୟ,
ସୂଚୀ ମୂନରେ ପର୍ବତ ତୁ ପୋଡ଼ିଲୁ
ସେସନ ସେ ଦୈତ୍ୟବର୍ଯ୍ୟ ଯେ,
ଏମନ୍ତରେ ଅବଳା,
ମିଳେ ଯହିଁ ସେ ବଶ୍ରବା ବଳା ଯେ ।।୧୪।।

ହା ହା ପ୍ରାଣନାଥ ବୋଲି ପୁଣ ପୁଣି
ଧଇଲା ସେ କୋଳ କରି,
ବଦନ ଅନାଇ ରୋଦନ କରଇ
ବକଲେ ମସ୍ତ କୁମାରୀ ଯେ,
ପୁଣ ଦିଏ ଚୁମ୍ବନ,
ପୁଣି କରେ ତନୁ ଆଲିଙ୍ଗନ ||୧୫||

ବୋଲଇ ହେ ନାଥ ମୋ ବୋଲ ନ କରି
ପ୍ରାଣ ହରାଇଲୁ ରଣେ,
ସୀତା ଦେଇଥିଲେ କ୍ଷମା ରଘୁନାଥ
ମାରନ୍ତାକି ତୋତେ ବାଣେ ଯେ,
ଆହେ ପ୍ରାଣ ଈଶ୍ୱର,
ତୋଳ ତୋ ମୁଖ ନିଶାକର ||୧୬||

ଏମନ୍ତ ପ୍ରକାରେ ବହୁତ ରୋଦନ
କରନ୍ତେ ବୋଲନ୍ତି ଶ୍ରୀରାମ,
ଯାଅ ଲଙ୍କପତି ଯାଅ ମନ୍ଦୋଦରୀ
ହେଉ ପତି ନିଜ ଧାମ ହେ,
ଲଙ୍କପତି ଦହନ,
ନେଇ କର ଏବେ ତତକ୍ଷଣ ହେ ||୧୭||

ଶୁଣି ରାମବାଣୀ ସେହୁ ଦୈତ୍ୟମଣି
ରାଣୀ ସମୀପେ ପ୍ରବେଶ,
କର ବେନି ଯୋଡ଼ି ବୋଲେ ଠାକୁରାଣୀ
ଶୁଣିମା ରାମ ସନ୍ଦେଶ ଗୋ,
ବେଗେ କର ବହନ,
ଲଙ୍କନାଥ ସ୍ୱେ ହେଉ ଦହନ ଯେ ||୧୮||

ତୋ ବୋଲ ମୋ ବୋଲ ନ କରିବା ଫଳ
ପାଇଲା ଲୋକ ରାବଣ,
ଶ୍ରୀରାମ ଘରଣୀ ହେରାଇ ଆଣିଲା
ଅଟଇ ଯେ ମୂଢ଼ପଣ ଯେ,
ଧାତା ବୋଲ ଲଙ୍ଘିଲା,
ତେଣୁ ଏ ରାବଣ ବଧ ହେଲା ଯେ ||୧୯||

ଯେବେ ବଜେ କର ଅନ୍ତଃପୁରେ ତୁମ୍ଭେ
ଶ୍ରୀରାମ ବାଣୀ ଯେସନ,
ଶୋକ କଲେ ଅବା ଆଉ କ ହୋଇବ
ତୁମ୍ଭେ ତ ସୁବୁଦ୍ଧି ଘଣ ଗୋ,
ସେହୁ ବଚନ ଶୁଣି
ପୁରେ ପ୍ରବେଶ ରମଣୀମଣି ଯେ ।।୨୦।।

ବଭୀଷଣଙ୍କୁ ଯେ ବୋଲନ୍ତି ଶ୍ରୀରାମ
ଦଶଗ୍ରୀବ କାର୍ଯ୍ୟ କର,
ଆଜ୍ଞା ଘେନି ଶିରେ ଯୋଡ଼େ ବେନିକର
କଲ୍ ସେହୁ ଉପଗ୍ଭର ହେ,
ଏଥୁ ଅନ୍ତରେ ରାମ,
ଡାକେ ଧର ହନୁମନ୍ତ ନାମ ।।୨୧।।

ବୋଲନ୍ତି ପାବେମ୍ପ ଚଳ ସୀତା ପାଶେ
କହିବ ମଲ୍ ରାବଣ,
ତୋହ ଲାଗି ସେହୁ ବାନ୍ଧିଲେ ସମୁଦ୍ର
କଲେ ଲଙ୍କା ରଣଭଣ ସେ,
ବଜେ କରାଇ ଆଣ,
ଆଜ ଦେଖିବ ମୋ ପ୍ରାଣଧନ ଯେ ।।୨୨।।

ଶୁଣି ଶ୍ରୀରାମ ବଚନ ହନୁମାନ
ସୀତା ପୁରରେ ମିଳଲ୍,
ଶିରେ କର ଦେଇ ବୋଲେ ମହା ସନ୍ତ
ତୋ ଲାଗି ରାବଣ ମଲ୍ ଗୋ,
ଶୁଣି ମାରୁତ ବାଣୀ
ଆନନ୍ଦିତ ଜନକ ନନ୍ଦିନୀ ।।୨୩।।

ଗଦ ଗଦ ସ୍ୱରେ କହି ନ ପାରନ୍ତେ
ବୋଲଇ ସେ ହନୁମନ୍ତ,
କମ୍ପା ବଚନ ନ କହ ଠାକୁରାଣୀ
ରାମରେ କହ ଉଦନ୍ତ ଯେ,
ବୋଲେ ଜନକ ବାଳୀ
ଶୁଣ କପିବର ମହାବଳୀ ଯେ ।।୨୪।।

ତୋତେ ଦେବାକୁ ବ୍ରହ୍ମାଣ୍ଡରେ ମୁଁ
ଆନ ଦେଖିଛୁ ଆନ ଧନ,
ଶ୍ରୀରାମ ଦେଖିବାକୁ ରଖିଅଛନ୍ତି
ନୋହିଲେ ଦଅନ୍ତି ପ୍ରାଣ ଯେ,
ବୋଲେ ପବନ ସୁତ
ଏହୁ ବର ଦିଅ ଜଗନ୍ନାଥ ଗୋ ॥୨୫॥

ଆଜ୍ଞା ହେଉ ଏହୁ ରାକ୍ଷସୀଗଣଙ୍କୁ
ବିବିଧ ଦଣ୍ଡ ବିହିତ,
କାହା କର୍ଣ୍ଣ ନାସା ଛେଦି ପକାଇବି
କାହା ନୟନ ଖୋଳିବି ଯେ,
ସୀତା କହେ ପ୍ରବୋଧି,
ଯେହୁ ନାଶ ନ କରିବା ବଧି ହେ ॥୨୬॥

ଯେହ୍ନେ ସେବକ ନୃପ ଯାହା ବୋଇଲା
ତେଣୁ ବୋଲୁଥିଲେ ମୋତେ,
ରାବଣ ମରନ୍ତେ ଜଡ଼ ହୋଇଛନ୍ତି
ଦେଖ ଏହାଙ୍କୁ ଅଗ୍ରତେ ଯେ,
ଶୁଣି ସୀତୟା ବାଣୀ
ଆନନ୍ଦିତ ସେହୁ କପିମଣି ଯେ ॥୨୭॥

ବୋଇଲେ ଜାନକୀ ଶୁଣ ହେ ମାରୁତି
ରାବଣ ତ ହେଲା ବଧ,
ଏବେ ଶ୍ରୀରାମ ମୁଖ ପଦ୍ମ ଦେଖିଣ
ନେତ୍ର ଭଙ୍ଗ ହେଉ ବୋଧ ହେ,
ସୀତା ବଚନ ଶୁଣି,
ଆନନ୍ଦିତ ସେହୁ କପିମଣି ଯେ ॥୨୮॥

ପ୍ରଣାମ କରିଣ ଗଗନେ ଉଡ଼ମି
ଅଇଲା ପବନ ସୁତ,
କରପଦ୍ମ ଯୋଡ଼ି କହେ ଦେବ ଶୁଣ
ତୋର ପ୍ରିୟାର ଚରିତ୍ର ଯେ,
ତୋର ମୁଖ ଦେଖିବ,
କରିଅଛି ମହାସତୀ ଭାବ ହେ ॥୨୯॥

ଶୁଣି ସେ ରାମ ପବନ ସୁତ ବାଣୀ
ଅବନୀକି ଦୃଷ୍ଟି ଦେଇ,
କିଛି ନ କହି ମଉନ ହୋଇଲେ
ହୃଦୟରେ ଶୋକ ବହି ସେ,
ବୋଲେ ଶୁଣ ସୁଗ୍ରୀବ,
ମୋର.................. ||୩୦||

# ସତଚାଳିଶ ଛାନ୍ଦ

## ( ରାଗ—ମଙ୍ଗଳ )

ଏଥୁ ଅନନ୍ତରେ ରାମ ନିତ୍ୟକର୍ମ ସାରି ।
ବିଭୀଷଣଙ୍କୁ ହକାରି କହେ ନୃପଧାରୀ ||୧||

ଶୁଣ ଲଙ୍କପତି ମୋର ଏହୁ ସେ ବଚନ ।
ଦେଖିବି ଭରତ ମୁଖ ଯିବି ନିଜ ସ୍ଥାନ ||୨||

ବୋଲଇ ସ୍ନେହେ ଧନଦରେ ଗମିବ ପୁଷ୍ପକ ।
ଆଣ ବସି ଯିବା ଯେବେ ଦେଖନ୍ତୁ ସର୍ବଲୋକ ସେ ||୩||

ଆଜ୍ଞା ପାଇ ବିଭୀଷଣ କଲା ଦିବ୍ୟଯାନ ।
ଦେଖି ଆନନ୍ଦ ହୋଇଲେ ଜାନକୀ ରମଣ ସେ ||୪||

ନାନା ରତ୍ନ ଭିତରେ ଦିଶୁଅଛି ଶୋଭା ।
ଗଞ୍ଜୁଅଛି ଉଦୟ କାଳର ରବି ଆଭା ସେ ||୫||

ପାରିଜାତକ କୁସୁମେ ହୋଇଛି ଭୂଷଣ ।
ଯେକ ବଳ ପୁର ପ୍ରାୟେ ଦିଶଇ ରଞ୍ଜନ ସେ ||୬||

ପଦ୍ମ ଶଙ୍ଖ ନିଧିରେ ସେ ହୋଇଛି ସଂଯତ ।
ଶୀତକର କରେ ସେହୁ ହୋଇଛି ଉଦିତ ସେ ||୭||

ମଣି ଗ୍ରୀବେ କର ଦିଶୁଅଛୁ ଅଲକ୍ଷିତ ।
ଶ୍ୱେତଛତ୍ର କରେ ସେହୁ ହୋଇଛୁ ଉଦିତ ଯେ ॥୮॥

ତହିଁ ତଳେ କଲେ ସୀତା ଭୁଲେ ରାବଣୀର ।
ଅଳକା ମନ୍ଦିରରେ ହୋଇଛୁ ମନୋହାରୀ ଯେ ॥୯॥

ଦକ୍ଷିଣସ୍ଥ ପୁରେ ବସିଲେ ସୁଗ୍ରୀବ ଲକ୍ଷ୍ମଣ ।
ଅଙ୍ଗଦ ଜମ୍ବେବ ନଳ ନୀଳକ ସୁଷେଣ ଯେ ॥୧୦॥

ହନୁମନ୍ତ ଦ୍ୱିବିଦ କୁମୁଦ କାଳଞ୍ଜନ ।
ପବସ ଚନ୍ଦନ ଯେ କେଶରୀ ରମାପୁଣ ଯେ ॥୧୧॥

ଉତ୍ତରସ୍ଥ ପୁରେ ବସିଲେ ବୀର ବିଭୀଷଣ ।
ରାଜସ ମନ୍ତ୍ରୀ ମଣ୍ଡଳୀ ହେନ ସଙ୍ଗତେଣ ଯେ ॥୧୨॥

ଆଉ ପୁରମାନଙ୍କରେ ବୀରମାନେ ବସି ।
ବିମାନ ଆକାଶ ପାଶେ ନଭେ ଯେହ୍ନେ ଶଶୀ ଯେ ॥୧୩॥

ବାଜଇ ବିବିଧ ବାଦ୍ୟଗଣ କୁତୂହଳ ।
ପ୍ରଳୟ କାଳରେ କି ଶୁଭଇ ଘନରୋଳ ଯେ ॥୧୪॥

ଲଙ୍କା ଆୟତନ ଦିଶେ ଅତି ମନୋହର ।
ଜାନକୀଙ୍କି ଦେଖାଇ କହନ୍ତି ରୂପଧାରୀ ଯେ ॥୧୫॥

ଏଠାରେ ଦେଖ ଗୋ ପ୍ରିୟେ ମଲାଟି ରାବଣ ।
ଏଠାରେ ଯେ ପଡ଼ିଅଛୁ ଦେଖ କୁମ୍ଭକର୍ଣ୍ଣ ଯେ ॥୧୬॥

ଏଠାରେ ଯେ ଇନ୍ଦ୍ରଜିତ ନାଗପାଶ ଯେନ ।
ଆମ୍ଭଙ୍କୁ ବାନ୍ଧିଲା ଦେଖିଅଛ ଚନ୍ଦ୍ରାନନା ଗୋ ॥୧୭॥

ଏ ଠାବରେ ସେହ୍ନଟି ମାଇଲା ବ୍ରହ୍ମଶର ।
ଏ ଠାବରେ ମାୟାସୀତା ହାଣିଲା ପାମର ଗୋ ॥୧୮॥

ଏହି ସ୍ଥାନରେ ତାକୁ ନାଶିଲା ସଉମିତ୍ରୀ ।
ଏହିଟି ସୁବଳ ଗିରି ଦେଖ ହେମ ଗୋରୀ ଗୋ ॥୧୯॥

ଏ ଠାବରେ ଆମ୍ଭେ କରିଥିଲୁ କନ୍ଧାବାର ।
ଏଠାରେ ଶକ୍ତି ମାଇଲା ରାବଣ କୁମର ଗୋ ॥୨୦॥

ଦେଖ ଏହୁ ଅଶୋକ ବନକା ତୁମ୍ଭ ବାସ ।
ଯାହା କରିଥିଲା ଏ ମରୁତ ସୁତ ନାଶ ଗୋ ॥୨୧॥

ଦେଖ ଏ ରାବଣ ପୁର ଅତି ମନୋହର ।
ଅମରାବତୀ ପରାୟେ ଦିଶଇ ସୁନ୍ଦର ଗୋ ॥୨୨॥

ସୁନାସୀର ଶୋଭାବନ ବଢ଼ାଏ ସନ୍ତତ ।
ଚନ୍ଦନ ଧୂମରେ ଯେ ମୋହୁଛି ମୁନିମତ ଗୋ ॥୨୩॥

ଅଗସ୍ତି ଭରଦ୍ୱାଜ ଯେ କଶ୍ୟପ ଶୋଭନ ।
ବନଚୟେ ମନକୁ ଦେଉଛି ତୁଷ୍ଟପନ ଗୋ ॥୨୪॥

କରି କେଶରରେ ହୋଇଅଛି ବିରାଜିତ ।
କୂଳଜ ଗଣରେ ଯେସନେ ଦିଶୁଛି ଶୋଭିତ ଗୋ ॥୨୫॥

ପ୍ରଳୟ କେତୁ ପରାୟେ ହୋଇଛି ଉଦୟ ।
ଲଙ୍କା ନାଶ କରିବାରେ ଯେଉଣେ ଯେ ବଦ୍ଧିତ ଗୋ ॥୨୬॥

ମହା ବଳରେ ହୋଇଛି ଏହୁ ଭୟଙ୍କର ।
ମନ୍ଦ ଗମନରେ ଏହୁ ଦିଶୁ ଛି ରୁଚିର ଗୋ ॥୨୭॥

ଅମୃତ କରରେ ହୋଇଅଛି ସଦାପୂର୍ଣ୍ଣ ।
ଶଙ୍ଖ ପ୍ରବରଦେ ହୋଇ ଅଛଇ ରଞ୍ଜନ ଗୋ ॥୨୮॥

ଦେଖ ଏହୁ ପାରାବାର ଉତରର ତୀର ।
କୁଶ ଶଯ୍ୟା ଏଠାରେ ମୁଁ କଲି ନାଥବର ଗୋ ॥୨୯॥

ଏଠାରେଟି ବିଭୀଷଣ ପଶିଲ ଶରଣ ।
ସେହିଠାରେ ଭେଟିଲ ବରୁଣ ରାଜନ ଗୋ ॥୩୦॥

ଦେଖ ଏହୁ ଚନ୍ଦ୍ରାନନା ସେହୁ ମାଲ୍ୟବନ୍ତ ।
ସେଠାରେଟି ବଞ୍ଚିଲି ମୁଁ ବରଷା ଦୁରନ୍ତ ଗୋ ॥୩୧॥

ଦେଖ ଏହୁ ଋଷ୍ୟମୂକ ଗିରିରେ ମୃଗାକ୍ଷୀ ।
ସୁଗ୍ରୀବରେ ମିତ ହେଲି କରି ଅଗ୍ନି ସାକ୍ଷୀ ଗୋ ॥୩୨॥

ସେଠାରେଟି ପାଇଲି ତୋହର ଅଳଙ୍କାର ।
ଏହୁ ପମ୍ପା ସର ତୀର ଦେଖ ବାମାବର ଗୋ ॥୩୩॥

ସେହୁଟି କିଷ୍କିନ୍ଧାପୁର ଦେଖରେ ତରସୀ ।
ବାଳି ହତ କରି ସୁଗ୍ରୀବରେ ଦେଲି ଶିରୀ ଗୋ ॥୩୪॥

ଦେଖ ଏହୁ ଗୋଦାବରୀ ଅତି ମନୋହର ।
ଯହିଁ ଦୂର୍ବେ କ୍ରୀଡ଼ା କରିଥିଲୁ ପ୍ରିୟା ମୋର ଗୋ ॥୩୫॥

ଏ ଠାବରେ ଜଟାୟୁଷ ମାଇଲ ରାବଣ ।
ତୋ ଚରିତ କହି ସେହୁ ତେଜିଲା ପରାଣ ଗୋ ।।୩୬।।

ଦେଖ ଏହୁ ପଞ୍ଚବଟୀ ଆମ୍ଭ ପର୍ଣ୍ଣ କୋଟି ।
ତୋ ବିଚ୍ଛେଦ କଲା ଯହୁଁ ନ ରହିଁ ବିମୋକ୍ଷୀ ଗୋ ।।୩୭।।

ଏ ଠାବରେ ମୁହିଁଟି ମାଇଲି ମାୟା ମୃଗ ।
ଯେ ଠାବରେ ଭୁହି କଲୁ ଲକ୍ଷ୍ମଣେ ବିରାଗ ଗୋ ।।୩୮।।

ଦେଖ ଏହୁ ଚିତ୍ରକୂଟ ମନୋହର ଅନ୍ତ ।
ଏ ଠାବକୁ ଭରଥଟି ଅଇଲା ସୁଦନ୍ତୀ ଗୋ ।।୩୯।।

ଦେଖ ଏ ଫଲଗୁ ନଦୀ ମରାଳ ଗମନା ।
ଯେ ଠାବରେ ବାଲିପିଣ୍ଡ ଦେଲୁ ପ୍ରିୟେ ଅନା ଗୋ ।।୪୦।।

ଏହୁ ଚିତ୍ରକୂଟ ସ୍ଥାନ କରିନ୍ଦ୍ର ଗମନା ।
ଇନ୍ଦ୍ରକାକ କ୍ଷତ କଲା ସ୍ତନ ନଖ ଘେନ ଗୋ ।।୪୧।।

ଦେଖ ଏହୁ ବାଞ୍ଛାବଟ ତ୍ରିବେଣୀ ସଙ୍ଗତ ।
ଯେ ସ୍ଥାନରେ ଛନ୍ତି ଭରଦ୍ୱାଜ ଯତି ଗୋ ।।୪୨।।

ଏତେ ବୋଲି ସେ ସ୍ଥାନେ ବିମାନ ରହାଇଲେ ।
ଋଷିଙ୍କର ଚରଣେ ବନ୍ଦନ ବେଗେ କଲେ ଗୋ ।।୪୩।।

ଦେଖି ସାନନ୍ଦ ହୋଇଲେ ଗୁରୁଙ୍କ ନନ୍ଦନ ।
ରାମଙ୍କୁ ପୂଜିଲେ ରାଜ ଉପଚାରେ ପୁଣ ଗୋ ।।୪୪।।

ଦିବ୍ୟ ଆସନେ ବସାଇ ବୋଲନ୍ତି ବଚନ ।
ଆଜ ଯେଉଠାରେ ରହଣି କର ରଘୁରାଣେ ଯେ ।।୪୫।।

ଋଷି ଆଜ୍ଞା ଶୁଣି ରାମ ସ୍ୱୀକାର କରି ।
ଭରଥ ଚରିତ୍ର ପଚାରିଲେ ରାବଣାରି ଯେ ।।୪୬।।

ନିଶ୍ଚିନ୍ତ ହୋଇ ରହିଲେ ତ୍ରିବେଣୀର ସ୍ଥାନ ।
ହନୁକୁ ଡାକିଣ ଆଜ୍ଞା ଦେଲେକ ବହନ ଯେ ।।୪୭।।

ଆମ୍ଭ ଆଗମନ କହ ଭରତ ଗ୍ରାମୁର ।
ଗଲାବେଳେ ପଶିଯିବୁ ଶୃଙ୍ଗବେର ପୁର ଯେ ।।୪୮।।

ଗୁହ ନାମେ ଶବର ଯେ ଆମ୍ଭର ମଇତ୍ର ।
ତାହାକୁ କହିବୁ ଭୁହି ଯେତେକ ଚରିତ ଯେ ।।୪୯।।

ଆଜ୍ଞା ପାଇ ତତକ୍ଷଣେ ପାବେଣ୍ଣି ଗମିଲ ।
ଶୃଙ୍ଗବେ(ଣୀ)ର ପୁରେ ଯାଇ ପ୍ରବେଶ ହୋଇଲ ଯେ ॥୫୦॥

ଶ୍ରୀରାମ ବିଜୟ ତାଙ୍କୁ ସମସ୍ତ କହିଣ ।
ନନ୍ଦୀଗ୍ରାମେ ପ୍ରବେଶ ହୋଇଲେ ତତକ୍ଷଣ ଯେ ॥୫୧॥

ସକଳ ନୃପତି ଯେବେ ଶ୍ରୀରାମ ତନୁଜ ।
ସଙ୍ଗ କରିଥିଲେ ହେଁକେ ପବନ ନନ୍ଦନ ଯେ ॥୫୨॥

କହିଲ ରାବଣ ମାରି ଆଇଲେ ଶ୍ରୀରାମ ।
ବାଟରେ ରଖିଲେ ଭରଦ୍ୱାଜ ତପୋଧନ ଯେ ॥୫୩॥

ଋଷିବର ଅନେକ ପ୍ରକାରେ ତୁହାଇଲେ ।
ତୁମ୍ଭେ ଜାଣିବାକୁ ମୋତେ ଭରତେ ପେଷିଲେ ଗୋ ॥୫୪॥

ଆନନ୍ଦ ହେଲେ କୈକେୟୀ ତନୟ ।
ଉଠି ଆଲିଙ୍ଗନ କଲେ ପବନର ପୁଅ ଯେ ॥୫୫॥

ଅତି ହରଷ ହେଲେ ଅନେକ ପ୍ରବେଶ ।
ନାନା ରତ୍ନ ଅଳଙ୍କାର କରି ସୂକ୍ଷ୍ମବାସ ଯେ ॥୫୬॥

ଦାସୀ ଦାସ ତୁରଙ୍ଗ ଦ୍ୱିରଦ ରଥଗଣ ।
ଦେଇଣ ସନ୍ତୋଷ ନୂନ୍ହେଁ କୈକେୟୀ ନନ୍ଦନ ଯେ ॥୫୭॥

ରଜନୀ ପାହିଲା ଉଦେ ହୋଇଲା ଅରୁଣ ।
ଦିଗଙ୍ଗନାମାନ ତ ସକଳ ପ୍ରକାଶନ ଯେ ॥୫୮॥

କରେ ଆଲିଙ୍ଗନ କଲା ପଦ୍ମିନୀ ନାୟକ ।
ଚକୋର ଆନନ୍ଦ ହେଲା ଦ୍ୱିରଫ ମାଳକ ଯେ ॥୫୯॥

ଏମନ୍ତେ ଦେଖିଣ ଧର୍ମ ନିତ୍ୟକର୍ମ ସାରି ।
ପୁଷ୍ପକରେ ଆରୋହିଲେ ହେନ ନିଜ ନାରୀ ଯେ ॥୬୦॥

ଗଗନ ମାର୍ଗରେ ଯାନ କରଇ ଗମନ ।
ନିମିଷକେ ମିଳିଲା ସେ ମିଥିର ଭୁବନ ଯେ ॥୬୧॥

ଦେଖିଣ ଗୁହ ଶବର ହେଲା ପ୍ରଣମିତ ।
ରାମଙ୍କୁ ପୂଜିଲା ସେହୁ ହେନଣ ବହୁତ ଯେ ॥୬୨॥

ଏମନ୍ତେ ତାହାକୁ ହେନ ରଘୁକୁଳ ବୀର ।
ଆକାଶେ ବିମାନ ବର ଗମେ ଧୀର ଧୀର ଯେ ॥୬୩॥

ବୋଲନ୍ତି ଭରଥ ଶୁଣ ପବନ ନନ୍ଦନ ।
ଯିବା ଶ୍ରୀରାମ ଚରଣ କରିବା ଦର୍ଶନ ଯେ ॥୬୪॥

ଏମନ୍ତ ବୋଲଣ ସଙ୍ଗେ ଘେନ ପାତ୍ରମନ୍ତ୍ରୀ ।
ସକଳ ରାଜନଗଣ ସଙ୍ଗତେ ଅଛନ୍ତି ଯେ ॥୬୫॥

ରାଜାମାନେ ଦାନ୍ଦୋଳରେ କରନ୍ତି ବିଜୟେ ।
ରାମ ଦରଶନ କରି ଅଛନ୍ତି ସଦୟେ ଯେ ॥୬୬॥

ବଶିଷ୍ଠ ଗଜକୁ ଆରୋହଣ ତତକ୍ଷଣ ।
ଶ୍ରୀରାମଙ୍କୁ ଦେଖିବାକୁ କଲେକ ଗମନ ଯେ ॥୬୭॥

ଜାବାଳୀ କଶ୍ୟପ ବାମଦେବ ସୁମନ୍ତକ ।
ବାହାର ହୋଇଲେ ଚଢି ସର୍ବେ ରଥ ଏକ ॥୬୮॥

ବୋଲନ୍ତି ଭରତ ଶୁଣ ପବନ କୁମର ।
ସେତେବେଳ ଯାଏ ନ ଦଶିଲେ ରଘୁବୀର ଯେ ॥୬୯॥

ଏମନ୍ତ ଶୁଣି ହନୁ ଶୂନ୍ୟେ ଦେଲା ଦୃଷ୍ଟି ।
ଦେଖିଲା ଆସେ ବିମାନ ଅମ୍ବରକୁ ଘୋଟି ଯେ ॥୭୦॥

ବୋଇଲା ଶୁଣିମା ବୀର କୈକେୟୀ ନନ୍ଦନ ।
ଦେଖ ଦେଖ ଗଗନରେ ସେହୁ ରାମ ଯାନ ଯେ ॥୭୧॥

ଏମନ୍ତ ବୋଲଣ ସର୍ବେ ଯାନୁ ଉତ୍ତୁରିଲେ ।
ଅମ୍ବରକୁ ଲକ୍ଷ୍ୟକରି ନିଷ୍ଟିନେତ୍ରେ ରହିଲେ ଯେ ॥୭୨॥

ଏହି ସମୟେ ପୁଷ୍ପକ ହେଲା ଭୂମିଗତ ।
ସୀତା ହସ୍ତ ଧରି ଆସେ କଉଶଲ୍ୟା ସୁତ ଯେ ॥୭୩॥

ଦେଖି ସର୍ବେ ଗଡ଼ିଯାଇ ଶୋଇଲେ ଭୂମିର ।
ମାତାଗଣ ଦେଖିଣ ହୋଇଲେ ଆଗୁସାର ଯେ ॥୭୪॥

ବଶିଷ୍ଠ ଚରଣେ ରାମ କଲେକ ପ୍ରଣାମ ।
ମାତାଗଣ ଦେଖିଣ ନମିଲେ ଜଣେ ଜଣ ଯେ ॥୭୫॥

ସେବକ ଆରକରେ ଆନନ୍ଦ ହୋଇ ମୁନିଗଣ ।
ଶ୍ରୀରାମ ବଦନ ସେ କରନ୍ତି ଆଲୋକନ ଯେ ॥୭୬॥

କଉଶଲ୍ୟା ଚରଣେ ନମିଲେ ବଇଦେହୀ ।
ଶିର ଶୁଙ୍ଘି ଆଲିଙ୍ଗନ କଲେ ମାତା ଦେଇ ଯେ ॥୭୭॥

ଆନନ୍ଦ ଅଶ୍ରୁରେ ପୂର୍ଣ୍ଣ ହେଲ ସର୍ବଜନ ।
ଯିବାବେଳେ ଶୋକଜଳ କର ବଧ୍ୱଂସନ ଯେ ॥୭୮॥

ଶ୍ରୀରାମ ଚନ୍ଦ୍ର ଦର୍ଶନେ ଆନନ୍ଦ ଜଳଧି ।
ଉଚ୍ଛଳିତ ହେବାରେ ଲଙ୍ଘିଲ କୂଳବୁଦ୍ଧି ଯେ ॥୭୯॥

ନୟନ ଚକୋରମାନ ଲଭିଲେ ଉଲ୍ଲାସ ।
ଶୋକମତ ଷତ ଭାରେ ଲଭିଲେ ସମ୍ପଦ ଯେ ॥୮୦॥

ହୃଦୟ କୁମୁଦମାନେ ହେଲେ ପ୍ରମୋଦିତ ।
ସୁଧା ପୂର୍ଣ୍ଣ ହେଲେ ତହୁଁ ସକଳ ଜଗତ ଯେ ॥୮୧॥

ସନ୍ତାପ ତେଜିଲେ ଯେ ପରମ ହଂସ କୁଳ ।
କରବାକରଣ ଦେଖି ଲଭିଲେ ଆକୁଳ ଯେ ॥୮୨॥

×ନା ×ରଜ ଯେ ଆନନ୍ଦ ବଢ଼ାଇଲ ।
ଭୂଳା ଶ୍ରଣି ବଳାପରେ ହରଷ ବହିଲ ଯେ ॥୮୩॥

ଗୁରୁଜ ବିଶେଷଗଣ ହୋଇଲେ ବେଷ୍ଟିତ ।
ଦ୍ୱିଜନନ୍ଦ କରବର ଅମ୍ବରେ ଶୋଭିତ ଯେ ॥୮୪॥

ଏମନ୍ତ ନନ୍ଦୀଗ୍ରାମରେ କଲେକ ବିଜୟେ ।
ସେ ପୁର ସୁଖ ଆନନ୍ଦ ମୁଖେ କହି ନୋହେ ॥୮୫॥

ସହସ୍ର ମୁଖରେ ଅବା କହନ୍ତା ଯେ ଶେଷ ।
କହର ବର୍ଣ୍ଣନା କଲେ ସେ କି ହୋଏ ଶେଷ ॥୮୬॥

ଶ୍ରୀରାମ ବିଳାସ ସତସ୍ୱଳଣ ଏ ଗ୍ରନ୍ଥ ।
ଭୃଥ ସମାଗମ ନାମ ସ୍ୱପୁର ଆନନ୍ଦ ଯେ ॥୮୭॥

ଶ୍ରୀରାମ ଚରଣେ ବେନି କରିଣ ଶରଣ ।
ଭଣେ ନୃପ ଧନଞ୍ଜୟ ସ୍ତୁତି ଯାଚିଜନ ଯେ ॥୮୮॥

# ଅଠଚାଳିଶ ଛାନ୍ଦ

## ( ରାଗ—ମାଳବ )

ଏମନ୍ତ ପ୍ରକାରେ ଚର୍ଚ୍ଚି ଗଲେ କେତେଦିନ ।
ମିତ୍ରଗଣ ଘେନ ମିଳେ କୈକେୟୀ ନନ୍ଦନ ॥୧॥

ଶ୍ରୀରାମ ପାଦ ଯୁଗଳ ଦରଶନ କଲେ ।
ଶିରେ କର ଦେଇଣ ଗ୍ରାମରେ ଜଣାଇଲେ ॥୨॥

ତୁମ୍ଭର ଆଜ୍ଞାରେ ମୁହିଁ ରାଜା କରି ରାଜା ।
ଏବେ ଶ୍ରୀରାମ କାହାକୁ ଦେବ ତୁମ୍ଭ ଇଚ୍ଛା ॥୩॥

ବେଗ ଅଭିଷେକ ହୁଅ ବସି ସିଂହାସନ ।
ଦେଖିଣ ଆନନ୍ଦ ହୋନ୍ତୁ ଅଖିଳ ସ୍ଵଜନ ॥୪॥

ଭରତର ଏସନ ବାଣୀ ଶୁଣି ରଘୁବୀର ।
ଅନାଇଲେ ପୁରତରେ ବ୍ରହ୍ମାର କୁମର ॥୫॥

ବୋଲନ୍ତି ସେ ମୁନିବର ଶୁଣ ରାମ ବାଣୀ ।
ଏରଦିନ ଅଭିଷେକ ଅଛୁ ଆମ୍ଭେ ଗଣି ॥୬॥

ଏଦିନ ଚନ୍ଦ୍ର ସଙ୍ଗତେ ଜୀବ ଅଛୁ ଜାଣ ।
ଗୁରୁ ପୁଷ୍ୟା ଯୋଗ ଏହୁ ଶୁଭର କାରଣ ॥୭॥

ଆଜ୍ଞା ହେଉ ସକଳ ସମ୍ଭାର ମାନ ପାଇ ।
ପୁର ମଣ୍ଡିଣି ଯେ କର ତତକ୍ଷଣେ ଯାଇ ॥୮॥

ଦ୍ଵିଜବରମାନେ ଯେ କରନ୍ତି ହୋମମାନ ।
ରାଜଧାନୀ ହୋଇଅଛି କଛି ଆଶୋଭନ ॥୯॥

ଏମନ୍ତେ ବଶିଷ୍ଠ ମୁଖୁ ଶୁଣିଣ ଶ୍ରୀରାମ ।
ବ୍ରହ୍ମା ନନ୍ଦନକୁ ଡାକି କହନ୍ତି ଶ୍ରୀରାମ ॥୧୦॥

ମୈନ୍ଦକୁ କହିଣ ଦୂତ ପେଷିବା ସତ୍ଵର ।
ଆଣନ୍ତୁ ପ୍ରେ କପିମାନେ ଚାରି ସିନ୍ଧୁ ନୀର ॥୧୧॥

ଜମ୍ଭେବ କହନ୍ତେ ସୁଗ୍ରୀ ଦୂତ ବରଗିଲେ ।
ଚାରି ଯେ ସାଗରୁ ଜଳ ଆଣି ଯେ ମିଳିଲେ ॥୧୨॥

ଗଙ୍ଗାଦି ସକଳ ତୀର୍ଥମାନଙ୍କ ଜୀବନ ।
ଧେନକର ପୁରେ ପରବେଶ କପିସୈନ୍ୟ ॥୧୩॥

ଏମନ୍ତରେ ସେତ୍ତୁବନ ପ୍ରବେଶ ଭୂଭର୍ତ୍ତା ।
ସର୍ବ ନର୍ଗ କର ଆସି ମିଳିଲା ସୁମନ୍ତ ॥୧୪॥

ବାଜିଲେ ବବଧ ବାଦ୍ୟ ହେଲେ ସେତ୍ତୁ ସଜ ।
କେ ସାଜେ ତୁରଙ୍ଗ ରଥ କେହୁ ସାଜେ ଗଜ ॥୧୫॥

ଏହି ସମୟରେ ସ୍ନାନ ଉପସ୍କରମାନ ।
ଘେନି ସେବକ ଜକର ମିଳିଲେ ବହନ ॥୧୬॥

ଜଟାଭର ଫେଇ ରାମ କଲେକ ସ୍ନାନ ।
ଆଜ୍ଞାଦେଲେ ସାନୁଜକୁ ସ୍ୱେ ବଧି ବଧାନ ॥୧୭॥

ଏ ବେଳେ ଦ୍ୱିଜବେଶ ହୋଇଣ ରାବଣାରି ।
ସୀତା ଘେନ ପୁଷ୍ପକ ପରେ ବଜେ କର ॥୧୮॥

ଲକ୍ଷ୍ମଣ ଭରତ ଘେନି ଆରୋହିଲେ ଯାନ ।
ମତ୍ତ ଗଜ ଚଡ଼ି ଆଗେ ସୁମିତ୍ରା ନନ୍ଦନ ॥୧୯॥

ରଥବର ଚଡ଼ିଛନ୍ତି ସକଳ ନୃପତି ।
ଗଜ ଯୂଥ ଚଢ଼ିଣ ବାହାର ପନ୍ତି ପନ୍ତି ॥୨୦॥

ସୁବର୍ଣ୍ଣ ରଥେ ବସିଲ କିଷ୍କିନ୍ଧାର ନାଥ ।
ରତ୍ନ ମୁକୁଟ ଶୋଭପାଏ ତାର ମାଥ ॥୨୧॥

ରାକ୍ଷସଗଣ ଘେନିଣ ବିଶ୍ରବା ନନ୍ଦନ ।
ମହାରଥ ମହାରଥେ ସେହ୍ନେ ଶୋଭବନ ॥୨୨॥

ମହାରମ୍ଭ ହୋଇଣ ଚଳିଲା ରାମଦଣ୍ଡ ।
ପାଦଭରେ ଟଳମଳ ଅଶେଷ ବ୍ରହ୍ମାଣ୍ଡ ॥୨୩॥

ମାତାଗଣ ଘେନିଣ ବଶିଷ୍ଠ ଆଗେ ଯାନ୍ତି ।
ସଙ୍ଗତରେ ଋଷିମାନେ ବମାନେ ବଜନ୍ତି ॥୨୪॥

ଅଶ୍ୱ ଖୁର ରଜେ ଆଚ୍ଛାଦିଲା ତ ତମିର ।
ଚମ ପୁର ରୋଷେ କ ସ୍ୱେ ଜଣିଲ ମିହିର ॥୨୫॥

ଶାରଙ୍ଗ ଶବଦ ପୂରି ରହିଲା ଗଗନେ ।
ରାମ ଜୟେ ଦେଖି ସେ କ ହଲେ ଜୟେ ସ୍ୱନେ ॥୨୬॥

କୋକ ଲୋକ ଶୋକ ଶୋକ ପରାସ୍ତ ହୋଇଲା ।
ଯୁବାମାନଙ୍କର ଯେ ଆନନ୍ଦ ଦାତା ହେଲା ॥୨୭॥

ଏମନ୍ତ ପ୍ରକାରେ ରାମ ସୈନ୍ୟ ଚଳିଯାଇ ।
ସରଯୂ ତୀରେଣ ଯେ ଅଯୋଧ୍ୟାପୁର ସାଇଁ ॥୨୮॥

ଜଗତ୍ତି ସେଚ ଅଶନ ହଶେ ଚୟୁ ଚୟୁ ।
ଗନ୍ଧବନ୍ଧ ବନ୍ଧେ ନାଚେ ପତାକା ନଚୟୁ ॥୨୯॥

ଶିଖରେ ନୃତ୍ୟ କାହ୍ନି ସେ ଶିତିକଣ୍ଠମାନ ।
ଅଗରୁ ଧୂପ ଧୂମାଇଁ ଶଶି ଶଶ ଘନ ॥୩୦॥

ମୃଦଙ୍ଗ ବଲେ ବଳଣ ବାଜଇ କଙ୍କିଣୀ ।
ରଘୁନାଥ ବିଜୟେ କ କହେ ଜୟ ବାଣୀ ॥୩୧॥

ହୋଇଛି ପୁର ଶୋଭନ ବାରସ୍ତ୍ରୀ ପରି ।
କନ୍ଦର୍ପ ଗମନରେ ହୋଇଛି ଅତି ଧୀରି ॥୩୨॥

ସୁବର୍ଣ୍ଣିକ ଗିରିପରେ ହଶଇ ରଞ୍ଜିତା ।
ଅନୁପମା ପାଶରେ ହୋଇଛି ବିରାଜିତା ॥୩୩॥

ବସ୍ତୁ ନେହେ ହୋଇଅଛି ଏହୁ ମନୋହାରୀ ।
କୃଷ୍ଣ ବର୍ଣ୍ଣା ମୁଖରେ ହଶଇ ଶୋଭାଧାରୀ ॥୩୪॥

ସବର ଦ୍ୱିଜରେ ସ୍ନେହ ହୋଯ୍ୟେ ସୁପଣ୍ଡିତ ।
ଶଙ୍କରଥ ଗନ୍ଧର୍ବରେ କରେ ପ୍ରମୋଦିତ ॥୩୫॥

ବନ ପ୍ରସ୍ତରରେ ହୋଇଅଛି ଆକର୍ଷିତ ।
ରାଜହଂସ ଆଗମନ ଧରିଛି ରାଜିତ ॥୩୬॥

ଯେମନ୍ତ ପୁରମାନ ଦେଖିଣ କପିଗଣ ।
ପ୍ରଶଂସନ୍ତି ଧନ୍ୟ ଧନ୍ୟ ପୁର ଭୂମି ଧନ୍ୟ ॥୩୭॥

ରଘୁପତି ପତି କରି ଲଭିଅଛୁ ଭୂମି ।
ଭୂମି ନ କର ଭୂମିନକର କରେ ଦମି ॥୩୮॥

ରାକ୍ଷସ ବାନରମାନ ଏକମେଳ ହୋଇ ।
ନଗରେ ପ୍ରବେଶ ହେଲେ ଦୈତ୍ୟଚନ୍ଦ୍ର ବାହି ॥୩୯॥

ଦେଖନ୍ତି ଅଯୋଧ୍ୟାପୁରର ଦିବ୍ୟ ହାଟ ।
ହାଟକ ଉତ୍କଟ ଲଟ ଘଟରତ୍ନ କୂଟ ॥୪୦॥

ଜଭଟ ଭଟ ସକଳ ଫଘଛ ଉଚାଟ ।
ଚେଟ କୁଟ ଚଳବାରେ ନ ପାବନ୍ତ ବାଟ ।।୪୧।।

ଲଟ ଭଟ ଉଲ୍ଲଟ କର୍ଣ୍ଣାଟ ମହାରଷ୍ଟ୍ର ।
ଓଛିଷ୍ଟ ସୌରଷ୍ଟ୍ର ମହାରଷ୍ଟ୍ର ସେ ସରଷ୍ଟ୍ର ।।୪୨।।

ତୈଳ କେରଳ ଚଞ୍ଚଳ କୁନ୍ତଳ ନେପାଳ ।
ଉତ୍କଳ କେରଳଞ୍ଚ ଟଉଳ ବେଲ୍ଡଳ ।।୪୩।।

ଅବଙ୍ଗ କଳଙ୍ଗ ତେଲଙ୍ଗ ଅଙ୍ଗ ରଙ୍ଗ ।
ଭୃଙ୍ଗ ଭୁରଙ୍ଗ ମାତଙ୍ଗ ପାତଙ୍ଗ ଅଙ୍ଗଭଙ୍ଗ ।।୪୪।।

ବେଣ ବେଦ ଖେଦ ମେଦ ମେଦନୀ ଚଳାଇ ।
ନେଣୀ ବେଣ ପରେ ସାଦ ଅପ୍ରମାଣ ହୋଇ ।।୪୫।।

ଦର ଦର ମାର ତାର ଦଅନ୍ତୁ ପଣର ।
କ୍ଷୀର ପାର ଫରକାର ଅତି ମନୋହର ।।୪୬।।

ଘୁମର ଅଗର ଶ୍ରୀକର୍ପୂର ସେ କାଶ୍ମୀର ।
ଚନ୍ଦନରେ ପନର ଖର ଉସୀର ପଟୀର ।।୪୭।।

ପଦ୍ମ ପଦ୍ମ ପଦ୍ମରାଗ ରମଣୀୟ ମଣି ।
ମାଳା ମାଳାସାର ସାର ମମାର ରଗିଣୀ ।।୪୯।।

ଅମ୍ବରରୁ ଦେବଦାରୁ ମୃରୁ କୁସୁମରୁ ।
ଅତି ରମ୍ଭୀ ଉରୁ ଉରୁ ବସିଛନ୍ତି ଖରୁ ।।୫୦।।

ଯେମନ ପ୍ରକାରେ ସେ ନଗର ଦେଖିକରି ।
ନର ରକ୍ଷସ ବାନର ହେଲେ ମୋଦ ଧରି ।।୫୧।।

ସିଂହଦ୍ୱାର ଠାବରେ ରହିଲେ ସର୍ବ ସୈନ୍ୟ ।
ପୁଷ୍ପକରୁ ଓହ୍ଲାଇଲେ କୌଶଲ୍ୟା ନନ୍ଦନ ।।୫୨।।

ଶ୍ରୀହସ୍ତ ପଦ୍ମଠେ ଦେଇ ସାଧୁ ବିଭୀଷଣେ ।
ପଛେ ଗୋଡ଼ାଇ ଅଛନ୍ତି ସକଳ ରାଜନେ ।।୫୩।।

ଅଗ୍ରରେ ରହିଅଛନ୍ତି ସୁମିତ୍ରା ନନ୍ଦନ ।
ଦକ୍ଷିଣେ ଭରଥ ଛନ୍ତି ବାମେ ଶତ୍ରୁଘନ ।।୫୪।।

ମଣିମା ମଣିମା ବୋଲି ଡାକେ ପ୍ରତିହାରୀ ।
ପୂରୁବରେ ବଜେ କଲେ ରାବଣ ଅଇର ।।୫୫।।

ସୀତାଙ୍କୁ ଘେନି ବିଜେ କଲେ ମାତାଗଣ ।
ଅବରୋଧେ ପରବେଶ ହେଲେ ତତକ୍ଷଣ ॥୫୬॥

ଗାୟେଣୀ ଗାୟେଣୀ ଗୀତ ମଙ୍ଗଳ କରଣ ।
ହୁଳହୁଳି ଶବଦରେ ଫୁଟୁଛି ଗଗନ ॥୫୭॥

ସିଂହାସନେ ବିଜେ କଲେ ରଘୁର ନାୟକ ।
ବାମ କରେ ଧନୁଦଣ୍ଡ ହସ୍ତରେ ସାୟକ ॥୫୮॥

ବୀର ଆସନରେ ବିଜେ ରଘୁକୁଳମଣି ।
ବୈକୁଣ୍ଠ ପୁରରେ ଯେହ୍ନେ ଶୋଭେ ଚକ୍ରପାଣି ॥୫୯॥

ଦିବ୍ୟ ବେଶ ସୀତାଙ୍କୁ କରିଆଣି ଦାସୀ ।
ଶ୍ରୀରାମର ବାମପାଶେ ଛୁରିତେ ନିବେଶି ॥୬୦॥

ନାନା ବାଦ୍ୟମାନଙ୍କରେ ଉଚ୍ଛୁଳିଲା ସିନ୍ଧୁ ।
ପ୍ରକାଶିଲା ରାମ ମୁଖ ରୋହିଣୀର ବନ୍ଧୁ ॥୬୧॥

ସର୍ବ ତୀର୍ଥ ଜଳମାନ ଘେନି ଋଷିଗଣ ।
ସହସ୍ରାକ୍ଷ ମନ୍ତ୍ର ଉଚ୍ଚେ କରି ଉଚ୍ଚାରଣ ॥୬୨॥

ଶ୍ରୀରାମର ଶିରେ ନେଇ କଲେ ଅଭିଷେକ ।
ଜୟ ଜୟ ଧ୍ୱନି କରେ ସ୍ୱର୍ଗେ ଦେବଲୋକ ॥୬୩॥

ଚତୁର୍ମୁଖେ ବେଦ ସ୍ତୁତି ପଢ଼େ ଚତୁର୍ମୁଖ ।
ଶିରେ କର ଯୋଡ଼ି କହେ ଗଲା ସର୍ବ ଦୁଃଖ ॥୬୪॥

ନୃତ୍ୟନ୍ତି ଗାଉନ୍ତି ତହିଁ ଅପସରାଗଣ ।
ଦେବେ ପୁଷ୍ପବୃଷ୍ଟି ତହିଁ କରେ ରଘୁରାଣ ॥୬୫॥

ନିସ୍ତରିଲି ବୋଲି ତହିଁ ପ୍ରଣାମ ବନ୍ଦିଲେ ।
ରାମଙ୍କୁ ଅକ୍ଷତ ତହିଁ ତିନିମାଳା ଦେଲେ ॥୬୬॥

ଦିବ୍ୟ ରତ୍ନମାନଙ୍କରେ ହୋଇଛି ନିର୍ମାଣ ।
ପବନ ଆଣିଣ ଦେଲେ ଶ୍ରୀରାମ କଣ୍ଠେଣ ॥୬୭॥

ଶରଦ ଚନ୍ଦ୍ରମା ଛବି ଗଞ୍ଜେ ମୋତିମାଳା ।
ତାହା ଲମ୍ବାଇଲେ ରାମ ସୀତାଙ୍କର ଗଳା ॥୬୮॥

ଦିବ୍ୟ ଅନୁରାଗେ ଯେଉଁ ମାଳା ଅନୁପାମ ।
ସେହୁ ମାଳା ସୁଗ୍ରୀବରେ ଦେଲେକ ଶ୍ରୀରାମ ॥୬୯॥

ମହା ମରକତ ମାଳ ଘେନଣ ସେ କରେ ।
ଅତି ସ୍ନେହଭରେ ଦେଲେ ବିଭୀଷଣ କରେ ।।୭୦।।

ଦେଖିଲେ ସୀତସ୍ୟା ବେନ ମାଳା ଦେଲେ ରାମ ।
ତେଣ୍ଟୁକର ବେନ କରେ ହସିଲେ ସୁଷମ ।।୭୧।।

ଅତି ଆନନ୍ଦରେ ନିଜ କଣ୍ଠ ମୋତିମାଳା ।
ଆପଣେ ଜାନକୀ ଦେଲେ ପାବେମୀର ଗଳା ।।୭୨।।

ବୋଲନ୍ତି ତୁ ବ୍ରହ୍ମା ଥିବାଯାଏ ଥିବୁ ରହି ।
ନିଜ ବଳ ହାନି ତୋର ନ ଲଭିବ ଦେହି ।।୭୩।।

ବାଞ୍ଛାକଲେ ଅଷ୍ଟନିଧି ହୋଇବ ପ୍ରାପତ ।
ଥିବୁ ତୁ ଗନ୍ଧମାଦନେ ପବନର ସୁତ ।।୭୪।।

ଏସନ ଦେଖିଣ ତହିଁ ବୋଲେ ସୁରଗଣ ।
ଧନ୍ୟ ଧନ୍ୟ ଜୀବନ ତୋହର ହନୁମାନ ।।୭୫।।

ତ୍ରୈଲୋକ୍ୟର ଲକ୍ଷ୍ମୀ ତୋତେ କଲ ଅନୁଗ୍ରହ ।
ତୋର ପୁତ୍ରବନ୍ତୀ ଆଜ······ଅବଧହ (?) ।।୭୬।।

ବ୍ରହ୍ମର୍ଷି ରାଜର୍ଷି ଦେବର୍ଷିମାନ ।
ଯଥା ପ୍ରକାରେ ପୂଜିଲେ ଶ୍ରୀରାମର ଜନ ।।୭୭।।

ସର୍ବ ନୃପଗଣେ ସୁହିଁ ଅନୁଗ୍ରହ କଲେ ।
ଯଥା ଅନୁରୂପେ ନବ ବସ୍ତ୍ରମାନ ଦେଲେ ।।୭୮।।

ମେଲାଣି ପାଇଣ ସର୍ବେ ହୋଇଲେ ବାହାର ।
ସୀତସ୍ୟାଙ୍କୁ ଘେନିଣ ବିହରେ ରଘୁବୀର ।।୭୯।।

ଏହି ଶ୍ରୀରାମ ବିଳାସ ଗୀତ ମନୋହର ।
ଅଠଗୁଳଣ ଯେ ଛାନ୍ଦ ରସରେ ରୁଚିର ।।୮୦।।

ଶ୍ରୀରାମର ଅଭିଷେକ ନାମ ତ ଯେହାର ।
ଭଣେ ନୃପ ଧନଞ୍ଜୟ ସେବି ରଘୁବୀର ।।୮୧।।

# ଅନଙ୍ଗ ରେଖା

## ପ୍ରଥମ ଛାନ୍ଦ

### ରାଗ—ଗୁଜ୍ଜରୀ

(ଯଡ଼ତାଳ)

ଜୟ ଜୟ ନୀଳାଚଳ-ପତି ମୁକୁନ୍ଦ
ସନ୍ତ-ଜନ-ବନ୍ଧୁ ପ୍ରଭୁ ପରମାନନ୍ଦ ।୧।

କଳ୍ପବଟ ମରୁତ ଦଗରେ ବିରାଜେ
ଚତୁର୍ଧା ମୂରତି ଧରି ଦେବାଧିରାଜେ ।୨।

ଅତି ତୁଙ୍ଗ ପ୍ରାସାଦର ମଧ୍ୟରେ ସ୍ଥିତି
ଅଗ୍ରେ ବେନି କର ଯୋଡ଼ି ପତଙ୍ଗ-ପତି ।୩।

ଚନ୍ଦ୍ର-ନୀଳମଣି ଜିଣି ଶୋଭେ ଶ୍ରୀଅଙ୍ଗ
କୁରୁବିନ୍ଦବୃନ୍ଦ ଗଞ୍ଜି ଅଧର ରଙ୍ଗ ।୪।

ଜଗତ-ଜନ-ନୟନ-ଚକୋର-ଇନ୍ଦୁ
ଅଶେଷ ଦୀନ ଜନର ଅହେତୁ ବନ୍ଧୁ ।୫।

ନିମୁଣ୍ଡି ଉପରେ ଶୋଭେ ସେବଣ୍ଟି-ଚୂଳ
ଶ୍ରୀମୁଖକୁ ବେଢ଼ି ଗନ୍ଧ-ରେଖା ମଞ୍ଜୁଳ ।୬।

ବିକଚ ବାରିଜ ବେନି ନୟନ କପ୍ପେ
ସକଳ ଜନ-ନୟନ-ମଧୁପ ମୋହେ ।୭।

ଠେକଛନ୍ଦ ବେନି ଭୁଜ ଭକ୍ତ କାରଣ
ଭବ ଭୟ ଜନେ ଏଥେ ତାର ଶରଣ ।୮।

ନାନାରତ୍ନ-ବେଷ୍ଟିତ-ହୃଦରେ ପଦକ
ମଧ୍ୟେ ଶୋଭେ ବ୍ରହ୍ମଜାତି-ହୀରା-ନାୟକ ।୯।

ତହିଁପାଶେ ଶୋଭେ ବର ନକ୍ଷତ୍ର-ମାଳ
ନୀଳ ମେଘୁ ଉଦିତ କି ସଲିଳ ଧାର ।୧୦।

କୋଟି ଦିବାକରର ଯେ ତେଜ ଗଞ୍ଜଇ
ଶ୍ରୀକରେ ସୁଦର୍ଶନ ଚକ୍ର ରାଜଇ ।୧୧।

ବାମକରେ ପାଞ୍ଚଜନ୍ୟ ଶଙ୍ଖ ବିରାଜେ
ଶିଙ୍ଗାନାଦେ ସୁରାରିଙ୍କ ଧଇର୍ଯ୍ୟ ଭାଜେ ।୧୨।

ଦକ୍ଷିଣା ତୁଳସୀଙ୍କର ବର ସୁଦାମ
ପ୍ରତିପତ୍ତି ହୃଦ ଦିଶେ ସୁ-ଅଭିରାମ ।୧୩।

କଟୀତଟେ ନିବେଶିତ ପୀତ ଦୁକୂଳ
ଚକଟେ କି ଘନେ ଶୋଭେ ଚଞ୍ଚଳାମାଳ ।୧୪।

ତଥିପରେ ସୁମଣି ମେଖଳା ଲଳିତ
ହେମ କାଞ୍ଚି ଦାମ ତାରା ବାରାସ ଜାତ ।୧୫।

ବାମ ପାଶେ ପ୍ରିୟତମା ସିନ୍ଧୁ-ନନ୍ଦିନୀ
ନାଗବଲ୍ଲୀ ଯୋଗ କରେ ହୃଦୟ ଧେନି ।୧୬।

ନର ରୂପେ ଉଠନ୍ତି ଅମର ଗଣ
କେ କରିବ ତାଙ୍କର ସ୍ୱରୂପ ବଖାଣ ।୧୭।

ଥିରମନେ ମୁନିମାନେ ଯାହାଙ୍କୁ ଚିନ୍ତି
ଅଶେଷ ମହିମାବାର ଲଗାଇଛନ୍ତି ।୧୮।

ଯୋଗୀଜନ ମନର ଯେ ସ୍ଥିର ନିଳୟ
ଯହିଁ ତ୍ରିଲୋକ ସମ୍ପଦ ଲଭନ୍ତି ଲୟ ।୧୯।

ଯେ ମତ୍ସ୍ୟ କଚ୍ଛପ କିଟୀ ନରହରିରେ
ବାମନ ତ୍ରିରାମ ବୁଦ୍ଧ କଲ୍କୀ ରୂପରେ ।୨୦।

ବସୁନ୍ଧରା ଗୁରୁଭାର କରନ୍ତି ନାଶ
କେବଳ ସେ ପ୍ରଭୁଭକ୍ତ ଜନଙ୍କ ବଶ ।୨୧।

ତାହାଙ୍କ ଚରଣ ରେଣୁ ମସ୍ତକେ ଧେନି
ହୃଦରେ ଚିନ୍ତଇ ମୁହିଁ କମଳାସନୀ ।୨୨।

ପ୍ରସନ୍ନ ମାନସ ମୋରେ ହେଲେ ସେ ଦେବୀ
ଅନଙ୍ଗ ରେଖା ଚରିତ୍ର ଗୀତେ ରଚିବି ।୨୩।

---

୨୦।୧ କ- 'ମଚ୍ଛ କଶପ ଶୂକର ହରିନ୍ତିରେ। ଅଛି ।

ଏକ ଦିନେ ସୁରରାଜ ହୋଇ ସୁବେଶ
ବୃନ୍ଦାରକବୃନ୍ଦ ଘେନି ତୋଷମାନସ ।୨୪।

ସନ୍ନିଧେ ଅଛନ୍ତି ଦିଗପାଳ ସକଳ
ମଧୂରେ ଗାୟନ କରେ ଗନ୍ଧର୍ବ କୁଳ ।୨୫।

ଦିବ୍ୟ ବେଶ ହୋଇ ସର୍ବ ବାରବନିତା
ଏକୁ ଏକ ଅଧିକ ବିଳାସେ ଲଳିତା ।୨୬।

ମଦାଳସୀ ମୁଖ ଚାହିଁ ତ୍ରିଦଶ ଈଶ
ଆଜ୍ଞା କଲେ ନୃତ୍ୟରସ ହୋଇ ପ୍ରବେଶ ।୨୭।

ପ୍ରଭୁର ଆଦେଶ ଲଭି ସୁନ୍ଦରୀ ବର
ସଖିଗଣ ମଧ୍ୟରେ ହୋଇଲ ବାହାର ।୨୮।

ରଙ୍ଗଭୂମି ମଧ୍ୟରେ ପ୍ରବେଶ ହୋଇଲ
ମହୀରେ ପ୍ରପଦ ଠୁକି ଆରମ୍ଭ କଲା ।୨୯।

ନୟନ ଚଞ୍ଚଳ ଚାହିଁ କରଇ ନୃତ୍ୟ
ସ୍ମିତ ମାତ୍ରେ ମୋହିଲା ସେ ଦେବଙ୍କ ଚିତ୍ତ ।୩୦।

ଯନ୍ତ୍ର ଧରିଥିଲା ଅଗ୍ରେ ଗନ୍ଧର୍ବ ବର
ପୁଷ୍ପଦନ୍ତ ବୋଲଣ ଶଙ୍କର କୁମର ।୩୧।

ତାହାଙ୍କ ବଦନେ ରମା ନୟନ ଢାଳି
ନୃତ୍ୟ ରସ ଛାଡ଼ି ତା ଚରଣ ନ ଚଳି ।୩୨।

ଦେଖି କୋପେ କହେ ଶକ୍ର ଶାପ ବଚନ
ଅବନୀ ମଣ୍ଡଳେ ତୁ ଗୋ ହୁଅ ଜନମ ।୩୩।

ଇନ୍ଦ୍ରର ସ୍ୱରୂପ ବାଣୀ ସଧୀରେ ଶୁଣି
ମଦନେ ସେ କମ୍ପମାନ ହେଲା ତରୁଣୀ ।୩୪।

କର ବେନି ଯୋଡ଼ି ରମା କହେ ଉତ୍ତର
ଶାପ ପ୍ରତିକାର କର ସୁର ଈଶ୍ୱର ।୩୫।

ଏସନ ବିପତ୍ତି ତାର ଚାହିଁ ସୁରେଶ
ହସି ଆଜ୍ଞା ଦେଲେ ହୋଇ ତୋଷମାନସ ।୩୬।

ପଞ୍ଚବିଂଶ ବରଷ ତୁ ମର୍ତ୍ତ୍ୟରେ ଥିବୁ
ନୃପ ସୁତ ସଙ୍ଗ ଲଭି ଏଥେ ଆସିବୁ ।୩୭।

---

୨୯।୨ ପାଦାଗ୍ରଂ ପ୍ରପଦମିତ୍ୟମରଃ ।

କର୍ଣ୍ଣାଟ ଦେଶର ରାଜା ବିକ୍ରମବାହୁ
ରହିଥିଲେ ଛତ୍ରୀ ଏକା ଅଟଇ ସେହୁ ।୩୮।

ରତ୍ନାବତୀ ବୋଲି ତାର ପାଟ ମହିଷୀ
ତାର କୋଳେ ଜାତ ଯାଇଁ ହୁଅ ସୁକେଶୀ ।୩୯।

ଏତେ କହି ଶକ୍ର ତହୁଁ କଲେ ଗମନ
ଶଚ୍ୟା ଭରେ ରମା ମିଳେ ନିଜ ଭବନ ।୪୦।

ଶେଷ ଏ ଅନଙ୍ଗ ରେଖା ପ୍ରଥମ ଛାନ୍ଦ
ରସିକ ଜନର ଏଥି ଥିବ ଆନନ୍ଦ ।୪୧।

ନୀଳାଦ୍ରିନାୟକ ବେନି ଚରଣ ଧ୍ୟାୟି
ନୃପ ଧନଞ୍ଜୟ ଭଞ୍ଜ ଏ ରସ କହି ।୪୨।

●

# ଦ୍ୱିତୀୟ ଛାନ୍ଦ

## (ରାଗ—କେଦାର)

ଚକ୍ରକେଳି ବାଣୀରେ ଗାଇବ

ଶୁଣ ଏଥୁ ଅନନ୍ତରେ ସୁଜନ । ରାଜ୍ୟ କର୍ଣ୍ଣାଟ ବୋଲି ବିଦ୍ୟମାନ ॥୧॥
ତହିଁ ବିକ୍ରମବାହୁ ନୃପବର । ନାକ-ଲୋକ ହିଁ ନୁହେଁ ସମ ତାର ॥୨॥
ବଳେ ଅକଳିତ ତାର ପଦାତି । ଚୃର ଲକ୍ଷ ଅଛି ତା ମତ୍ତ ଦନ୍ତୀ ॥୩॥
ଏକ ଲକ୍ଷ ବଳବନ୍ତ ରଥବର । ଦଶ ବୃନ୍ଦ ସୁଜାତି ହୟବାର ॥୪॥
ତାର ବିପକ୍ଷରେ ଯେତେ ରାଜନ । ରାଜ୍ୟ ତେଜି ପଶିଲେ ସେ କାନନ ॥୫॥
ପୁର ରତନ ଭଣ୍ଡାର ଦେଇଣ । ଆଶ୍ରେ କରି ରହିଛନ୍ତି କେ ପୁଣ ॥୬॥
ତାର ତେଜରେ ବିଜିତ ମାର୍ତ୍ତଣ୍ଡ । ଅହିବର ସମାନ ଭୁଜଦଣ୍ଡ ॥୭॥
ତାର ଯେଣୁ ସମ ନାହିଁ କ୍ଷିତିରେ । ତହିଁ କୁସୁମ ଶର ଲଜ୍ଜା ଧରେ ॥୮॥

ଧଇର୍ଯ୍ୟରେ ମେରୁ ଗିରି ସୋଦର । ଗମ୍ଭୀରତାରେ ଜାତ ରତ୍ନାକର ।।୯।।
ତାର ନଗର କି ଅବା ବର୍ଣ୍ଣିମା । ସ୍ୱର୍ଗ ପାରୁଣେ ଆରାମ ସୁଷମା ।।୧୦।।
ଚଉଦିଗେ ପରିଖା ବଳୟିତ । ଉଚ୍ଚ ବଡ଼ଖାଟରେ ଅତି ଶୋଭିତ ।।୧୧।।
ସ୍ୱଚ୍ଛ ଚନ୍ଦ୍ରରେ ଘଟିତ ପ୍ରାକାର । ଚନ୍ଦ୍ରକାନ୍ତେ ସୁଲଳିତ ଗୋପୁର ।।୧୨।।
ମତ୍ତଗଜ ଘନଦାନ ଆସ୍ୟରେ । ଦ୍ୱାର ପାଶ ବିରଚି ନିରନ୍ତରେ ।।୧୩।।
ଗଜବନ୍ଧା ଫେରି ତହିଁ ପାଶରେ । ଯନ୍ତ୍ର କାଣ୍ଡ ସଜ୍ଜିତ ନିରନ୍ତରେ ।।୧୪।।
ନୀଳମଣିରେ କାଙ୍ଗୁରା ନିର୍ମିତ । ଚିତ୍ର ଧ୍ୱଜମାନଙ୍କରେ ରଞ୍ଜିତ ।।୧୫।।
ମନ୍ତ୍ରୀ ନାମ ତାର 'ନୟସାଗର' । ସୁର ଗୁରୁ ସମ ବୁଦ୍ଧି ବିସ୍ତର ।।୧୬।।
ଏକ ଦିନେ ସେ ସମ୍ମୁଖରେ ନୃପର । ଜଣାଇଲା ହୋଇ ନତକନ୍ଧର ।।୧୭।।
ଦେବ ! ଶୁଣିବା ହୋଇ ସାବଧାନ । ଆସିଅଛନ୍ତି ଏକ ତପୋଧନ ।।୧୮।।
ଆଜ୍ଞା ହୋଇଲେ ସମ୍ମୁଖକୁ ଆସିବେ । କି କି ହିତୋତ୍ତମବାଣୀ ଭାଷିବେ ।।୧୯।।
ଶୁଣି ନୃପବର ଦେଲେ ଆଦେଶ । ମୁନିବରଙ୍କୁ ବେଗେ ନେଇଆସ ।।୨୦।।
ଆଜ୍ଞା ପାଇ ପ୍ରତିହାରୀ ଚଳିଲା । ରାଜା ସମୀପେ ଆଣି ବେଗେ କଲା ।।୨୧।।
ଷଡ଼ ଅର୍ଘ୍ୟେ ତାଙ୍କୁ ପୂଜି ରାଜନ । କହେ ଦିବ୍ୟ ଆସନେ ବସାଇଣ ।।୨୨।।
କି ସକାଶେ ମୋ ପୁରେ ଆଗମନ । ଆଜ୍ଞା ହେଉ ମୋରେ କୃପା ବଚନ ।।୨୩।।
ଶୁଣି ବୋଲନ୍ତି ସେହୁ ଊର୍ଦ୍ଧ୍ୱରେତା । ବାବୁ ସକଳ ଗୁଣେ ତୁମ୍ଭେ ବେତ୍ତା ।।୨୪।।
ତୁମ୍ଭ ପଟ୍ଟମହିଷୀ ରତ୍ନାବତୀ । ତାର ଜାତ ହେବ ଏକ ଦୁହିତୀ ।।୨୫।।
ମଦାଳସା ନାମେଣ ଅପସରୀ । ଇନ୍ଦ୍ରଶାପୁ ଜନ୍ମିବ ତୋର ପୁରୀ ।।୨୬।।
କାହାକୁ ହେଁ ତୁ ବର ନ କରିବୁ । ସ୍ୱୟଂବର କରିଣ ବିଭା ଦେବୁ ।।୨୭।।
ଏତେ ବୋଲିଣ ମୁନି ସୁମନ୍ତକ । ଅନ୍ତର୍ଦ୍ଧାନେ ଚଳିଲେ ସୁର ଲୋକ ।।୨୮।।
ରାଜା ଅତ୍ୟନ୍ତ ଚକିତ ହୋଇଲେ । ପଟ୍ଟମହିଷୀକୁ ସବୁ କହିଲେ ।।୨୯।।
ତାର ସାତଶ ପଞ୍ଚାଶ ଯୁବତୀ । ତହିଁ ପ୍ରିୟତମା ସେ ରତ୍ନାବତୀ ।।୩୦।।
ଚନ୍ଦ୍ରବଦନୀ କୋକିଳବଚନୀ । ପୀନସ୍ତନୀ ଖଞ୍ଜରୀଟନୟନୀ ।।୩୧।।
ସ୍ୱଚ୍ଛ ନିତମ୍ବ ବିମ୍ବ ମଧ୍ୟ କ୍ଷୀଣ । କାମ ନଦୀ ପୁଳିନ ତା ଜଘନ ।।୩୨।।
ମାର ହେମ ଉଲଟ ରମ୍ଭାତରୁ । ହେଲେ ନିନ୍ଦଇ ସ୍ୱଚ୍ଛ ବେନି ଊରୁ ।।୩୩।।
ସେହୁ କନକ କେତକୀର ଜ୍ୟୋତି । ଗର୍ଭାଧାନେ ସେ କେତକୀର କାନ୍ତି ।।୩୪।।
ପୁଣ୍ଡରୀକ ବେନି କୋଷ ଉପରେ । ମଧୁକର ରହିଛି କି ନିର୍ଭରେ ।।୩୫।।
ଚିକୁର ଏସନ ପ୍ରାୟ ଶୋହିଲା । ଅଙ୍ଗ ବିସ୍ତର ମନକୁ ଭଜିଲା ।।୩୬।।

ରମା ସହିତେ ମନ୍ଥରଗମନୀ | ଗର୍ଭ ଭରେ ସେ ଅତି ଆଳସିନୀ ||୩୭||
ଏମନ୍ତରେ ନବ ମାସ ସଂପୂର୍ଣ୍ଣ | ଦଶମ ପ୍ରବେଶେ କନ୍ୟା ହେଲ ଜନ୍ମ ||୩୮||
ମାସ କାର୍ତ୍ତିକ ଦଶମୀ ରଜନୀ | ମେଷ ଲଗ୍ନେ ଜାତ ଜଗମୋହିନୀ ||୩୯||*
ଲଗ୍ନ ସଙ୍ଗତେ ଅଛୁ ଦ୍ୱିଜରାଜ | ଏଥି ଚତୁର୍ଥେ ତମ ସୁରପୂର୍ଯ୍ୟ ||୪୦||
ଗ୍ରହରାଜ ବିଧୁସୁତ ଷଷ୍ଠରେ | ଭୃଗୁନନ୍ଦନ ବିଜୟେ ଅସ୍ତରେ ||୪୧||
ଦଶମଠରେ ଭୂମିସୁତ ପ୍ରକାଶ | ଏକାଦଶେ ରବିବଂଶାବତଂସ ||୪୨||*
ସ୍ୱେହୁ ସମୟେ ମିଳ ବହୁ ଭାଗ୍ୟ | କହୁଛନ୍ତି ଏ ମହାରାଜ ଯୋଗ୍ୟ ||୪୩||
ରାଜା ଗୃହରେ କହେ ମୃଦୁସୁନ୍ଲ | ଦେବ ଜାତହୋଏ ଏକ ଦୁଲାଳୀ ||୪୪||
ଶୁଣି ନୃପଚିତ୍ତ ଅତି ଆନନ୍ଦ | କ ସେ ଉଦଧି ଲଭେ ପୂର୍ଣ୍ଣଚନ୍ଦ୍ର ||୪୫||
ହାଟ ପେଣ୍ଠ ଭଣ୍ଡାର ପୂର ଦେଲେ | ଦ୍ୱିଜମାନଙ୍କୁ ନାନା ଦାନ ଦେଲେ ||୪୬||
ବନ୍ଦୀମାନଙ୍କୁ ଦେଲେ ଗଜ ବୃନ୍ଦ | କେହୁ ବର୍ଣ୍ଣିବ ସେ ପୁର ଆନନ୍ଦ ||୪୭||
ହେମ କୁମ୍ଭ ଥୋଇଲେ ଦ୍ୱାରପାଳ | ଚୂତପତ୍ର ଉପରେ ନାରିକେଳ ||୪୮||
ମଣିମୟ ତୋରଣ ସ୍ତମ୍ଭ ସାଜେ | ବରକୋଳ ପ୍ରବାଳ ଛନ୍ଦ ରାଜେ ||୪୯||
ଶୁଭେ ବାଜିଲା ବହୁବିଧ ବାଦ୍ୟ | କରେ ଶାରଙ୍ଗ ଭେରୀ ମହାନାଦ ||୫୦||
ଚୀନ ବସନ ଚପଳ ଉଡ଼ନ୍ତ | ରାଜାଙ୍କର ଘଣ୍ଟିମାଳା ଶୋଭନ୍ତ ||୫୧||
ଖଞ୍ଜି ଅଛନ୍ତି ନୀଳଚନ୍ଦ୍ରାତପ | ପାଶେ ମୋତି ମାଳା ତାର କଳାପ ||୫୨||
ମଧ୍ୟେ ବିରାଜେ ବିଶଦ ଚାମର | ନଭ ଅଙ୍ଗେ କି ପୂର୍ଣ୍ଣ ଶଶଧର ||୫୩||
ଶେଷ ହୋଇଲା ତ୍ରିଦଶ ଦିବସ | ମନ୍ତ୍ରୀ ଡାକି ନୃପ ଦେଲେ ଆଦେଶ ||୫୪||
ସୁତା ନାମକରଣ ବିଧି କର | ବେଗେ ମଣ୍ଡିତ ହୋଇ ସର୍ବ ଘର ||୫୫||
ନୃପ ଆଜ୍ଞା ପାଇ ନୟସାଗର | ପୁର ମଣ୍ଡିଲା ବିବିଧ ପ୍ରକାର ||୫୬||
ବଇଦୂର୍ଯ୍ୟର ବେଦି କନ୍ୟା ସ୍ତମ୍ଭ | ପୁର ମଧ୍ୟେ କଲା ତାର ଆରମ୍ଭ ||୫୭||

---

* ୩୯-୪୨ ଅନଙ୍ଗ ରେଖାର ଜନ୍ମ ସମୟର ଜାତକ :



ତଥି ଉପରେ ଶୋଭେ ମୋତି ଝରା । ନୀଳ ମେଘେ କି ଉଦେ ଏକ ତାରା ।।୫୮।।
ମଣିମୟ ପଲଙ୍କ ଶୋଭା ଅଛି । ହେମ ଶିକଳାରେ ଖଟ୍ଟା ହୋଇଛି ।।୫୯।।
ତଥି ଉପରେ ଜେମାକୁ ଶୁଆଇ । ନାରୀ ଅଛନ୍ତି ଚାରିପାଶେ ରହି ।।୬୦।।
ଦ୍ୱିଜବରେ ବନ୍ଦାପନା ସାରିଲେ । ନାମ 'ଅନଙ୍ଗରେଖା' ବୋଲି ଦେଲେ ।।୬୧।।
ସର୍ବେ ନାରୀ ଧରିଛନ୍ତି ଚାମର । ସ୍ୱରୂପଚନ୍ଦ୍ର ଶୋଭଇ କାହାର ।।୬୨।।
ପ୍ରେମନ୍ତରେ ଯେତେ ତନ୍ତ୍ରି ବିଧାନ । ସାରି ବାହାରେ ପ୍ରବେଶ ରାଜନ ।।୬୩।।
ମାତ ମାନେ ବନ୍ଦାପନା କରିଲେ । ନେଇ ବଡ଼ଖ ଉଦରେ ରଖିଲେ ।।୬୪।।
ଦିନୁ ଦିନ ବଢ଼ିଲା ଏଣୀଦୃଶୀ । ଯେହ୍ନେ ବିଶଦ ପକ୍ଷେ ଶୋଭେ ଶଶୀ ।।୬୫।।
ବାଲ୍ୟକାଳେ ଯେତେକ ଲୀଳାମାନ । ସଖୀଗଣ ସଙ୍ଗେ କଲା ବିଧାନ ।।୬୬।।
ନବ ବରଷ ଏହି ରୂପେ ଗଲା । ଦଶ ବରଷ ପ୍ରବେଶ ହୋଇଲା ।।୬୭।।
ବେନ ଛାନ୍ଦ ଅନଙ୍ଗ ରେଖା ଗୀତ । ସ୍ନେହ୍ନ ମୋହ୍ନ ରସିକ ଜନ ଚିତ୍ତ ।।୬୮।।
ବଟ ପୁଟେ ଯେ ପ୍ରଳୟରେ ଥିଲେ । ତାଙ୍କ ମାର୍କଣ୍ଡ ଗର୍ଭେ ଧଇଲେ ।।୬୯।।
ତାଙ୍କ ପାଦପଦ୍ମରେ ଥାଉ ଚିତ୍ତ । ଭଣେ ନୃପ ଧନଞ୍ଜୟ ଏ ଗୀତ ।।୭୦।।

●

# ତୃତୀୟ ଛାନ୍ଦ

## ରାଗ—ମାଳବ)

'ଉଷା' ବିଷୟ ଛନ୍ଦ ବାଣୀରେ ଗାଇବ

ଯେମନ୍ତରେ ଗଲା ଚଉଁ ଦେଢେଇ ଦିବସ ।
ଅଙ୍କୁରିତ କୁଚ ଯୁଗ ହୋଇଲା ପ୍ରକାଶ ॥୧॥

ଚରଣ ଚଞ୍ଚଳତାର ଲୋଚନକୁ ଦେଲା ।
ଈଷିତ ହାସ ବଦନେ ସଖାକୁ ଲଭିଲା ॥୨॥

ସଖିଗଣ ମଧ୍ୟେ କ୍ଷଣେ ହୁଅଇ ବାହାର ।
ବସନ କାଢ଼ିଣ ସଖୀ ଦେଖଇ ଶରୀର ॥୩॥

ପୁଣି ହିଁ କୁଚ ଯୁଗଳେ ଅମ୍ବର ଦିଅଇ ।
ମଦନ ଭଣ୍ଡାର ଲଭି ଆନନ୍ଦ ହୁଅଇ ॥୪॥

ନୀଳ କୁଟିଳ ମୃଦୁଳ ଚିକ୍କଣ ଚିକୁର ।
ଅର୍ଦ୍ଧଶଶୀ ସଦୃଶ ଲଲାଟପଟ୍ଟ ତାର ॥୫॥

ବଦନ ପୂର୍ଣ୍ଣ ଶଶାଙ୍କ ନୟନ ଚକୋର ।
ଭ୍ରୂଲତା ମଦନ ଧନୁ ଅପାଙ୍ଗ ତାହାର ॥୬॥

ନାସିକା ତିଳ ପୁଷ୍ପ ହିଁ ମଦନ ସାରଥି ।
ଯେହ୍ନା ଯେନି ତ୍ରିଲୋକ ଜିଣିଲା କାମରଥୀ ॥୭॥

ପକ୍ୱ ବିମ୍ବ ଆକାରେଣ ଅଧର ରୁଚିର ।
ତଥି କେଭେ ଅଟେ କି ରହିଛି ଶୁକବର ॥୮॥

ରୁଚିର ଚିବୁକ ଯୁଗଳ ଅତ୍ୟନ୍ତ ଶୋଭନ ।
ଶମ୍ବର ଅବର୍ତ୍ତ କେଳି ମୁକୁର ଗଞ୍ଜନ ॥୯॥

ବେଣୀ ପାଶେ ମୋହଚନ୍ଦ୍ର ପାଶ କି ରଚିଛି ।
ଯୁବାଜନ ମନ ମୃଗ ଛନ୍ଦିତେ ବାନ୍ଧିଛି ॥୧୦॥

ମାରକତ କାଳେ ତାର ଜନ୍ମୁ କମ୍ବୁ ଥିଲା ।
ରମଣୀର କଣ୍ଠ କରି ବିଧି ତା ରଚିଲା ॥୧୧॥

ସପତ ସ୍ୱର ଥୋଇଲା ତଥି ମଧ୍ୟେ ନେଇ ।
ଶୁଣି ସେ ଧ୍ୱନି ପୀତାମ୍ବର ହେବେ ମୋହି ॥୧୨॥

ଲାବଣ୍ୟର ତରଙ୍ଗ କି ତାର ଭୁଜ ବେନି ।
× × × × ବେଣୁପାଣି ।।୧୩।।

ଦନୁ ଦନୁ ବେନି କୁଚ ଉଚ୍ଛଳିବ ବୃଦ୍ଧି ।
ସଖୀଙ୍କ ସମ୍ମୁଖେ ମୁଖେ ବସନ ଦଅଇ ।।୧୪।।

କେଶରୀମଧ୍ୟ ରୁଚିର ଦଶିଲା ତା କଟି ।
ଯହିଁ ରଚନେ ଲଳିତ ଦଶେ ନେତ୍ର ଧଟୀ ।।୧୫।।

ମନୋହରତର ତାର ତ୍ରିବଳୀ ପ୍ରକାଶ ।
କି ସେ କାମ ନାଭି କୂପ ସମାନ ବିଶେଷ ।।୧୬।।

ତଥିପରେ ରୋମରାଜି ଲତିକା ବଢ଼ିଲା ।
ନିତମ୍ବ ବିମ୍ବ ତା ଯୁବା ହୃଦ ହରି ନେଲା ।।୧୭।।

ଜଘନ ମଣ୍ଡଳ କାମ ଜୟ ବେଦୀ ଜାଣି ।
ଯାର ବେନି ପାଶେ ଉରୁ ରମ୍ଭା ତରୁମଣି ।।୧୮।।

ଚଣ୍ଡି ଶିରୀ ନ ଦଶଇ ବଳଣ ସୁଧର ।
ତାମରସ ସଦୃଶ ରୁଚିର ପାଦ ତାର ।।୧୯।।

ଦନକୁ ଦନ ସୁନ୍ଦରୀ ଦଶିଲା ଶୋଭନ ।
ରକାତିଥି ଲଭି ଶୋହେ ଶଶାଙ୍କ ଯେସନ ।।୨୦।।

ଏକାନ୍ତେ ବସିଣ ମୁକୁରକୁ ଚାହୁଁ ଥାଇ ।
ନାସିକା ପୁଡ଼ା ଫୁଲାଇ ନୟନ ଢାଳଇ ।।୨୧।।

ସଖୀ ହସି ପଚାରିଲେ ବଞ୍ଚାଇ ଭୁଶିତ ।
ନୃତ୍ୟ ରସ କଉତୁକେ ଦେଇଥାଇ ଚିତ୍ତ ।।୨୨।।

ସଖୀଗଣ ସାଙ୍ଗେ ଥିଲେ ହସଇ ଖେଳଇଁ ।
ଏକାନ୍ତେ ବସିଣ ତାହା ମନେ ଭାବୁଥାଇଁ ।।୨୩।।

ଆଉ ରସମାନଙ୍କରେ ମନ ତା ରସିଲା ।
ବାଲ୍ୟକାଳ ଲୀଳାମାନଙ୍କୁ ସେ ପାସୋରିଲା ।।୨୪।।

ଲାବଣ୍ୟ ବନରେ ଶଇଶବ କସ୍ତ ଥିଲା ।
ଯଉବନ କେଶରୀ ଦୃଷ୍ଟି ବନ ତେଜିଲା ।।୨୫।।

ଉରଜ ଯୁଗ ବଢ଼ିଣ ଦଶିଲା ସୁନ୍ଦର ।
ହେମମୂର୍ତ୍ତି କୁମ୍ଭ କି ଏ ମଦନ ରଜାର ।।୨୬।।

ନ ଅବା ମହାରଜତ ସମ୍ପୃକ୍ତ ସ୍ୱେ ବେଢ଼ ।
ହୃଦୟରେ ଧରିଅଛୁ ତ୍ରୈଲୋକ୍ୟମୋହନ ॥୨୭॥

ତ୍ରିଭୁବନ ଯୁବାଜନ ମୋହ ଔଷଧି ।
ଧୂର୍ଜଟି କ ଘଳମ ମୂଢ ହେଲ ବୁଧି ॥୨୮॥

ଏବା ମାର ଧସ୍ୱେ ଶମ୍ଭୁ ତ୍ୟଜ ହିମାଳୟ ।
ବେଢ଼ ରୂପେ ସମା ହୃଦେ ଭଲେ କି ଆଳୟ ॥୨୯॥

ନୟନ ଚୋଳଣ ଯେବେ ଏହାକୁ ଦେଖିବେ ।
ଧନଜାଦ ମୁନିମାନେ ଧର୍ମ କ ରଖିବେ ॥୩୦॥

ଚମକଲ ହୃଦ ତାର ଜଘନ ଭର୍ମିଳ ।
ଅରୁଣ ଅଧର ତାର ମଦନ ଦଶିଲ ॥୩୧॥

ଅଙ୍ଗମାନ ଏକାରକୁ ଚାହାର ଭଙ୍ଗିଲ ।
ମଦନ ମନରେ ପୂର୍ଣ୍ଣ ହତାଶ ହୋଇଲ ॥୩୨॥

ମକରନ୍ଦ ଧାର ଚହ୍ନି ହୋଇଲ ବାହାର ।
ଲଭ ଚୋଷଣଞ୍ଚ ହେଲ ମନେ ଭ୍ରମର ॥୩୩॥

ଭ୍ରମକା ହୋଇଣ ବାଳୀ ବସିଛୁ ଏକାନ୍ତେ ।
ଦେଖି ସହଚରୀ ଗଣ ମିଳଲେ କୁଣ୍ଡଛେ ॥୩୪॥

ଚତୁରଇ ଚନ୍ଦ୍ରରେଖା ନାମେ ଯେ ସଜନୀ ।
କ ଛେ ହରଷ ଭଜଲୁ ପଙ୍କଜଲୋଚନୀ ॥୩୫॥

ହସି ଘନମଳା ସଖୀ ବଚନ ବୋଲଇ ।
ମଦନ କ ଚୋର ଅଙ୍ଗେ ଆଶ୍ଳେଷିଲ ସନ୍ଧ ॥୩୬॥

ଉତ୍ତର ବସନ ଦେନ ଶଶୀରେଖା ସଖୀ ।
ବୋଲଇ ସେ ଅମ୍ବର ଉପେକ୍ଷି ଚନ୍ଦ୍ରମୁଖୀ ॥୩୭॥

ଶୁଣିଣ ରମଣୀମଣି ଅଧୋମୁଖ କଲା ।
ପ୍ରିୟ ସଖୀମାନଙ୍କୁ ନୟନେ ନ ଚାହିଁଲ ॥୩୮॥

ଏମନ୍ତ ଦେଖିଣ ଚନ୍ଦ୍ରକଳା ଚଳଗଲ ।
ପଞ୍ଚମଞ୍ଜରୀ ସ୍ୱାମୀରେ ଯାଇଁ ଜଣାଇଲ ॥୩୯॥

ସୁଷ୍ଠବଣ ହୋଇଲ ଅନଙ୍ଗ ରେଖା ଜେମା ।
ଶୁଣିଣ ଆନନ୍ଦ ହୁଏ ନୃପ ପ୍ରିୟତମା ॥୪୦॥

କର୍ପୂର ରଜକୁ କୁଙ୍କୁମ ସଙ୍ଗେ ଗୋଳ ।
ମର୍ଦ୍ଦନ କରନ୍ତି ସେ ଅନ୍ତଃପୁର ବାଳୀ ॥୮୧॥

ବାଜନ୍ତ ମଙ୍ଗଳ ବାଦ୍ୟ ବହୁଧ ଲକ୍ଷଣ ।
କେଶ ପଖାଳନ୍ତ ଯେ ଷୋଡଶ ଅଙ୍ଗ ସ୍ନାନ ॥୮୨॥

ଶତ ଶତ ଶଙ୍ଖ ଯେ ମଙ୍ଗଳ କରେ ଧ୍ୱନି ।
ହୁଳହୁଳି ଶବଦରେ ପୂରିଲା ମେଦିନୀ ॥୮୩॥

ଦିବ୍ୟ ଚନ୍ଦ୍ରଲ ବେଶେ ଅନ୍ତଃପୁରୁ ଘାସି ।
ଶୁଭ ଗନ୍ଧ ପାଣିରେ ପୋଛନ୍ତି ଭାଣ୍ଡ ସ୍ୱର ॥୮୪॥

ଦିବ୍ୟରତ୍ନ ପୋଷାକ ଅଙ୍ଗୁ ଗୁଡ଼ାଏ ।
କର୍ପୂର ବନ୍ଦୀମନ୍ଦର ରଖିଥିଲେ ସେ ॥୮୫॥

ନାନାବେଶ କରି ରଙ୍ଗ ପଟସ ପିନ୍ଧାଇ ।
ରମଣୀ ରତ୍ନକୁ ମଧ୍ୟେ ବସାଇଲେ ନେଇ ॥୮୬॥

ସାତ ଦିନ ପାଏ ରମା ମଣ୍ଡପରେ ରହିବ ।
ନୃପ ଜେମା ହୋଇ ସେତେ ଦୁଃଖ ସେ ଲଭିବ ॥୮୭॥

ଲଳନା ଦେଖି ବୋଲଇ ଅଙ୍ଗ ଦେଖା କରି ।
ଆଜହୁଁ ମୁଁ ତୋହର ସେ ସେ ଭକତ ବରି ॥୮୮॥

ଏସନ ଭାବଣା ପଦ୍ମଁ ମନେ ବଳାଇଲ ।
ରଜନୀ ଶେଷରେ ଚେଣ୍ଡି ସ୍ନାନକୁ ଗଲେ ॥୮୯॥

କୁଙ୍କୁମ କସ୍ତୁରୀ ସେ ଅର୍ପିଲା ଘଣ୍ଟୀ ଦେଇ ।
ସୁବାସିତେ ଜଳେ କେଶ ଧୁଅନ୍ତି ଭାମିନୀ ॥୯୦॥

ଶ୍ରୀଅଙ୍ଗେ ଖୋଳୁଣ ଗୀତ ଉତଳ ପିନ୍ଧାନ୍ତି ।
ସୂର୍ଯ୍ୟଙ୍କୁ ଅର୍ଘ୍ୟ ଦିଆଇ ପୁରକୁ ନିଅନ୍ତି ॥୯୧॥

କନକ ଆସନେ ବସାଇଣ ବିଧୁବଦନୀ ।
ଦୁର୍ବାକ୍ଷତ ଦେଇ ମାତାମାନେ ବନ୍ଦାବନ୍ତି ॥୯୨॥

ହୁଳହୁଳି ଗୀତ ଗାଇ କେହୁ କରେ ନୃତ୍ୟ ।
ବନ୍ଦାପନା ସାରି ନାଂସ୍ତ ଚଳିଲେ ତୁରିତ ॥୯୩॥

ନୃପଗୃହେ ପ୍ରବେଶ ହୋଇଲ ମହାଦେଈ ।
ସଖୀବୃନ୍ଦେ ରହିଲ ଶରଦଚନ୍ଦ୍ରମୁଖୀ ॥୯୪॥

ଯାଗ ଶେଷେ ପ୍ରବେଶ ହୋଇଲେ ଦାରୁବ୍ରହ୍ମ ।
ଦେଖି ଅବନ୍ତୀ ନରେନ୍ଦ୍ର ପ୍ରସନ୍ନ ବଦନ ।।୫୫।।

× × × × × ।
ଅ.ପଣେ ଘଟିତ ହୋଇ ନୀଳାଚଳେ ବିଜେ ।।୫୬।।

●

# ଚତୁର୍ଥ ଛାନ୍ଦ

## ରାଗ—ମଙ୍ଗଳ ଧନାଶ୍ରୀ

ତାଳ—ରୂପକ

ଏଥୁ ଅନନ୍ତରେ ଶୁଣ । ପ୍ରବେଶ ଋତୁରାଜନ ।
ଭୁବନମୋହନ ହେତୁ । ଅନଙ୍ଗ ବିଜୟ କେତୁ ।।୧।।

ପଲ୍ଲବିଲେ ବନରାଜି । ବିବିଧ କୁସୁମ ସାଜି ।
ତରୁ ଆଚ୍ଛାଦିତ ଲତା । ଅନୁରାଗୀ କି ବନିତା ।।୨।।

ଝଙ୍କାରେ ଅଳି ଉଲ୍ଲୋଳ । ମକରନ୍ଦ ପାନେ ଭୋଳ ।
ବିରହୀ ବିପିନ ଦାବ । ବିଳାସୀର କରେ ଭାବ ।।୩।।

ମଳୟଗିରି ପବନ । ଧୀରେ କରେ ଆଗମନ ।
ଯୁବା ଧୃତ ଲତାମାନ । ଯେସଣେ ହେଲେ କମ୍ପମାନ ।।୪।।

ଗୃହିଁ ଯୋଗୀ ଯୋଗ ଭଙ୍ଗ । କରୁଛି ଯୁବତୀ ସଙ୍ଗ ।
ନବୀନ ମତ୍ତ କୁରଙ୍ଗ । ପରସ୍ପରେ କରେ ରଙ୍ଗ ।।୫।।

କାହିଁ ସଖୀଗଣେ ବାଳା । ଦେଖି କାମଶର ଲୀଳା ।
ଶିଶୁ କି ଗୁରୁ ବିରୁତ । ହୋଇଲା ସଖେଦଚିତ୍ତ ।।୬।।

କେବଣ ନବ ଯୁବତୀ । ନ ଲଭନ୍ତି ପ୍ରିୟରତି ।
ଦେଖି ସେ ମଧୁର ଋତୁ । ବିପୁଳ ଚଞ୍ଚଳ ମତି ।।୭।।

ରଜନୀ ନବ କାମିନୀ । ହେଲା ନୟନ ରଞ୍ଜନୀ ।
ଅମଳଚନ୍ଦ୍ର ବଦନୀ । ସମ୍ପଦ ପିକନାଦିନୀ ।।୮।।

ସ୍ୱଚ୍ଛ ଚନ୍ଦ୍ରକାନ୍ତାମ୍ବରୀ । ଫୁଲ୍ଲକୁମୁଦଗନ୍ଧିନୀ ।
କୁନ୍ଦ କଳିକାଦଶନୀ । ମଦନ ମଦରୂପିଣୀ ।।୯।।

ଯାହା ଦେଖି ମୁନି ଜନ । ହେଲେ ବିଚଳିତମନ ।
ସ୍ଥାନେ ସ୍ଥାନେ ରସ ଚିନ୍ତା । କରନ୍ତି ଯୁବା ବନିତା ।।୧୦।।

ତରଳ ସକଳ ଜୀବ । ହୃଦେ ଯେନି ରସ ଭାବ ।
ପ୍ରମୋଦ ଧ୍ୱନି କରନ୍ତି । ମିଥୁନେ ସୁଖ ଇଚ୍ଛନ୍ତି ।।୧୧।।

ଏମନ ସମୟ ଦେଖି । କୁତୂହଳେ ଶଶିମୁଖୀ ।
ବୋଲଇ ଚାଲ ଗୋ ସଖି ! । ଯିବା ଉପବନ ଦେଖି ।।୧୨।।

ରତିନାୟକ ପୂଜିବା । ପ୍ରସନ୍ନେ ବର ମାଗିବା ।
କରିବା ବହୁ ବିନୟ । ଯେଣେ ସେ ହେବେ ସଦୟ ।।୧୩।।

ଶୁଣି ସହଚରୀ ଜନେ । ଆନନ୍ଦ ଲଭିଲେ ମନେ ।
ବୋଲନ୍ତି ଆଜ ଗୋ ମାୟେ । ସଧୀରେ କର ବିଜୟେ ।।୧୪।।

ତୋର ଉପବନ ସ୍ଥଳୀ । ହେଉ ସେ ପଲ୍ଲବଶାଳୀ ।
ଚରଣ ରେଣୁ ତୋ ଲାଗି । ହେଉ ଅତି ବହୁଭାଗୀ ।।୧୫।।

ଏତେ କହି ସଖୀ ଜନେ । ଚଳିଲେ ହରଷ ମନେ ।
ସୁଖ ସମ୍ଭାଷଣ କରି । ଯେଣେ ତା ହୃଦୟହାରୀ ।।୧୬।।

ବେଢି ଚାରି ପାଶେ ଦାସୀ । ମଧ୍ୟେ ଶୋହେ ସ୍ୱଚ୍ଛ କେଶୀ ।
ଯେସନ ଶରଦ ଶଶୀ । ତାରା ବୃନ୍ଦେ ଶୋଭିବଣି ।।୧୭।।

କାହାର କରେ ଚାମର । କେହୁ ଘେନନ୍ତି ମୁକୁର ।
ବ୍ୟଜନ ଆଲଟ ଧରି । ଖଟିଛନ୍ତି ପରିବାରି ।।୧୮।।

କେହୁ ପହଣ୍ଡ ମଣାଇ । କର୍ପୂର ରଜ ସିଞ୍ଚଇ ।
ସଖୀ କରେ କର ଦେଇ । ସଧୀରେ ବାଳା ଚଳଇ ।।୧୯।।

ଦେଖିଲ୍ଲ ଆରାମ ଛବ । ରବିତାପ ତମ ରବ (?) ।
ଧଇର୍ଯ୍ୟ ବିଟପୀ ପଦ । କପ ବର୍ଣ୍ଣିମ ତା କବ ॥୨୦॥

ମଧ୍ୟେ ମରକତ ବେଦୀ । କରେ ସେ ଆରାମ ଭେଦ ।
ଅନ୍ୟ ଆଲୋକ ନ ଛେଦ । ବିରହୀ ହୃଦୟ ଖେଦ । ୨୧॥

ବସିଲେ ଚନ୍ଦ୍ର ହରଷେ । ନିର୍ମଳ ଆକାଶ ଦେଶେ ।
ପୌର୍ଣ୍ଣମୀଚନ୍ଦ୍ରମା କି ସେ । ତେସନ ଶୋଭା ପ୍ରକାଶେ ॥୨୨॥

ଗନ୍ଧକୁସୁମ ଆମୋଦେ । ଧୂପଦୀପ ନଇବେଦ୍ୟେ ।
ରତ୍ନପତ୍ର ରୂପ ଲେଖି । ପୂଜିଲେ ସହିତେ ସଖୀ ॥୨୩॥

ଚରଣେ ତାଙ୍କର ପଡ଼ି । କହେ ବେନି କର ଯୋଡ଼ି ।
ଆଜହୁଁ ମୁଁ ତୁମ୍ଭ ଦାସୀ । ହୋଇବ ମୋରେ ସନ୍ତୋଷୀ ॥୨୪॥

ଏସନ ବିଧାନ ସାରି । ବୋଲଇ ରାଜାକୁମାରୀ ।
ଦେଖ ପ୍ରିୟ ସହଚରୀ । ଉଦ୍ୟାନ ଏ ମନୋହାରୀ ॥୨୫॥

ତରୁଣ ଏ ତରୁ ଶୋଭା । ଯହୁଁ ନେତ୍ର-ଚିତ୍ତଲୋଭା ।
ନନ୍ଦନବନର ଆଭା । ନ ଭେଦଇ ରବି ପ୍ରଭା ॥୨୬॥

ତାଳ ତମାଳ ସରଳ । ପିଆଳ ସାଳ ରସାଳ ।
ପୂଗ ପୁନ୍ନାଗ ଜମ୍ବୀର । ପନସ ଧାତ୍ରୀ ମାଲୂର ॥୨୭॥

ନାରିକେଳ ଦେବଦାରୁ । ବର ଚନ୍ଦନ ଅଗୁରୁ ।
କଦଳୀ ଲବଳୀ ତରୁ । ଫଳ ଭରେ ଅତି ଗୁରୁ ॥୨୮॥

ଅଶୋକ ଚମ୍ପକ କୁନ୍ଦ । ମଲ୍ଲୀ ଜାତି ଯୂଥିବୃନ୍ଦ ।
ନାଗେଶ୍ୱର କରବୀର । ମାଧବୀ ବେନି ମନ୍ଦାର ॥୨୯॥

ମାଳତୀ ସେବତୀ ଗଣ । ପାଟଳ ନଆଳୀ ବଣ ।
କୁରଅନା କୁରୁବକ । କେତକୀ ନୀପ କେତକ ॥୩୦॥

ମଧ୍ୟରେ ଲୋଟନ୍ତି ତରୁ । ଫଳଫୁଲେ ଶାଖାଗୁରୁ ।
କି ସେ ପ୍ରଲମ୍ବିତ ଶିର । ଆଗମ ଜାଣି କାମର ॥୩୧॥

ପୁଷ୍ପିତ କୁଞ୍ଜ କୁଟୀର । ଅନଙ୍ଗ କେଳିମନ୍ଦିର ।
ଯହିଁ ଅନ୍ତର ତିମିର । ସୂରକର ଅଗୋଚର ॥୩୨॥

---

୨୫।୧ କ- 'ଯେସନ'
ଖ- 'ଯେବେ'

ଆଶ୍ରମ ରମା ସମାନ । ମତ୍ତ ଖଞ୍ଜନ ନୟନ ।
ତମାଲ ବୃନ୍ତ ଚିକୁର । ନବ ପ୍ରବାଳ ଅଧର ॥୩୩॥

ଦ୍ୱିଜ ଶ୍ରେଣୀ କି ଲଳିତ । ହରୁଛି ସକଳ ଚିତ୍ତ ।
ଲତା ଭୁଜ ସମଜାଣି । ନବୀନ ପଲ୍ଲବ ପାଣି ॥୩୪॥

କରବୀର କଢ଼ିକୁଳ । ଜାଣ ତା କରଜ ଜାଳ ।
ଶ୍ରୀଫଳ ଉରଜ ଜାଣି । କୋକିଳ କୂଜିତ ବାଣୀ ॥୩୫॥

ମୁନି ଜନ ମନ ପାଶୀ । ନୟନ ଆନନ୍ଦ ରାଶି ।
ବିରହୀ ହୃଦୟ ତ୍ରାସୀ । ଦେଖନ୍ତ ଅନଙ୍ଗ ଗ୍ରାସି ॥୩୬॥

ଧୀରେ ବହଇ ସମୀର । ମକରନ୍ଦ ପଦ ସ୍ବେର ।
କୁସୁମିତ ଲତାମାନ । କରେ ଦର କମ୍ପମାନ ॥୩୭॥

ବସନ୍ତରେ ଆଳବାଳ । ଶୋଭିତ ସଜଳ ମୂଳ ।
ପ୍ରସରେ ପମ୍ପାର ନୀର । ହେମ ସରଣି ରୁଚିର ॥୩୮॥

ନବୀନ ପ୍ରସୂନ ଲତା । ଚକ୍ଷୁ ଆହ୍ଲାଦ ଲଳିତା ।
ମତ୍ତ ମଧୁକର କୁଞ୍ଜେ । ବିରହୀ ହୃଦୟ ଗଞ୍ଜେ ॥୩୯॥

କେଉଁଣ ଲତା ବନିତା । ସ୍ତବକ ମୁଖେ ବିନତା ।
ମରୁତ ସ୍ପର୍ଶେ କମ୍ପିତା । ତେଜେ ମଧୁ ଅଶ୍ରୁ ଲତା ॥୪୦॥

ଆଗେ ଭୃଙ୍ଗ ପ୍ରିୟ ରବ୍ବ । ଝଙ୍କାର ବୃଂଠ କରଇ ।
ବୃନ୍ଦିଁ ଅଳି କୁଳ ମାଳା । କରୁଛି ବିବିଧ ଲୀଳା ॥୪୧॥

କୁସୁମ ଗର୍ଭେ ପଶନ୍ତି । ମଧୁର ରବ କରନ୍ତି ।
ପୃଷ୍ଠରୁ ବାହାର ହୋଇ । କେହୁ ରମାକୁ ଗୋଡ଼ାଇ ॥୪୨॥

ମତ୍ତ ଭରେ କେହୁ ଜଡ଼େ । ମକରନ୍ଦ ପାନେ ଜଡ଼େ ।
ସହଜ ଗମନ ହୁଡ଼େ । କୁସୁମ ସାଙ୍ଗେ କେ ପଡ଼େ ॥୪୩॥

ମଧୁର ସେ ରବ ପାଇ । ଅଳି ନଆଳୀ ବୃହିଁଇ ।
ମଧୁପ ରମଣୀ ତୋଷେ । କାନ୍ତ କୁମୁଦରେ ରସେ ॥୪୪॥

ସମଦ କେଉଁଣ ଅଳି । ପ୍ରସନ୍ନ ରୂପରେ ଚଳି ।
ସହଚରୀ ସଙ୍ଗେ ମିଳି । ଗଗନେ କରଇ କେଳି ॥୪୫॥

ମକରନ୍ଦ ଗନ୍ଧ ପାଇ । ମଧୁପେ ଆସନ୍ତି ଧାଇଁ ।
ଭ୍ରମନ୍ତି ଅବନୀ ତଳ । ପରସ୍ପରେ କରି ଗୋଳ ॥୪୬॥

କାହିଁ ପୁଷ୍ପ ରସ ଧାରା । ଲାଗିଅଛୁ ବସୁନ୍ଧରା ।
ଉଡ଼ନ୍ତ ମାଳ ଭ୍ରମରା । ଯୁବା ଜନମନ କାରା ।।୪୭।।

ବିହଙ୍ଗ ମୃଗ ପତଙ୍ଗ । ହୋଇଛନ୍ତି ଯୁଗ ଯୁଗ ।
ହେନ ହୃଦେ ଅନୁରାଗ । କରନ୍ତି ବିବିଧ ରଙ୍ଗ ।।୪୮।।

କେହୁ କୁଞ୍ଜରେ ପଶନ୍ତି । ସହଚରୀକୁ ଲୁଚନ୍ତି ।
ମିଳିତ ନେତ୍ର କେ ହୋଇ । ପ୍ରିୟାବଦନ ଚୁମ୍ବଇ ।।୪୯।।

ଲଳିତ ଚୂତ ଶିଖରେ । ମତ୍ତପିକ ଧ୍ୱନିକରେ ।
ମଦନ ରାଜ୍ୟେ ଆଦେଶ । କହେ କି ଲୋକେ ବିଶେଷ ।।୫୦।।

ରସାଳ ପଲ୍ଲବ ଲେଖି । ଦେଇଛୁ ପ୍ରତ୍ୟକ୍ଷେ ଦେଖି ।
ଯୁବାଜନମାନ ଚିତ୍ତ । ବିଜୟେ ଅନଙ୍ଗରାଜ ।।୫୧।।

ଶବ୍ଦିତ ଦ୍ୱିଜଗଣ । ପ୍ରସ୍ଥାଣ କାଳ ନିଶାଣ ।
ବିକାଶ ଚୂତ କୁସୁମ । ଅମଳକେତୁ ସୁସମ ।।୫୨।।

ପ୍ରଫୁଲ୍ଲେ କେସର ଗଣ । ନୃପଛତ୍ର ଏହା ଜାଣ ।
ଦେଖ କେତକୀ ନିକର । ଯେଉଁଟି କୁନ୍ତ ମଦନର ।।୫୩।।

ଯେସନ ଚନ୍ଦ୍ର ସେ ବାଳା । ଚିତ୍ତ ତରଳ ହୋଇଲା ।
ତହିଁ ଘାର୍ଦ୍ଦିକା ଶୋଭନ । ରୀତ ପାରୁଶ ସୁବର୍ଣ୍ଣ ।।୫୪।।

ମାଣିକର ଝାପଦଣ୍ଡୀ । ମଧ୍ୟରେ ଅଛଇ ମଣ୍ଡି ।
କରେ ଯେ ସନ୍ନିଧି ଗତ । ରଚୁଅଛୁ ଅରୁଣିତ ।।୫୫।।

କିବା ସେ ନବ ବନିତା । ନାନା କୁସୁମେ ମଣ୍ଡିତା ।
ନୟନ ମନରଞ୍ଜିନୀ । ବିପୁଳ ରସଧାରିଣୀ ।।୫୬।।

ସିତ କମଳ ବଦନୀ । ନୀଳେନ୍ଦୀବରଲୋଚନୀ ।
ଚକ୍ରବାକ କୁଚବେନ । ମୃଣାଳ ବାହୁ ଶୋଭିନୀ ।।୫୭।।

ଗୁଚ୍ଛ ଶଇବାଳ-କେଶୀ । ସ୍ୱଚ୍ଛ ଅନ୍ତର ପ୍ରକାଶି ।
ରତିକାମ ତାପନାଶୀ । ମାନସ ରସ-ଉଲ୍ଲାସୀ ।।୫୮।।

କଳ ମରାଳ-ବଚନୀ । ଯୁବା-ହୃଦୟ ହାରିଣୀ ।
ଅତନୁ ସୁଖକାରିଣୀ । × × × ।।୫୯।।

କେହୁ ଜଳରେ ବୁଡ଼ନ୍ତି । ଉଭୟ ପକ୍ଷ କମ୍ପାନ୍ତି ।
ମତ୍ତେ ପୁଣି ତୀରେ ବସେ । ସହଚରୀ ସଙ୍ଗେ ରସେ ।।୬୦।।

କେବଣ ସିତ ମରାଳ । ଚଞ୍ଚୁରେ ଧରି ମୃଣାଳ ।
ବଲ୍ଲଭି ବଦନେ ଦେଇ । ନୀର ମଧ୍ୟେ ବିହରଇ ॥୬୧॥

ତାହା ଦେଖି ଚକ୍ରବାକ । ମଣଇଁ ବାଳ ଶଶାଙ୍କ ।
× × × । ପ୍ରିୟା ଘେନ କରେ ଶୋକ ॥୬୨॥

ପୁଣି କେକାନଦ ବୃନ୍ଦ । ଦେଖି ହୋଇଲ୍ ସଖେଦ ।
ଅଳିକୁଳ ତହିଁ ଗୁହିଁ । ରଜନୀ ବୋଲି ଭ୍ରମଇ ॥୬୩॥

କାନ୍ତ ସଙ୍ଗେ ଭଙ୍ଗେ ଥିରୁ । ହୋଇଛନ୍ତି ସେ ଚନ୍ଦ୍ରାଗରୁ ।
ନ କରେ ଉଦକ ପାନ । କେବଳ ବିରସ ମନ ॥୬୪॥

ଯେସନ ଦେଖି ସୁନ୍ଦରୀ । ସ୍ମରଣରେ ତନୁ ଧାରି ।
ସଖିରେ ଦେଲ୍ ନୟନ । ବିପୁଳ ଉଚ୍ଛନ୍ନ ମନ ॥୬୫॥

ସାତ୍ତ୍ୱିକେ ଥକିତ ଅଙ୍ଗ । ହୋଇଲ୍ ତା ସ୍ୱର ଭଙ୍ଗ ।
ଇଚ୍ଛଇ ବଲ୍ଲଭ ସଙ୍ଗ । ବହୁ ବିନ୍ଧିଲ୍ ଅନଙ୍ଗ ॥୬୬॥

ଦମ ଦମ ଉର ବାଳୀ । ପୁଲକେ କପୋଳ ପାଳି ।
ଉରୁ ବେନି ତାର ଚଳି । ତନୁ ସ୍ୱେଦ ବିନ୍ଦୁ ଗଳି ॥୬୭॥

ଏସନ ଦେଖିଣ ଆଳି । କହନ୍ତି କରି ଢମାଳି ।
ତୁ ଏକ ନୃପ ଦୁଲାଳୀ । ହୋଇଛୁ ବିକାରଶାଳୀ ॥୬୮॥

କିସ ଏହୁ ବିପରୀତ । × × × ।
ଶୁଣି ବୋଲେ ଶଶିମୁଖୀ । ଉପବନେ ହେଲି ଦୁଃଖୀ ॥୬୯॥

କ କେ ଗୋ ଦେଖି ଯେମାନ । ହେଲି ମୁଁ କାତର ମନ ।
କିସ ଯେଥର ନିଦାନ । ବିଚାରି କର ବିଧାନ ॥୭୦॥

ଶୁଣିଣ ସକଳ ସହି । ହରଷ ବିସ୍ମୟ ହୋଇ ।
ନାନା ଶୀତ ଉପଚାର । ରଚିଲେ ତାରେ ସତ୍ୱର ॥୭୧॥

ଅଖିଳ ଅମର ଈଶ । ନୀଳାଚଳେ ସୁପ୍ରକାଶ ।
ତାଙ୍କର ଚରଣେ ଦାସ । ନୃପ ଧନଞ୍ଜୟ ତୋଷ ॥୭୨॥

# ପଞ୍ଚମ ଛାନ୍ଦ

## (ରାଗ - କଲ୍ୟାଣଆହାରୀ

ତାଳ- ରୂପକ

ଏଥୁ ଅନନ୍ତରେ ଉପବନ ପୁରେ ବରଯ ନୃପତି ନନ୍ଦନୀ
ମୃଗ ପତଗ ମିଥୁନ ଅନୁରାଗ କେବଳ ହୃଦେ ଅଛୁ ଘେନ
ବାଳା ସେ, ବାହାର ସ୍ଥଳମାନ ଦେଖି,
କୁସୁମ ଶର ଭୟେ ରାମା କାତର ଗାଢ଼େ ହୃଦୟେ ହେଲ ଦୁଃଖୀ ॥୧॥

ମଣି ପଲଙ୍କ ସୁଖ ଭୋଗ ତେଜ ସେ ଲୋଟଇ ରାମା ମହୀତଳେ
କନକ କମନୀୟ ରୁଚି ଲୁଚିଛି ଶରତ କାଳ ଧୂଳି ଜାଳେ ।
ସୁନ୍ଦରୀ, ମଳିଣ ବଦନ ମଣ୍ଡଳ
ପ୍ରଭାତ କାଳ ଶଶୀ ସମ କି ଅବା ନୀର ବରହିତ କମଳ ॥୨॥

ନବକିଶଳୟ ଶୟନେ ସୁକେଶୀ ଈଷିତ ସୁଖ ନ ଲଭିଲା
ଲଳିତ ବସଲତା ଦେଖି ବନିତା ବ୍ୟାଳସମ ଚିତ୍ତେ ମଣିଲା
ସୁମୁଖୀ, ଟେକି ନ ଚାହିଁଇ ଅପାଙ୍ଗ
ହାସଗ୍ରାମଣି ମଣିଭୂଷଣ ସେ ହାରିଲା ବୃନ୍ଦଭ୍ରୁର ଭଙ୍ଗ ॥୩॥

ଫିଟି କବରୀଭର ତାର ଚରଣ ଦେଶେ ଧରିଅଛି ମଣ୍ଡନା
ଉତ୍ତମ ଭୂମି ଭେଦ ଭୟେ କି କାଳିନ୍ଦୀ ତେସନ ସହଜ ଶୋଭନା
ରାମାର, ନିଶ୍ଚଳ ବେନି ନେତ୍ର ମୀନ !
ମାର ଧୀବର ଭୟେ କି ହୋଇଅଛି ଲୋଚନ ନୀର ଗର୍ଭେ ଲୀନ ॥୪॥

ଘନ ଘନସାରମିଶ୍ରିତ ଚନ୍ଦନ ଲେପନରୁ ଧୂମ ଉଠଇ
ସରସ ସାଲସରେ-ଉଲ୍ଲାସ କମ୍ପିତ ଚିତ୍ତ ନ ଲଭଇ ।
ବାଳା ସେ, ଚମକ ଦମ ଦମ ଜର
ସଖୀଙ୍କ ବଚନ କହି ନ ପାରଇ ପ୍ରତିପଦେ ଭୁଟେ ଅକ୍ଷର ॥୫॥

କ୍ଷଣ କ୍ଷଣକେ ଘୂର୍ଣ୍ଣ ଉଠି ଝସଇ ପୁଲକ ବହେ ତନୁ ତନୁ
ମଳନ ହସିଲା ଧୁରଙ୍ଗ ଅଧର ଗାଢ଼େ ପୀଡ଼ିଲା ଫୁଲ ଧନୁ
ବାଳା ସେ, ଚନ୍ଦ୍ରକୁ ଚାହିଁ ହେଠ ମୁଖ
ମଦନ ମିତ ବୋଲି ମନେ ନିନ୍ଦଇ ହୃଦରେ ଲଭି ଗୁରୁ ଦୁଃଖ ॥୬॥

ଗରଳ ଅନନ୍ତୁ ଅଧିକ ଦହଇ ଦରଶନେ ଜୀବ ହରଇ
ବିରହୀ ନାରୀ ସହସ୍ର ହୃଦେ ଏହୁ କଳଙ୍କ ପ୍ରକାଶ କରଇ,
ନିର୍ଲଜ୍ଜ, ନ ଧରଇ ସେହିଠେ ବିଚାର
ମିହିର ବନ୍ଧୁ କମଳିନୀ ଉପରେ ଯହୁଁ କରେ କର ପ୍ରଚାର ॥୭॥

ସିଂହିକା ସୁତ ବଦନ ଗର୍ଭେ ପଡ଼ି ଦଶନେ ନିଧନ ନୋହିଲା
ବିୟୋଗୀ ଚିତ୍ତ ବିଦାରଣ କାରଣେ ତହୁଁ ଉଦ୍ଧରିଲା ।
ଧାତା'ର, ବିକୃତ ରଚନା ଏ ରୂପ
ଅମର ବୃନ୍ଦ କଳାମାନ ପିବନ୍ତେ ଜୀବନ ନ ତେଜଇଁ ପାପ ॥୮॥

ଏ ଯେ ବସନ୍ତ ଅନଙ୍ଗ ପ୍ରାଣ-ମିତ ଚଉଦିଗେ ହେଲା ପ୍ରକାଶ
ଜଗତ ଜୀବ ମୋହପାଶ ବିଶେଷେ ବିରହୀ ଜନ ହେଲେ ହାସ
ମଧୁ ସେ, ବିଧୁରୁ ନିଷ୍ଠୁର ହୋଇଲା
ବିୟୋଗିନୀ ଜନ ଜୀବନ ହରଣେ ମିହିରୁ ମନ୍ତ୍ର ବହିଲା ॥୯॥

ଏହୁ ମଳୟ ଶଇଳଜ ସମୀର ସଧୀରେ କଲା ଆଗମନ
ବିକଚ କେଶର କୁସୁମ ପରାଗେ ବିଚିତ୍ର କରଇଁ ଗଗନ
ଏଣେ ମୋ ଧଇର୍ଯ୍ୟ ଲତା କମ୍ପମାନ
ବିଷଧର ଗଣ ସଙ୍ଗରୁ ପିଶୁନ ଆହରି ରହିଛି ଜୀବନ ॥୧୦॥

ମତ୍ତ ପରଭୃତ ବିକଶିତ ଚୂତ ଶିଖରେ କରଇ ବିଳାସ
କୁହୁକୁହୁ ରବ ଛଳେ ଡାକ ଜୀବ ନେବ ସେହୁ ମୋର ଅବଶ୍ୟ
କୋକିଳ, ଚଞ୍ଚୁ ପୁଟେ ଧରି ବକୁଳ
କେବଳ କାଳରୂପ ସେ ଦରଶନେ ହୃଦୟ କରଇ ଆକୁଳ ॥୧୧॥

ମତ୍ତଷଟ୍‌ପଦରାଜ ଗୁଣ ରାଜି ମଦନ ରାସେ ଶରାସନ
କ୍ୱଣିତ ଝଙ୍କାର ରବେ ଏ ବିହ୍ୱଳ କରଇ ଯୁବାଜନ ମନ
ଏହାକୁ, ଦେଖି ମୋ ହୃଦେ ଗରୁ ହାସ
ତ୍ରିପୁର ହର ଯେବେ ତୋଷ ନୋହିବେ ଜୀବ ଯିବ ଏ ଯମ ପାଶ ॥୧୨॥

ଚନ୍ଦ୍ର ଆଦି ଏ ଯେତେକ ଉଦ୍ଦୀପକ କନ୍ଦର୍ପ ଏଥିରେ ନାୟକ,
ଯେଣେ ମୁଁ ନୟନ କରିବି ପତନ ତେଣେ ତା ବିକାଶେ ସାୟକ
ଅନଙ୍ଗ, ଭୁଜଙ୍ଗ ମୋ ଜୀବ ଦଂଶିବ
ମନୁ ଜାତ ହୋଇ ଜୀବ ଯେ ଦହଇ ଏ ତାର ପାମର ସ୍ୱଭାବ ।।୧୩।।

ବିପୁଳ କୁଳେ ଜନମ ହୋଇ କାମ ଏସନ ପିଶୁନ ହୋଇଲୁ
ଅମର ରାଜ ସମାଜ ଲାଜ କି କେ ଈଷିତେ ଚିତ୍ତେ ନ ଧଇଲୁ
ନିଷ୍ଠୁର, ଜାଣୁ କେବଳ କ୍ରୂର ମତ
ଦସ୍ୟିତରନ୍ୱିତ ଜନ-ଜୀବନାଶେ ପାତକ ବିଖ୍ୟାତ ଜଗତ ।।୧୪।।

ଶଙ୍କର କୋପାନଳରେ ଭସ୍ମ ହୋଇ ଏ ହୀନ ଘାଣ୍ଟ ନ ତେଜିଲୁ
ପରେତ ରୂପ ଧରି ହରିନନ୍ଦନ ଅତୁଳ୍ୟ କଳଙ୍କ ବହିଲୁ ,
ମାତ ଏ, ଚୋରେ ଏହୁ ଜନ ନିଧନ
ସତତ ଦୁରନ୍ତ ଏ ମୋ ମର୍ମ ବାଧା ସର୍ଶୀରେ କି ହେବ ବିହୀନ ।।୧୫।।

ଜୀବନଦ ବିନୁ ବୃତଜ୍ଞା ଚିତ୍ତ କି କନକ ପଞ୍ଜରେ ଉଲ୍ଲାସି,
ପୌର୍ଣ୍ଣମୀ ଶଶାଙ୍କ ଦରଶନ ବିନୁ ଚକୋରୀ ହୁଏ କି ହରଷୀ
ବାଳା ସେ, ଚନ୍ଦ୍ରଶାଳା ପୁରେ ତେସନ
ଲୋଚନ ବେନି ନିମୀଳିତ କରିଣ ଚିନ୍ତା ସାଗରେ ହେଲା ଲୀନ ।।୧୬।।

ଚନ୍ଦ୍ର ବିନୁ ଯେହ୍ନେ ନ ଶୋହେ ରଜନୀ ଘନ ବିନୁ ଯେହ୍ନେ ଦାମିନୀ
ବୃଷଭ ବିନୁ ସୁରଭି ଶୋଭା ଯେହ୍ନେ ପତି ବିନୁ ତେହ୍ନେ କାମିନୀ
କୁସୁମ—ବନ ଭୃଙ୍ଗ ବିନୁ ନ ଶୋହେ
ମତ୍ତ ପିକ ବିନୁ ନବ ଚୂତଲତା ହୃଦ ଆମୋଦ କରିବ ହେ ।।୧୭।।

ବଲ୍ଲଭ ବଦନ ଚନ୍ଦ୍ରମା ଯାହାର ନୟନ ଆନନ୍ଦ ନ କଲା
ଶ୍ରବଣ ପୁଟେ ତା ଅମୂଲ୍ୟ ବଚନ ସୁଧା ଯାର ପୀତ ନୋହିଲା
କାନ୍ତର, ନ ଲଭିଲା ଯେହୁ ସଙ୍ଗମ ।
ବିଫଳ ଜନମ ସେ ହୀନ ରମାର ବିହି କଲା କି କେ ଜନମ ।।୧୮।।

ନୀର ବିନୁ ଯେହ୍ନେ ନ ବଞ୍ଚଇ ମୀନ ପ୍ରିୟ ବିନୁ ବାଳା ତେସନ
ବିଚିତ୍ର ମଣିମୟ ପୁରି ତାହାର ନ କରଇ ଚିତ୍ତ ପ୍ରସନ୍ନ ।
ଜଗତେ, ଯାହା ସେ ଜୀବନ ଧରିଥାଇ
ପୂର୍ବ ସଞ୍ଚିତ ଦୁରିତ ବଶୁଁ ତାକୁ ବିହି ବିଡ଼ମ୍ବନା କରଇ ।।୧୯।।

---

୧୫।୪ କ-ଦୁରତ ଖ-ଦୁରିତ

୧୬।୨ କ-ସ୍ମୃତି (?) ଖ-ଶିବଙ୍କ

୧୮।୧ କ-ବଲହ ଖ-ବର୍ଲ୍ଲ

ଧନ୍ୟ ସେ ଯୁବତୀ ରତନ ଯେ ପୁଣ ବଲ୍ଲଭ କୋଳେ କରେ ରଙ୍ଗ
ଅଧର ଅମୀୟ ଦାନେ ସେହୁ ନିତ୍ୟେ ଲଭୁଛି ପ୍ରିୟ ଅଙ୍ଗ ସଙ୍ଗ ।
ରାମା ସେ, ଅତି ବିପୁଳ ଭାଗ୍ୟବତୀ
କମନୀୟ ରୂପ ଗୁଣ ମତି ତାର ଜନମ ସଫଳ ଜଗତି ॥୨୦॥

ପଶୁତନୁ ହୋଇ ଦୟିତ ସହିତ ଜଗତେ ମୁଁ ବହୁ ମଣଇଁ,
ଧନ୍ୟ ଜୀବନ ଯେ ଅବିରତେ ତାର ବଲ୍ଲଭ ନୟନେ ଖେଳଇଁ ।
ସଂସାରେ, ସେ ରାମା ଯଉବନବତୀ
ରତି ସାହିତ୍ୟ ସ୍ଥିତି ସେହୁ ଜାଣଇ ଧନ୍ୟ ତା ସ୍ମୃତି ଅଳଂକୃତି ॥୨୧॥

ସହଚରୀ ଯେବେ ସେ ମୋର ଚିନ୍ତାରେ ଚିର ବିଧାନ ବିସ୍ତରିବ,
ଏ ମଧୁ ସମୟେ କଇଁ ଚନ୍ଦ୍ରକାନ୍ତ ଯେବେ ନିଶି ସୁଖ ନ ଦେବ ।
ଆଉ କି, ଲୋକର ଆଲୋକ ଲଭିବ ?
ନିଶ୍ଚେ ବିହି ମୋତେ ସୁମୁଖ ନୋହିଲେ ଶମନ ଭବନ ଦେଖିବି ॥୨୨॥

ଏସନ ଚିନ୍ତି ଯୁବତୀ ସେ ସଖୀରେ ସଧୀରେ ଦୃଷ୍ଟିପାତ କରି,
କହିଲା କୋମଳେ ବେଗେ ନୀଳଚେଲ ଯୋଡ଼ାଅ ଏଥୁ ରତ୍ନପୁରୀ
ସାରିକା, ଶୁକ ପଞ୍ଜର ଏଥୁ ନିଅ
କରୁଛି ମୋର କର୍ଣ୍ଣ ତାପ ସେପାପ ଖଣ୍ଡିତ ନିଦ୍ରା ସୁଖ ଦିଅ ॥୨୩॥

କିବା ବିହି ଏହୁ ମଳୟ ସମୀର ପରଭୃତ ଛୁତ ପ୍ରକାଶୁ,
ସମଦ ଷଟ୍‌ପଦ କରଣ ଝଙ୍କାର ଗଗନେ ଶଶାଙ୍କ ବିକାଶୁ ।
ମଦନ, ଧରି ବିପୁଳ ରୋଷ ମନେ
ଜୀବିତେଶ ପୁରି ଗମିବା ଜନର କି କରିବେ ଅବା ଏମାନେ ॥୨୪॥

ଏତେ ସେ କହି ସୁକୁମାରୀ କୁମାରୀରତନ ମଉନ ହୋଇଲା,
ଅଶଙ୍କିତ ଉରେ ପଲ୍ଲବ ଶଯ୍ୟାରେ ସତ୍ୟରେ ଶୟନ ବହିଲା ।
ସଖୀ ତା', ଦେଖି ସମାନ ହେଲା ଦୁଃଖୀ
ମୃଦୁଳ ବଚନ ଆଶ୍ୱାସି କହିଲା ନ କର ଚିନ୍ତା ଚନ୍ଦ୍ରମୁଖି ! ॥୨୫॥

ନୁହିଁ ତୁ ବିରସ ହୃଦରେ ସହି ରେ ନ କର ତନୁ ଅତି କ୍ଷୀଣ ।
ବିବିଧ ଉପାୟମାନ ମୁଁ କରିବି ତୁହି ମୋର ଜୀବ ଜୀବନ
ଲଭିବୁ, ଦିବ୍ୟ ରୂପ ନୃପକୁମାର
ଯାହା ମୁଖଚନ୍ଦ୍ର ପ୍ରକାଶ ମାତ୍ରକେ ତୁଟିବ ତୋ ଦୁଃଖ ତିମିର ॥୨୬॥

ଏସନ ଶୁଣି ରମଣୀ ମଣି ଚିତ୍ତ କଞ୍ଚିତ ଆନନ୍ଦ ଉଜଳ
ନିଦାଘେ ତାପିତ ନବୀନ ଲତା କି ନବ ଜଳଧାର ଲଭିଲା ।
ରମାର, ବିକାଶ ନୟନ କମଳ ।
ବିନିନ୍ଦ୍ର ମାପ ରୂପ ଛବି ଧଇଲା ସ୍ଵୃତ୍ତ ବେନିଗଣ୍ଡ ମଣ୍ଡଳ ॥୨୭॥

ପଶୁରିବା ମନ ନ କହେ ବଚନ ଲାଜ ଧଇର୍ଯ୍ୟ ଆବୋରିଲା
ଜାଣି ଚତୁରୀ ସହଚରୀ ଚରିତ ବାଳାର ହୃଦୟ ଭେଦିଲା ।
ଇଷିତ, ସ୍ମିତ ମୁଖେ ସେ କହେ ରମା,
ସକଳ ନୃପ ରୂପ ଗୁଣ କହିବି ଯାହା ଶୁଣି ହେବୁ ସକାମା ॥୨୮॥

ଅଖିଳ ଲୋକ ନିବାସ ପୀତବାସ ବିକଚ ପଦ ଅରବିନ୍ଦ
ଭବ ସନ୍ତତ ଆନନ୍ଦ ଧନଞ୍ଜୟ ନୃପତିର ଇଷ୍ଟ ଏ ପଦ ।
ସେବଣ, ଚରଣ କରନ୍ତେ ଆଶ୍ରମ
ଭୁବନପାବନୀ ଜହ୍ନୁର ନନ୍ଦନୀ ଯେହୁ ହେଲେ ହେଲେ ଜନମ ॥୨୯॥

●

## ଷଷ୍ଠ ଛାନ୍ଦ

### (ରାଗ—ମଙ୍ଗଳ ଗୁଜ୍ଜରୀ)

ତାଳ—କୁଡୁକା

ଶୁଣ ପ୍ରିୟ ଚନ୍ଦ୍ରମୁଖି ! ନୃପତି ଦୁହିତା ।
ନ ଧର ଲୋ ହୃଦରେ ସନ୍ତତ ଗରୁ ଚିନ୍ତା ଗୋ ॥୧॥

ଉତ୍ତମ ରାଜ ନନ୍ଦନ କରାଇବୁ ବର ।
ମୀନକେତନ ସମାନ ରୂପ ନବ ଯୁବା ଗୋ ॥୨॥

ଏ ତୋର ସନ୍ତୋଷ ଅର୍ଥେ ତାର ରୂପ ଗୁଣ ।
ଚିତ୍ତେ କଞ୍ଚନ ଚିତୋଇ କରିବି ବଖାଣ ଗୋ ॥୩॥

ଶୁଣି ଚକୋରଲୋଚନା ପୁଲକେ କପୋଳ ।
ସଖୀ ବେନି ପାଣି ଧରି ପଚାରେ ମୃଦୁଳ ଗୋ ॥୪॥

କେଉଁ ଦେଶେ ଜନମ ସେ କାହାର ନନ୍ଦନ ।
ବିସ୍ତାରି କହ ମୋ ଆଗେ ସ୍ଥିର କର ମନ ଗୋ ।।୫।।

ନୃପତିଳକନନ୍ଦିନୀ ବିନୟେ ସେ ହେନ ।
ମଧୁରେ କହଇ ଚିତ୍ରଲେଖା ଯେ କାମିନୀ ଗୋ ।।୬।।

କ୍ଷିତିରେ ବିଦିତ କାଶୀ ନାମେ ଯେ ନଗର ।
କଇଲାସ ତେଜି ଯହିଁ ରହିଲେ ଶଙ୍କର ଗୋ ।।୭।।

ସମ୍ପୂର୍ଣ୍ଣ କୋଟିଏ ଲିଙ୍ଗ ସହିତେ ଅଛନ୍ତି ।
ନନ୍ଦୀ ଭୃଙ୍ଗୀ ହେନ ଯହିଁ ବିଳାସ କରନ୍ତି ଗୋ ।।୮।।

ସନ୍ନିଧେ ବହୁଛି ଭାଗୀରଥୀ-କୀର୍ତ୍ତି ସିନ୍ଧୁ ।
ତହିଁ ରାଜା ନାମ ଚନ୍ଦ୍ରଚୂଡ଼ ଗୁଣବନ୍ଧୁ ଗୋ ।।୯।।

ରବିବଂଶ କଇରବ-ବନ-ପୂର୍ଣ୍ଣ ଇନ୍ଦୁ ।
ଯାଚକ ଜନ ଚାତକ ନବଘନ ଇନ୍ଦୁ ଗୋ ।।୧୦।।

ଯାହାର ପ୍ରୟାଣେ ପର ବଳ ହୋଏ ଲୀନ ।
କସ ତା ବର୍ଣ୍ଣିମା ଚତୁରଙ୍ଗ ଚମୂବର୍ଣ୍ଣ ଗୋ ।।୧୧।।

ସମ୍ପଦରେ ପୁଲୋମଜା ନାୟକର ସମ ।
ପଟ୍ଟମହିଷୀ ତାହାର 'ରୂପବନ୍ତୀ' ନାମ ଗୋ ।।୧୨।।

ସକଳ ଲାବଣ୍ୟ ସାର ହେନ କି ବିରଞ୍ଚି ।
ଅନେକ ଯତନେ ସେ ରାମାକୁ ଅଛି ରଚି ଗୋ ।।୧୩।।

ଶମ୍ବରାରିପୁ ନାରୀ ସେହି ରାମାବର ।
ଏମନ୍ତରେ କେତେ ହେଁ ଦିବସ ଗଲା ତାର ଗୋ ।।୧୪।।

ଏକ ଦିନେ ହରିଣାକ୍ଷି ହେନ ଉପଚାର ।
ପ୍ରବେଶ ହୋଇଲା ଉପବନର ଅନ୍ତର ଯେ ।।୧୫।।

ଷୋଡ଼ଶ-ବିଧିରେ ପୂଜା କରି ମାହେଶ୍ୱରୀ ।
କର ବେନି ଯୋଡ଼ି ସ୍ତୁତି କଲା ସେ ସୁନ୍ଦରୀ ଯେ ।।୧୬।।

ଜୟ ଅମ୍ବିକେ ଚଣ୍ଡିକେ ତ୍ରିଲୋକରୂପିଣି ।
ଭୁବନ ସର୍ଜ୍ଜନା ସ୍ଥିତି ପ୍ରଳୟକାରିଣି ଗୋ ।।୧୭।।

ପ୍ରଣତ ଜନ ହୃଦୟ ବର ଚିନ୍ତାମଣି ।
ଭକ୍ତମନ ନନ୍ଦନ ମୋ ଦିଅ ନାରାୟଣି ଗୋ ।।୧୮।।

ଏତେ ବୋଲି ସୁନ୍ଦରୀ ସେ ପ୍ରଣାମ ବହିଲ ।
ଅଶରୀର ବାଣୀ ତାର କର୍ଣ୍ଣ ଗତ ହେଲ ଯେ ।।୧୯।।

ନୃପତି ଭୂମିଜା ଚିନ୍ତା ନ ଧର ମନରେ ।
କାମ ସମ ରୂପ ସୁତ ଲଭିବୁ ଅଚିରେ ଗୋ ।।୨୦।।

ଅମୋଘ ଏ ଦେବୀ ଆଜ୍ଞା ହୃଦୟେ ରଖିଲ ।
ହରଷ ମାନସେ ରମା ନିଜ ପୁରେ ଗଲ ଯେ ।।୨୧।।

କିଛୁ ଦିନ ଅନ୍ତେ ଜାତ କଲ ସେ କୁମର ।
ଜଗତ ଜନ ନୟନ ଆନନ୍ଦ ଆକର ସେ ।।୨୨।।

ବିକଚ କେତକୀ ଛବି ସ୍ୱରୁଚି ତନୁ କାନ୍ତି ।
ରୂପ ଦେଖି ଲଜ୍ଜିତ ହୋଇବ ରତିପତି ଯେ ।।୨୩।।

ଅକଳଙ୍କ ପୂର୍ଣ୍ଣ ଇନ୍ଦୁ ଜିଣି ମୁଖ ଶୋଭା ।
ବିକାଶ ସରୋଜ ଜାଣି ନେତ୍ର ବେନି ଆଭା ଯେ ।।୨୪।।

ନବ ନବଘନ ସ୍ନିଗ୍ଧ କୁଞ୍ଚିତ ଚିକୁର ।
ବିସ୍ତାର ଲଲାଟ ଅର୍ଦ୍ଧ ବିଧୁର ଆକାର ଗୋ ।।୨୫।।

ମଦନ କମାଣ ନିନ୍ଦେ ରୁଚିର ଭ୍ରୂଦ୍ୱୟ ।
ନୀଳମଣି ଲତା କିବା ନିର୍ମାଣିଛି ବ୍ରହ୍ମ ଗୋ ।।୨୬।।

ତିଳ ପ୍ରସୂନ ନାସିକା ସୁନ୍ଦର ଅତ୍ୟନ୍ତ ।
ସିନ୍ଦୂର ମିଶ୍ରିତ ମୋ ଦନ୍ତ କାନ୍ତି ବନ୍ତ ଗୋ ।।୨୭।।

ଜଳଦ ଗମ୍ଭୀର ଧୀର ବଚନ ତା କ ସେ । ।
ଲଜ୍ଜିତ ସ୍ମିତରେ ସେ ସକଳ ଶତ୍ରୁ ତୋଷେ ଗୋ ।।୨୮।।

ନାଗରାଜ ଜିଣି ତା ରୁଚିର ଭୁଜ ବେନି ।
ପୂର୍ଣ୍ଣ କୋକନଦର ସୋଦର ବୃତ୍ତୁପାଣି ଗୋ ।।୨୯।।

ଗଜଫଳ କଳଭାକୁ ନିନ୍ଦଇ ଅଙ୍ଗୁଳି ।
ଜାତି କୁସୁମ ସମ ଶ୍ଲକ୍ଷ୍ଣ ତା ନଖାବଳି ଗୋ ।।୩୦।।

ବିସ୍ତାର ତା ବକ୍ଷ ପର-ବାରଣ କବାଟ ।
ମତ୍ତ କେଶରୀରେ କି ହେବତ ମଧ୍ୟ ତଟ ଗୋ ।।୩୧।।

ମାର ଜୟସ୍ତମ୍ଭ ଜାଣି ବେନି ଜଙ୍ଘ ଶୋହେ ।
ଦରଶନେ ପତିବ୍ରତା ଚିତ୍ତକୁ ହିଁ ମୋହେ ଗୋ ।।୩୨।।

ଚରଣ ଯୁଗ ପାଟଳ ମୃଦୁଳ ମାଂସଳ ।
ଲଳିତ ଅଙ୍ଗୁଳି ଶ୍ରେଣୀ ଅଛି ନଖ-ଜାଲ ଗୋ ॥୩୩॥

ଯୁବତୀ ଲୋଚନ ମୀନ ମୋହନ ବଡ଼ଶୀ ।
ଅବଲୋକନେ ହୃଦୟ ନଅଇ ଆକର୍ଷି ॥୩୪॥

'ମଧୁକର' ନାମେ ସଖୀ ମନ୍ତ୍ରୀର ନନ୍ଦନ ।
ନାନା କଉତୁକ ରସେ ହରଇ ତା ମନ ଗୋ ॥୩୫॥

ସହଜ ତନୁ ସମାନ, ମଦନ ସମାନ ।
କେବଳ ତା କରେ ନାହିଁ ପୁଷ୍ପ ଶରାସନ ଗୋ ॥୩୬॥

ଯେତେ ପରି ଶୋଭା ତୋରେ କରଇ ପ୍ରକାଶ ।
ଏଥୁଁ ସେ ନୃପ ନନ୍ଦନ ରୂପରେ ବିଶେଷ ଗୋ ॥୩୭॥

ଏହାରେ ଯେବେ ଉଲ୍ଲାସ ମାନସେ ସଜନୀ ।
ଉପାୟେ କରିବି କହ କୁରଙ୍ଗୀନୟନୀ ଗୋ ॥୩୮॥

ନୃପତି ଛାମୁରେ ଶୁଭ ବେଳେ ଜଣାଇବି ।
ସ୍ୱୟଂବର ଛଳେ କୁମରକୁ ଅଣାଇବି ଗୋ ॥୩୯॥

ଯେବେ ସେ ଯୁବା ଶ୍ରୀମୁଖ ବିଧୁ ପ୍ରକାଶିବ ।
ସେ ତୋ ନୟନ ଆନନ୍ଦ ସିନ୍ଧୁ ଉଲ୍ଲାସିବ ଗୋ ॥୪୦॥

ଶୁଣି ସେ ଖଞ୍ଜନନେତ୍ରୀ ସଖୀର ଉପାୟେ ।
କୃତ୍ୟକୃତ୍ୟ ହୋଇ ତାରେ କହଇ ବିନୟେ ଯେ ॥୪୧॥

ଚରଣ ବେନି ତୋର ଗୋ ଧରୁଛି ସଙ୍ଗାତ ।
ସେ ନୃପ ସୁତ ଦେଖାଇ ରଖ ମୋ ଜୀବିତ ଗୋ ॥୪୨॥

ମୁହିଁ ମନ୍ଦଭାଗୀ ମୋର କର୍ମ ଅତି ହୀନ ।
କେସନେ ଅବା ଲଭିବି କୁମର ରତନ ଗୋ ॥୪୩॥

ପୂର୍ବେ ଯେବେ ସେବିଥିବି ଈଶ୍ୱର ପାର୍ବତୀ ।
ସେ ପୁଣ୍ୟରୁ ଯୁବାମଣି ହେବ ମୋର ପତି ଗୋ ॥୪୪॥

ଯେବେ ନ ପାଇବି ସେହି ନରେଶ ନନ୍ଦନ ।
ଅବଶ୍ୟ ତେଜିବି ସଖି ଏ ମୋର ଜୀବନ ଗୋ ॥୪୫॥

ଏମନ୍ତ ବୋଲିଣ ପାଦ ଧରନ୍ତେ ସୁମୁଖୀ ।
.............. .................. ॥୪୬॥

ନୋହସି ଶରଦଚନ୍ଦ୍ର-ଆନନା କାତର ।
ଉପାୟେ କରି ଲଭିବା ନୃପତି କୁମର ଯେ ॥୪୭॥

ଏମନ କହି ସେ ସଖୀ ପାଶୁ ଚଳିଗଲା ।
ପଟ୍ଟମହିଷୀ ଛାମୁରେ ଯାଇଁ ଉଭା ହେଲା ଯେ ॥୪୮॥

ଦୂରୁ ଶିରେ କର ଦେଇ କଲାକ ପ୍ରଣାମ ।
ପାଣିଯୁଗ ଯୋଡ଼ି କହେ ସୁତା ଅଭିରାମ ଯେ ॥୪୯॥

ଶୁଣିମା ମୋର ବଚନ ନୃପ-ମନୋହାରୀ ।
ବିବାହଯୋଗ୍ୟ ହୋଇଲା ତୁମ୍ଭର କୁମାରୀ ଯେ ॥୫୦॥

ନୃପତି ଛାମୁରେ ତାହା ତୁରିତେ ଜଣାଅ ।
ସ୍ୱୟଂବର କରି ରାଜାମାନଙ୍କୁ ଅଣାଅ ଯେ ॥୫୧॥

କୁମାରୀ ରକ୍ଷଣ ବିଧି ପ୍ରଥମେ ବିଚାର ।
ଏତେ କହି ଶଶିଲେଖା ଗଲା ଯେମାପୁର ଯେ ॥୫୨॥

ଶୁଣି ହରଷ-ବିସ୍ମୟେ ହୋଇ ମାହାଦେଈ ।
ଚଳନ୍ତେ ସନ୍ନିଧେ ନୃପ ମିଳିଲେ ସେ ଯାଇ ଗୋ ॥୫୩॥

ଦେଖି ସସମ୍ଭ୍ରମ ହୋଇ ଉଠନ୍ତେ ସୁନ୍ଦରୀ ।
ପଲଙ୍କେ ବସିଲେ ନୃପ ରମାକୋଳେ ଧରି ଯେ ॥୫୪॥

ଆଲିଙ୍ଗନ କରି ମୁଖେ ଚୁମ୍ବନ ସେ ଦେଇ ।
ବୋଲନ୍ତି ବିରସ ଚିତ୍ତ କହ କସ ପାଇଁ ଯେ ॥୫୫॥

ନୃପବାଣୀ ଶୁଣି ମୃଦୁ ସ୍ୱରେ କହେ କାନ୍ତା ।
ତୁମ୍ଭର ପ୍ରସାଦୁ ମୋର ନାହିଁ କିଛି ଚିନ୍ତା ଯେ ॥୫୬॥

କୁମାରୀ ସ୍ୱରୂପେ ବର ଉଆଅ ସତ୍ୱର ।
ନରପାଳଗଣ ଆଣି କର ସ୍ୱୟଂବର ଯେ ॥୫୭॥

ସକଳ ମହୀପତିଙ୍କି ଦିଅ ନିମନ୍ତ୍ରଣ ।
ଅଚିରେ ଆସିବେ ବୋଲି ପେଷ ଚରଗଣ ଯେ ॥୫୮॥

ଏତେ କହି ରାଜା ବିଜେ କଲେ ଅନ୍ତଃପୁର ।
ସଚିବ ହିଁ ଯଥୋଚିତ ରଚିଲା ବେଭାର ଯେ ॥୫୯॥

ଆଶ୍ରିତବିହାରୀ ଦେବ ଚରଣେ ବିନତ ।
ନୃପ ଧନଞ୍ଜୟ ଗୀତ ହରୁ ସର୍ବ ଚିତ୍ତ ଯେ ॥୬୦॥

●

# ସପ୍ତମ ଛାନ୍ଦ

## (ରାଗ—କେଦାର)

ତାଳ — ହରିଦୁଜା

ଚକ୍ରକେଳି ବାଣୀରେ ଗାଇବ

ନୃପ ଆଜ୍ଞା ପାଇ 'ନୟସାଗର' । ଚରଗଣ ଡାକ କହେ ଉତ୍ତର ।।୧।।
ସର୍ବ ଦେଶରେ କରିବ ଗମନ । ରାଜ ବର୍ଗେ କହିବ ଏ ବଚନ ।।୨।।
ମହୀପତି ବିକ୍ରମବାହୁ ନାମ । କୁଳ କୁମୁଦ ଏ ଯେ ପୂର୍ଣ୍ଣ ସୋମ ।।୩।।
ତାଙ୍କ ନନ୍ଦନୀ ଯେକ ଅଭିରାମ । ନାହିଁ ବର ତା ରୂପ ଗୁଣ ସମ ।।୪।।
ଆଜୁ ପଞ୍ଚମ ଦିନେ ସ୍ୱୟଂବର । ବାଳା ମାଳା ଦେବ କଣ୍ଠେ ଯାହାର ।।୫।।
ତାରେ ପ୍ରଦାନ କରିବେ କୁମାରୀ । ଯେହୁ ନରଶ୍ରେଷ୍ଠ ଅଛି ନୃପକେଶରୀ ।।୬।।
ଆମ୍ଭେ ତାଙ୍କର ପରିକର ଜାଣ । ଏଣେ ସୁମୁଖ ହୁଅ ରାଜାଗଣ ।।୭।।
ନୃପପୁତ୍ରୀ ରୂପ କିଛି ବର୍ଣ୍ଣିମା । ଯେଣେ ରାଜାଙ୍କର ମନ ମୋହିମା ।।୮।।
ଏତେ କହି ଚରବର ପେଷିଲେ । ବାସ ଅଳଙ୍କାରେ ତାଙ୍କୁ ତୋଷିଲେ ।।୯।।
ତହୁଁ ନୟ ସାଗର ମନ୍ତ୍ରୀବର । କଲେ ସ୍ୱୟଂବର ବିଧି ବିସ୍ତର ।।୧୦।।
ଶୁଭ୍ର ହେଲା ନଗର ପୁରମାନ । ସୁଧା ଲେପେ ହସେ ଶଶଲାଞ୍ଛନ ।।୧୧।।
ପ୍ରତି ମନ୍ଦିରେ କନକ କଳଶ । ପଟ୍ଟ ଅମ୍ବରେ ମଣ୍ଡିତ ବିଶେଷ ।।୧୨।।
ମଳୟଜେ ରାଜମାର୍ଗ ଲେପିଲେ । ପୁର ଦ୍ୱାରେ ମାଙ୍ଗଳିକ ଥାପିଲେ ।।୧୩।।
ବାଳ କୁମାରୀ ତରୁଣ ତରୁଣୀ । ଯବ ଉରେ ଗୁରୁ-ଗଣ ନ ଗଣି ।।୧୪।।
କରେ ଘେନି ଚକ୍ଷୁଃସମ ପିଚକା । ଜନ ନୟନ ଆନନ୍ଦଦାୟିକା ।।୧୫।।
ଗନ୍ଧ କୁସୁମେ ସକଳେ ମଣ୍ଡିତ । କେହି ନାହିଁ ଅଳଙ୍କାର ରହିତ ।।୧୬।।
କିସ ବର୍ଣ୍ଣିମା ନୃପତି ନଗର । ଦରଶନ ମାତ୍ରେ ଯେ ଚିତ୍ତହର ।।୧୭।।
ମୋତି ମଣ୍ଡପ ଅଟ୍ଟାଳ ଭବନ । ପୁରନ୍ଦର-ଗିରି-ସାନୁ-ସମାନ ।।୧୮।।
ରତ୍ନ କଳଶ ଉପରେ ଶୋଭନ୍ତି । ଚିତ୍ର ପତାକା ଗଗନେ ଖେଳନ୍ତି ।।୧୯।।
ଲମ୍ବେ କୁସୁମମାଳା ଚଉପାଶ । ସଉରଭେ ରୁନ୍ଧୁଛି ସର୍ବ ଦେଶ ।।୨୦।।
ମଧୁ ଆସାରେ ଆଶାରେ ଭ୍ରମରେ । ତହିଁ କେଳି କରୁଛନ୍ତି ସମ୍ଭରେ ।।୨୧।।
ପଦ୍ମରାଗେ ବିରଚିତ ଗୋପୁର । ତହିଁ ନୀଳମଣିରେଖା ରୁଚିର ।।୨୨।।
ପାଶେ ଝଳକୁଛି ମୋତି ଚଉସରି । ତହିଁ ସନ୍ନିଧେ ମୃଦୁ ରତ୍ନ ଝରି ।।୨୩।।

ସ୍ୱଚ୍ଛ ସ୍ଫଟିକର ଚଉ ପ୍ରାକାର । ସୁର-କର-ସଙ୍ଗରୁ ଦଶେ ତାର ॥୨୪॥
ମଧ୍ୟେ କନକ ରତ୍ନ ପୁରମାନ । ରୁଚିଭରେ ଯେ କରେ ବର୍ଣ୍ଣି ଭିନ୍ନ ॥୨୫॥
ତହିଁ ଶୋଭେ ମଣିମୟ ଗବାକ୍ଷ । ଯେଉଁ ଯୁବା ଯୁବତୀ ଭେଟ ଦକ୍ଷ ॥୨୬॥
କାହିଁ ସଲଳ ଯନ୍ତ୍ରିତ ମନ୍ଦିର । କେଉଁଠାରେ ସଙ୍ଗୀତ ରଙ୍ଗପୁର ॥୨୭॥
କାହିଁ ଶଶ ଚନ୍ଦ୍ରଶାଳା ଭବନ । ମନ ରଞ୍ଜନ କାହିଁ ଉପବନ ॥୨୮॥
କାହିଁ କେଳି କଳାବତୀ ଯୁବତୀ । ରସିକରେ କରୁଛନ୍ତି ନେହ ରତି ॥୨୯॥
ଖେଦ ଖେଦ ହୋଇ କାହିଁ ବାଳକା । ହୋଇଛନ୍ତି ଶିଶୁରଙ୍ଗ ଶାଳକା! ॥୩୦॥
କାହିଁ ମନ ଭରେ ବର, ନାୟିକା । ପରସ୍ପରେ ହେଲେ ସୁଖ ଦାୟିକା ॥୩୧॥
କେଉଁ କୁମାରୀ ସଦନେ ପଶନ୍ତି । ନାନା ପରିହାସ ବାଣୀ ଭଣନ୍ତି ॥୩୨॥
ଆଗେ ଦେଖିବାଟି କାମ-ସମର । ଏଥେ ମିଳିବ କେବଣ କୁମର ॥୩୩॥
ଏତେ କଳା କଳାପରେ କୁଶଳା । ପୁଣି ଲଭିବ ରସିକର ଲୀଳା ॥୩୪॥
ତାରେ ମୋହିତ ଚିତ୍ତ ଯେଉଁ ହେବ । ଆଜ ଆମ୍ଭରେ ନିକ ଦୃଷ୍ଟି ଦେବ ॥୩୫॥
ଏଥୁ ହୋଇବ ରତି ରଙ୍ଗ ଭୂମି । ନୃତ୍ୟ କରିବ ଏଥେ କେଉଁ କାମୀ ॥୩୬॥
ଭୃଙ୍ଗ ଆସେ କି ମାଧବୀ ବିକାଶ । ଯହୁଁ ଜାଣିଲୁ ବସନ୍ତ ପ୍ରବେଶ ॥୩୭॥
ତେଣୁ ଜାଣ ସଖି ସମାରଚନ । ଆଜ ଦେଖ ହୋଇଛୁ ହୃଷ୍ଟ ମନ ॥୩୮॥
କାନ୍ତ ଉରରେ ଯେଉଁ ମଜ୍ଜି ଥିବ । ଆମ୍ଭ ଲୋଚନ ଫଳ, କି ନ ଦେବ ॥୩୯॥
ମନଚଳ ଶିଥିଳନ୍ତେ ବଲ୍ଲଭ । କି କହିବଟି ଯେ ବାଣୀ ଦୁର୍ଲ୍ଲଭ ॥୪୦॥
ଏତେ ବୋଲି ହସନ୍ତେ ବାଳୀଜନ । ନେହ ଅନ୍ତେ ଗୃହିଁ ବାଳା ବଦନ ॥୪୧॥
ସଖୀର ଏ ରଙ୍ଗ ସ୍ୱର ଜାଣି । ଲାଜେ ନମ୍ରମୁଖୀ ବର-ତରୁଣୀ ॥୪୨॥
ବ୍ରୀଡ଼ା କମଳ ଗୃହିଁ ବାଣୀ କହେ । ସହଚରି ! ସ୍ୱେ କେତେ ଦଳ ବହେ ॥୪୩॥
ପୁଣି ପଚାରଇ ସ୍ୱଚ୍ଛ ଚତୁରୀ । ସ୍ୱେହା କେସନେ ଉପୁଜାଇ ବାରି ॥୪୪॥
ଶୁଣି ଉଚେ ହସିଣ ସଖୀଗଣ । କଉତୁକେ ତହିଁ କରେ ଭ୍ରମଣ ॥୪୫॥
ବ୍ୟଗ୍ର ହୋଇଛନ୍ତି ସର୍ବ କାମିନୀ । ନୃପ ନନ୍ଦନୀ ମହୋତ୍ସବ ଯେଣ ॥୪୬॥
ସ୍ୱଚ୍ଛ ଚଉପୁର ମାନ ମଣ୍ଡନ୍ତି । ହସି ହୁଳହୁଳି ରବ କରନ୍ତି ॥୪୭॥
କେଉଁ ସଙ୍ଗୀତ ରସରେ କୁଶଳା । ଆଜ ବୃନ୍ଦେ କରଇ ଚିତ୍ତ ଲୀଳା ॥୪ ॥
ଅନ୍ତଃପୁର ନାରୀ ମୁଖ ଶବଦ । ମଣି କଂକଣୀ ନୂପୁର ନିନାଦ ॥୪୯॥
କ୍ଷଣେ କ୍ଷଣେ ବହୁ ସ୍ଫୂର୍ତ୍ତି ହୋଇଛି । ଯୁବାଜନ ଶ୍ରୁତି ଫଳ ଦେଉଛି ॥୫୦॥

ବହୁବିଧ ନିଶାଣ ଗଣ ଘୋଷ । ସଙ୍ଗେ କରୁଛୁ ମଙ୍ଗଳ ପ୍ରକାଶ ॥୫୧॥
କେତେ ବର୍ଣ୍ଣିମା ରମା ଲୀଳାମାନ । ପୁଣ୍ୟବନ୍ତ ସେ ଲଭେ ଦରଶନ ॥୫୨॥
ଗୃହ ଅଧିକାରୀ ବର୍ଗ ସଭିରେ । ସଭା ଶୋଭା କଲେ ବହୁ ପ୍ରକାରେ ॥୫୩॥
ମଧ୍ୟେ ଇନ୍ଦ୍ର-ଗୋବିନ୍ଦ-ଚନ୍ଦ୍ରାତପ । କୋଣେ ଖଞ୍ଜିଲେ ଚାମର କଳାପ ॥୫୪॥
ଚଉପାଶେ ମୋତିମାଳା ଲମ୍ବିଲେ । ପଟ୍ଟଚେଲେ ସ୍ତମ୍ଭଗଣ ରଞ୍ଜିଲେ ॥୫୫॥
ତହିଁ ଥାପିଲେ ଭଦ୍ରାସନଗଣ । ଦିବ୍ୟ ରତ୍ନେ ହୋଇଅଛି ନିର୍ମାଣ ॥୫୬॥
ସୁରଭିତ ମାଳଜାଳ ମଣ୍ଡିଲେ । ଯେଣେ ଜନ ମନ ଲୋଲ ଖଣ୍ଡିଲେ ॥୫୭॥
ନୃପ ନଗରେ ରାଜପଥ ଯେତେ । ନବ ମଣ୍ଡଣି ରଚିଲେ ଲଳିତେ ॥୫୮॥
ଠାବେ ଠାବେ ଅଗରୁ ସାରଧୂପ । ଯେଣେ ରୁନ୍ଧିତ ହରିତ କଳାପ ॥୫୯॥
ଦ୍ୱାରେ ଗଜ ବାଜି ରାଜି ସାଜିଲେ । ଅମ୍ବରତେ ବାଦ୍ୟ ନାଦେ ମଜ୍ଜିଲେ ॥୬୦॥
ପୁର ନଗର ଲୋକର ହରଷ । କେତେ କରିବା ବଚନେ ପ୍ରକାଶ ॥୬୧॥
ନୀଳ ମହୀଧର ପ୍ରଭୁ ଚରଣ । କଲା ନୃପ ଧନଞ୍ଜୟ ଶରଣ ॥୬୨॥

●

# ଅଷ୍ଟମ ଛାନ୍ଦ

## ରାଗ—ନଳିନୀଗୌଡ଼ା

(ତାଳ—ବ୍ରତମାନ)

ଏମନ୍ତରେ ତହୁଁ ଚଳିଗଲେ ବୀରମାନେ
ବାସ ଅଳଙ୍କାର ଲଭି ଅତି ତୋଷମନେ ଯେ ।୧।

ଶୁଭ ବେଳ ଜାଣି ପୁରୁ ବାହାର ହୋଇଲେ
ମାଙ୍ଗଳିକ ଚିହ୍ନମାନ ଅଗ୍ରତେ ଥୋଇଲେ ଯେ ।୨।

ପଥେ ଯାଉଁ ଚିତ୍ରେ ବିଚାରନ୍ତି ବେଗେ ଯିବା
ନିଜ ପ୍ରଭୁର ଆଦେଶ ହେଳା ନ କରିବା ଯେ ।୩।

ନୃପତିଙ୍କ ଶ୍ରୁତିସୁଖ ବଚନେ କହିବା
ଯେଉଁଥି ଜଗତ ବେଶ୍ୱର ଅଯତ୍ନେ ଲଭିବା ଯେ ।୪।

ଏସନ ସେ ଶନ୍ତ ଖରେ ହରଷ ମନରେ
ପ୍ରବେଶ ହୋଇଲେ ଶୁଭେ ସକଳ ଦେଶରେ ଯେ ।୫।

ପ୍ରଭୁର ନନ୍ଦନୀ ସ୍ୱୟଂବର ରୂପଗୁଣ
ନୃପଙ୍କ ଛାମୁରେ କଲେ ବିଶେଷେ ବଖାଣ ସେ ।୬।

ଶୁଣି ରାଜକୁଳ ହୋଇ ହରଷ ବିସ୍ମିତ
କେବଳ ସେ ବାଳାରେ କରିଲେ ସ୍ଥିରଚିତ୍ତ ଯେ ।୭।

ସକଳ ବିଷୟୁ ବିଷ ସଦୃଶ ମଣିଲେ
ନରେଶ କୁମାରୀ ନାମ ରୂପ ଜପ କଲେ ଯେ ।୮।

ଏକରସ ମନେ ସେ ନିଖିଳ ମହୀପାଳ
ବାହାର ହୋଇଲେ ଘେନି ଯେ ଯାହାର ଦଳ ଯେ ।୯।

ବୋଲନ୍ତି ସେ ଧନ୍ୟ ହେ ବିକ୍ରମବାହୁ ରାଜା
କେତେ ସୁକୃତେ ଲଭିଲ ଯେସନ ତନୁଜା ହେ ।୧୦।

ପୂର୍ବେ ଯେ ବିପୁଳ ତପେ ତୋଷିଥିବ ଉମା
ଏବେ ସେ ଅତି ଭାଗ୍ୟରୁ ଲଭିବ ତୋ ଜେମା ହେ ।୧୧।

କହେ କେଉଁ ନୃପ ସୁତ ରୂପଗର୍ବ ଭରେ
ସେ ମୋର ବଶ ହୋଇବ ନୟନ ଭେଟରେ ହେ ।୧୨।

ବୋଲେ କେବଣ ନୃପତି ଦୂତ ବରଗିବା
ଯେଣେ ସେ ସନ୍ତୋଷ ହେବା ବିନୟି ଲେଖିବା ଯେ ।୧୩।

ଯେବଣ ପାର୍ଥିବରେ ସେ ସୁନ୍ଦରୀ ରସିବ
ଏ ନରେନ୍ଦ୍ର ବୃନ୍ଦର ସେ ଦୁଃସହ ହୋଇବ ହେ ।୧୪।

ରାଜମାର୍ଗେ ଧୀରେ ଧୀରେ କରଇଁ ଗମନ
କଟକର ଶୋଭା ଚାହିଁ ସଫଳନୟନ ଯେ ।୧୫।

ଯହିଁ ନିଜ କର୍ମରେ ବିଦିତ ସର୍ବଜନ
ଧର୍ମ ନୀତି ପାଳନରୁ ଯମଭୟେ ହୀନ ଯେ ।୧୬।

ନାନା ମୁଖରବରେ ପୂରିଛି ଚଉଦିଶ
ଅମ୍ବରରେ ଉଛୁଳେ ବିବିଧ ବାଦ୍ୟ ଘୋଷ ଯେ ।୧୭।

ସବୁରି ସଉଧ ପୁରେ କନକ କଳଶ
ଜଗତି ଅଟ୍ଟାଳ ଶିର ଛୁଇଁଛି ଆକାଶ ଯେ ।୧୮।

ପତାକା ଅମ୍ବରେ ଘନେ ହୁଅନ୍ତି ପ୍ରେରିତ
ମଣିଗଣ କିରଣେ ଯେ ପ୍ରକାଶେ ଦିଗନ୍ତ ଯେ ।୧୯।

କେବଳ ବଡ଼ଭପୁର ଉଚ୍ଚ ଅଗ୍ରଦେଶ
ଗିରି ସାନୁ ବୋଲି ଅଭ୍ର କରଇ ଆଶ୍ଳେଷ ଯେ ।୨୦।

ଗଗନସଞ୍ଚାରୀଗଣ ସଞ୍ଚାରଣ କାଳେ
ବିଶ୍ରାମ କରନ୍ତି ଯେଉଁ ମସ୍ତକମଣ୍ଡଳେ ଯେ ।୨୧।

କେଉଁଠାରେ ଅବା ବେଣୁ ବୀଣା ନୃତ୍ୟ ରସେ
ମଗ୍ନ ହୋଇଛନ୍ତି ଜନେ ଉଲ୍ଲାସ ମାନସେ ଯେ ।୨୨।

ବାରୁଣି ଶ୍ରେଣୀ ବାରଣ ପ୍ରାତ୍ୟେକ ଶୋଭନ୍ତି
କାହିଁ ରହିଛନ୍ତି ତୁଙ୍ଗ ତୁରଙ୍ଗମ ପନ୍ତି ଯେ ।୨୩।

ନିରୁପମ ବିକ୍ରମ ଯହିଁରେ ପତ୍ତିବୃନ୍ଦ
ଦୃଷ୍ଟି ମାତ୍ରେ କରନ୍ତି ଅରାତି ହୃଦମନ୍ଦ ଯେ ।୨୪।

ଚତୁରଙ୍ଗ ବଳରଙ୍ଗ ଦେଖି ସେ ସୁମନ୍ତ
ନଗର ଶୋଭାରେ ସେ ଲଭିଲା ଅତି ପ୍ରୀତି ଯେ ।୨୫।

ମନେ ବିଚାରଇ ଧନ୍ୟ ଚନ୍ଦ୍ରକେତୁ ରାଜା
ଅତି ସୁଖେ ପାଳଅଛି ଯେ ଜନ ପରଜା ଯେ ।୨୬।

ଯେମନ୍ତ ନଗର ଦ୍ୱାରେ ପ୍ରବେଶ ହୋଇଲା
ପ୍ରତିହାରୀ ଆଗେ ପ୍ରଭୁ ଆଦେଶ କହିଲା ଯେ ।୨୭।

ତା ମୁଖୁ ଶୁଣି ବେହେରା ସସମ୍ଭ୍ରମେ ଯାଇ
ବେନି କର ଯୋଡ଼ି ନୃପ ଛାମୁରେ ଜଣାଇଁ ଯେ ।୨୮।

ଶୁଣ ସାବଧାନେ ଦେବ କାଶୀର ଈଶ୍ୱର
ଆସିଅଛି ନୃପତି ବିକ୍ରମବାହୁ ଚର ହେ ।୨୯।

ଆସୁ ବୋଲି ଆଜ୍ଞା ସେ ଦିଅନ୍ତି ନରପତି
ବେହେରା ଯାଇଁ ଦୂତକୁ ଆଣିଲା ଝଟିତି ହେ ।୩୦।

ଦରଶନ କରି ଉଭା ହୋଇଲା ସେ ଚର
ନୃପ ଆଜ୍ଞା ଲଭି କହେ ଯୋଡ଼ି ବେନି କର ହେ ।୩୧।

ଭୋ ନର ଈଶ୍ୱର ସାବଧାନ ଚିତ୍ତେ ଶୁଣ
ବିକ୍ରମକେଶରୀ ନୃପ କଙ୍କର ମୁଁ ଜାଣ ହେ ।୩୨।

ଧର୍ମରେ ଲଭିଛି ରାଜା ଏକଇ କୁମାରୀ
ଅନଙ୍ଗରେଖା ନାମ ତା ରୂପେ ନାହିଁ ସରି ହେ ।୩୩।

ଦିନୁ ଦିନୁ ଶଶିଲେଖା ସଦୃଶ ବଢ଼ିଲା
ଯୁବା ଯୁବତୀ ନୟନ-ଚକୋର ରଞ୍ଜିଲା ଯେ ।୩୪।

କନକ ବରଣୀ ପୂର୍ଣ୍ଣ ଶଶାଙ୍କ ଉପମା
କୁଞ୍ଚକେଶୀ ମୃଦୁ ହାସୀ ହରିଣ ନୟନୀ ହେ ।୩୫।

ମରାଳଗାମିନୀ ପିକଭାଷିଣୀ ସୁନ୍ଦରୀ
ତରୁଣତା ଲଭି ହେଲା ଅତି ମନୋହାରୀ ଯେ ।୩୬।

ଏସନ ତା ରୂପ ରସ କୂପ ଦେଖି ଭୂପ
ସ୍ୱୟଂବର କଲେ ବର ହେବସ୍ୱେ ସରୂପ ହେ ।୩୭।

ଏମନ୍ତ ଚିନ୍ତି ସମସ୍ତ ନୃପ ନିମନ୍ତ୍ରିଲେ
ଭୋ ଦେବ ତୁମ୍ଭର ଆଗେ ମୋତେ ହିଁ ପେଷିଲେ ହେ ।୩୮।

ଅବିଳମ୍ବ କର ଶୁଭ ପ୍ରୟାଣ ବନ୍ଧୁର
ସଙ୍ଗତେ ବିଜେ କରିବେ ହେ ତୁମ୍ଭ କୁମର ହେ ।୩୯।

ଆଜଠୁଁ ପଞ୍ଚମ ଦିନେ ସ୍ୱୟଂବର ବିଧି
କୁମାରୀ ଲଭିବ ନିଜ ମନୋରଥ ସିଦ୍ଧି ହେ ।୪୦।

ଶୁଣି କାଶୀପତି ଅତି ଆନନ୍ଦ ହୋଇଲେ
ସେନା ସାଜ ବୋଲି ସଚିବକୁ ଆଜ୍ଞା ଦେଲେ ଯେ ।୪୧।

ଆପଣେ ସଜ୍ଜିତ ସୁତ ସହିତେ ରାଜନ
ମଙ୍ଗଳ ସଙ୍କେତମାନ ହୃଦେ କଲେ ଧ୍ୟାନ ଯେ ।୪୨।

କେଶବ ମାଧବ ରାମ ନାମ ରୂପ ଚିନ୍ତି
ବାହାର ହୋଇଲେ ସେନ ସଙ୍ଗତେ ସୁମତି ଯେ ।୪୩।

ପ୍ରଥମ ଗମନେ ନବ ବାଳା କର ଗତ
କଳସଜଳ ସମ୍ପୂର୍ଣ୍ଣ ହୋଇଲା ଲକ୍ଷିତ ଯେ ।୪୪।

ସୁସ୍ୱର କମ୍ବୁର ଧ୍ୱନି ଶ୍ରବଣେ ପୂରିଲା
ଜୟ ଜୟ ଘୋଷ ଚଉଦିଗେ ପ୍ରସରିଲା ଯେ ।୪୫।

ବାଜିଲା ନିଶାଣ ଗଣ ମର୍ଦ୍ଦଳ କାହାଳ
ଭେରୀ ଘୋରତର ନାଦେ ଅବିରତ ତରଳ ହେ ।୪୬।

ପିତାପୁତ୍ର ରଥଗଜ ଅଛନ୍ତି ଆରୋହି
ଚତୁରଙ୍ଗ ଚମୂ ତା ଚଳନେ ଚଳେ ମହୀ ଯେ ।୪୭।

ବିବିଧ ସୁଖ ଆଳାପ କରି ଦଣ୍ଡଧାରୀ
କେତେ ପଥ ଗମି ସେ ଦେଖିଲେ ଗୋଦାବରୀ ଯେ ।୪୮।

ନିତ୍ୟ କର୍ମ ବିଧି ତଥି ତୀରରେ ସାରିଲେ
ମିଳନ ଆଶାରେ ତହିଁ ରଜନୀ ବଞ୍ଚିଲେ ଯେ ।୪୯।

ପ୍ରଭାତ ସମୟେ ତହୁଁ ହୋଇଲେ ବାହାର
ଲଙ୍ଘିଲେ ଦୁର୍ଗମ ମାର୍ଗ ନଦ ନଦୀ ବାର ଯେ ।୫୦।

ବିକ୍ରମ ବାହୁ ରାଜାର ରାଜ୍ୟରେ ପ୍ରବେଶ
ମଧୁବନ ଆରାମରେ କଲେ ଶ୍ରମ ଶେଷ ଯେ ।୫୧।

ଶୁଣି କର୍ଣ୍ଣାଟ ଈଶ୍ୱର ହୋଇଲେ ସନ୍ତୋଷ
ନୃପ ବୃନ୍ଦେ ତାର ମାନ୍ୟ ବିହିଲେ ବିଶେଷ ଯେ ।୫୨।

ଉଚିତ ବେଶରେ ଚନ୍ଦ୍ରକେତୁ ମହୀପତି
ଆମୋଦ ହୃଦେ ରାଜାର ମନ୍ଦିର ଦେଖନ୍ତି ଯେ ।୫୩।

ଯହିଁ ନଗରେ ମଣି ମନ୍ଦିର ବର ଶୋଭା
ନିନ୍ଦୁଅଛି ଅମର ନଗର ପୁରପ୍ରଭା ଯେ ।୫୪।

ଆନନ୍ଦ ସିନ୍ଧୁରେ ମଜ୍ଜିଛନ୍ତି ସର୍ବଜନେ
ଉତ୍ସୁକ ମାନସ ନୃପରାଣ ଦରଶନେ ଯେ ।୫୫।

ମତ୍ତଗଜରାଜ ବ୍ରଜ ବିରାଜନ୍ତି କାହିଁ
ନବୀନ ଜଳଦବୃନ୍ଦ ସାଜିଛି କି ମହୀ ଯେ ।୫୬।

କାହିଁ ହୟ ଚୟ ରୟ ବଶେ ଖୁର ଧୂଳି
ଗଗନେ ପ୍ରସରି ଲୁଣ୍ଠଉଛି ହେଳେ ହେଳି ଯେ ।୫୭।

କେଉଁ ରାଜପଥ ରଥ ଗମନେ ମଣ୍ଡିତ
ଅକାଳେ ଘନ ନିଃସ୍ୱନ କରୁଛି ବିଖ୍ୟାତ ହେ ।୫୮।

ବିବିଧ ରୂପ ପଦାତି ସହିତର ଶୋଭା
ବିବିଧ ଆୟୁଧ ସଙ୍ଗୁ ଅତିଶୟ ପ୍ରଭା ଯେ ।୫୯।

କାହିଁ ସ୍ୟନ୍ଦନ ନିଃସ୍ୱନ ଶୁଣିଣ ମୟୂରେ
ଘନରବ ସେ କି ନୃତ୍ୟବନ୍ତ ମଦଭରେ ଯେ ।୭୦।

କେଉଁ ଠାବ ଗଜବୃନ୍ଦ ମଦରେ କର୍ଦ୍ଦମ
ପ୍ରାବୃଟ ସମୟର ଯେ କରୁଅଛୁ ଭ୍ରମ ଯେ ।୭୧।

କାହିଁ ମତ୍ତନାଗଗଣ ମଧ୍ୟେ କ୍ଷୀଣଜନ
ଅଲକ୍ଷିତ ହୋଇ ପଡ଼ି ତେଜୁଛି ଜୀବନ ଯେ ।୭୨।

ଅବିରତ ବାଦ୍ୟ ନାଦେ କମ୍ପଇଁ ଅବନୀ
ରଥ ଘୋଷ ଶୁଣି ତୋଷ ଘୃତକ କାମିନୀ ଯେ ।୭୩।

ଚଉଦବେଗେ ପ୍ରସରଇ ହେ୍ଷା ରବମାନ
ଧୂଳି ପଟଳରେ କାହିଁ ଲୁଚଛି ଗଗନ ଯେ ।୭୪।

ଏସନକ ଚତୁରଙ୍ଗ ଚମୂଚୟ ଦେଖି
ନର ପକ୍ଷିଗଣ ସବେ ହେଲେ ଅତି ସୁଖୀ ଯେ ।୭୫।

ନୀଳ ମହୀଧରଙ୍କର ପାଦପଦ୍ମ ବେନି
ନୃପ ଧନଞ୍ଜୟ ତୋଷ ହୃଦେ ଚାହାଁ ଘେନି ଯେ ।୭୬।

●

# ନବମ ଛାନ୍ଦ

## ରାଗ—ବସନ୍ତ

(ତାଳ—ସରିମାନ)

ଥିଅନ୍ତେ ଶୁଣ ଜନେ ସ୍ୱୟଂବର ରୀତି,
ସିଂହାସନେ ବିଜେକଲେ ଅଖିଳ ନୃପତି ।
ମୋତି ଗବାକ୍ଷ ସନ୍ନିଧେ ସୁକୁମାରୀ ଥାଇ,
ସଖୀଙ୍କ କହଇ ନୃପ ସଭା ଧୀରେ ଚାହିଁ ।
କାହିଁ ସହି ! ଅଛନ୍ତି ମୋ ପୁରୁଷରତନ,
ସଫଳ କରିବି ନେତ୍ର ଦେଖି ତା ବଦନ ଗୋ ।୧।

ଯଦି ମୋତେ ପ୍ରସନ୍ନ ହୋଇବେ ଦେବହର,
ଲଭିବି କୁମରମଣି ଭାଗ୍ୟ ଥିଲେ ମୋର ।
ଏମନ୍ତେ ମନରେ ଚିନ୍ତା କରଇ ଅବଳା,
ନିଶ୍ଚୟେ କୁମରମଣି କଣ୍ଠେ ଦେବି ମାଳା ।
ତେଣେ ରାଜବୃନ୍ଦ ମଧ୍ୟେ ଥାଇ ନୃପସୁତ,
ଚନ୍ଦ୍ରହାସୀ ଶ୍ରୁତି ରୂପ ଧ୍ୟାନେ ତଦଗତ ।୨।

ନିଜ ଜ୍ଞାନ ଦେହୁଁ ତାର ମନସିଜ ନେଲ
ପ୍ରେମ ମୂଳେ କୋଟି କୋଟି ବାଣ ପ୍ରହାରିଲ ।
ହୃଦୟରେ ରହିଛି ତା ଏକ ରାମାବର
ଅନ୍ତର ବାହ୍ୟ ବିଷୟୁ କଲ ସେହୁଁ ଦୂର ଯେ ।
ପୁଣି ସ୍ତୁତି ମତିରେ ସେ ଭାବେ ହୃଦେ ହର
ତୋଷ ମୋରେ ହୋଇ ପ୍ରଭୁ ଦିଅ ଏହୁ ବର ହେ ।୩।

ଯେତେକ ନୃପ ଅଛନ୍ତି ସଭା ମଧ୍ୟେ ବସି
ଉତ୍ସୁକ ଚିତ୍ତରେ ଭାବୁଅଛନ୍ତି ସୁକେଶୀ ।
କେମନ୍ତ ସେ ସ୍ୱରୁ ରୂପ ହୋଇଥିବ ବାଳା
ଆଜ ଭାଗ୍ୟବନ୍ତ ଜ କଣ୍ଠେ ଦେବ ମାଳା ।
ଏମନ୍ତେ ଆସି ବିକ୍ରମ କେଶରୀ ବୋଲନ୍ତି
ଏ ମୋର ବଚନ ଘେନ ସକଳ ନୃପତି ହେ ।୪।

ଏକଇ ନନ୍ଦନୀ ମୋର ଅଛି ତୁମ୍ଭେ ଜାଣ
ତାର ଆଶେ ତୁମ୍ଭଙ୍କୁ ମୁଁ କଲି ନିମନ୍ତ୍ରଣ ।
ଆଜ୍ଞା ହେଲେ କନ୍ୟା ଏବେ ସଭାରେ ମିଳିବ
ମାଳା ଦେଇ ଚନ୍ଦ୍ରମୁଖୀ ଯେ ଇଚ୍ଛା ବରିବ ।
ଏକ ଆରକରେ ତୁମ୍ଭେ ନ କରିବ ଗୋଳ
ଏଥେ ସୁମୁଖୀ ହୁଅ ହେ ସକଳ ଭୂପାଳ ।୫।

ଏତେକ କହି ରାଜା ନଗର ଅନ୍ତଃପୁର
ଦିବ୍ୟବେଶ କରାଇଲେ କନ୍ୟାକୁ ତାହାର ।
ପାଶେ ପରିବାର ଜନେ ଅଛନ୍ତି ସୁଜାଣ
ହସି ଆଜ୍ଞା ଦେଲେ ତାକୁ ବିକ୍ରମ ରଜନ
ସହଜେ ରାଜକୁମାରୀ ଅନ୍ତଃପୁରବାସୀ
ନୃପଙ୍କୁ ଦେଖିଣ ବର ଲଭିବ ସୁକେଶୀ ।୬।

ତୁମ୍ଭେମାନେ ପାଶେ ଥାଇ ମଣାଇ କହିବ
ରାଜା ଜଣେ ଜଣେ ତାକୁ ଚହ୍ନାଇଣ ଦେବ ।
ଯାହାରେ ମନ ବଳିବ ବରିବ ତାହାକୁ
ଏତେକ କହି ନୃପତି ଚଳିଲେ ସଭାକୁ ।
ଚୌରି ପାରୁଶରେ ବେଢ଼ିଛନ୍ତି ଦାସୀଗଣ
ମଧ୍ୟରେ ଶିଖରଦନ୍ତୀ କରଇ ଗମନ ।୭।

ହସ୍ତରେ ଧେନିଛି ହେମ ସରସିଜ ମାଳା
ରୁଚିର ରୁଚି ଚଞ୍ଚଳା ଶୋଭା ପାଏ ବାଳା ।
ସଭା ମଧ୍ୟେ ଯେତେ ନରପତି ବସିଛନ୍ତି
ଈକ୍ଷିତେ ସବୁରି ମନ ମୋହିଲି ସୁଦନ୍ତୀ ।
ଏକ ଆରକେ ଧଇର୍ଯ୍ୟ ରଖି ନ ପାରିଲେ
ନୟନ ମନ ସକଳ ସୁନ୍ଦରୀ କି ଦେଲେ ।୮।

ବାଜିଲି ବିବିଧ ବାଦ୍ୟ ଦମା ପଖାଉଜ
ସାଜିଲେ ତୁରଙ୍ଗ ଗଜ ରଥ ସର୍ବ ରାଜ ।
ଶୁଭିଲା ମଙ୍ଗଳ ବାଦ୍ୟ ଶଙ୍ଖ ମହାଗୋଳ
ଏକ ଆରକେ ଉତ୍ସୁକ ନୃପତି ସକଳ ।
କେହୁ ମନେ ବିଚାରନ୍ତି ବଳେ ନେବି ବାଳା
ଯେବେ ରମଣୀ ରତନ ନ ଦେବଟି ମାଳା ।୯।

କେହୁ ବିସ୍ମରନ୍ତି କନ୍ୟା ଯେବେ ନ ବରିବ
ସ୍ୱେ ମୋର ରାଜ ସମ୍ପତ୍ତି ବିଫଳ ହୋଇବ ।
ସଭା ମଧ୍ୟୁ ମୁହିଁ ଯେବେ ଯିବି ଲାଜ ପାଇ
ଯୁଦ୍ଧ କରି ସ୍ୱେଥେ ପଛେ ହରାଇବି ଦେହି ।
କେହୁ ବିସ୍ମରନ୍ତି ଯେବେ ବରିବ ସେ ବାଳା
କଣ୍ଠ ତଟେ ରମଣୀକ କରିଥିବ ମାଳା ।୧୦।

ସ୍ୱୟଂବର ଦେଖିବାକୁ ଦେବ ଶଚୀପତି
ସକଳ ଗନ୍ଧର୍ବ ବଳ ସଙ୍ଗତେ ଅଛନ୍ତି ।
ତେତିଶ କୋଟି ଦେବତା ସେନ ଶଚୀବର
ଐରାବତ କନ୍ଧରେ ବିଜୟେ ବଜ୍ରଧର ।
ଅଧା ସ୍ୱର୍ଗେ ରହି କରି ଦେଖନ୍ତି ଅମରେ
ସ୍ୱୟଂବର ହେଉଛି ଅବନୀ ମଣ୍ଡଳରେ ।୧୧।

ଇନ୍ଦ୍ର ସଙ୍ଗେ ଥାଇ ପୁଷ୍ପଦନ୍ତ ମହାବୀର
ଚିନ୍ତାକଲା ରମଣୀ ଜନ୍ମିଛି ମଞ୍ଜପୁର ।
ମୋର ଲାଗି ଦୁଃଖ ଏତେ ପାଇଲା ଅବଳା
କେଉଁ ନରସ୍ତୁରର ଗଳାରେ ଦେବ ମାଳା
ଧିକ ହେଉ ମୋର ପରାକ୍ରମ ବାହୁ ବଳ
ମୋର ତାର ଏକା ପ୍ରୀତି ଜାଣନ୍ତି ସକଳ ।୧୨।

ଯେମନ୍ତେ ସୁନ୍ଦରୀ ମଣି ମୋହୋରେ ବରିବ
ତେମନ୍ତ ବିଧାନ ମୁହିଁ କରିବଇ ଏବ ।
ଶାନ୍ତି କାନ୍ତି ଦୁହିଙ୍କି କହଇ ଶଚୀ ସୁତ
ସୁନ୍ଦରୀ ପାଶକୁ ତୁମ୍ଭେ ଚଳ ଗୋ ତ୍ୱରିତ ।
ବହୁତ ପ୍ରକାରେ ତାକୁ ମଣାଇ କହିବ
ମୋତେ ନୃପତି ତନୁଜା ସଭାରେ ବରିବ ।୧୩।

ଗନ୍ଧର୍ବର ବାଣୀ ଶୁଣି ଦେବକନ୍ୟା ଦୁଇ
ମିଳଲେ ନୃପତି ପୁରେ କନ୍ୟାପାଶେ ଯାଇ ।
କହନ୍ତି ସେ ଚନ୍ଦ୍ରମୁଖି ଶୁଣ ଗୋ ବଚନ
ପେଷିଅଛି ତୋର ପାଶେ ଶଙ୍କର ନନ୍ଦନ ।
ପୁଷ୍ପଦନ୍ତ ବୋଲି ସେ ଗନ୍ଧର୍ବ ଅଧିପତି
ଭକତି ତାରେ କହିଛି ଶୁଣ କୁନ୍ଦଦନ୍ତି ।୧୪।

ଶୁଣି ସରୋଜଲୋଚନା ପରାଙ୍‌ମୁଖ ହୋଇ
ମଧୁରବାଣୀ ଭାଷଇ ସୁଧାକର ମୁହିଁ ।
'କୁସୁମକେତୁ'ର ବିନୁ ନ ବରଇଁ ଆନ
ତୁମ ଆଗେ ପ୍ରକାଶିଲି ଏ ସତ୍ୟ ବଚନ ।
ଅନ୍ୟ ପୁରୁଷରେ ମୋର ନ ବଳଇ ଚିତ୍ତ
ମୋ ମନ ଚାତକ ପକ୍ଷୀ ତୁମର ଜୀମୂତ ।୧୫।

ଯେବେ ନବ ଯଉବନ ମୋର ତୁମର ପାଇଁ
ଇନ୍ଦ୍ର ଚନ୍ଦ୍ର ହେଲେ ମୋର ମନ ନ ବଳଇ ।
ଗନ୍ଧର୍ବ କନ୍ନର ହୋଇ କେତେକ ମାତର
ସୁଧା ତେଜି ଚକୋରୀ କି ପାନ କରେ କ୍ଷୀର
କନ୍ୟା ମୋର ପାଶକୁ ପେଷିଲେ ସେ ତୁମଙ୍କୁ
ତୁମର ବ୍ୟସ୍ତକେ ଆନ ନ ଭଜେ କାହାକୁ ।୧୬।

ତୁରିତେ ତାହା ପାଶକୁ କର ଗୋ ଗମନ
ତାହାକୁ କହିବ ମୁହିଁ କହିଲି ଯେସନ
ସଭା ମଧ୍ୟେ ନ ଆସିବ ଶଙ୍କର ଆତ୍ମଜ
ସଭା ମଧ୍ୟେ ଆସିଲେ ସେ ପାଇଯିବ ଲାଜ ।
ଶୁଣି ତା ବଚନ ଚଳିଗଲେ ଶାନ୍ତ କାନ୍ତ
କହିଲେ ଗନ୍ଧର୍ବ ଆଗେ କନ୍ୟାରେ ଉକତ ।୧୭।

ଶୁଣିଣ ବାସବସୁତ ମହାକୋପ କରି
ଦ୍ରୋଣ ଆବର୍ତ୍ତ ସମ୍ବର୍ତ୍ତ ପୁଷ୍କର ହକାରି ।
କହେ ମେଘ ଗଣ ଘୋଟି ବରଷିବ ଜଳ
ଚଡ଼କ ଅଶନି ସଙ୍ଗେ ପ୍ରଚଣ୍ଡ ଅନିଳ ।
ପ୍ରଥମ ସମୀରେ ହତ ଆତପତ୍ର କୁଳ
ବଂଶ-ଶେଷ ହେଲେ ତହିଁ କେତନ ସକଳ ।୧୮।

ଅନ୍ଧକାରେ ଅଗୋଚର ହୋଇଲେ କୁକୁଭ
ଛାୟାରମଣ ସହିତେ ନ ଦିଶିଲା ନଭ
ଅଶନି ଘାତରେ ସଭା ପୁର ଖଣ୍ଡ ଖଣ୍ଡ
ଘନ ଘୋର ରବରେ ଭାଙ୍ଗିଲେ ହସ୍ତୀ ଦଣ୍ଡ ।
କେତୁ ବେଗଭରେ ରଥବର ମାଡ଼ ଯାନ୍ତ
କେବଣ ଅଶ୍ୱକୁ ଧରି ମାରେ ମତ୍ତଦନ୍ତୀ ।୧୯।

ଚଡ଼ ଚଡ଼ ଘଡ଼ ଘଡ଼ ଚଡ଼କ ନକର
ପଥର ପଡ଼ଣ ଗର୍ଜି ଗଲେ ରଥବର ।
କେବଣ ଅଶ୍ୱପଦାତି ମାଡ଼ିଗଲେ ରଥ
ଅତି ଘୋର ଅନ୍ଧକାରେ ନ ଦିଶଇ ପଥ ।
ସଇଭଙ୍ଗ ହୋଇ ରାଜାମାନେ ପଳାଇଲେ
ପଥ ବିପଥରେ ଗଲେ ଜାଣି ନ ପାରିଲେ ।୨୦।

ପ୍ରଖର ସମୀର ଘାତେ ପଡ଼େ ନୀରଧାର
ବାଜି ରାଜି ଘେନଗଲେ ଅଶ୍ୱ ବାର ବାର ।
ମତ୍ତଗଜମାନେ ହସ୍ତ ଟେକି ଗରଜନ୍ତି
କମ୍ପମାନ ହୋଇ ବେଗେ ପଳାନ୍ତି ପଦାତି ।
ଚଞ୍ଚଳବେଗେ ଶୁଭେ ଘନ ଘନ ଘଡ଼ଘଡ଼
ଯୋଦ୍ଧାମାନେ ପଳାଇଲେ ଅଶ୍ୱଯାନ ଛାଡ଼ ।୨୧।

ବିକ୍ରମ କେଶରୀ ରାଜା ମହାଭୟ ପାଇ
ଅନ୍ତଃପୁର ମଧ୍ୟକୁ ଜେମାକୁ ପଠିଆଇ ।
ସଭାରୁ ପଳାଇଗଲେ ନୃପତି ସକଳ
ଅତି ବିସ୍ମୟ ହୃଦୟେ ହୋଇଲେ ଆକୁଳ ।
ତେଣୁ ରମଣୀ ରଞ୍ଜନ ମହାଚିନ୍ତା କରି
ବିସ୍ମୟ ହୋଇଣ ସେ ଝୁରଇ କୃଶୋଦରୀ ।୨୨।

ମନେ ବିଚାରଇ ବାଳା ହେଉଛି ଅଦଭୁତ
ଏସନ କଳଙ୍କ ମୋତେ ସୁନାଶୀର ସୁତ ।
ମୁହିଁ ଯହୁଁ ତାହାରେ ନ କଲି ଅନୁରାଗ
ସେ କାରଣ ଗନ୍ଧର୍ବ ପାଇଲା ବଇରାଗ ।
ଯେମନ୍ତ କଲେ ତା ନକ ତାହାର ଉଚିତ
କୁମର ରତନ ଲାଗି ଏ ଜୀବ ତେଜିବି ।୨୩।

ଅନଙ୍ଗ ରେଖା ଚରିତ ଏ ନବମ ଛାନ୍ଦ
ଶେଷ ହେଲା ରସିକର ବଢ଼ାଇ ଆନନ୍ଦ ।
କୁମରକୁ ଧ୍ୟାନ କରୁଥାଇ ନିତ୍ୟେ ବାଳା
ଏମନ୍ତରେ କେତେହେଁକ ଦିନ ଶେଷ ହେଲା ।
ଝୁରୁଝୁରୁ କୃଶୋଦରୀ କ୍ଷୀଣ କଲା କାୟେ
ଅନୁକ୍ଷଣେ ଶର ପ୍ରହାରଇ କାମ ରାୟେ ।୨୪।

ଭଗତ ବତ୍ସଳ ବ୍ରଜେ ଶ୍ରୀମାନ ନନ୍ଦର
ପୂର୍ବେ ଏ ଗୋପାଳ ରୂପେ ଧଇଲେ ମନ୍ଦର ।
ରାମାବତାରେ ନାଶିଲେ ଏହୁ ଲଙ୍କପତି
ଏବେ ନୀଳାଚଳେ ଦେଖ ଚତୁର୍ଦ୍ଧା ମୂରତି ।
ତାଙ୍କ ଚରଣପଙ୍କଜ ମକରନ୍ଦ ରସ
ନୃପଧନଞ୍ଜୟ ମନଭୃଙ୍ଗ ଲଭୁ ତୋଷ ।୨୫।

●

# ଦଶମ ଛାନ୍ଦ

## ରାଗ—ବଙ୍ଗଳାଶ୍ରୀ

(ତାଳ—ମାଠପଡ଼ତାଳ)

ଶୁଣ ଦିବ୍ୟ ରସ ଏଥୁ ଅନନ୍ତରେ ମେଡ଼ରେ ବସି କୁମାରୀ
କୁମର ରୂପ ଗୁଣ ହୃଦେ ଚିନ୍ତିଣ କୃଶ ତନୁ କୃଶୋଦରୀ ।୧।

ଅନ୍ନ ପାଣି ଆଦି ଯେତେକ ବିଷୟ ସବୁ ତ୍ୟାଗ କଲା ବାଳା
ମଦନ ଦହନ ମହାତାପରେ ତା ଫୁଟିଗଲା ମୋତି ମାଳା ।୨।

ପମାର ଚନ୍ଦ୍ର ଚନ୍ଦନ ଚନ୍ଦ୍ରକର ସଜଳ ନଳିନୀ ଦଳ
ସୁନ୍ଦରୀ ମଣିର ଅଙ୍ଗରେ ଲାଗନ୍ତେ ବଢ଼ିଲା କାମ ଅନଳ ।୩।

ଲାବଣ୍ୟ ଶେଷ ହୋଇଲା ଦିନୁ ଦିନ ଶୀର୍ଣ୍ଣ ହେଲା ସର୍ବ ଅଙ୍ଗ
ହେମ ଗିରି ସମ କୁଚ କୁମ୍ଭ ବେନି ରହିଅଛି ନୋହି ଭଙ୍ଗ ।୪।

ସଜନୀମାନେ ନଳିନୀ ଦଳ ଘେନି ରାମାକୁ ଧୀରେ ବିଞ୍ଚନ୍ତି
ନବ କୋମଳାଙ୍ଗୀ ଭାଜି ଯାଇ ବୋଲି ମନରେ ଶଙ୍କା କରନ୍ତି ।୫।

ଏମନ୍ତେ ନାନା ଉପଚାର କରନ୍ତି ବେଢିଣ ସମସ୍ତ ଆଳି,
ପରଭୃତ ବାଣୀ ଅଶନି ମଣିଲା ଚମକେ ନୃପ ଦୁଲାଳୀ ।୬।

ସଖୀମାନେ ନାନା ପ୍ରକାରେ ବୋଧନ୍ତି କିଛି ନ ଶୁଣଇ ବାଳା
ବିହ୍ୱଳେ ବୋଲଇ ସଖି ସେ ଯୁବା କେ ତାର କଣ୍ଠେ ଦେବି ମାଳା ।୭।

ସ୍ୱପ୍ନେ ହେଁ ତାହାଙ୍କୁ ଆନ ନ ଦିଶଇ ଦିଶଇ ବର ନାୟକ
ପ୍ରେମ ମୂଳେ ତାର କୋଟି କୋଟି ଶର ପୋତଇ ପୁଷ୍ପ ଶାୟକ ।୮।

ବେଶ ବ୍ୟସନ ସବୁ ହିଁ ତ୍ୟଜ୍ୟା କଲା ଧାୟି କୁମର ବରକୁ
ଅଜାଣେ ଯେଣେ ଅନାଇଲେ ରମଣୀ ଦେଖଇ ସେହି ରୂପକୁ ।୯।

ଶୟନ ଠାରୁ ନୟନରୁ ଲୋତକ ଝର ଝର ପଡ଼େ ବହି
'ଚିତ୍ରଲେଖା' 'ପରିମଳା' ଭଆରନ୍ତି ଆକୁଳ ନୁହଁ ଗୋ ସହି ।୧୦।

ଏମନ୍ତେ ହୋଇଲେ ହେବା ସିନା ନାଶ କାର୍ଯ୍ୟ ତ ନୋହିବ କିଛି
ଈଶ୍ୱର ସେବା ବ୍ୟସ୍ତକେ ଭଲ ବର କେଉଁ ଲଭୁଛି ମୃଗାକ୍ଷୀ ।୧୧।

ଯେବେ କୁସୁମକେତନକୁ ନୟନେ ଦହି ନ ଥାନ୍ତେ ଈଶ୍ୱର
ଯୁବା ପୁରୁଷ ନାରୀଜନ ଧରି କି କରନ୍ତା ସେହୁ ସଂସାର ।୧୨।

ଅଙ୍ଗୁଜାତ ହୋଇ ଅଙ୍ଗକୁ ଦହଇ ଅନଙ୍ଗ ଅତି ନିଷ୍ଠୁର
ସଖା ବସନ୍ତ ମିତ ତା ଶଶଧର ଅଙ୍ଗ ଦହନ୍ତି ତୋହର ।୧୩।

ଯେବେ ଶଙ୍କରଙ୍କୁ ଅର୍ଚ୍ଚନା କରିବୁ ଶୁଣରେ ସୁନ୍ଦରୀ ବର
ଭୟ ପାଇଣ କୁସୁମକେତୁ ଆଉ ନ ମାରିବ ପୁଷ୍ପଶର ।୧୪।

କୁସୁମ କେତନ ନାମ ଶୁଣି ବାଳୀ ଉଠି ସଖୀଙ୍କ ଚାହିଁଲା
* * * * ।୧୫।

ବୋଲଇ ସଖୀଙ୍କ ଶୁଣରେ ସଜନ କାହିଁଛି ଯେ ଯୁବାମଣି
କପଟ ବଚନ କପାଁ କହିଲୁ ଗୋ ମୋହର ପ୍ରାଣମିତଣି ।୧୬।

ବୋଲେ ଚନ୍ଦ୍ରକଳା ଶୁଣ ପରିମଳା କହିଲି ଏ ବିପରୀତ
କୁସୁମ କେତନ ନାମ ଶୁଣି ବାଳୀ ଶାନ୍ତ ତ ଭଜିଲା ଚିତ୍ତ ।୧୭।

ଆମ୍ଭେ ଏବେ ଚାଲ ମାତାଙ୍କ ଛାମୁରେ କହିବା କୁମାରୀ ବାଣୀ
ସେହି କୁମରମଣିକି ନ ବରିଲେ ନ ବଞ୍ଚେ ତାଙ୍କ ଦୁଲଣୀ ।୧୮।

ଚିତ୍ରଲେଖା ଥାଉ ଜେମା ସମୀପରେ କରଣ ଥାଉ ଆଶ୍ୱାସ
ଏସନ କହି ପରିମଳା ତ୍ୱରିତେ ମିଳିଲା ମାତାଙ୍କ ପାଶ ।୧୯।

ରତ୍ନ ଖଟ ଦୋଳି ଉପରେଣ ବସି ଅଛନ୍ତି ନୃପତି ପ୍ରିୟା
ସହସ୍ରେ ଦାସୀ ଚାମର ଖଣ୍ଡା ହେନ ହୋଇଛନ୍ତି ପାଶେ ଠିଆ ।୨୦।

ଦୂରୁ ପରିମଳା ଦେଖିଣ ତାହାକୁ ହୋଇଲାକ ପ୍ରଣମିତ
କର ଯୋଡ଼ି କୃତକୃତ୍ୟ ହୋଇ ବୋଲେ ଶୁଣିମା ଜେମା ଚରିତ ।୨୧।

ଚନ୍ଦ୍ରକୁ ନିନ୍ଦା କରଇ ଯେହ୍ନ ମୁଖ ହେଲା ଦିବା ଚନ୍ଦ୍ର ପ୍ରାୟେ
କୋମଳାଙ୍ଗୀ ତନୁ ଅତି କୃଶ ହେଲା ମୃଣାଳ ସୂତ୍ର ପରାୟେ ।୨୨।

ନୀଳ ଉତ୍ପଳ ନିନ୍ଦଇ ଯେଉଁ ଦୃଶ ପୁଣ୍ଡରୀକ ଛବି ଧରେ
ଶିରୀଷ ପୁଷ୍ପ ମୃଦୁ ତନୁ ବ୍ୟଥିତ ହେଲା ମାରପୁଷ୍ପ ଶରେ ।୨୩।

ବିଦ୍ରୁମ ଅଧର ଜମ୍ବୁର ଆକାର ହୋଇଲା ଶୁଣ ଗୋ ମାଇ !
ବେଶ ଭୋଜନ ବ୍ୟସନ ସ୍ତ୍ରୀ ତେଜିଲା ମନେ କିଛି ନ ଘେନଇ ।୨୪।

ଉତ୍ତମ ନୃପତନୁଜ ଖୋଜ ଏବେ ବିଭାକରସି ବହନ
ନୋହିଲେ ପଞ୍ଚମ-ବିଶିଖ-ଦ୍ୱିଜରେ ନିଶ୍ଚେ ଦେବ ପ୍ରାଣ ଦାନ ।୨୫।

ଶୁଣିଣ ପଙ୍କମନ୍ୱଷୀ ଏ ବଚନ ମନେ ପାଇଲେକ ଚିନ୍ତା
ନୃପତି ଛାମୁରେ ଜଣାନ୍ତି ଯାଇଣ ବିଭା କରିବା ଦୁହିତା ।୨୬।

କଳାନିଧିମୁଖୀ ତନୁ ତନୁ ଶଶୀ ସମ ହୋଇଲା ନୃପତି
କେବଣ ନୃପତି ନନ୍ଦନରେ ଚିତ୍ତ ବଳାଇଲା ମୋତିଦନ୍ତୀ ।୨୭।

ବୋଲନ୍ତି ନୃପ ତିଳକ ଶୁଣ ପ୍ରିୟେ ଚଳ ଗୋ ଜେମାପୁରକୁ
କରୀନ୍ଦ୍ର ଗମନ କି ତୁମ୍ଭେ ପଚ୍ଛୁର ବର ବରିବ କାହାକୁ ।୨୮।

ଲକ୍ଷେ ନୃପତି ମୁଁ କରିଥିଲି ମେଳ ବିଧାତା ବଶୁ ଭଙ୍ଗିଲା
ଏବେ ସମସ୍ତଙ୍କୁ ବରିଣ ଆଣିମା ଇଚ୍ଛା ସୁଖେ ଦେଉ ମାଳା ।୨୯।

ନୃପ ତିଳକ ଆଜ୍ଞା ଶିରେ ଘେନିଣ ଚଳିଲେକ ମହାଦେଈ
ମୃଦୁସୁଲ ଦାସୀ ସଙ୍ଗତେ ଅଛନ୍ତି ଜେମାପୁରେ ହେଲେ ଯାଇ ।୩୦।

ମାତା ବଦନ ଦେଖିଣ ମଦିରାକ୍ଷୀ ପ୍ରଳମ୍ବ କରି ଉଠିଲେ
ନିଜେ ସୁନ୍ଦରୀ କର ଧରି କୋମଳେ କୋଳେ ଘେନିଣ ବସିଲେ ।୩୧।

ବୋଲନ୍ତି ଶୁଣରେ ଚନ୍ଦ୍ରମାବଦନ ! କିମ୍ପା ଚିନ୍ତା କରୁ ମନେ
ନବହେମ ସମ ରୁଚିର ରୁଚି ତୋ ପାଣ୍ଡୁର ହେଲା କେସନେ ।୩୨।

ଶୁଣ ମୋର କୁନ୍ଦଦଶନ ମଣ୍ଡନ ! ପିତା ଛାମୁରେ କହିବା
ତୋର ବୋଇଲେ ଲକ୍ଷେକ ରାଜାଗଣ ସ୍ୱବରେ ପୁଣି ଆଣିବା ।୩୩।

ଯାହାକୁ ତୁମ୍ଭର ମାନସେ ବଳିବ ବର ବରିବୁ ଗୋ ମାତା
କିପାଁଇ କୁରଙ୍ଗୀ-ନୟନ ମନରେ କରୁଥାଉ ଗୁରୁ ଚିନ୍ତା ।୩୪।

ତୋର ନିମନ୍ତେ ନିମନ୍ତ୍ରଣ ଦେଇଣ ଆଣିଲି ଲକ୍ଷେ ରାଜନ
ଘୋର ବୃଷ୍ଟି ଘାତେ କେଉଁ ବିଧି ସତେ ଭଙ୍ଗିଲା ଘନ ଦାରୁଣ ।୩୫।

ଏବେ ତୋହର ଯାହାକୁ ଇଚ୍ଛା ହେବ ବରିବୁ ମୋତିଦଶନ !
ଲକ୍ଷେ ରାଜାଗଣ ନମନ୍ତି ଆଣିମା ଶୁଣ ମୋ କୁଳମଣ୍ଡନ ! ।୩୬।

ମାତାଙ୍କ ତହୁଁ ଏ ବଚନ କର୍ଣ୍ଣରେ ଶୁଣିଲା ସୁନ୍ଦରୀବର
ତକ୍ଷଣେ ପିଣ୍ଡରୁ ପ୍ରାଣଗଣ ତାର ଯିବାକୁ ହେଲେ ବାହାର ।୩୭।

ନୟନ ନୀରରେ ପୂର୍ଣ୍ଣ ହେଲା ତାର ନ ଶୁଣେ କିଛି ଉତ୍ତର
ନ ଫୁରଇ ବାଣୀ କି ବୋଲି ବୋଲିବେ କଣ୍ଠୁ ଗଳେ ସ୍ୱେଦ ନୀର ।୩୮।

ପୁଣି ତ ସ୍ୱୟଂବର କରିବେ ବୋଲି କହିଲେ ହେବ ବଚନ
ଯଦ୍ୟପି କୁମରମଣି ନ ଆସିବେ ନିଶ୍ଚେ ତ୍ୟଜିବ ଜୀବନ ।୩୯।

ଏତେ ମନେ ଗୁଣି ଲୋଚନୁ ଲୋତକ ତେଜିଲା ସେ ମନ୍ଦରାକ୍ଷୀ
ଚନ୍ଦ୍ରକଳା ସଖୀ ପାଶରେ ଥିଲା ତା ଅଞ୍ଚଳେ ଲୋତକ ପୋଛି ।୪୦।

ସଖୀର ମନ ଜାଣିଲା ପରିମଳା ଦେଖିଲା ଅଙ୍ଗ ବିକାର
ପଞ୍ଚ ମହିଷୀ ଛାମୁରେ କରଯୋଡ଼ି କହେ ମଧୁର ଉତ୍ତର ।୪୧।

ଶୁଣିମା ନୃପ ତିଳକ ମନୋହାରୀ ଜଣାଇବି ଏକ ବାଣୀ
କାଶୀ ନୃପତି ନନ୍ଦନ ନ ପାଇଲେ ନ ବଞ୍ଚେ ବର ରମଣୀ ।୪୨।

ଯେଉଁଦିନୁ ତାଙ୍କ ବଦନ-ପଙ୍କଜ ନୟନ କଲା ଲୋକନ
ସ୍ୱପ୍ନେ ହେଁ ସେ ରୂପ ଚିନ୍ତି ବର ରାମା ତନୁ କଲା ଏତେ କ୍ଷୀଣ ।୪୩।

ଶୁଣିଣ ବୋଲନ୍ତି ନୃପ ପ୍ରିୟତମା, କୁମର କିସ ସେ ନାମ
ହସି ସହଚରୀ ଜଣାନ୍ତି ବଚନ କୁସୁମକେତୁ ସମାନ ।୪୪।

ନତବଦନ ହୋଇଣ ବସିଥିଲା ରମଣୀ ରତନ ବର
କୁସୁମ କେତନ ନାମ ଶୁଣି ବାଳୀ ସଖୀକି ଗୁହିଁଲା ଥିର ।୪୫।

ଏସନ ବାମାର କି କି ତ ଦେଖିଣ ଜାଣିଲେ ପଞ୍ଚମହିଷୀ
କୁସୁମ କେତୁ କୁମରରେ ମାନସ ବଳାଇଛି ଏଣୀଦୃଶୀ ।୪୬।

ଏସନ ମନରେ ଚିନ୍ତା କରି ରାଣୀ ନୃପତି ପାଶେ ମିଳିଲେ
ଶିର ଉପରେ ବେନି ପାଣି ନିବେଶି ମଧୁର କରି ଭାଷିଲେ ।୪୭।

ଶୁଣ ପ୍ରାଣନାଥ ଏ ମୋର ଉତ୍ତର ଦେଖିଲି ଜେମାର ରୀତି
କୁସୁମକେତୁକୁ ବର ନ ବରିଲେ ନ ବଞ୍ଚିଇ କୁନ୍ଦଦନ୍ତୀ ।୪୮।

ଏମନ୍ତ ବଚନ ଶୁଣି ନରପତି ହୋଇଲେ ବିସ୍ମୟମତି
ପଞ୍ଚ ମହିଷୀ କହିଲ ତ ବିଚାର କାହିଁ ଅଛି ରତିପତି ।୪୯।

ଦେବତାମାନଙ୍କ ମଧ୍ୟରେ ଉତ୍ତମ ମନରୁ ସେ ଉତପତ୍ତି
କୁରଙ୍ଗ ନୟନା ତାରେ ବାଞ୍ଛା କଲ ବଚହ ତ ସ୍ନେହ ରୀତି ।୫୦।

ହସି କର ପଞ୍ଚମସ୍ଵରୀ ବୋଲନ୍ତି ବିଭ୍ରମ ନୋହି ରାଜନ
କୁମର ନାମ 'କୁସୁମ କେତନ' ସେ ନୋହଇ ମୀନକେତନ ।୫୧।

କାଶୀପୁର ରାଜା ଚନ୍ଦ୍ରଚୂଡ଼ ବୋଲି ତାହାଙ୍କର ଜ୍ୟେଷ୍ଠ ସୁତ
ତାହାକୁ ମନରେ ବରିଲ ସୁନ୍ଦରୀ ଶୁଣ ହେ ଜୀବ ଜୀବିତ ।୫୨।

ଏସନ ବଚନ ଶୁଣିଣ ରାଜନ ବୋଲେ ଶୁଣ ମହାଦେଈ
ସତ୍ୟ କରିଛୁ ଯାହାକୁ ମାଳା ଦେବ ବିଭା ହେବ ତାକୁ ସେହି ।୫୩।

ଯେବେ ବର ବାଳୀ ବରିଲା ମନରେ ତେବେ ତାରେ ଦେଉ ମାଳା
ଦୂତ ବରଗୁ କୁମରମଣି ପାଶେ ତେବେ ତାରେ ରଞ୍ଜିଲା ।୫୪।

ଶୁଣ ମହାଦେଈ ନୟସାଗରେ ସେ କହିଲେ ମୃଦୁସ୍ଵଳକ
ଅନଙ୍ଗରେଖାକୁ କହ ଯାଇ ଦୂତ ପେଷୁ କୁମର କଟକ ।୫୫।

ଜେମା ପାଶରେ ମିଳିଲ ମୃଦୁସ୍ଵଳ କହିଲ ନୃପତି ବାଣୀ
କୁମର ବର ବରିବା ଶୁଣି ମନେ ଆନନ୍ଦ ହେଲ ତରୁଣୀ ।୫୬।

ଚନ୍ଦ୍ର ଉଦୟ ସମୟ ଜାଣି ଯେହ୍ନେ ଚକୋରୀ କୁମୋଦ ତୋଷ
ମୃଦୁସ୍ଵଳ ବାଣୀ କର୍ଣ୍ଣେ ଶୁଣି ବାଳା ମନେ ତେସନ ସନ୍ତୋଷ ।୫୭।

ଚନ୍ଦ୍ରକଳାକୁ କହଇ ଧୀର କରି ଶୁଣ ଗୋ ପ୍ରିୟ ସଜନ !
ଏ ମୋତି ମାଳ କୁମର ପାଶେ ପେଷ ମଧୁକର ଗୃହ ଆଣି ।୫୮।

ଶୁଣି ସହଚରୀ ଉଗର ଘେନଣ ତୋଟାପୁରରେ ମିଳିଲ
ନକ୍ଷତ୍ର ମାଳା ତା ହସ୍ତରେ ଦେଇଣ ବନୋଇ ସବ କହିଲ ।୫୯।

ପଥେ ତୋତେ ସାଙ୍ଗ ହୋଉ ସଦାଶିବ ଗମନ କର ତ୍ଵରିତ
ନୃପତି ନନ୍ଦନ ପାଶେ ଯାଇଁ କହ ନୃପ ନନ୍ଦିନୀ ଚରିତ ।୬୦।

ଶୁଣିଣ ଚନ୍ଦ୍ରକଳା ମୁଖୁ ବଚନ ମାଳା ଘେନ ଦୂତ ଗଲ
ବହୁତ ଦୁର୍ଗମ ଅଟବୀ ସରିତ ତ୍ଵରିତେଣ ବଢିମିଲ ।୬୧।

ଅନେକ ବନ ଗମି ସେ ମଧୁକର ପ୍ରବେଶ କାଶୀ ନଗରୀ
ନାନା ମଣିଗଣ କରିଣ ଝଟିତ ଯେସନ ଅମରପୁରୀ ।୬୨।

ଛିଦ୍ର ଅଂଶରେ ଜନ୍ମ ସବୁ ପୁରୁଷ ତେଜେ ଦଶନ୍ତ ଜାଜ୍ଵଲ୍ୟ
ପରିଧାନ କରି ଅଛନ୍ତି ବସନ ସ୍ଵର୍ଗରେ ଅତି ଅମୂଲ୍ୟ ।୬୩।

ଯହିଁ ବଜେ କରଛନ୍ତି ବିଲୋଚନ ତହିଁରେ ଅପୂର୍ବ କସ
ଯାର ଆଜ୍ଞାବର୍ତ୍ତୀ ହୋଇଣ ସତରେ ଅଛନ୍ତି ବିଶ୍ୱବାସୀଶ ।୬୪।

ସମସ୍ତ ସ୍ତିରୀ ଜନ୍ମ ହୋଇ ଅଛନ୍ତି ଅମ୍ବିକାର କଳା ଯେନ
ପାର୍ଶ୍ୱରେ ବହୁ ଅଛୁ ସୁର ନଦୀ ସେହୁ ପତିତପାବନୀ ।୬୫।

ସେଠାରେ ପ୍ରବେଶ ହୋଇଲା ଉଗର ମନେ ପାଇଲା ଆନନ୍ଦ
ଅବଲୋକନରେ ମହା ସୁଖ ପାଇ ରହିଲା ତା ନେତ୍ର ଦ୍ୱନ୍ଦ୍ୱ ।୬୬।

ରାଜା ସିଂହଦ୍ୱାରେ ପ୍ରବେଶ ହୋଇଲା ଦେଖଇ ଅତି ବିଶଦ
ଚନ୍ଦ୍ରକାନ୍ତ ସୂର୍ଯ୍ୟକାନ୍ତ ମଣିରେ ସେ ହୋଇଛି ସବୁ ନିର୍ମିତ ।୬୭।

ଦେଖି ପ୍ରତିହାରୀ ପଚ୍ଚରଇଁ ତାକୁ କାହୁଁ ପ୍ରବେଶ ଉଗର
ଶୁଣି ଦୂତ ବୋଲେ ଅଇଲୁ ଭୁରିତ ନାମ କର୍ଣ୍ଣାଟ ନଗର ।୬୮।

ରାଜନ ଛାମୁରେ ଦର୍ଶନ କରିବୁ ଆଣିଛୁ ଶ୍ରୀହସ୍ତ ଲେଖ
ବେଗେ ଆମ୍ଭଙ୍କୁ ଏଠାରୁ ଘେନଯାଅ ତୁମ୍ଭ ନୃପତି ସମ୍ମୁଖ ।୬୯।

ପ୍ରତିହାରୀ ଶୁଣି ଚରକୁ ଘେନିଣ ନୃପତି ପାଶେ ମିଳିଲା
କର୍ଣ୍ଣାଟେଶ୍ୱରର ଯେତେ ଯେତେ କଥା ରାଜା ଛାମୁରେ କହିଲା ।୭୦।

ବୋଲନ୍ତି ରାଜନ ଶୁଣ ହେ ଉଗର କୁମର ପାଶକୁ ଯାଅ
ନୃପ ସତ୍ତମ ଆଜ୍ଞା କହି ତାହାକୁ ଭୁରିତେଣ ମାଳା ଦିଅ ।୭୧।

ମନ୍ତ୍ରିନନ୍ଦନ ଦୂତକୁ ଘେନି ସଙ୍ଗେ କୁମର ପାଶେ ମିଳିଲା
ଦୂତ ବଦନ ଦେଖିଣ ନୃପ ସୁତ ସଖାକୁ ଚାହିଁ ହସିଲା ।୭୨।

ଦୂତ କର ଯୋଡ଼ି ଜଣାଏ ଉଗର ଶୁଣ କୁସୁମକେତନ
ଅନଙ୍ଗ ରେଖା ମାଳା ଦେଇ ବରିଛି ଭୁରିତେ କର ଗମନ ।୭୩।

ଯେଉଁ ଦିନୁ ତୁମ୍ଭ ବଦନ-କମଳ ଅବଲୋକନ ସେ କଲା
ଶଶୀ ଏକ କଳା ସମ ସମ ତନୁ ସେ ନପାଏ ଅବଳା ।୭୪।

ତୋ ମୁଖଚନ୍ଦ୍ର ନୟନ ତା ଚକୋର ପୀୟୂଷ ଲଭିଛି ଯେଣୁ
ସେହି ସକାଶୁ ଅତନୁ ଶର ବର୍ଷୁଁ ପ୍ରାଣ ରହିଛି ସୁତନୁ ।୭୫।

ଏସନ ହୋଇ ରମଣୀମଣି ତୋରେ ଦେଇଅଛି କଣ୍ଠମାଳା
କଣ୍ଠ ତଟରେ ଲମ୍ବାଇ ଏବେ ବେଗ ଚଳ ହେ ନୃପତିବଳା ।୭୬।

ଏସନ ବୋଲି ମୁଦ ଭଙ୍ଗି ଭୁରିତେ ଘେନିଲା ନକ୍ଷତ୍ର ମାଳ
ଅବଲୋକନ ରମଣୀମଣି କଲା କାମଶର ହୃଦେ ଗଳ ।୭୭।

ମୋତେ ବର ତାର କଣ୍ଠରେ ଲଗନ୍ତେ ଜନ ହାଉଳ କୁମର
କୁମାରମଣି ଧାଇଁ ସେ ଚପଗଡେ ମନ ହେଲା ତାର ଥିର ।୭୮।

ପୁଣି ହେଁ ମନେ ଚିନ୍ତଇ ନୋହେ ତାମ ଅଟଇ ସୁନ୍ଦରୀ ଭୁଜ
ବାଡ଼ ଲେଖନଚିହ୍ନ ହ୍ରାସେ ହୋଇଲା ଦହିଲା ମନ ମନୋଜ ।୭୯।

ମନେ ବିସ୍ମରଇ ସତେ ହେ ନାଥ ମୁଁ ଲଭିବ ସେ ବରବାଳା
ପୁଣି ଚିନ୍ତଇ ପୂର୍ବେ ପୁଣ୍ୟ ଥିଲୁ ପିନା ବାଳା ହେଲା ମାଳା ।୮୦।

ଅନ୍ଧ ଜନ ମନେ ଅନୁକୂଳ ହୋଇଲେ ଲଭଇ ଲୋଚନ ଦାନ
ମୋର ମନେ ଜନ ଉଚ୍ଛନ୍ନ ହୋଇଲେ ଲଭିବ ସମାରତନ ।୮୧।

ଏମନ୍ତ ବିସ୍ମୟ ମନକୁ ବୋଲଇ ଥିର ହୁଅ ହନା କେତେ
ନୟନ ବେଦନ ବୋଲଇ ଜୀବନ ରଖ ନ ତେଜ କୁଶତେ ।୮୨।

ଯେବେ ତୁମ୍ଭେ ପୂର୍ବେ ପୁଣ୍ୟ କରିଥିବ ଦେଖିବ ସେ ଚନ୍ଦ୍ରମୁଖ
ବାହୁ ଯୁଗଳେ ଧରି ମୁଖ ଚୁମ୍ବିବୁ ମନ ହେଁ ଲଭିବ ସୁଖ ।୮୩।

ତୁମ୍ଭ ଲାଗି ମୁହିଁ କୃତାର୍ଥ ହୋଇବ ଉରଜଶମ୍ଭୁ ସେବଣି
ପାଣି ପଙ୍କଜ ଶିରେ ତାଙ୍କ ଦେଇଣ କରିବ ଦଣ୍ଡ ପ୍ରଣାମ ।୮୪।

ଏମନ୍ତ ସର୍ବ ଅଙ୍ଗକୁ ବୋଧ କରି ବୋଲଇ କୁମରମଣି
ମନ୍ତ୍ରୀ ନନ୍ଦନକୁ କହଇ ବଚନ ସାଜ ତୁ ସର୍ବ ସଇନ ।୮୫।

କାଲି ପ୍ରଭାତରେ ଗମନ କରିବା ସେମନ୍ତ ଆଦେଶ ଦେଇ
ବଚନ ବସ୍ତ୍ର ଅଳଙ୍କାର ଦେଇଣ ଭଗରକୁ ଏହା କହି ।୮୬।

ଅନଙ୍ଗରେଖା ଦଶମ ଛାନ୍ଦ ଶେଷ କୁମର ମନ ଉଲ୍ଲାସ
ସୁଜନ ଜନେ ନ ଧର ଦୋଷ ଶୁଣି ପଦେ ପଦେ ଅଛି ରସ ।୮୭।

ନୀଳାଚଳପତି ପାଦପଙ୍କଜରେ ମନ ମୋର ଭୃଙ୍ଗ ହୋଇ
ମକରନ୍ଦ ଲବ ଆସ୍ୱାଦ କରି ସେ ଛାଡ଼ି ଆସି ନ ପାରଇ ।୮୮।

ରସିକ ଜନଙ୍କ ବିନୋଦ ନିମିତ୍ତ ରଚିଲେ ଏ ଗୀତ ଛାନ୍ଦ
ନୃପ ଧନଞ୍ଜୟ ଶରଣ ପଶିଲେ ପୀତାମ୍ବର ପଦ ଦ୍ୱନ୍ଦ୍ୱ ।୮୯।

# ଏକାଦଶ ଛାନ୍ଦ

## ରାଗ—କାମୋଦୀ

(ତାଳ—ଝିଂପୁଟାନ୍ତର ଯତି)

ନିଶି ପ୍ରଭାତେ ଶେଷ          ଉଠିଲେ ନୃପ ଶିଷ
ମନ୍ତ୍ରୀ ସୁତକୁ ଆଜ୍ଞା ଦେଇ
ସାଜ ବୁ ରଥ ଗଜ          ଭଣନ୍ତି ମହାରାଜ
ଭ୍ରମର-ଅମ୍ବରେ ଅଇଲ, ହେ ମଧୁକର
ବର ରମଣୀ ପୁରେ ଯିବା
ଏହୁ ବାଳାର ମାଳା          ଚନ୍ଦ୍ର କରୁଛି ଜ୍ୱାଳା
ତା ମୁଖ ଦେଖି ସୁଖୀ ହେବା ହେ ।୧।

ଶୁଣି ସଚିବ ସୁତ          ଚଳିଲେ ସେ ତ୍ୱରିତ
ଜଣାଇ ନୃପବରଙ୍କୁ
ଆସି କର୍ଣ୍ଣାଟେଶ୍ୱର          ଉତ୍ତରିଲ ସତ୍ୱର
ତୁମର ବରକୁ ନେବାକୁ, ହେ ନୃପବର
ଯତନେ ଏବେ ଶୀଘ୍ର କର
ତାତ ସମ୍ଭାର ସେନ          ଅଛଇ ସେ ଭୁଜାନ
ମୁଁ ଆଣିଅଛି ରତ୍ନବର ହେ ।୨।

ଶୁଣିଣ ନରନାଥ          ଯତନେ କଲେ ରଥ
ଧୀରେ ଚଳିଲ ସଙ୍ଗ ବଳ
ଧ୍ୱଜ ଛତ୍ର ଚପଳ          ଦିଶନ୍ତି ମାଳ ମାଳ
ସିନ୍ଧୁ ଘୋଷ କି ମୁଖ ଶେଳ, ସେ ନୃପବର
ଛିରେ ଶ୍ୱେତଛତ୍ର ଶୋଭନ୍ତି
ସୈନ୍ୟ ମହାର୍ଣ୍ଣବର          କି ସେ ଫେନ ନିକର
ଭ୍ରମର ବୃନ୍ଦ ଦିଶନ୍ତି ସେ ।୩।

ରଥ ଘୋଡ ଆକାର ମଗର କଣ୍ଠବର
ଗ୍ରାହ ଯୂଥ ସେ ହସ୍ତବର
ଧ୍ୱଜ ଲହରୀ ଜାଣି କୂର୍ମ ଚର୍ମ ଆଡ୍ଡେଣି
ମୀନ ସମୂହ ସବ ନର, ହେ ନୃପବର

ସୈନ୍ୟ ଶୋଭନ୍ତି ଏହ୍ନେ ପ୍ରାୟେ
ଚଳନ୍ତେ ମହାରୟେ ଧରଣୀ ଶୋଭା ପାଏ
ଯେସନେ ସ୍ୱର୍ଗସୁରରାୟେ ସେ ।୪।

ବିଜୟେ ନରନାଥ ଚେଜି ଦୁର୍ଗମ ପଥ
ରହିଲେ କୃଷ୍ଣାବେଣୀ ତୀରେ
ନିଶା ସେଠାରେ ରହି ପ୍ରଭାତୁ ଚଳି ଯାଇ
ମିଳିଲେ କର୍ଣ୍ଣାଟ ନଗରେ, ହେ ବିକ୍ରମେଶ

ଶୁଣି ପୁତ୍ରକୁ କହେ ଯାଅ
ପାଚ୍ଛୋଟି ବେଗେ ଯାଇ ଷୋଡ଼ ଅର୍ଘ୍ୟ ପୂଜାଇ
ରତ୍ନ ମନ୍ଦରେ ବସା ଦିଅ ହେ ।୫।

ସଚିବ ଡାକି ରାୟେ ତ୍ୱରିତେ ଆଜ୍ଞା ଦିଏ
ବିଭା ସାମଗ୍ରୀ ବେଗ କର
ଛାମୁଁା ମଣ୍ଡପ ସାଜ ବହି ଚନ୍ଦ୍ରମାରଜ
ପ୍ରବେଶ ହେଲେ ତ କୁମର, ସେ ମନ୍ତ୍ରୀବର

ତ୍ୱରିତେ ସବୁ ନିର୍ମାଣିଲ
ନୃପ ଆଦେଶ ପାଇ ବିଜ୍ଞାଣି ଗଣ ରାଇ
ରତ୍ନ ମଣ୍ଡପ ନିର୍ମା କଲ ସେ ।୬।

ଧାଡ଼ ଧାଡ଼ କରଣ ପୋତିଲ ସ୍ତମ୍ଭମାନ
ଶୋଭା ପାଇଲ ବସୁନ୍ଧରା
ମାରଗ ତୋଣାପରେ ଖଞ୍ଜିଲ ତୋଣା ଭରେ
ଝୁରି ପାଟ୍ଟଣେ ମୋତି ଝରା, ସେ ପୁରବର

ଦିଶିଲା ଅତ୍ୟନ୍ତ ସୁନ୍ଦର
ମେଦିନୀ ମଣ୍ଡଳରେ ପ୍ରକାଶ ହୋଇଲ କି
ପୁରନ୍ଦର ଦିବ୍ୟ ମନ୍ଦର ସେ ।୭।

ଆଣି ବଚଣ୍ଡ ବାସ    ଖଞ୍ଜିଲେ ସ୍ବର ପାଶ
ରଙ୍ଗ ହରତ ପୀତ ମାଳ
ମାଳ ବାଳ ବ୍ୟଜନ    ଚନ୍ଦ୍ର ପ୍ରାୟେ ଶୋଭନ
ଦଶିଲ ଅତ୍ୟନ୍ତ ମଞ୍ଜୁଳ, ସେ ମନ୍ତ୍ରୀବର
ବବଧ ମଣ୍ଡଣି ଯେ ସାର
ଚତୁର ଜନମାନ    ଦକ୍ଷିଣ ସେହୁ ସ୍ଥାନ
ପ୍ରବେଶ ହେଲ ରାଜାପୁରୀ ।୮।

ଖଣ୍ଡେ ଦୂରହୁଁ ଦେଖି    ନୃପତି ହେଲେ ସୁଖୀ
ବୋଲନ୍ତ ହେଲ କ ସମ୍ଭାର
ଶୁଣିଣ ମନ୍ତ୍ରୀମଣି    କହଇ ମୃଦୁ ବାଣୀ
ଯେ ତୋର ଆଜ୍ଞା ନରବର, ହେ ନୃପବର
ବରକୁ ଏବେ ବେଗ ବର
ପୁରୋହିତ ସହିତେ    ଯାନ୍ତୁ କୁମର ଘେନ
ଶ୍ରୀଫଳ ବସ୍ତ୍ର ଅଳଙ୍କାର ହେ ।୯।

ପୁଅକୁ ଡାକ ରାୟେ    ତୁରିତେ ଆଜ୍ଞା ଦିଏ
ଚଳ ତୁ କୁମର କଟକ
ଚନ୍ଦ୍ରଚୂଡ଼ କୁମର    କୁସୁମକେତୁ ବର
ବଭା କରବା ତୋ ଭଗ୍ନୀକ, ହେ ଚନ୍ଦ୍ରଧ୍ୱଜ
ତାତ ଆଦେଶ ଶିରେ ଘେନ
ଆରୋହି ରଥବର    ସଙ୍ଗେ ଅମାତ୍ୟ ବର
ଚଳିଲେ ହୋଇ ସସଇନ ହେ ।୧୦।

ପଥେ ଦେଖି କୁମର    ଶ୍ରୀଫଳ ଦେଲେ କର
ଗଳାରେ ମାଳା ଲମ୍ବାଇଲେ
ବାଜେ ବବଧ ବାଦ୍ୟ    ପଢ଼ନ୍ତି ଦ୍ୱିଜ ବେଦ
ନଗରେ ଆସି ବିଜେକଲେ, ସେ ସର୍ବସେନା
ରହିଲେ ସିଂହଦ୍ୱାର ଠାଇଁ
ମତ୍ତଗଜ ପିଠିରୁ    ଉତୁରି ବେଗା ପରେ
କୁମରମଣି ହେଲ ଯାଇଁ ହେ ।୧୧।

ବକ୍ଷମବାହୁ ଆସି ବେଦୀ ଉପରେ ବସି
ବରକୁ ବରଣ ସାରିଲେ
ଯେସନ ବେଦ ମତ ପ୍ରସରିଛୁ ଜଗତ
ଶ୍ରୀଫଳ ବସ୍ତ୍ର କରେ ଦେଲେ, ସେ ନୃପବର
ଭୁରିତେ ବିଜୟ କରନ୍ତି
ପଞ୍ଚମଶ୍ବଷୀ ଆଗେ କହନ୍ତି ସାନୁରାଗେ
ବେଶ ଗୋ କର କୁନ୍ଦଦନ୍ତୀ ।୧୨।

ଶୁଣିଣ ମହାଦେଈ ସେଠାରୁ ଚଳିଯାଇ
ଭୁରିତେ ହେଲେ କେମାପୁର
ବୋଲନ୍ତି ମାଏ ଆସ ବେଶ କରିବା ବସ
ଅଇଲେ ତୋ ବାଞ୍ଛିତ ବର, ସେ ଚନ୍ଦ୍ରମୁଖୀ
ମାତା ସମୀପେ ବିଜେ କଲ
ବେଶ କରନ୍ତି ମାଏ ଶୋଭା ଅବଲା ପାଏ
ଧରଣୀ ମଧ୍ୟେ କି ଚଞ୍ଚଳା ସେ ।୧୩।

ସଜ୍ଜାଇ ଦିବ୍ୟବେଣୀ ରଚିଲେ ମଥାମଣି
ତଥି ଉପରେ ମୋତି ଜାଲ
ମୁଖ ଚନ୍ଦ୍ରମା ଆଶେ ଚକୋରୀ ଅଛି କି ସେ
ତେଜ ନ ଝିଲମିଲ ମାଳ, ସେ ଶଶିମୁଖୀ
ନାସେ ଶୋହଇ ମୋତିବର
ନାନା ରତ୍ନେ ମିଶିଣ ଶୋହେ ଭୂଷଣଗଣ
କଣ୍ଠରେ ଶତେ ସର ହାର ।୧୪।

କର୍ଣ୍ଣେ ତାଟଙ୍କ ଶୋହେ ତ୍ରିଦଶ ମନ ମୋହେ
ଜଗତ ଯୁବା ଜୟ ରୂପ
ଶ୍ରମାବର ବଦନ ସ୍ୟନ୍ଦନ ଚକ୍ର କି ନେ
ଯତନେ ରଞ୍ଜିଛୁ କନ୍ଦର୍ପ ସେ, ମଣିବନ୍ଧେ
ଖଞ୍ଜିଲେ ମଣିମୟ ଚୂଡ଼
ରମଣୀ ଭୁଜଲତା ଉପରେଣ ବନ୍ଧିତା
ଭଟେ ମର୍କତ ତାଡ଼ ଯୋଡ଼ ।୧୫।

ହୃଦୟ ମଣ୍ଡଳରେ ନାନା ମଣିଗଣରେ
ପଦକମାନେ ଶୋଭା ପାନ୍ତି
ସୁତୁଙ୍ଗ ପୟୋଧର ଉପରେ ସ୍ୱମାବର
ଘୋଡ଼ାଇଛନ୍ତି ମୋତି ପନ୍ତି, ସେ ଭଲ ଶୋଭା
ଦିଶିଲା ରମଣୀ ଉଦ୍ବେଜ
କନକ ଶମ୍ଭୁ ବେନ ଉପରେ ଶୋହଇ କ
ରୁଚିରତର ନାଗରାଜ ସେ ।୧୬।

କଟୀ ଧଟୀ ସଙ୍ଗରେ ରସନା ଧ୍ୱନି କରେ
ପୟରେ ନୂପୁର ରାଜନ୍ତି
ଅଙ୍ଗୁଷ୍ଠି ମୁଦ୍ରଗଣ ସୂର୍ଯ୍ୟମଣି କରଣ
ଚରଣ ସଙ୍ଗେ ବିରାଜନ୍ତି, ସେ ସଖୀଗଣ
ପାଦତଳେ ଯାବକ ଲିହ୍ୱ
ପୀତ ପଟମ୍ବ ଆଣି ଉପରେ ଘୋଡ଼ାଇଲେ
ଅନେକ ପରିହାସ ବହି ସେ ।୧୭।

ହସେ ମନ୍ଦଗାମିନୀ ଗୃଲନ୍ତେଣ ମେଦିନୀ
ହୋଇଲା ଅତ୍ୟନ୍ତ କୃତାର୍ଥ
ପୂଜ ଲୁଣ ଚଉରୀ ଉଠିଲାକ ଚତୁରୀ
ସଖୀ ଉପରେ ଦେଇ ହାଥ, ସେ ବରବାଳା
ବେଦୀ ଉପରେ ବିଜେ କଲା
କୁମର ଦେହ ବନୁ ମନ ମୃଗ ସୁତନୁ
ନୟନ ପାଶେ ବନ୍ଦୀ କଲା ସେ ।୧୮।

ବସ୍ତ୍ର ଧଇଲେ ଆଣି ପାଶେ ସଜନୀ ପୁଣି
ଚାହା ଦେଖିଲା ବର ରାମା
ଲବଣ କୁମରର ଉପରେ ପକାଇଣ
ଭ୍ରୂରଚେ ବିଜେ ରାଜଯେମା, ସେ ବରବାଳା
କେଉଁରୁ ଲେଉଟି ଅଇଲା
ପରାଙ୍ଗ୍ ମୁଖ ଦେଖି କୁମର ହେଲା ଦୁଃଖୀ
ନୟନ ମନ ତାରେ ଦେଲା ସେ ।୧୯।

ଭଲ ନୃପତି ବାଳୀ ସେଠାରୁ ଗଲା ଚଳି
ଝଟକ ବଜ୍ର ପ୍ରାୟେ ହୋଇ
ଯେସନ ଖର ପଛେ ଆର ଖର ଡାକନ୍ତେ
ତୁରିତେ ଲେଉଟି ଆସଇ, ସେ ବରରାମା
ତେମନ୍ତ ହୋଇ ବାହୁଡ଼ିଲା
ନୃପସୁତ ନୟନ- ବାଣେ ବେଧନ୍ତେ ବାଳୀ
ଶରୀର ସ୍ୱେଦଶାଳୀ ହେଲା ସେ ।୨୦।

ତାତ କୋଡ଼ରେ ଯାଇ ବସିଲା ଧୀର ହୋଇ
ନମ୍ର ବଦନ କରି ବାଳୀ
ଖଗ୍ରା ଭ୍ରମର ସେନ ନବ ଗୁଚ୍ଛ କାମିନୀ
ବେନ ପାଶରେ ଛନ୍ତି ମିଳି, ସେ ନରବର
ଶଙ୍ଖରେ ପାଣି ଟେକ ଦେଲେ
କୁମାରୀ କୁମାରର ଏକତ୍ର କରି କର
କୁଶେ ଦ୍ୱିଜବର ବାନ୍ଧିଲେ ସେ ।୨୧।

ସେଠାରେ ନରନାଥ ଦେଲେ ସୁବର୍ଣ୍ଣ ରଥ
ଗଜ ତୁରଙ୍ଗ ବଳମାନ
ବସ୍ତ୍ର ଭୂଷଣ ଦାସୀ ଦେଇ ସେ ନୋହି ତୋଷି
କହେ ମୁଁ କି ଦାନେ ଭାଜନ, ହେ ନୃପସୁତ
ଦୋଷ ଜେମାର ନ ଘେନିମ
ପ୍ରାଣୁ ଅଧିକ କରି ପାଳଣ ଅଛୁ ବାଳୀ
କରିବ ସର୍ବ ପ୍ରିୟା ସମ ସେ ।୨୨।

ଏତେ ବୋଲି ରାଜନ ଚଳଲେକ ବଦନ
ଆସ୍ଥାନ ପରେ ବିଜେକଲେ
ଦ୍ୱିଜ ସଧବା ନାରୀ ଆଣିଲେ ବେଗ କରି
ମିଥୁନ କର ମୋକ୍ଷ କଲେ, ହେ ବିଜେକଲେ
ସପତ ଦ୍ୱିଜେ କରଣ
ପୂର୍ବେ କୁମରମଣି କରିଥିଲା ତପସ୍ୟା
ଧଇଲେ ସୁଦୃଶ୍ୟ ଚରଣ ହେ ।୨୩।

ପଦ-ପଲ୍ଲବ ତାର — କରେ ଧଇଲା ବୀର
ଅଙ୍ଗ ନହିଲା ସୁ ରୁଷର
କଣ୍ଠରୁ ସ୍ୱେଦ ନୀର — ବହଇ ଝର ଝର
ନଷ୍ଟରେ କହିଁ ଉତ୍ତର ଧେ, ଯୁବାମଣି
ଅଙ୍ଗେ ହୋଇଲା କମ୍ପ ଜାତ
ତକ୍ଷଣେ ମନ୍ଦ ବାତ — ଚଞ୍ଚଳ କଲା ଚିତ୍ତ
ରମ୍ଭାତରୁ ପତ୍ର ଯାକ୍ଷାତ ।୨୪।

ଶିଶୁ କୁରଙ୍ଗୀଦୃଶୀ — କାନ୍ତ ପାଶରେ ବସି
ସାତ୍ତ୍ୱିକ ହୋଲା ଯେ ତୁରିତ
ରୋମ ଉଦ୍‌ଗମ ହୋଲା — ଯଉବନ କମ୍ପେ ଭି
ସ୍ୱେଦ ଗଣ୍ଡରେ ହୋଲା ଜାତ ସେ, ମନ୍ଦବାତେ
ଯେସନେ ପଲ୍ଲବେ ଚଳଇ
କାମ ବାଣ ବାଜନ୍ତେ — ମନ୍ଦବାକ୍ଷୀ ଅଧର
ତେସନ ପ୍ରାପ୍ତେକ ଦଶଇ ।୨୫।

ଏମନ୍ତେ ବେନି ଜନେ — ଆକୁଳ ହୋଇ ମନେ
ବାଳା ବଦନ ସଖୀ ଦେଖି
କୁମର ଅଙ୍ଗ ତହିଁ — ଚନ୍ଦ୍ରକାନ୍ତ ସଦୃଶ
ହୋଇ ତରଳଗଲା ମିଶି ସେ, ଯୁବାମଣି
ସୁନ୍ଦରୀବର କୋଳ କରି
ମୃଗରାଜ କି ବେନି — ଭୁଜ ପଞ୍ଜର ମଧ୍ୟେ
ଶିଶୁ ହରିଣୀ ଅଛୁ ଧରି ।୨୬।

ସୁନ୍ଦରୀମଣି ପାଣି — ଧରି କୁମରମଣି
ଲଜ୍ଜାକୁ ଶିଖୀରେ ପକାଇ
କି ଅବା ଲାଜ ଛଳେ — ଲଜ୍ଜା ଯେ ତ୍ୟଜ୍ୟା କଲେ
କୁମରବର ଗଳ ମୁହିଁ ସେ ନାରୀଗଣେ
ବେଢ଼ି ହଅନ୍ତି ହୁଳହୁଳି
କେହୁ ଗୀତ ଗାବନ୍ତି — କେହୁ ନୃତ୍ୟ କରନ୍ତି
କେ ତହିଁ କରନ୍ତି ତମାଳ ।୨୭।

ଯେନ କୁମାରୀ ବର      ୫.ଲେକ ଅନ୍ତଃପୁର
ପାଏଡ଼ା ପାଢ଼ ପୁରଦ୍ୱାର
ଉପରେ ଚନ୍ଦ୍ରାତପ      ଧରି ନାରୀ କଳାପ
ପ୍ରବେଶ ହେଲେ ରତ୍ନପୁର ସେ, ସେଠାବରେ
ଦିବ୍ୟ ଆସନ'ଛନ୍ତି ପାଡ଼ି
ଧାଡ଼ ଧାଡ଼ି କରିଣ      ସୁବର୍ଣ୍ଣ ଯୋଗାଡ଼ରେ
ବ୍ୟଞ୍ଜନମାନ'ଛନ୍ତି ବାଢ଼ି ।୨୮।

ମଣ୍ଡଗ୍ରାସୀ କରନ୍ତି      କୁମର କୁନ୍ଦଦନ୍ତୀ
ପିଠାପଣା ପଇଡ଼ମାନ
କାନ୍ତର ପ୍ରଭିବିମ୍ବ      ରତ୍ନ ଚୂଡ଼ରେ ହୋନ୍ତେ
ସୁନ୍ଦରୀମଣି ହେଲ ଛନ୍ନ ସେ, ଏହୁ କଥା
ନୋହଇ ଅତ୍ୟନ୍ତ ବିଚିତ୍ର
କୃଶାନୁ ସଙ୍ଗେ ନିକ      ଘୃତ ସଂଯୋଗ କଲେ
ସେ କି ନୁହଇ ତରଳିତ ।୨୯।

ଏସନ ଖ୍ୟାତି ତାର      ଜାଣି ରମଣୀବର
ପାଶରୁ ଆଡ଼େ କରିନେଲେ
କୁମର ତଦଗତ      କୁମାରୀ ଠାରେ ଦେଇ
ସଙ୍ଗତେ ସେଠାରେ ମିଳଲେ ହେ, ସାଧୁଜନେ
ଏକାଦଶମ ଛାନ୍ଦ ଶେଷ
ଅନଙ୍ଗରେଖା ଗୀତ      ହରଇ ସର୍ବ ଚିତ୍ତ
ରସିକମାନସ ଉଲ୍ଲାସ ।୩୦।

ତେଜିଣ କପିଳାସ      ରହିଲେ କାଶୀ ଦେଶ
ତ୍ରିପୁରନାଶନ ମୂରତି
ହେମବନ୍ତରେ ସେହୁ      ଉମାକାମରେ ଯେହୁ
ଦହିଅଛନ୍ତି ରତିପତି ହେ, ବୁଧଜନେ
ହେରମ୍ବ ପିତାର ଚରଣେ
ସତତ ମୋର ଚିତ୍ତ      ଅଛି ସେ ଅନୁବ୍ରତ
ନୃପତି ଧନଞ୍ଜୟ ଭଣେ ହେ ।୩୧।

●

# ଦ୍ୱାଦଶ ଛାନ୍ଦ

## (ରାଗ—କନଡ଼ା)

(ତାଳ—ରୂପକ)

(ସୁନ୍ଦରୀ ବାରମାସି ବାଣୀରେ ଗାଇବ)

ଏଥୁ ଅନନ୍ତରେ ଦିବସ ଶେଷରେ ନୃପ ସୁତା ହୁଏ ପ୍ରବେଶ
ମନୋରମ ବନ୍ଧନ କଲେ କେଶ
ବିବିଧ କୁସୁମ ମାଳେ ତା ରଞ୍ଜିଲେ କି ସେ ରାମା ମୋହ ପାଶ ସେ, ସୁନ୍ଦରୀ
ଅଙ୍ଗ ରାଗେ ରାଗ ଲୋଭ୍ର ବିହିଲେ । ମଣି ବିବିଧ ଭୂଷଣ ଖଞ୍ଜିଲେ ।
ରତି ସମରେ ଆଜ ବାଳା କର୍ଣ୍ଣିମ ଏମନ୍ତେ ଚିନ୍ତି ଚିହ୍ନିଲେ ସେ ।।୧।।

ଖରୁ କରଖିର କୋରକ ଗର୍ଭର ନଖନିକର (ସେ ?) ସାଜିଲେ
ମାର ଶର ହୋଇର ତା ମଣିଲେ
ବିଗ୍ରହେ ଆଜ ଲଭିବ ମନୋରଥ ମନ୍ମଥ ବିମୁଖ ହେଲେ, ସେ କୁମର
ବାଳା ଗଣ୍ଡ ଫଳକ ହୃଦେ ଧରି । ତାର ଚିନ୍ତା ଆଶୁଗ ଆଗ କରି ।
ରମଣୀମଣି କୁଚ ଶମ୍ଭୁ ପୂଜିବ କି କରିବ ଶମ୍ବରାରି ସେ ।।୨।।

ଏସନ ମନେ ବିଗ୍ରହ କରି ଖିର ନୀଳ ପଟଶ୍ରୀ ସେ ପିନ୍ଧିଲ
ହେମ କାଞ୍ଚୀମାଳା ତହିଁ ବାନ୍ଧିଲ
ଲଲାଟେ ମୃଗ ମଦ ଟିକା ସୁନ୍ଦର ସୁଜାଣ ସ୍ତ୍ରୀ ମୋହିଲ, ସେ କୁମର
ଧ୍ୟାନେ ଚିନ୍ତା କରନ୍ତି ବାଳା ମୁଖ । ଶର ପ୍ରହାରଇ ପଞ୍ଚ ବିଶିଖ ।
ବୋଲଇ ମଦନ ମୋତେ ପଛେ ମାର ନ ଫିଟୁଛି ରାମା ମୁଖ ସେ ।।୩।।

ତେଣେ ବଡ଼ଶ୍ରୀ ପୁରେ ପଶି ସୁନ୍ଦରୀ ଚନ୍ଦନ ପଙ୍କ ଚଢ଼ାଦେଲେ
ଚୂର୍ଣ୍ଣ କର୍ପୂର ରଜ ବିଛାଇଲେ
ସେବତୀ ପାଖୁଡ଼ା ସିଞ୍ଚି ଉପାଶେ ରତ୍ନ ଯାପନ୍ତ ଜାକିଲେ ସେ, ଚତୁରୀ
ତହିଁ ଉତ୍ତରେଣ ରତ୍ନ ପଲଙ୍କ । ବାଳା ଥୋଇଲେ ନେଇ ଗୃହ ଅଙ୍କ ।
ହଂସୁଳୀ ତୁଳ ଉପରେ ଶୋଯାଇଲେ, ରୁଚିର ଦିବ୍ୟ ଅଂଶୁକ ସେ ।।୪।।

ଉପରେ ଚନ୍ଦ୍ରାତପ ବାଳୀ ଖଞ୍ଜିଲେ ମୋତି କଳାପ ବେଢ଼ାଇଲେ
(ତହିଁ) ନୀଳମଣି ପୁଞ୍ଜ ରଞ୍ଜିଲେ
ମଧ୍ୟେ ଗଜ ମୋତି ଝୁମ୍ପା ଲମ୍ବାଇଲେ ଶଶାଙ୍କ ଦର୍ପ ଗଞ୍ଜିଲେ ସେ, ଚତୁରୀ
ଖଣ୍ଡେ ଦୂରେ ଶୀତଳସଙ୍ଗ ବାଡ଼ । ତହିଁ ପାରୁଶେ ଭୂମି ଶଯ୍ୟା ପାଡ଼ ।
ରତ୍ନ ଝରରେ କର୍ପୂର ବାସ ଜଳ ଥୋଇ କଲେ ସବୁ ନିବାଡ଼(?) ସେ ।।୫।।

ସୁନୀଳ ବସ୍ତ୍ର ତହିଁ ଉପରେ ଘୋଡ଼ାଇ ଅନ୍ତର ହୋଇଲେ ତରୁଣୀ
ତହିଁ ପ୍ରବେଶ ହେଲେ ବୀରମଣି
ପଲଙ୍କ ଅଙ୍କେ ବସିଣ ଧ୍ୟାଉଅଛୁ ରମଣୀମଣି ସୁଜାଣି ସେ, କୁମର
ଚିନ୍ତେ ନଇଲ ତ ମୀନକେତନା । ଶୁଭୁ ନାହିଁ ତ ମଞ୍ଜୀରର ଧ୍ୱନି ।
ଏମନ୍ତ ଚିନ୍ତଇ ବାହାର ହୁଅଇ ପଲଙ୍କେ ବସଇ ପୁଣି ସେ ।।୬।।

ତେଣେ ଅନ୍ତଃପୁରେ ନାରୀଗଣ ବେଢ଼େ ସୁବେଶ କରନ୍ତି କୁମାରୀ
କେ କସେ ସାଜଲେ ଜାଣ୍ଟ-କଟିସାରି
ମଧ୍ୟେ ଚନ୍ଦ୍ର ନିର୍ମି ଖଞ୍ଜିଲେ ତହିରେ କୃତ୍ରିକାର ରୁଚଧାରୀ ସେ, ଚତୁରୀ
ହେମନିର୍ମିତ ନାଗ ବଲ୍ଲୀ ଦଳ । ମୁଖ ବେଢ଼ି ଦିଶୁଅଛୁ ମଞ୍ଜୁଳ ।
କିବା ତା ନୀଳ କୁଟିଳ ବଧୂନ୍ଦ ବିକାଶ ଦଶନ କୁଳ ସେ ।।୭।।

ଅର୍ଦ୍ଧଚନ୍ଦ୍ର ତା ଲଲାଟରେ ତିଳକ, ଲେଖିଲେ ମୃଗମଦ ଯେହ୍ନ
କାମ ଜୟ ସାୟକ ପ୍ରାୟେକ ମଣି
ସିନ୍ଦୂର ରଜ ତହିପାଶେ ସୁନ୍ଦର, ଜାଣିମ ଅରେଶିରେ, ସୁନ୍ଦରି
କିବା ଯୁବା ଜନ ହୃଦ ଶୋଣିତ । ତହି ପ୍ରକାଶେ ଇଲା ରକ୍ତକାନ୍ତି ।
ବୃହାନ୍ତେ ଯୁବା ବର ଚିତ୍ତ ଭେଦବ, ଦଶେ କ ହେଲା ଅଙ୍କିତ ସେ ।।୮।।

ଗଣ୍ଡସ୍ଥଳରେ ଶୋହେ ହୀର ତାଟଙ୍କ ନୟନ ମନକୁ ମୋହିଲା
ବଦନକୁ ହିଁ ଶୋଭା କରିଲା
କିବା ବେନି ପାଶେ ବେନି ଗୁରୁ ଯେହ୍ନ ପୂର୍ଣ୍ଣଚନ୍ଦ୍ର କି ଶୋହିଲା ସେ, ଚତୁରୀ
ନୟନରେ ରଞ୍ଜିଲେ ସେ କଜ୍ଜ୍ୱଳ କର୍ଣ୍ଣ ପରିଯନ୍ତେ ଲଞ୍ଜି ମଞ୍ଜୁଳ
କିବା ଦୁଃଖସିନ୍ଧୁ ମଧ୍ୟରୁ ଭ୍ରମରେ ବାହାର ହୋଇଲା ଗରଳ ସେ ।।୯।।

ଖଞ୍ଜନ ମୀନ ମୃଦୁର ଇନ୍ଦୀବର ନିନ୍ଦଇ ଏଣୀଦୃଶୀ ଦୃଶ
ଏହି ଉପମା ନୁହଇ ସଦୃଶ
ନୟନ ସଦୃଶ, ଚକୋର ନୋହିଲ, ତେଣୁ ଗଲ୍ପ ଶଶୀ ପାଶ ରେ ସୁନ୍ଦରୀ
କେହୁ ନାସେ ମୋକ୍ତବର ଟଙ୍ଗିଲେ । ବମା ଆଗେ ମୃଦୁ ବାଣୀ କହିଲେ ।
ନଟି ଅବଯାନେ ଆମ୍ଭଙ୍କୁ ମନରେ ଚିନ୍ତିବୁ ବୋଲି ବୋଇଲେ ସେ ।।୧୦।।

କେହୁ ବୋଲନ୍ତି କୁମର କରଜରେ ନୋହିବୁଟି ସଖି କାତର
ଆମ୍ଭ ବାଣୀ ଶୁଣରେ ବାମାବର
କାନ୍ତ କର ତୋର ଉରୋଜେ ଲାଗନ୍ତେ, ନ କରିବୁଟି ବଧୂର ରେ ସୁନ୍ଦରୀ
କାନ୍ତ ମାଗିଲେ ରତିଦାନ ସଖି ! ଶିରପୋତି ବସିଥିବୁ ସୁମୁଖି !
ନାୟକ ପାଣି ଧରି ତୁ ନ ଛାଡ଼ିବୁ, ଶୁଣ ବାଣୀ ଚନ୍ଦ୍ରମୁଖୀ ରେ ।।୧୧ ।

ଯେତେକ କାର୍ପଣ୍ୟ କହିବ ନାୟକ, ତେତେଟି ସଖି ହୋଇସୁ ଲୀଳା
ଏହା ଚନ୍ଦ୍ରଥିବୁଟି ବରବାଳା
ଏକାବେଳେ ସବୁ ସୁରତ କେବେ ହେଁ, କାନ୍ତେ ନ ଦେବୁ ଅବଳା ରେ ସୁନ୍ଦରୀ
ଦେଖି ଯେଉଁକାବେଳେ ପୁଷ୍ପ ଫୁଟନ୍ତି । ତହୁଁ ଶାନ୍ତ ହୋଇ ଭୃଙ୍ଗ ତେଜନ୍ତି ।
କଞ୍ଚିତ କଞ୍ଚିତ ବିକାଶ ହୋଇଲେ ଚିରକାଳ ପାଶେ ଥାନ୍ତି ରେ ।।୧୨।।

ଏମନ୍ତ ନାନା ପରିହାସ କରିଣ ଉପଦେଶ ଆଦି କହିଲେ
ବାଳା ବେଶ ବିଧାନ ହିଁ ସାରିଲେ
ଦିବ୍ୟ ବସନ ପିନ୍ଧାଇ ରଚି କାଚୁଳି ପାଦେ ନୂପୁର ଖଞ୍ଜିଲେ, ସେ ସୁନ୍ଦରୀ
ଅଙ୍ଗେ ମଳୟଜ ପଙ୍କ ଘଷିଲେ । ଚନ୍ଦ୍ରରଜ ତାମ୍ବୂଳ ଭୁଞ୍ଜାଇଲେ ।
ଏସନେକ ନିଶି ପହରେ ହୁଅନ୍ତେ କୁମର ପାଶକୁ ନେଲେ ସେ ।।୧୩।।

ରତିନାୟକ ବିଜୟକେତନ କି ତେସନ ବାମା ଶୋଭା ଦିଶି
ମେଢ଼ ଦ୍ୱାରେ ଯାଇ ହେଲା ସୁକେଶୀ
ସଖି ! ଯାଅ ବୋଲି ପ୍ରେଳିଣ ଦିଅନ୍ତେ ନ ଚଳଇ ଏଣୀଦୃଶୀ ସେ, ସୁନ୍ଦରୀ
ପରିମଳା ନାମେଣ ଯେଉଁ ଆଳୀ । ସେହୁ ବୋଲଇ ଶୁଣ ନୃପବାଳା !
ତୋ ମୁଖଚନ୍ଦ୍ରମା ନ ଦେଖି କୁମର ହୋଇ ଯେ ଥିବ ଆକୁଳ ସେ ।।୧୪।।

କିବା ଗୋ କୁମରମଣି ହସ୍ତ ଧରି ନେବାକୁ କରିଛୁ କି ଘାଷା
ଆମ୍ଭ ଆଗେ କହ ଗରୁ କଟାକ୍ଷା
ତୋ ଅଧର ସୁଧା କୁମରକୁ ଦେଇ କାମ ମୁଖୁ କର ରକ୍ଷା ସେ ସୁନ୍ଦରୀ !
ଏତେ ବୋଲି ଦେହଲୀ ବନ୍ଧ ଡେଇଁ । କଳ କବାଟ ଗଲେ ସର୍ବ ସହି ।
ନତବଦନ ହୋଇ ଭିତ୍ତି ସନ୍ନିଧେ ଉଭା ହେଲା ଚନ୍ଦ୍ରମୁହିଁ ସେ ।।୧୫।।

× × ×

ପର୍ଯ୍ୟଙ୍କ ଉପରେ ଯୁବାମଣି ଯେନ ପର୍ଯ୍ୟଙ୍କେ ବସେ ବହନ ସେ କୁମର,
ବାଳା କମ୍ପଇ ଖିର କୋଳେ ଥାଇ । ଜ୍ଞାନ ହାରିଲା ସୁଧାକରମୁହିଁ ।
କାନ୍ତ କୋଳୁ ଖସି ପଲଙ୍କ ଉପରେ ବସିଲା ମଉନ ହୋଇ ସେ ।।୧୬।।

ନୃପ ସୁତ କହେ ବିନୟ ବଚନ ଶୁଣରେ ରମଣୀରତନ
ମୋତେ କମ୍ପା କରିଛୁ ମନେ ମାନ
ଶଶିକର ମାରଶର ଗରବେ କି ଅଧର ଅମିୟ ଦାନରେ ସୁନ୍ଦରି !
ମୋର ନେତ୍ର-ଚକୋର ହୋଉ ଶାନ୍ତ । ତୋର ମୁଖଶଶୀ ଦେଖି ସୁଦନ୍ତ ।
ଏ ମୋ ପ୍ରାଣଗଣ ହୋଅନ୍ତୁ ସଫଳ ତୋ ତନୁ ଥିର ନୋହନ୍ତୁ ରେ ।।୧୭।।

ମୁହିଁ ତୋହର ଆଶ୍ରିତ ଜନ ସିନା ମୋରେ କର ସଖି ! ସୁଦୟା
ମାଳା ଦେଇ ଥିଲୁ ପ୍ରାଣପ୍ରିୟା
ଶରଣାଗତ ଜନ ଠାରେ ସୁଜନ କେବେ ନୁହନ୍ତି ନିର୍ଦ୍ଦୟା ରେ ସୁନ୍ଦରି !
ମୁହିଁ ତୋହୋର ଚରଣେ ଶରଣ । ମାର ବାଧାରୁ ରଖ ପ୍ରାଣଧନ ।
ତୋର ଦୟା କଲେ ସିନା ତ୍ରାଣବନ୍ତ, ଏବେ ଏ ପିଣ୍ଡ କାରଣ ରେ ।।୧୮।।

ଯେବେ ପାଣି-ପଦ୍ମ ଯେନ ତୋ ଉରଜେ ଶିବ ପୂଜିବ ପ୍ରାଣପ୍ରିୟେ
ତେବେ ପ୍ରଶାନ୍ତ କରିବ ଏ କାୟେ
ଯେବେ କୁଚତଟେ ଶରଣ ନ ଦେବୁ ନାଶିବ ଅନଙ୍ଗ ଘାୟେ ସେ ସୁନ୍ଦରି !
ମୋତେ ରଖ ଏଥରୁ ପ୍ରାଣବନ୍ଧୁ । ବଡି ପ୍ରବଳ ହେଲା କାମସିନ୍ଧୁ ।
ଅଙ୍ଗ ମୋହର କ୍ଷଣେ ହେଁ ସୁସ୍ଥ ନାହିଁ ମାରବାଣ ସନ୍ଧି ସନ୍ଧିରେ ।।୧୯।।

କାନ୍ତ ଚାଟୁବାଣୀ ଶୁଣିଣ ତରୁଣୀ ନୟନ କୋଣେ ଅନାଇଲା
କାନ୍ତ ମନ-ମୃଗକୁ ବାନ୍ଧି କଲା
ରମଣୀରତନ ଇଙ୍ଗିତ ନିରେଖି ବେଗେ ଅଧର ଚୁମ୍ବିଲା ସେ କୁମର
ତାର ନେତ୍ରେ ଦେଲା ମୃଦୁ ଚୁମ୍ବନ । ବିମ୍ବାଧର ପାନ କଲା ବଦନ ।
ଆଶ୍ଳେଷ କରନ୍ତେ ଉରଜ ଉରରେ ଲାଗନ୍ତେ ଦହେ ମଦନ ।।୨୦।।

କୁଚକୁମ୍ଭକୁ ହସ୍ତ ଦେଇ ପୀଡ଼ିଲା କରଜ ପ୍ରଚାଳନ କଲା
କହନ୍ତେ ତୁଣ୍ଡେ ରସନା ଖଳିଲା
ଗଣ୍ଡରେ ଚୁମ୍ବନ ଦିଅନ୍ତେ ତାହାର ପୁଲକ ଅଙ୍ଗେ ହୋଇଲା ସେ ସୁନ୍ଦରୀ,
ପୁଣି ବାଳା କଲାକ ଆଲିଙ୍ଗନ । କାନ୍ତ ମନ-ଭୃଙ୍ଗ ତୋଷେ ବଦନ ।
ପ୍ରବାଳ ଛନ୍ଦ ପ୍ରାୟେ ତାର ଅଧର ଭୁଞ୍ଜିତେ କଲା ସେ ପାନ ।।୨୧।।

ପୁଣି କାନ୍ତ କର ଧରିଣ ଚତୁରୀ ମିଛେ ହେଁ କରେ ନାହିଁ ନାହିଁ
ହସ୍ତ ଧରି ତହୁଁ ମିଛେ ଛାଡ଼ଇ
ଶିର ମନ୍ଦ କରି କମ୍ପେ ଯାଅ ଯାଅ, ବୋଲି ହସ୍ତେ ପେଲିଦେଇ, ସେ ଚତୁରୀ
କାନ୍ତ ଏଣେ ସ୍ନେହ ତାର ଜାଣିଲା । ବଧୂ ଅଧର ହସିତେ ପାନ କଲା ।
ଗଣ୍ଡ ତଟରେ ଦଶନ କ୍ଷତ ଦେଇ ପୁଣି ଚମକି ଉଡ଼ିଲା ରସ ।।୨୨।।

ପୁଣି କୁଚ ଦେନି ଦଶନେ ପୀଡିଲା ଚମକେ ରାମାକଳେବର
ଗଣ୍ଡୁ ବହଇ ସ୍ୱେଦ ଝରଝର
କନକ ରମ୍ଭା ପ୍ରାୟେଣ ଦେନି ଉରୁ କମ୍ପନ ଲଭିଲା ଥିର, ସେ ସୁନ୍ଦରୀ
କହିବାକୁ ନ ଆସଇ ବଚନ । କଣ୍ଠେ ଗଦ ଗଦ କଲା ଆସନ ।
କପୋଳ ପାଳୀ ପୁଲକିତ ହୋଇଲା ଶୁଖିଲା ଦନ୍ତ ବସନ ।।୨୩।।

ଯଜମାନଙ୍କ ସମସ୍ତ ବଚନ ବିସ୍ମରିଲା ସେ ରମାବର
ଦମ ଦମ ହୁଅଇ ହୃଦ ତାର
କଞ୍ଚିତ କରି ନାୟକ ମୁଖ ଚୁମ୍ବି ପୁଣି ହୁଅଇ କାତର ସେ ଚତୁରୀ,
ପୁଣ ପୁଣ ଆଲିଙ୍ଗନ କରଇ । କାନ୍ତ ଅଧର ଦଶନେ ପୀଡ଼ଇ ।
ତନୁ ଚମକ ସିତ୍କାରେ କଞ୍ଚିତ ଅବ୍ୟକ୍ତ ବାଣୀ ଭାଷଇ ।।୨୪।।

କଳା କୁଶଳା ବଲ୍ଲଭ ସୁରତର ରତିକ ବଢ଼ିଲା ସେ ବାଳା
କେହୁ ଜାଣିବ ଏତେ କାମ ଲୀଳା
ପରସ୍ପରେ ବେନି ଜନ ଆଲିଙ୍ଗନେ କଣ୍ଠୁ ଛୁଟେ ମୋତିମାଳା, ସେ ରମାବର
ଚୁମ୍ବ ଆଲିଙ୍ଗନ ଯେ ନଖକ୍ଷତ । ଅଧରାମୃତ ପାନ ଦନ୍ତାଘାତ ।
ଏମନ୍ତେ ଯେତେକ ବାହ୍ୟ ସୁରତ ବେନି ଜନେ ହେଲେ କୃତ ।।୨୫।।

ଏଥି ଅନନ୍ତରେ ରମଣି ଅଂଶୁକ ଅଞ୍ଚଳ ଧରେ ଯୁବାମଣି
ମିଛେ ଛାଡ଼ ଛାଡ଼ ବୋଲେ ତରୁଣୀ
ଏ ବଚନକୁ କି ସମାନ ହୋଇବ ମତ୍ତ ପିକ ସ୍ୱର ବାଣୀ, ସେ ସୁନ୍ଦରୀ
ସହୁଁ ନାୟକ ହରିଲା ଅମ୍ବର । ନେତ୍ରେ ଦେଖିଲା ମଦନ ମନ୍ଦିର ।
ମାର ହେମରତ୍ନ ମଣି ସେ କୁମର ମନରେ ହେଲା କାତର ।।୨୬।।

କିବା ହେମ ନାଗବଲ୍ଲୀ ଦଳ ଆଣି ବିଧାତା ଘଟନା କରିଛି
ତଳ ଦଳ ପଦ୍ମ ପ୍ରାୟେ ରଚିଛି
କିବା ମଦନ ମହାଯାଗ କରିବ ହେମ ପାତ୍ରୀ ହୋଇଅଛି ସେ ସୁନ୍ଦରୀ
ଯୁବା ଜନ ନୟନ ଘୃତେ କରି । ପ୍ରାଣ ସମିଧ କରି ଶମ୍ବରାରି ।
ସ୍ୱେ ହୋମ କୁଣ୍ଡରେ ସେ ଯାଗ ଆରମ୍ଭି ଜଳିବ ତ୍ରିପୁର ଅରି ।।୨୭।।

ଏସନ ବୀର ମନରେ ବାଞ୍ଛା କରି କୁମର ତା ପାଶ ହେଲା
ପ୍ରାଣପ୍ରିୟେ 'ରକ୍ଷ' ବୋଲି ବୋଇଲା
ମାଲ ଯୁଦ୍ଧ ବେନି ଜନେ ଆରମ୍ଭିଲେ ତଳ ଶବଦ ସ୍ଫୁରିଲା, ସେ ସୁନ୍ଦରୀ
ମୁଷ୍ଟି ପ୍ରହାର କରେ ବୀରମଣି । ରମା ଉରଜ ପରେ ପୁଣ ପୁଣି ।
'ନାହିଁ ନାହିଁ ନାହିଁ ଛାଡ଼ି ଛାଡ଼ି' ବୋଲି ରମଣୀରତନ ଭଣି ।।୨୮।।

ବୀର ଗାଢ଼ରେ ନିଧୁବନ କରଇ ସିତ୍କାର କରେ ଚତୁରୀ
ଅଙ୍ଗ ଚମକାଇ ସେ କୃଶୋଦରୀ
କଞ୍ଚିତେ ନାୟକ ବଦନ ଚୁମ୍ବିଲା ପ୍ରତିଅଙ୍ଗ ସ୍ୱେଦପୂରି ସେ ଚତୁରୀ,
କି କି ହୋଇଅନ୍ତି ତାହା ନ ଜାଣନ୍ତି । କି ସେ ବୋଲନ୍ତି ତାହା ପାସୋରନ୍ତି ।
ଜ୍ଞାନ ବେନି ଜନେ ଅଙ୍ଗୁ ତେଜ୍ୟା କଲେ ବି ଭୁଲ ପ୍ରାୟେ ହୋଇଅନ୍ତି ସେ ।।୨୯।।

କାହା ବିସରନ୍ତି କାହା ପ୍ରସରନ୍ତି କିଛି ହିଁ ନ ଜାଣନ୍ତି ସେହୁ
ଧୃତ ହଜିଲା ଦୁହିଁଙ୍କର ଦେହୁ
କପୋତ ମୟୂର ପାରାବତରୁତ ଆରମ୍ଭ କଲେକ ତହିଁ, ହେ ସୁନ୍ଦରୀ
ବେନି ଜନ ଅଙ୍ଗ ବାଶ ନୋହିଲା । ଲୋହ ଚୁମ୍ବଶିଳା କି ଯେ ମିଶିଲା ।
କିବା ଚନ୍ଦ୍ରମୁଖୀ ମୁଖ ଚନ୍ଦ୍ରକାନ୍ତ ମୁଖ ଚନ୍ଦ୍ରଶିଳା ହେଲା ।।୩୦।।

ପୁରୁଷ ପ୍ରାୟେ ହୋଇଣ ରାମାମଣି କରନ୍ତେ ବିପରୀତ ରତ
କଟୀ କିଙ୍କିଣୀ ହେଲା ମୁଖରିତ
ପୟୋଧର ବେନି କମ୍ପିତ କମ୍ପିତ ଦେଖି ହାରିଲା କି ଚିତ୍ତ, ସେ କୁମର
ତହିଁ ଉପରେ ଦେଲା ବେନି କର । ଭାଙ୍ଗି ପଡ଼ିବ କି ହେମ ଭୂଧର ।
ରତି ରଣେ କାମ ହାରିଲା ବୋଲି କି ଉଦ୍ଧାର କରେ ତା କୂର ସେ ।।୩୧।।

କିବା ସେ ମାରକୁଞ୍ଜର ବେନି କୁମ୍ଭ ମଦଭରେ କରେ ପ୍ରକାଶ
ରୋମରାଜି ମୁଣ୍ଡ ଗଣ୍ଡ ବିକାଶ
କୁଚ ମଧ୍ୟରୁ ସ୍ଫୁଟିତ ଦ୍ୱାରଦନ୍ତ ଦେଖି ଯୁବା ମନେ ତ୍ରାସ, ସେ କୁମର
ବୋଲେ ରକ୍ଷ ମୋତେ ମୀନଲୋଚନୀ । ମାରୁଅଛି ଦ୍ୱିରଦଦନ୍ତ ଆଣି ।
ଏସନ ବିହ୍ୱଳ ବଚନ ଶୁଣି ସେ ଗୂଢ଼ ବୋଲଇ ତରୁଣୀ ।।୩୨।।

ଏସନ ନାନା ପୁରୁଷାୟିତ କଲା ଶାନ୍ତ ନୋହିଲା ତାର ମନ
ଲଲାଟରେ ଖୋସି ବେନି ନୟନ
ଦଶନ ବସନ ଦଶନେ ଚାପିଣ ହୁ ହୁ ଚୁ ଚୁ କରେ ପୁଣ ପୁଣ, ସେ ଚତୁରୀ
ସେହୁ କୁମର ପୁଣି ଶୁଭ୍ରକେଶୀ । ରତି ଦେଖିଣ ମାର ହେଲା ଦାସୀ ।
ଉଭୟ ଶୃଙ୍ଗାରେ ସନ୍ତୋଷ ନୋହିଲେ ଶେଷ ହୋଇଲା ତାମସୀ ।।୩୩।।

କୋକିଳ ନାନା ପକ୍ଷୀଗଣେ ଭାଷିଲେ ଧୀରେ ଗନ୍ଧବହ ବହିଲା
ବିରହିଣୀ ଜନ ପ୍ରାଣ ଦହିଲା
ଦେବତାଙ୍କ ଆଳେ ସାରଙ୍ଗ ସ୍ଫୁରିଲା ପ୍ରାଚୀ ଅରୁଣ ଦିଶିଲା ରେ ସୁନ୍ଦରୀ,
ତାମ୍ରଚୂଡ଼ମାନେ କଲେ ନିଃସ୍ୱନ । ନିଦ୍ରାଭଙ୍ଗ ହୋଇଲେ ସର୍ବଜନ ।
ଅଭିସାରୀ ନାରୀ ଜାର ତ୍ୟକ୍ତ କଲେ ମିଳିଲେ ପୁରେ ବହନ ଯେ ।।୩୪।।

କେବଣ କାନ୍ତା କାନ୍ତର ପାଶେ ଥିଲା ତକତ ଲଗିଲା ତାମ୍ବୂଳ
ବେଗେ ତେଜିଲା ବଲ୍ଲଭର କୋଳ
କେବଳ ବାଳା ରତିଶ୍ରାନ୍ତ ହୋଇଣ ପାନ କରେ ବସି ଜଳ, ରେ ସୁନ୍ଦରୀ
କେହୁ କାନ୍ତା ପାଶରୁ ବେଗେ ଆସି । ଅନଳକୁ ପ୍ରାର୍ଥନା କରେ ବସି ।
କେବଣ ନାୟିକା ସୁରତର ଚିହ୍ନ ମୁକୁରରେ ଚାହିଁ ହସି ସେ ।।୩୫।।

କେଉଁ ନାୟକ ଭୃଶଠ ହୋଇ ଯାଇଁ ନିଜ କାନ୍ତା ପାଶେ ମିଳିଲ
ଚନ୍ଦ୍ରବଦନୀ ଅବଲୋକ କଲ
କୁଙ୍କୁମ ଚର୍ଚ୍ଚିତ ଦେଖି ତାର ତନୁ ମାନ ତତକ୍ଷଣେ ଘେନିଲ, ସେ ସୁନ୍ଦରୀ
କେଉଁ ବାଳା କାନ୍ତରେ ମାନଭର । ନିଷ୍ଠି ପ୍ରଶ୍ରୟରେ ହେଲ କାତର ।
କେବଣ ଯୁବତୀ ଶଠ କାନ୍ତ କଥା କହିଲେ ସଖୀ ଆଗର ।।୩୬।।

ଏସନ ସମୟେ ଜଳରେ ବିକାଶ ହୋଇଲେ ନଳିନୀନିକର
ରଶ୍ମି କ୍ଷୀଣ ହୋଇଲେ ଶଶଧର
ଉଦୟାଚଳ କନ୍ଦର ମଧ୍ୟ ବେଗେ ବାହାର ହେଲେ ମିହିର, ସେ ସୁନ୍ଦରୀ
କିବା ପ୍ରାଚୀ ନାରୀର ମଥାମଣି । ତେଣୁ ପ୍ରାୟେ ରଜଇ ଦିନମଣି ।
ତମ କୁଳ କରେ ବିଦାରିବା ଦେଖି 'ଦ୍ୱୋଣ' ନିଜ ନାମ ଭଣି ।।୩୭।।

କିବା ଉଦୟାଚଳର କଣ୍ଠୀରବ କରେ ଦାରିଲ ତମ କରୀ
ଥୋକେ ଚଳାଇ ପଡେ ଗିରିଦରି
ଚକ୍ର ଚକ୍ରବାକଙ୍କ ଚକ୍ର ତୋଷ ହେଲେ ଦେଖି ସିଂହିକାଜ-ଅରିରେ ସୁନ୍ଦରୀ,
ନିଶା ଶେଷ ଶିନ୍ତ୍ର ରମା ବହନ । କାନ୍ତକୋଳ ତେଜି ପିନ୍ଧେ ବସନ ।
ଦନ୍ତୀ ମାଜିଲ କମଳ ଶ୍ରୀ ପ୍ରାୟେକ ନେସନ ତାର ବଦନ ।।୩୮।।

ଫିଟି କବରୀ କନ୍ଧରେ ଅଛି ପଡ଼ି ସୁନ୍ଦର ଦିଶେ କୃଶୋଦରୀ
କଣ୍ଠୁ ତୁଟିଛି ଗଜ ମୋତି ସରି
ନଖ ଦନ୍ତ ଚିହ୍ନ କୁଚ କୁମ୍ଭେ ଦେଖି ଛନ ହେଲ ବିମ୍ବାଧରୀ, ସେ ସୁନ୍ଦରୀ
ସଖୀ କର ଧରି ଧୀରେ ଚାଲଇ । ମୁଖ କିବା ଚନ୍ଦ୍ର ପ୍ରାୟେ ଦିଶଇ ।
ଚୂଡ଼ି କଙ୍କଣ କେୟୂର ତୁଟି ଅଛି ନ ପାରଇ ବାଣୀ କହି ।।୩୯।।

ଏସନ ଅବସ୍ଥା ଦେଖିଣ ସୁନ୍ଦରୀ ଆଶ୍ୱାସି ରମାକୁ କହନ୍ତି
ଅଙ୍ଗସ୍ପୃଷ୍ଟ କରରେ କୁନ୍ଦଦନ୍ତି !
ପଦ୍ମଲାଣୀ ତୋର କଣ୍ଠ ତଟମାରେ ଉରଜ ମିଶୁଛି ଚିହ୍ନ, ରେ ସୁନ୍ଦରୀ
କେହୁ ବୋଲନ୍ତି ପରିହାସ ବାଣୀ । କେଭେ ଅମୃତ ଭୁଞ୍ଜିଲୁ ମିତଣୀ ।
କୁମର ଚକୋର ତୋ ମୁଖ-ଚନ୍ଦ୍ରରୁ ପୀୟୁଷ ଲଭୁଛି ପୁଣି ସେ ।।୪୦।।

କେହୁ ସଜନୀ ବ୍ୟଜନ ଘେନି ବିଞ୍ଚି କେହୁ ସିଞ୍ଚନ୍ତି ମୁଖେ ପାଣି
କେହୁ ପୋଛନ୍ତି ଆର୍ଦ୍ର ବାସ ଘେନି
ଚନ୍ଦ୍ରକଳା ହସ୍ତ ଧରି ଧୀରେ ଧୀରେ ମନ୍ଦିରେ ପ୍ରବେଶ ପୁଣି, ସେ ସୁକେଶୀ
କିଛି ବଚନ ନ କହି ସୁକେଶୀ । ଯାଇ ସୁତିଲ ଇନ୍ଦୀବରଦୃଶୀ ।
ନଖ କ୍ଷତମାନ ସ୍ୱେଦରେ ଜଳନ୍ତି ବୋଲଇ ସେ ଛଡି ଛଡି ସେ ।।୪୧।।

ତହୁଁ କୁମରମଣି ଯାଇ ଭୂରତେ ତୋଠା ପୁରେ ହେଲ ପ୍ରବେଶ
ମନ୍ତ୍ରୀସୁତକୁ ଚୁମ୍ବି ହସ ହସ
ମୁକୁରେ ଚୁମ୍ବିଲେ ଗଣ୍ଡେ ଦନ୍ତକ୍ଷତ ଦେଖି ଲଭିଲ ହରଷ, ସେ କୁମର
ଶେଷ ହୋଇଲା ଛାନ୍ଦ ଦୁଆଦଶ । ଯୁବା ଜନ ନୟନ ମନ ବାସ ।
କୁମାରୀ ମୁଖ ସୁଧା ପାନ କରଣ କୁମର ବପୁଳ ତୋଷ ସେ ।।୪୨।।

'ମଧୁଶଯ୍ୟା କେଳ' ଏହୁ ଛାନ୍ଦ ନାମ କଉତୁକେ ଏହା ରଚିଲ
କାମଶାସ୍ତ୍ରରୁ କଛୁ ପ୍ରକାଶିଲ
ରସିକ ଜନଙ୍କ ବନୋଦ ନମନ୍ତେ ଗୀତରେ ଏହା ବର୍ଣ୍ଣିଲ, ହେ ସୁଜନେ
ନୃପ ଧନଞ୍ଜୟ କହେ ଏ ଛାନ୍ଦ । ଏଥେ ପଦକୁ ପଦ ଅନୁବନ୍ଧ ।
ଶରଭରଥ ଦୟିତ ଚରଣକଞ୍ଜ ଚିନ୍ତଣ ଆନନ୍ଦ, ହେ ସୁଜନେ ।।୪୩।।

●

## ତ୍ରୟୋଦଶ ଛାନ୍ଦ

(ରାଗ—କଉଶିକ)

ତାଳ— ଆଠ

ଏଥୁ ଅନନ୍ତରେ ଶୁଣ ସୁଜାଣ ରସିକ ଜନ
କୃଶୋଦରୀ ହନ ଦୁଃଖେ ନେଲ
ଚନ୍ଦ୍ରାକରେ ରତିରଙ୍ଗ ଅଙ୍ଗ ଦହଇ ଅନଙ୍ଗ
ନଶି ଆସି ପ୍ରବେଶ ହୋଇଲ ସେ
ରାମାବର,
ନୟନେ ଶଶାଙ୍କ ଶୋଭା ଦେଖି
ବଉଳୀ ଉପରେ ଥାଇ ସଖୀ କ କଥା ନ କହ
ପଲଙ୍କେ ଶୁତଲ ଚନ୍ଦ୍ରମୁଖୀ ।୧।

ଶୁଣ ଏବେ ଦିବ୍ୟ ରସ    ସ୍ୱର୍ଗରେ ବାସବ ଶିଷ୍ୟ
'ପୁଷ୍ପଦନ୍ତ' ବୋଲି ନାମ ତାର
ମଦାଳସୀ ଗର୍ଭ ଜନ୍ମ    ଅଙ୍ଗ ଦହେ ପୁଷ୍ପଧନ୍ୱ
ଅତି ତନୁ ତନୁ ମହାବୀର,
ସେ ବୀରବର
ଚିନ୍ତା କରେ ରମଣୀକି ବସି ।
ମୋହ ଲାଗି ଏତେ କଷ୍ଟ    ପାଇଲି ଅବଳା ଶ୍ରେଷ୍ଠ
ଅବନୀରେ ଜାତ ଶୁ ଭ୍ରୂକେଶୀ ।୨।

ତାତ ବଂଶ କଲି ତାର    ଉତ୍ତମ ନୃପ କୁମର
ମୋତେ ନିକ ଚିନ୍ତିବ ଅବଳା
ଏବେ ତାର ପାଶେ ଯିବ    ବନ୍ଧୁ ବନସ୍ପି କଳ୍ପିବ
ଯେମନ୍ତେ ପ୍ରସନ୍ନ ହେବ ବାଳା
ସଚିବ ସୂତ,
ଆଜ୍ଞା ଦେଲି ଯନ୍ତାକୁ ତୁରିତ
ସାଜ ମୋର ଦିବ୍ୟ ଯାନ    କରିବା ମର୍ତ୍ତ୍ୟ ଗମନ
ହରିବା ରମଣୀମଣି ଚିତ୍ତ ।୩।

ଏତେ ବୋଲିଣ ତୁରିତ    ବିଜେ କଲି ପୁଷ୍ପଦନ୍ତ
ଧୀରେ ରଖାଇ ସେ ରଥବର
କାରଣ ଦିଗେ ପ୍ରବାସୀ    ଶର୍ଣୀକି ଅମ୍ବର ଖସି
ତେସନ ସେ ମିଳେ ଗ୍ରାମାପୁର
ଗନ୍ଧର୍ବବର,
ଦେଖିଲି ସଖୀ ଅନନ୍ତ ଚେତ
ସ୍ୱର୍ଗରୁ କୋଟିଏ ଗୁଣ    ଲାବଣ୍ୟବନ୍ତ ରୂପେଣ
ଗୃହିଁ ରାମା କାମାକୁଳମତ ।୪।

ହସ୍ତେ ଘେନ ମୋହ ଶର    ଭେଦିଲି ସବୁ ଶରୀର
ମୋହେ ଅଚେତନ ସର୍ବଜନ
ଏସନ ବାସବ ସୁତ    ଦେଖି ଅତି ତୋଷ ଚିତ୍ତ
ରାମା ପାଶେ ପ୍ରବେଶ ବଦନ
ସୁନ୍ଦରୀମଣି,
ପଲଙ୍କେ ଅଛଇ ନିଦ୍ରା ଯାଇ
ପାଣିରେ ଚରଣ ତାର    ଧଇଲା ଗନ୍ଧର୍ବବର
କିଛି ନ ଫୁରଇ ମୁଖ ଗୃହିଁ ।୫।

ରେତଣ ପଲଙ୍କେ ବସି ଗୁହାଁଲ ସେ ଏଣୀଦୃଶୀ
ବେଢ ନେଢ ପାଣିରେ ଆଶ୍ୱାସି
ଦେଖିଲା ସେ ଅଲକ୍ଷିତ ପୁରେ ପୁରନ୍ଦର ସୁତ
ସାକ୍ଷାତ ମଦନ ବଜେ ଆସି ସେ
ବରରମା,
କାତର ହୋଇଲା ତାକୁ ଦେଖି
ଜ୍ଞାନ ଧ୍ୱଂସ ହୁଏ ତାର ଅଙ୍ଗ ହୁଏ ଥରହର
ସ୍ୱେଦଜାତ ସୁଧାକରମୁଖୀ ସେ ।୬।

ସଖୀକ ତୋଳ ଲୋଡ଼ଇ ମୁଖେ ବାଣୀ ନ ଆସଇ
ସ୍ତମ୍ଭିତ ତନୁ ସେ ବରରମା
ଚାହଇ ଏ ଯୁବା ବଣି କାହୁଁ ଏଥେ ହେଲା ଆସି
ଏ ତ ଅତୁଳ୍ୟ ସୁଖର ସୀମା ସେ
ବାଳାମଣି,
ଅଧୋମୁଖ ହୋଇ ସେ ବସିଲା
ଦେଖି ତା ବିରସ ମୁଖ ଗନ୍ଧର୍ବ ଲଭିଲା ଦୁଃଖ
ଅଗ୍ରତେ ତା ବନସ୍ତି ଭଷିଲା ।୭।

ଶୁଣ ପ୍ରିୟେ ଚନ୍ଦ୍ରମୁଖି ! ତୋର ବନ୍ଧୁ ମୁହିଁ ଦୁଃଖୀ
ପୁଷ୍ପଦନ୍ତ ବୋଲି ନାମ ମୋର
ତୋର ନାମ ମଦାଳସୀ ଶୁଣରେ ପଙ୍କଜଦୃଶୀ
ଅପସରା ମଧ୍ୟେ ଅଛୁ ସାର ଗୋ
ପ୍ରାଣପ୍ରିୟା,
ତୋର ଯେମନ୍ତ ପୀରତ
ମୋର ଆଶେ ଏଡ଼େ କଷ୍ଟ ଭଜଲୁ ଅବଳାଶ୍ରେଷ୍ଠ
ପୂର୍ବଜନ୍ମ ଚନ୍ଦ୍ର ମୋତଦନ୍ତ ।୮।

ଯେତେକ ଅବଳାଗଣ ସ୍ୱର୍ଗରେ ଅଛନ୍ତି ଜାଣ
ମୋର ଚିତ୍ତ କାହିଁ ନ ବଳଇ
ସପତ ଶତ ମୋ ବାଳା ପଦ୍ମିନୀ କଳା କୁଶଳା
ଭଲେ ତାଙ୍କ ମୁଖ ଭଲେ ନ ଗୁହାଁଇ ଗୋ
ଚନ୍ଦ୍ରମୁଖି,
ତୋର ଚନ୍ଦ୍ର ଆନନ ନ ଦେଖି
ଅନ୍ନ ପାଣିରେ ବିରସ ତେଜ ମୁଁ ବିଷୟ ରସ
ମୀନକେତୁଶରେ ହେଲି ଦୁଃଖୀ ।୯।

ଚାତକ କି ନବଘନ ବିନୁ ଶାନ୍ତ କରେ ମନ
ଚକୋର କି ତୋଷ ଶଶି ବିନୁ
ମୋର ତୋର ସେହି ମତ ଶୁଣରେ ଶିଖରଦନ୍ତି
କମଳ ରବି ପ୍ରାୟେ ସୁତନୁ ଗୋ
ପ୍ରାଣପ୍ରିୟେ,
ନିଦ୍ରା ଗଲେ ଭାବଇ ତୋ ରୂପ
ସତତ ତୋ ଚିନ୍ତା ପର ସକଳ ମୁଖ ବିଧୁର
ଏଣୁ ବେଢେ ଦହେ ପୁଷ୍ପଚାପ ।୧୦।

ଦିନେ ଯେ ପଲଙ୍କେ ବସି କହିଲୁ ମଧୁର ଭାଷି
ମୋର ଗଣ୍ଡେ ଦେଇଣ ଚୁମ୍ବନ
ତୋର ମୋର ଏକ ଜୀବ ଭିନ୍ନ କଳିକ ଦଇବ
ଏବେ ମତେ ନକହୁ ବଚନ ରେ
ମଦାଳସି,
ସୁରପୁର କେଳି ତୁ ସୁମର
ପାରିଜାତକ ସୁମନା ଦେଲୁ ମତେ ବରାଙ୍ଗନା
ହସି ଦନ୍ତେ ପୀଡ଼ିଲୁ ଅଧର ।୧୧।

ମୁଁ ତୋର ଚରଣେ ଦାସ ନ କର ପ୍ରିୟେ ନିରାଶ
ନୁହଁଇ ଏ ଉଚିତ ସଜନି
ଅଧରୁ ଦେଇ ଅମୃତ ଭାଷ ତୁ ମୃଦୁ ଉଚିତ
ବନେ ଯାଉ ବନପ୍ରିୟ ଶୁଣି ରେ
ଚନ୍ଦ୍ରହାସି,
ଚନ୍ଦ୍ରହାସେ ମାରୁଛି ମଦନ
ଶରଣ ପଶିଲି ତୋରେ ନ ଧର ତାପଚିତ୍ତରେ
କୁଚ ମଧ୍ୟେ ରଖ ପ୍ରାଣଧନ ।୧୨।

ବିବିଧ ଦାମ ଗୁନ୍ଥିଣ କରିଣ ଥାଇ ଯତନ
ତୋର ମନ୍ଦିରକୁ ନେବା ପାଇଁ
ବିହି ମତେ ଏହା କଲା ତେଡ଼େ ସୁଖ କେଣେ ଗଲା
ମଞ୍ଜେ ଜନ୍ମ ହେଲୁ ବୃନ୍ଦମୂର୍ଦ୍ଧ୍ନି ରେ
ବୃନ୍ଦକେଶି,
ଏବେ ମୋତେ ପାଶୋରିଲୁ ସବୁ
ତୋର ମୋର ଯେଡ଼େ ସୁଖ ଜାଣନ୍ତି ତା ପଞ୍ଚମୁଖ
ଦାସ ଜନେ ବେଷ କାହିଁ ପାଇଁ ।୧୩।

ସ୍ୱର୍ଗର ସମ୍ପଦମାନ ନ ରୁଚଇ ପ୍ରାଣଧନ
ଦାରୁଣ ସେ ସହସ୍ରଲୋଚନ
ବିନା ଦୋଷେ କୋପ କଲା ଅବନୀରେ ଜାତ ଦେଲା
ତୋର ପ୍ରାୟେ ଯୁବତୀ ରତନ ଗୋ
ପ୍ରାଣବନ୍ଧୁ,
ତୁହି ସେ ଲାବଣ୍ୟ ରୂପସିନ୍ଧୁ
ବଦନ ଚନ୍ଦ୍ର ପ୍ରକାଶ କାମ ଅନ୍ଧକାର ନାଶ
ତୁ ମୋର ଗୋ ରହସ୍ୟର ବନ୍ଧୁ ।୧୪।

ତୋ ସ୍ୱରୂପ ରୂପ ସମ୍ପଦ, ଚାହିଁଲେ ଉଳେଁ ଆନନ୍ଦ
ଏତେ ଦିନ ହୋଇଲୁ ଅନ୍ତର ।
ଏବେ ମୋ ଫଳିଲା ଭାଗ୍ୟ ଦେଖିଲି ଉରଜ ତୁଙ୍ଗ
ସବୁ ଦିନେ ମୁଁ ତୋ ପଶ୍ଚୁର ରେ
ଚାରୁକେଶି,
ହସି କି କେ ନ କହୁ ବଚନ
ଦୋଷ ବିଚାରି ତୁ ମୋତେ ଦଣ୍ଡ ଗୋ କର ତୁରିତେ
ପ୍ରଭୁ କାହିଁ ଭୃତ୍ୟେ କରୁ ମାନ ।୧୫।

ତୋର ମନ୍ଦିରକୁ ଯାଇ ମୋର ମୁଁଖ ଚାହିଁ ଚାହିଁ
ମିଛେ ହେଁ ଲଗାଇ ଦେଉ ଦୋଷ
ଆମ୍ଭେ ନିକ ତୁମ୍ଭ ମନେ ପଡୁଥାଉ ନିଶି ଦିନେ
ଲଭିଲନ ଆନ ରାମା ପାଶ ଗୋ
ପ୍ରାଣପ୍ରିୟେ
ସେ କଥା ତୁ ଏବେ ନ ଚତୋଉ
ତୋର ଏହୁ ବାଣୀ ଶୁଣି ଧରଇ ମୁଁ ବେନି ପାଣି
ହସି ମୁଖେ ଚୁମ୍ବନ ଯେ ଦେଉ ।୧୬।

ଏମନ୍ତେ ଗନ୍ଧର୍ବମଣି କହନ୍ତେ ବିନୟ ବାଣୀ
ରାମା ତାରେ ମଉନ ବିମୁଖୀ
ରବି ଛବି ବିନୁ କାହିଁ ମାଧବୀ ଲତା ନ ଚାହିଁ
ବନଜବନ ପ୍ରିୟେ କି ସୁଖୀ
ବରବାଳୀ,
ଗନ୍ଧର୍ବଙ୍କୁ ନ କହିଲା କିଛି
ମନ ତଦଗତ ତାର ଦେଇ କୁମର ଉପର
ଚିନ୍ତାଭରେ ରହିଲା ମୃଗାକ୍ଷୀ ।୧୭।

କୁମାରୀ ମୁଖକୁ ଚାହିଁ                    ପୁରନ୍ଦର ସୁତ ତହିଁ
ରତ୍ନବର ଆରୋହଣ ଗଲା
କଥା ନ କହିଲା ବାଳୀ               ବଦନେ ମୋ ଦେଲା କାଳି
ଧିକ ମୋ ଜୀବନ ଆଜ ହେଲା ସେ,
ଚନ୍ଦ୍ରେ ଚନ୍ଦ୍ରେ
ଶୁଣି କ ବୋଲିବେ ସୁନାସୀର
ଚନ୍ଦ୍ରମୁଖୀ ଏହା କଲା               ମୋତେ ଲାଜ କରାଇଲା
ପାଣୁ ହର ନେବ ତା କୁମର ।୧୮।

ଏସନ ବରୁଣ ସୁତ                    ଅନ୍ତରୀକ୍ଷେ ଗଲା ସତ
ନିଜ ପୁରେ ପ୍ରବେଶ ହୋଇଲା
ବାଳାରେ ହୃଦୟ ଦେଇ               କେବଳ ଶରୀର ନେଇ
ସୁରପୁର ବିପିନ ମଣିଲା ସେ,
ପୁଷ୍ପଦନ୍ତ,
ଅନ୍ତରେ ତା ପୀଡ଼ିଲା ମଦନ
ଭଣେ ଧନଞ୍ଜୟ ନୃପ                    ସର୍ବ ଗୁଣ ରୂପ କୂପ
ପାଇଲେ ସେ ହୋଇବ ପ୍ରସନ୍ନ ।୧୯।

●

# ଚତୁର୍ଦ୍ଦଶ ଛାନ୍ଦ

## ରାଗ—ଶଙ୍କରାଭରଣ

(ତାଳ—ସରିମାନ)

[‘କାରୁଣ୍ୟ କରନ୍ତି’ ବାଣୀରେ ଗାଇବ]

ଏଥୁ ଅନନ୍ତରେ ଶୁଣ ବିଚକ୍ଷ ବିଧାନ
ଅତି ସୁଖେ କୁମର କୁମାରୀ ବେନି ଜନ
ଦିନ କଲେ ଅବଶେଷ
ଏମନ୍ତେ ରଜନୀ ମୁଖ ହୋଇଲା ପ୍ରବେଶ ।୧।

ଅରୁଣ ବରୁଣ ଦିଗ ରମାକୁ ଭଜିଲେ
ଏଣୁ କି ବା ପୂରେ ଅନୁରାଗ ବିକାଶିଲେ
ଦ୍ଵିଜ ଦିଗ ବୃନ୍ଦିଁ ବୃନ୍ଦିଁ
କଇରବ ଛଳେ ବିଠ ବୋଲ କି ହସଇ ।୨।

ବିସ୍ତାର ଅମ୍ବର ସହୁଁ ତେଜିଲେ ମିହିର
ଲାଜେ କି ପଶିଲେ ଅସ୍ତ ଶଇଳ ଅନ୍ତର
ପକ୍ଵ ଫଳର ସମାନ
ସହସ୍ରକର ହୋଇ ସେ ଲଭିଲେ ପତନ ।୩।

କମଳିନୀ ବୃନ୍ଦ ନିଜ ବନ୍ଧୁକୁ ନ ଦେଖି
କି ଅବା ଶଶାଙ୍କ ପର ପୁରୁଷକୁ ଦେଖି
ଖେଦେ ନମ୍ରଶିର ହେଲେ
ଗର୍ଭଗତ ଭୃଙ୍ଗବ୍ରତ ହୃଦେ କି ରୁଷିଲେ ।୪।

ଚକ୍ରବାକ ଯୁଗଳ ଲଭିଲେ ଗୁରୁ ତ୍ରାସ
କୋଳାହଳ କରି ପକ୍ଷୀ ଗଲେ ନିଜ ବାସ
ଅଭିସାରୀ ନାରୀକୁଳ
ବିବିଧ ବେଶ ଧାରଣେ ହୋଇଲେ ଚଞ୍ଚଳ ।୫।

କ୍ଷଣେ ଭୁବନ ଅନ୍ତର ତିମିରେ ଲୁଚିଲା
ଅସିତ ପଟେ କି ବିଶ୍ଵ ଆଚ୍ଛାଦିତ କଲା
କଉଶିକେ ନାଦ କଲେ
ସୁଜନ ବିହୀନେ କି ପିଶୁନ ଉଲ୍ଲାସିଲେ ।୬।

ଏମନ୍ତରେ ପୁରନ୍ଦର ଦିଗେ ଶଶୀ ଦିଶେ
ଉଦୟାଚଳ ବଦନ ସମାନ ଆଭାସେ
ଦିଗ ସୁନ୍ଦରୀ ଲପନ
ଉଦିତ କଲା କି କରେ ନାଶି ତମ ମାନ ।୭।

ତାରା ନାରୀ ଘେନ ନଭେ କରନ୍ତେ ସେ କେଳି
ଅଲକ୍ଷିତ ହୋଇ ତହିଁ ଘନମାଳା ମିଳି
ଚଉଦିଗନ୍ତ ଘୋଟିଲେ
ତମ ସମ ଚନ୍ଦ୍ରମାକୁ ହେଲେ ହେ ଗିଳିଲେ ।୮।

କି ସେ ନୃପସୁତ ଭାବ କର୍ମ ପ୍ରକାଶିଲେ
ପ୍ରଥମେ ମଧୁର ମୃଦୁ ଗର୍ଜନ ତେଜିଲେ
କଲେ କାନ୍ତ ମାନ ଭେଦ
ଯାହା ଶୁଣି ପଥିକ ଲଭିବେ ହୃଦେ ଖେଦ ।୯।

ଗଗନାଙ୍ଗଣରେ ଗାଢ଼େ ବହିଲେ ଭ୍ରମଣ
ବିବିଧ ଶ୍ୟାମଳ ରୂପ ଧରି ଘନଗଣ
କୋଳେ ବିଳାସେ ଚଞ୍ଚଳା
ଯାହା ଦରଶନେ ହତଚିତ୍ତ ହୁଏ ବାଳା ।୧୦।

ଦେଖିଣ ଏସନ ରୂପ ନୃପତି ନନ୍ଦନ
ଅନଙ୍ଗ କେଳି କଳାରେ ତରଳିତ ମନ
ପ୍ରିୟା ମୁଖ ଚୁମ୍ବି କହେ
ଦେଖ ରେ ସୁନ୍ଦରି ଘନ ମନ କି ନ ମୋହେ ।୧୧।

ଏହୁ ବିରହୀ ହୃଦୟ ଦାରଣକାରଣ
ଏଣେ ମାନସ ଆମୋଦ କରେ ପଞ୍ଚବାଣ
ଏଥେ କର ନେତ୍ର ପାତ
ଏ ତୋ ଆଲୋକନେ ହେଉ ସଫଳ ଜୀବିତ ।୧୨।

ଏ ତୋ ସହଚର ମନୋରଥ ପୂର୍ଣ୍ଣ କର
ଧଇର୍ଯ୍ୟ ସେତୁକୁ ଲଙ୍ଘି ରସନଦୀ ପୂର
ଦୃଷ୍ଟି ଶର ମୋରେ ତ୍ୟଜ
ଦେଖି, ଆରମ୍ଭ ବନ୍ଦନେ ମାର ପାଞ୍ଜ ଲାଜ ।୧୩।

ଜାଣିଲି ରେ ସଖି ! ତୋର ସପକ୍ଷ ଏ ଘନ
ମୁଖ ଛବିଧାରୀ କି ତୋ କଲା ପ୍ରଭା ହୀନ
ଏଣେ ହୁଅ ତୁ ସୁମୁଖ
ଅନଙ୍ଗ ଗାଢ଼ତା ଠାରୁ ବାରେ ପ୍ରିୟେ ରଖ ।୧୪।

ଘେନ ଏ ମୋର ବିନୟ ନରପତି ଜେମା
ଟେକ ଅମଳ ଅତୁଳ୍ୟ ବଦନ ଚନ୍ଦ୍ରମା
ହୃଦତମ ହେଉ ନାଶ
ହସିରେ ପ୍ରାଣ ମିତଣି ମୋରେ ମୃଦୁ ଭାଷ ।୧୫।

ଏସନ ପ୍ରିୟା ବଚନେ ତରଳିତ ବାଳା
ନୟନ ଖଞ୍ଜନ ତାର କଲା ବହୁ ଲୀଳା ।
କାନ୍ତେ ଘେନେ ସେତେ ରତି,
କେବଳ ଚନ୍ଦନ ମାତ୍ରେ ହରଇ ସେ ମତି ।୧୬।

ଶଶୀ ଦରଶନେ ଯେହ୍ନେ ଉଚ୍ଛୁଳେ ଜଳଧି
ତେସନେ ସେ ଉଲ୍ଲସିତ ହେଲା ଗୁଣନିଧି ।
ରମା କଟାକ୍ଷ ଆଶୁଗ
ସହୁଁ ବିଚ୍ଛେଦ ବିହ୍ୱଳା ତାର ଧୃତି-ନଗ ।୧୭।

ତୁରିତେ କୁମର ରମଣୀକି କୋଳ କରି
ସଧୀରେ ଭିଡ଼ିଲା ନିଜ ଭୁଜ ଅନ୍ତେ ଧରି
ଉରେ ଉରଜ ଲଗାଇ
ମତ୍ତେ ପୁଣି ପୁଣି ତାର ବଦନ ଚୁମ୍ବଇ ।୧୮।

ସୁରତ ଆରମ୍ଭ ଦମ୍ଭ ଭାଙ୍ଗିଲା ତାଙ୍କର
ବେନି ଜନର ବିଶେଷ ନୋହିଲା ଗୋଚର
କଳାକୁଶଳ ସେ ଯୁଗ
ପରସ୍ପରେ ସ୍ମର ଶାସ୍ତ୍ର ଶିକ୍ଷା କଲେ ବେଗ ।୧୯।

ଘନ ଦରଶନେ ଘନଜଘନା ଉଲ୍ଲାସ
ଭଷିତ ଲୀଳାରେ କଲା କାନ୍ତ ଚିତ୍ତ ତୋଷ
ଯେତେ ମଞ୍ଜୁ ତା କୂଜିତ
ପୁଣ୍ୟବନ୍ତ ଯୁବାରେ ସେ ହୁଏ କର୍ଣ୍ଣଗତ ।୨୦।

ରତି ଅନ୍ତେ ଅଳଂକୃତ ହୋଇ ବେନି ଜନେ
ପଲଙ୍କେ ଶୟନ କଲେ ବିଚିତ୍ର ଭବନେ
ହୃଦେ ଭାବନ୍ତି ସେ ରଙ୍ଗ
ସହୁଁ ଘନ ଘନ ନାଦେ ଚମକିତ ଅଙ୍ଗ ।୨୧।

ଏମନ୍ତେ ସେ ନିଦ୍ରା ସୁଖ ଲଭନ୍ତେ କିଞ୍ଚିତ
ନିଶା ଅର୍ଦ୍ଧେ ସ୍ୱପ୍ନରେ ମିଳିଲା ପୁଷ୍ପବନ୍ତ
ସ୍ୱପ୍ନେ ବିସ୍ମରଇ ମନେ
ଏ ଦିବ୍ୟ ସୁନ୍ଦରୀ କି ମୁଁ ଲଭିବି କେସନେ ।୨୨।

ନୃପ ସୁତେ ମଗ୍ନଚିତ୍ତ ହୋଇଛି ତରୁଣୀ
କେମନ୍ତେ ମୋର ହୋଇବ ଏ ଅନୁରାଗିଣୀ
ଏଥି ଉପାୟେ କରିବି
ଆଜ ମାୟାଭରେ କୁମରକୁ ଘେନଯିବି ।୨୩।

ଏତେ ଚିନ୍ତି ମୋହ ଅସ୍ତ୍ର ରଚିଲା ଗନ୍ଧର୍ବ
ତତକ୍ଷଣେ ସେ ହରିଲା ସକଳ ଲୋକ ଗର୍ବ
ନିଦ୍ରା ଅଚେତନ ଜନ
ଦେଖି ସେ ଆନନ୍ଦ ହେଲା କୁସୁମଦଶନ ।୨୪।

ବାଳାର ସନ୍ନିଧୁ କୁମରକୁ ହରି ନେଲା
ବିମାନ ଆରୋହି ଖର ଅନ୍ତରୀକ୍ଷେ ଗଲା
ରତ୍ନକୂଟ ମହୀଧର
ସଞ୍ଜରେ ପ୍ରବେଶ ହେଲା ତହିଁର ଅନ୍ତର ।୨୫।

ଦେଖିଲା କନକକୃତ ସମସ୍ତ ପ୍ରଦେଶ
ମଣିମୟ ସାନୁରେ ଯେ ବିକାଶଇ ଦିଶ
ନାନାବିଧ ତରୁଲତା
ଫଳ ପୁଷ୍ପ ଭରେ ଶାଖା ହୋଇଛି ନମ୍ର ତା ।୨୬।

ଶତେକ ଯୋଜନ ଭୂମି ଅଛି ଯେ ଆଶ୍ରମି
ବିବିଧ ପତଙ୍ଗ ମୃଗ ଥାନ୍ତି ଯହିଁ ରମି
ସୁରରମା କେଳି ସ୍ଥଳ
ତହିଁ କୁମରକୁ ଥୋଇ ଚଳିଲା ସେ ଖଳ ।୨୭।

ଚତୁର୍ଦ୍ଦଶ ଛାନ୍ଦ ଏହୁ ଶୁଭେ ହେଲା ଶେଷ
ପଦକୁ ପଦ ଏଥିରେ ଅଛି ବହୁ ରସ
ନୀଳାଚଳପତି ପାଦ
ନୃପ ଧନଞ୍ଜୟ ଭଞ୍ଜ ଶରଣ ଆନନ୍ଦ ।୨୮।

# ପଞ୍ଚଦଶ ଛାନ୍ଦ

## ରାଗ—ସିନ୍ଧୁକାମୋଦୀ

( ତାଳ—ସତମାନ )

ଶୁଣ ରସିକ ଜନେ ଯୁବତୀ ସ୍ୱିତ
ନିଦ୍ରା ଭଙ୍ଗରେ ହେଲା ଉଦ୍ଭ୍ରାନ୍ତ ମନ୍ତ ରେ ।
ଚେତ ଦେଖିଲା ନାହିଁ କୁମରବର
କ୍ଷଣେ ସ୍ତମ୍ଭିତ ତନୁ କମ୍ପିତ ଉର ଯେ ।।୧।।

ସକଳ ସ୍ଥାନେ ଲୋଳ ନୟନ ଦେଲା
ପ୍ରଭାତ ଶଶୀ ସମ ମୁଖ ଦିଶିଲା ଯେ ।
ମଳିନ ଦିଶିଲା ତା ଗୁରୁ ଅଧର
ଅଙ୍ଗରୁ ମନ ଜ୍ଞାନ କଲାକ ଦୂର ଯେ ।।୨।।

ପୁରେ ପୁରେ ଲୋଡ଼ଇ ବର ତରୁଣୀ
ବନେ କାନ୍ତ ବିହୁନେ ଯେସନେ ହରିଣୀ ହେ ।
ବଢ଼ାନ୍ତି ଉପବନ ବିହାର ସ୍ଥଳ
ଦେଖି ସେ ରାମାଜୀବ ଗମନେ ଲୋଳ ଯେ ।।୩।।

ପୁଣି ଫେଶଯ୍ୟ ଚଳେ ନୃପ ଦୁଲାଳୀ
ଦେଖିଲା ଶଯ୍ୟାନ୍ତର ଅମ୍ବର ତୋଳ ଯେ ।
ରତ୍ନ ପଲଙ୍କ ତଳ ଗୁହ୍ଣି ସେ ଦୁଃଖୀ
ବାହ୍ୟ ଜ୍ଞାନ ହାରିଲା ଚନ୍ଦ୍ରମାମୁଖୀ ଯେ ।।୪।।

ନିମିଷେ ଅଚେତନ ପ୍ରାୟେ ହୋଇଲା
ପୁଣି ସଧୀରେ ପ୍ରିୟ ରୂପ ଭାବିଲା ଯେ ।
ଅତି ଆକୁଳ ହୋଇ ବୋଲଇ ବାଳା
କାହିଁ ଗଲ ହେ ମୋର ହୃଦୟମାଳା ।।୫।।

ଥିଲ ଯେ ଏହି ଅର୍ଦ୍ଧ ଯାମିନୀ କାଳେ
ସୁରତ ଅନ୍ତେ ମୋତେ ବସାଇ କୋଳେ ଯେ ।
ଶିଙ୍ଗ ଭାଷା ଭୂଷଣ କଲ ସୁବେଶ
କାହିଁ ଗଲ ନ କହି ଏ ନିଶି ଶେଷ ହେ ।।୬।।

ଅମଳ ମୁଖଚନ୍ଦ୍ର ଭ୍ରମର ଗୁମ୍ଫି
ପ୍ରଭାତେ ନେତ୍ର ଫଳ ହେଲେ ଲଭଇଁ ହେ ।
ଏବେ ଦେଖିବ ଅବା କାହା ବଦନ
ନିଶି ନ ପାହୁ ଯାଉଁ ହୀନ ଜୀବନ ଯେ ।।୭।।

ଏମନ୍ତେ ଦେଖିଲା ଯେ ରୁଚିର ଋତୁ
ଭୁବନ ଜନ ମନ ମୋହନ ହେତୁ ସେ ।
ଚଉଦିଗରେ ଏହୁ ହେଉଛି ପୂର୍ଣ୍ଣ
କେବଳ ବିରହୀ ବର୍ଗରେ ଶମନ ହେ ।।୮।।

ଏହୁ ନୃପତି ସମ ଶୋଭା ଧଇଲା
ଶିଳୀନ୍ଧ୍ର ସିତ ଛତ୍ରରାଜି ସାଜିଲା ଯେ ।
କାଦମ୍ବିନୀ କଦମ୍ବ ଦ୍ୱିରଦଗଣ
ବଳାକା ପଙ୍କ୍ତି ଦନ୍ତ ପ୍ରାୟେ ରଞ୍ଜନ ଯେ ।।୯।।

ଅଶନି ଗର୍ଜ୍ଜନ କି ତାର ନିଃସ୍ୱନ
ଦମ୍ପ ହୃଦୟ ଦୁର୍ଗ କରେ ଭଞ୍ଜନ ।
ତଡ଼ିତଚୟ ଚୀନ କେତନ ମାଳା
କେତକୀ କୁନ୍ତ କୁଳ ଅତି ଉଜ୍ଜ୍ୱଳା ଯେ ।।୧୦।।

ଶକ୍ର କୋଦଣ୍ଡ ରୂପ ଧାରା ମାର୍ଗଣ
ଭେକ ଗଣ କି କରେ ଜୟ ବଖାଣ ହେ ।
ବିବିଧ ଦ୍ୱିଜ ଗଣେ ପଠିତ ବେଦ
ଡାହୁକ ବନ୍ଦି କରେ ସ୍ତୁତି ସମ୍ବାଦ ହେ ।।୧୧।।

କଦମ୍ବ ଶୁଭଗିର କରେ ପ୍ରକାଶ
ବିରହୀ ବୃନ୍ଦ ଅରି କଟକ ନାଶ ହେ ।
ସେହିତ କାମୀ ଜନେ ହରଷ ଦେଲା
ବସନ୍ତ ଯୋଦ୍ଧା ତାହା ଦେଖି ଭାଜିଲା ହେ ।।୧୨।।

ତେଣୁ କି ଭୟେ ଅବା କୋକିଳ କୁଳ
ନିଜ ବାଣୀ ଲୁଚାଇ ନୋହିଲେ ନେଳ ଯେ ।
ଦାବ ତାପିତ ଶତ୍ରୁ ସୁଖ ବିହିଲା
ନଗ ପରେ ନଗର ଆନନ୍ଦ କଲା ଯେ ।।୧୩।।

ତନୁରେ ମ୍ଳାନ କଲା ରଜନୀ କର
ବିପୁଳ ସ୍ମର ଚାପ କଳ୍କ ଚୂର ଯେ ।
ଅର ପଦ୍ମିନୀ ନାଥ ବିରସ ହେଲ
ଭରତ କୁଳ ଅନ୍ତ ହେଲେ ଗ୍ରାସିଲା ଯେ ।।୧୪।।

କ୍ରମେ ଯେ ଆକ୍ରମିଲା ନଭ ମେଦିନୀ
ପ୍ରଭାବ ପ୍ରକଟିଲା ଦିବା ରଜନୀ ଯେ ।
ପ୍ରକାଶ କରାଇଲା ଜାତି କୁଳକୁ
ପ୍ରମୋଦ ଦେଲା ଯେ ଗଣିକା ବୃନ୍ଦକୁ ଯେ ।।୧୫।।

ଦେଖିଣ ରମା ଗତ୍ରୁ ହ୍ରାସ ଲଭିଲା
ହା ପ୍ରାଣନାଥ ! ବୋଲି ମୂର୍ଚ୍ଛିତ ହେଲା ସେ ।
ବେଗେ ସଜନୀମାନେ ଟେକି ଧଇଲେ
କମଳ ଦଳେ ସିଞ୍ଚି ବିଞ୍ଚି କହିଲେ ଯେ ।।୧୬।।

ନ କର ଚିନ୍ତା ତୁ ଗୋ ନୃପ ଦୁଲାଳ
ହୃଦୟେ ଭଜୁ ଏକା ଶ୍ରୀ ବନମାଳୀ ଗୋ ।
ହବ ଏ ଘନକୃଷ୍ଣସ୍ୱରୂପେ ରଞ୍ଜନ
ଯହିଁ ଆନନ୍ଦ ଲଭେ ନୟନ ମନ ମେ ।।୧୭।।

ଶକ୍ର କୋଦଣ୍ଡ ଶିଖୀ ଶିଖଣ୍ଡ ରମ୍ୟ
ଚଞ୍ଚଳା ପୀତ ଚେଳେ ଅତି ସୁଷମ ଯେ ।
ବଳାକା ପନ୍ତି ମୋତି ଦାମ ମଞ୍ଜୁଳ
କମଳ ଧାରଚୟ କମଳ ମାଳ ରେ ।।୧୮।।

କାଦମ୍ବ କୂଜିତ ମୁଖର କିଙ୍କିଣୀ
ଦେଖି ଲେଖ ନୋହିବ କହିଁ ତରୁଣୀ ଯେ ।
ଏସନ ସଖି ବାଣୀ କର୍ଣ୍ଣରେ ଶୁଣି
ଘନ ରୁହିଁ ସେ କହେ ନବ ରମଣୀ ଯେ ।।୧୯।।

ହେ ଦଇତାରି ମୋତେ ହୁଅ ସଦୟ
ପ୍ରାଣବାନ୍ଧବ ହୋଇ ରଖ ହୃଦୟ ହେ ।
ଦୀନ ଜନ ବାନ୍ଧବ ବୋଲାଅ ହରି
କାମ କୃତାନ୍ତ ମୁଖୁ କର ହେ ପାରି ହେ ।।୨୦।।

ତା ଶୁଣି ସହଚରୀ କହେ କୋମଳେ
କ ବୋଲୁ ଛୁରେ ବାଳା ଚିତ୍ତ ତରଳେ ସେ ।
ଏ ହର ରୂପଧାରୀ ନଭବହାରୀ
ଘନକୁ କି କେ ଭଜ୍ ନୃପ କୁମାରୀରେ ॥୨୧॥

ପୁଣି ସଲଜ୍ଜ ହୋଇ ମଲକ୍ଷନେତ୍ରୀ
ସ୍ପନ୍ଦତେ ହେଲା ଅତି କାତରମତି ସେ ।
ବଲ୍ଲଭ ଗୁଣ ଗୁଣି କରେ ବେଦନ
ଅମୃତ ବୃଷ୍ଟିଁ ଧୀରେ କହେ ବଚନ ସେ ॥୨୨॥

ଏ ମୋହ ର ବନନ୍ତ ଯେନ ଜୀମୂତ
ତୁ ସେ ଶଙ୍କର ସଖା ଅତି ମହତ ହେ ।
ତୁମ୍ଭରେ ପ୍ରଣାମ ମୁଁ କରୁଛି ବହୁ
ଏ ମୋର ଦୁଃଖ ଯେନ କହିବ ଯାଇ ହେ ॥୨୩॥

ମୋତେ ବାଧିଲେ କିବା ଶାନ୍ତ ଭଜିବ
ମୂର୍ଚ୍ଛିତ ଜନଘାତେ କିସ ଲଭିବ ହେ ?
ସହଜେ ଅବଳା ମୁଁ ଅବୋଧ ମତି
ଏଥୁଁ ନ କର ବୃଥା ଏ ପାପ ଗତି ହେ ॥୨୪॥

ଅଚ୍ଛନ୍ତି ଯେଉଁ ଦେଶେ ମୋର ବଲ୍ଲଭ
ସେଠାରେ ନ କର କି ଏ ଘନାରମ୍ଭ ହେ ।
ଶିଖରୀ ଶିଖେ ଶିଖୀ ନୃତ୍ୟ କି ନାହିଁ
କାମ ବନ୍ଦୀ ତାହାଙ୍କ ନ ରହେ ତହିଁ ହେ ॥୨୫॥

କିବା କାମର ତହିଁ ପ୍ରଚୁର ନାହିଁ
ଶଙ୍କର ଅଛନ୍ତି କି ପ୍ରତ୍ୟକ୍ଷ ହୋଇ ହେ ।
ମୋ ଭାବ ଲେଶେ ପ୍ରିୟା ନ ଧରେ ହୃଦେ
ତରଳ ନୁହନ୍ତି ବା ବିଯୋଗ ଖେଦେ ସେ ॥୨୬॥

ଏମନ୍ତେ ବାତେ ଘନ ଗଲା ସେ ଚଳି
ତହୁଁ ବିଚ୍ୟୁତ ହୋଇଲା (ନବ ?) ବାଳୀ ସେ ।
ଅତି ଆକୁଳ ନେତ୍ର ଲୋତକ ଗଳି
ବୋଲଇ ପ୍ରିୟ ଗୁଣ ଅନ୍ତରେ ଖଳି ସେ ॥୨୭॥

ଏକ ଜୀବନ ହୋଇ କାହିଁ ରହିଲ
ମୋତେ ତ ଏ କାଳକା ମୁଖରେ ଦେଲ ହେ ।
ଯେବେ ତୁମ୍ଭେ ଦେଖ ଏ ଘୋର ଦୁର୍ଦ୍ଦିନ
ମୋର ପାଶୁ ନିମିଷେ ନୋହ ଯେ ଭିନ୍ନ ହେ ।।୨୮।।

ଏବେ ଦାରୁଣ ବିଧି କଲା ଏସନ
ଛନ୍ତି ହେଲେ ସେ ମୋ ସୁଦାରତନ ହେ ।
ଦିନେ ଦିନେ ଯେତେକ ଦେଇଛ ଭାବ
ଏବେ ସେ ମୋ ହୃଦୟ ତପିନ ଦାବ ହେ ।।୨୯।।

କେସନେ ବଞ୍ଚିବି ମୁଁ ଏ ଘନ ଋତୁ
ଯେ ହୋଇଥିଲା ମୋର ଆନନ୍ଦ ହେତୁ ହେ ।
ଏବେ ସେ ଘନ କାଳ କାଳ ତ ହେଲା
କୋଳଗତ ଚଞ୍ଚଳା ଛଳେ ହସିଲା ଯେ ।।୩୦।।

ରସିତ ବ୍ୟାଜେ କିଏ କହଇ ବାଣୀ
କାନ୍ତ ବିନୁ ଲଭିଲୁ ଦୁଃଖ ତରୁଣୀରେ ।
କିବା ଏ ମୋର ବାଧା ଧରୁଛି ଜ୍ୱରେ
ବେଦନ କରୁଛି କି ଧାର ଦମ୍ଭରେ ଯେ ।।୩୧।।

ଅଶନି ତେଜ କିଏ ଏସନ ଚିନ୍ତ
ନଥାଇ ଘଟ ବିନୁ ଲୋକେ ଯୁବତୀ ହେ ।
ନିଷ୍ଠେ ତୁମ୍ଭ ବସ୍ତେ ହେଲ ନିରେଖ
ଭ୍ରମ ହେ ଯେତୁ ମୋର ନୋହ ବିମୁଖ ହେ ।।୩୨।।

ହା ହା ପ୍ରାଣବାନ୍ଧବ ମୋ ଗୁଣନିଧି
ହସ୍ତୁ ମୋ କେତୁ ନେଲ ଅମୂଲ୍ୟ ନିଧି ହେ ।
ଦେଖାଅ ଥରେ ଚନ୍ଦ୍ରମୁଖ ତୁମ୍ଭର
ମୋ ନେତ୍ର-ଚକୋରକୁ ଆନନ୍ଦ କର ହେ ।।୩୩।।

କେ ମତେ କହିବଟି ଏବେ ସୁବେଶ
କେ ବାଛି ପିନ୍ଧାଇବ ସୁଚୀନ ବାସ ହେ ।
କେତୁ ତାମ୍ବୁଳ ଘଷ କରି ଭୁଞ୍ଜିବ
କେ ମୋ ଅଧର ଧରି ଚୁମ୍ବନ ଦେବ ହେ ।।୩୪।।

ଘନ ଚନ୍ଦନ ଲେପି କୁଚଯୁଗରେ
ପତ୍ରାବଳି ଯେ ଲେଖ ମୃଗମଦରେ ହେ ।
ତୁମ୍ଭଙ୍କୁ ଗାଢ଼େ ମୁଁ କରନ୍ତେ ଆଶ୍ଳେଷ
ମୋ ନେତ୍ର ତୃପ୍ତି ବୋଲି ମୁଁ ତୋର ଦାସ ଯେ ।।୩୫।।

ଜମିତେ ଶତ୍ରୁ ଯେ ନୋହି ଅନ୍ତର
କେସନେ ତେଜେ ଦୁଃଖ ବହ୍ନିଲ ଦୂର ହେ ।
ନେତ୍ର ପିତୁଳି କରି ବସ୍ତୁରଥିଲି
ଅଭାଗ୍ୟ ବଶୁ ଭୋଗ ବେଳେ ହାରିଲି ଯେ ।।୩୬।।

କିବା ମୋ ହୃଦ ଭାବ ଜାଣିମା ଆଶେ
ଲୁଚିଅଛ କି ଏ ମୋ ସନ୍ନିଧି ଦେଶେ ହେ ।
ଅନପରାଧୀ ଜନେ ନ ଦିଅ ତ୍ରାସ
କେବଳ ମୋର ତୁମ୍ଭେ ଜୀବିତ ବାସ ହେ ।।୨୭।।

କିବା ଲଭିଲ ସୁର ସୁନ୍ଦରୀବର
ତେଣୁଟି ପ୍ରିୟ ମୋରେ କଲ ଅନ୍ତର ହେ ।
ଧନ୍ୟ କଉଁ ଚତୁରୀ ହରିଲ ଚିତ୍ତ
ଯାର କଟାକ୍ଷ ଶରେ ହେଲ ମୋହିତ ହେ ।।୩୮।।

ତୁମ୍ଭେ ମୋ ଚିନ୍ତାମଣି କଳ୍ପଲତା
ଦେଇ ହରିଲ ଅତି ପିଶୁନ ଧାତା ହେ ।
ରସିକବର ମୋର ହୃଦସ୍ଥ ହାର
ଜାଣଇଁ ତୁମ୍ଭଙ୍କୁ ଏ ଜୀବନ ସାର ହେ ।।୩୯।।

ବିଚ୍ଛେଦ କୋକ ନାରୀ ଗତ ନିଶାରେ
ସୁରତ ରଙ୍ଗ ମୋର ଦେଖି ତୁମ୍ଭରେ ହେ ।
ତା ଶୋକ ଜିଣି ଦିବା ମୋର ସେ ଦେବ
ଆଜ ମୋ ଆଗେ କାନ୍ତ ତୁଲେ ରମିବ ହେ ।।୪୦।।

ଏତୁ ରଜନୀ ପୁଣି ଶେଷ ହୋଇବ
ଦିଗ ଅଙ୍ଗନା ରବିକାନ୍ତ ଲଭିବ ହେ ।
କମଳିନୀବୃନ୍ଦ ହିଁ ହେବ ମୁଦିତ
ମୋ ହୃଦ-କମଳ ସେ ହେବ ମୁଦ୍ରିତ ହେ ।।୪୧।।

ତୁମ୍ଭେ ମୋର ଯେ ଚାରୁ ହୃଦୟବଲ୍ଲଭ
ମୋର ଚିତ୍ତ-ସ୍ୱରଗ ନନ୍ଦନ ବନ ହେ ।
ଦେଖାଅ ଅଳକ ବଦନ ଇନ୍ଦୁ
ଉଚ୍ଛାଳ କର ମୋର ଆନନ୍ଦ ସିନ୍ଧୁ ହେ ॥୪୨॥

ତୁମ୍ଭେ ମୋର ଅତୁଳ ଚନ୍ଦ୍ରଭୂଷଣ
ଏ ମୋ ନୟନ ଦେବ ଗଗନ ସ୍ଥାନ ଯେ ।
ତୁମ୍ଭ ବଦନେ ଚାହିଁ ମୋ ସୁଖ ଲେଶ
ଅଛି ତ ଅଛୁ ମୋର ଜୀବନେ ଆଶ ହେ ॥୪୩॥

ଗନ୍ଧର୍ବମତେ ଦେଲ ସୁଖ ରତନ
ମୋର ଅଣେ ପାଉଣୁ ଦୂର ପେଷିଲ ସେ ।
ଅନେକ ସ୍ୱଷ୍ଟ ନମ୍ର ହେଲ ସେ ମୋରେ
ସମ୍ମୁଖ ଶୁଣି ମୋର ଗଲ ଦେଶରେ ହେ ॥୪୪॥

କପଟେ ସ୍ୱପ୍ନର ମଣ୍ଡ ଲଙ୍ଘି
ଜଗୁଳ ଭୂକ ନୃପ ବର୍ଷେ ଟଙ୍କିଲ ସେ ।
ତେବେ ନିଷ ମୋର ଅଞ୍ଜ ନ କଲ ଆନ
କହୁଁଲେ ଜାଗିଥିଲ ତୁମ୍ଭର ଧ୍ୟାନ ହେ ॥୪୫॥

ଉଧ୍ୱ ବନ୍ଧୁ କ ଶୋଭେ ଭଇରବଣୀ
ଜନପତ୍ନୀ ନ ଦେଖି ଯେପ୍ରେ ନଳନୀ ହେ ।
ତେପ୍ରେ ମୁଁ ଦରଶନ ଅଳ୍ପ ତୁମ୍ଭର
ମଗ୍ନ ହୋଇଛୁ ଶୋକ-ସିନ୍ଧୁ ମଧ୍ୟର ହେ ॥୪୬॥

ଏଥି ଜଞ୍ଜାରେ ମୋର ହୁଅ ତରଣୀ
ତାପ ତମିର ହର ସୁ ଚୁଡ଼ାମଣି ହେ ।
ଭେବଣ ଦେଶେ ଅଛ ଚନ୍ଦ୍ରିକ ନଅ
ଦାସୀ ହୃଦୟେ ମୋରେ ପ୍ରସନ୍ନ ହୁଅ ହେ ॥୪୭॥

ଜନେ ହେ ମାୟା ମୋର ନ କଲ ପ୍ରିୟ
ଏବେ କ କେ ଏପନ ହେଲ ନର୍ଦ୍ଦୟ ହେ ।
ଯେବେ ମୋ ନ ଜାଣିବା ଦୋଷ ଦେଖିଲ
ଝଲ୍ଲ ହୋଇ କେସନେ ନ କଣ୍ଟ ଗଲ ହେ ॥୪୮॥

# ଷୋଡ଼ଶ ଛାନ୍ଦ

## ରାଗ—କାଳୀ

(ତାଳ—ଦୁଜାମାନ)

ଏଥି ଅନ୍ତରେ ବିଚିତ୍ର ରସ ଶୁଣ ରସିକ ଜନେ
ବଲ୍ଲଭ ଗୁଣ ଗଣ ସତତ ଭାବି ଭାବିନୀ ମନେ ।
ଦିନୁ ଦିନୁ ସେ ଅତନ୍ୱୀଁ ତନୁ ହୋଇଲା ବିରତନୁ
ଅହର୍ନିଶିରେ ଯହୁଁ ଅନ୍ତରେ ପୀଡ଼େ କୁସୁମଧନୁ ।।୧।।

ଶରଦ ଅନ୍ତେ ମଧୁ ନୁହନ୍ତେ ଶଶୀକଳା ସମାନ
କୁମର ମୁଖ ମାର ବିଶିଖ ବିନୁ ନ ଦେଖେ ଆନ ।
କାହିଁଗଲ ହେ ମୋ ପ୍ରାଣବନ୍ଧୁ ବୋଲି ଲୋଟଇ ମହୀ
ତୁମ୍ଭ ବିହୁନେ ଅଛି କେସନେ ଏ ହୀନ ଜୀବ ରହି ।।୨।।

ଏମନ୍ତେ ମାୟା ବଳେ ଗନ୍ଧର୍ବ କୁମର ରୂପ ଧରି
କୁମାରୀ ପୁରେ ପ୍ରବେଶ ହେଲ ଦେଖନ୍ତି ସର୍ବ ନାରୀ ।
ସଖୀ କହିଲେ ରାମାକୁ ଯାଇ ଶୁଣ ନୃପ ଦୁଲ୍ଲଭ
ହସ୍ତେ ପ୍ରାପତ ହୋଇଲା ନିଧି କପାଁ ଶୋଇଲୁ ଭଳ ।।୩।।

ଉଠ ଗୋ ଚନ୍ଦ୍ରବଦନି ! ଏବେ ଦେଖ ବଲ୍ଲଭ ମୁଖ
କୁସୁମଶର ବିପୁଳଦର ତେଜଣ ଲଭ ସୁଖ ।
ଶୁଣି ଶରଦ ବିଧୁବଦନୀ ନୟନ କୋଣେ ଧୀରେ
ଦେଖିଲା କାନ୍ତ ସରୂପେ ଯୁବା ପଲଙ୍କ ସନ୍ନିଧିରେ ।।୪।।

ତୁରିତେ ଉଠି ପକ୍ୱବିମ୍ବୋଷ୍ଠୀ କହନ୍ତେ ମୃଦୁବାଣୀ
ବାଷ୍ପେ ରୁନ୍ଧିତ କଣ୍ଠ ହୋଇ ସେ ମାନ ଘେନଲ ପୁଣି ।
ଗଳିତ ନେତ୍ର ଲୋତକ ଜଳେ ସ୍ତିମିତ ଗଣ୍ଡଫଳ
ଅରୁଣ ଅରବିନ୍ଦ ସୋଦର ଦିଶେ ମୁଖମଣ୍ଡଳ ।।୫।।

ଚରଣ ଅଙ୍ଗୁଳିରେ ମେଦିନୀ ଲେଖଇ ନମ୍ରମୁଖୀ
ଗନ୍ଧର୍ବବର ହୃଦୟ ଥିର ଅଥିର ତାହା ଦେଖି ।
ଅତି ବିନୟ କୋମଳବାଣୀ କହଇ ଯୁବାମଣି
କି କେରେ ରେଷ ମାନସ ମୋରେ ହୋଇଲୁ ପ୍ରାଣମଣି ।।୬।।

ମୃଗୟା ପାଇଁ ସତ୍ୱର ହୋଇ କଲି ଗମନ ପ୍ରିୟେ
ବହୁତ ଦୂର ପଥ ଗମିଲି ନ ଜାଣି ହୟ ରୟେ ।
ଦିବସ ଶେଷେ ବିମ୍ବ ବିରସ ପତଙ୍ଗ ରଙ୍ଗ ଦେଖି
ତୋ ମୁଖ ଦରଶନ ବିନୁ ମୁଁ ହୋଇଲି ବହୁ ଦୁଃଖୀ ।।୭।।

ତୋ ବିନୁ ସଖି ଏକ ନିମିଷ ହୋଇଲା ଯୁଗ ଶତ
ଯେଣେ ଚାହିଁଲେ ଦିଶେ କେବଳ ତୋ ରୂପ ବହୁ ମତ ।
ଅତି ନିର୍ଭରେ ଭାବି ଅନ୍ତରେ ରଖିଲି ଏହୁ ଜୀବ
ନିଶ୍ଚେ ନିୟମ କରି କହିବି ଛୁଇଁ ତୋ କୁଚ ଶିବ ।।୮।।

ହେନ ଏ ମୋର ବିନୟ ପ୍ରିୟେ ନ କର ହୃଦେ ମାନ
ଦାସ ଜନର ଦୋଷ କେବେହେଁ ନ ଧରେ ସୁଜ୍ଞ ଜନ ।
ଏ ତୋର ବିମ୍ବାଧରୁ ତ୍ୱରିତେ ଦିଅ ଗୋ ସୁଧା ଦାନ
ଏହୁ ତୃଷିତ କେକୀ ସମାନ ଲଭୁ ଘନେ ଜୀବନ ।।୯।।

ଜାଣି ତ ଅଛୁ ଯୁବତୀମଣି ଯାମିନୀ କି କି ରୀତି
ଈଷତ ହସି କୁଟିଳକେଶୀ କହିଲୁ ଯେତେ ପ୍ରୀତି ।
ତୁମ୍ଭରେ ତୋଷ ମାନସ ଆଜି ମାନ ହୃଦ ଉପେକ୍ଷି
ସେ କଥାମାନ ନ ଶୁଣୁ ଧନ ପୂର୍ଣ୍ଣ ଏଣାଙ୍କମୁଖୀ ।।୧୦।।

ହସିଣ ମୋରେ କହ ବଚନ ବଲ୍ଲଖି ବରନିଧି
ନିର୍ଦ୍ଦୟଚିତ୍ତ କି ଆଜି ମୋରେ ହୋଇଲୁ ଗୁଣନିଧି ।
ଶାନ୍ତ ଚିତ୍ତରେ ଉପବନରେ ମାଧବୀ ଲତା ତଳେ
ଚୁମ୍ବନ ଦେଇ ରମଣୀମଣି ବସିଲୁ ମୋର କୋଳେ ।।୧୧।।

ଦମନଲତା ଅଙ୍କୁର ତୋର ଖୋସିଲି କେଶ ପାଶ
ଚରଣେ ପଡ଼ି କହି ଯେ ଅଛି ମୁଁ ତୋର ନିଜ ଦାସ ।
ହେନ ତା ମନେ ପ୍ରଣ ଜନେ ନୋହେ ଉଚିତ ରୋଷ
କର କମଳେ ତୋ କୁଚଶମ୍ଭୁ ପୂଜି ଲଭିବି ତୋଷ ।।୧୨।।

ଅତନୁ ତନୁ କରୁଛି ତନୁ ଦିଅ ତୁ ତନୁ ଦାନ
ଲଭିବି ତେଣୁ ହେମ ଭୂଧର ବେନି ରତନମାନ ।
ତ୍ରିପୁରହର ପ୍ରସନ୍ନେ ତୁରେ ଲଭି ତ ବରବାଳା
ବିନା ଦୋଷରେ ମାନ ମୋହରେ ନ କର ଗୁଣଶୀଳା ।।୧୩।।

ଶରଦଶଶୀ ଦେଖିଣ ହସି କହିଲୁ ରମାବର
ବିରହୀଜନ ବଧ କଳଙ୍କି ତନୁ ଏ ଶଶଧର ।
ଏହି ପାତକୀ ପୂତ ଆସେ କି ସଦସୂତତେ ହର
ଦୋଷ ନ ଘେନି ବହିଲେ ଶିରେ ଏସନ ମୋରେ କର ।।୧୪।।

ଯେବେ ମଳୟାଚଳ ହଶରେ ହୋଇଥାଆନ୍ତା ନାଶ
ବିରହୀଜନେ କି ଏ ପବନେ ଲଭନ୍ତେ ଗୁରୁତ୍ରାସ ।
ଏ ତରୁଚୟେ ଦାବରେ ପ୍ରିୟେ କି କେ ନୋହିଲେ ହତ
ଯେବେ ନଥାନ୍ତେ କେଣେ ହୁଅନ୍ତେ ଝିଙ୍କାରକୁଳ ମତ୍ତ ।।୧୫।।

ମୁହିଁ ହସି ଯେ ବୋଇଲି ତୋତେ ଶୁଣରେ ଚନ୍ଦ୍ରମୁଖି !
ଏ ଗୁରୁଜନବହାଗ୍ନ ଏଣେ ନ ଗୃହଁ ଏହା ସଖି ।
ଏ ତୋ ବଦନ ନୋହି ସମାନ କଳଙ୍କ ଅଛି ବହି,
ଏ ତାପ ଜ୍ୱରେ କେତେହେଁ ଦିନେ ହୁଅଇ କ୍ଷୀଣଦେହୀ ।।୧୬।।

ରଖୁ ତୁ ସଖି ଏ କାମ ମୂର୍ଖୁ ଦୋଷ ମୋ କର କ୍ଷମା
ଉଚିତ ଦଣ୍ଡ କର ଗୋ ମୋରେ ନୃପତିବର ଜେମା ।
ଏ ତୋର ପରିଜନକୁ କମ୍ପା କରଣ ଅଛୁ ବେଷ
ଧରୁଛି ତାମରସ ଚରଣ ସ୍ମିତ ବଦନେ ଭାଷ ।।୧୭।।

ଏହି ପ୍ରକାରେ ସ୍ପଷ୍ଟ ରୁଚିରେ କହେ ବିନୟବାଣୀ
ସରସମତି ହେଲ ଯୁବତୀ ତାର ବଚନ ଶୁଣି ।
ମାୟା କୁମର ତନୁ ସଧୀର ନୟନ ଅନ୍ତେ ଦେଖି
ବିକୃତଚିତ୍ତ ହୋଇ ବରତ ସୁମୁଖୀ ଅତି ଦୁଃଖୀ ।।୧୮।।

କଇରବିଣୀ ପିକରମଣୀ ହବସମଣି ଧନ
ଯୁହିଁ ବିଷାଦ ତେଜି ଆନନ୍ଦ ଲଭେ କି ତାଙ୍କ ମନ ।
ତେସନ ବାଳ ବିରସମନ ବଲ୍ଲଭ ଗୁଣ ଗୁଣି
ମିଳିତ ନେତ୍ର ସ୍ଖଳିତ ଗାତ୍ର ହୋଇ ରମଣୀମଣି ।।୧୯।।

ଦେଖିଲୁ ସଖି ପଲକହୀନ ବେନି ନୟନ ତାର
ଅମଳମାଳା ଗଳେ ଲୁଳଇ ସରସ ଗନ୍ଧ ତାର ।
ବିବିଧ ଶୁଦ୍ଧ ମଣିଭୂଷଣେ ଫୁରିତ ତର ଅଙ୍ଗ
ନ ଲଭଅଛି ଚରଣ ବେନି ଅବନୀ ତଳ ସଙ୍ଗ ।।୨୦।।

ଏସନ ଶୁଭ ଲକ୍ଷଣ ତାର ଶୁଣି ଚକିତ ବାଳା
ଜାଣିଲା ଏହୁ ଗନ୍ଧର୍ବ ଶଠ ବିରଚେ ମୋରେ ଲୀଳା ।
ମାୟା ରୂପରେ ଛଳ ବାଣୀରେ ଏ କି ଛୁଇଁବ ଅଙ୍ଗ
ପ୍ରାଣବାନ୍ଧବ ବିନୁ କେ ଅବା ଲଭିବ ମୋର ସଙ୍ଗ ।।୨୧।।

ଏହୁ ପିଶୁନ ପୃଷ୍ଟଦର୍ଶନ ଅତି ନିର୍ଲଜ୍ଜମତି
ପର ରମଣୀ ହରଣେ ମନେ ନ କରେ ପାପ ଖ୍ୟାତି ।
ଏତେ ସେ ଶାନ୍ତ ନବଯୁବତୀ କୁପିତଚିତ୍ତ ହୋଇ
ପରୁଷ ବାଣୀ କହେ ତରୁଣୀ କ୍ଷିତିରେ ଦୃଷ୍ଟି ଦେଇ ।।୨୨।।

ଏମନ୍ତେ ତୋତେ ଭଜିବି ବୋଲି ଦୁଷ୍ଟ କି ମଣୁ ମନେ
ଚଞ୍ଚଳାଲୀଳା ଦେଖିଛୁ କାହିଁ ଘନ ବିହୁନେ ଆନେ ।
ଚକୋରଚିତ୍ତ କି ଅବା ଚନ୍ଦ୍ର ବିନୁ ଉଲ୍ଲାସ ପାଇ
ନୃପତି ସୁତ ସେ ମୋ ଜୀବିତ ତା ବିନୁ ସୁଖ କାହିଁ ।।୨୩।

ସେହି ବେଷରେ ପାଶରୁ ମୋର କୁମର ନେଲୁ ହରି
ଏବେ ହେଁ ମୋର ହତ୍ୟା କଳୁଷ ଶିରରେ ଥାଅ ଧରି ।
ଅଗ୍ନି ମୁଁ ଜାଳି ପଶିବି ନିଶ୍ଚେ ଦେଖିଣ ହୁଅ ତୋଷ
ଶୁଣିଣ ତିରୋହିତେ ଗନ୍ଧର୍ବ ଗମିଲା ଦେବଦାସ ।।୨୪।।

ଉଚ୍ଚେ ରୋଦନ କରଇ ବାଳୀ କାହିଁଛ ପ୍ରାଣପତି
ତୁମ୍ଭ ବିନୁ ଏ ଦୁଃସହ ହେଲା ଘନ ତିମିର ରାତି ।
ଏହୁ ସମୟେ ପଲଙ୍କେ ହେନ ଥାଅ ଯେ କୋଳେ ମଣ୍ଡି
ତୁମ୍ଭ ପାଶେ ମୁଁ ବସି ସତତ ଥାଇଁ ଆନ ନ ଭଜି ।।୨୫।।

ଏମନ୍ତେ ବୋଲି କଲା ବିଳାପ କୁମର ଗୁଣ ଚିନ୍ତି
ଧାଇଁ ସମସ୍ତ ସଖୀ ବେଢ଼ିଲେ ମନରେ ଲଭି ଖ୍ୟାତି ।
ବୋଲନ୍ତି ଚନ୍ଦ୍ରବଦନା ! କିମ୍ପା ରୋଦନ କରୁ ବସି
କିସ ଗୋ ତୋତେ ବୋଇଲେ କାନ୍ତ କହ ରୁଚିରକେଶୀ ।।୨୬।।

ଶୁଣି ବୋଲଇ ଖଞ୍ଜନନେତ୍ରୀ ଶୁଣରେ ପ୍ରାଣସଖୀ
କାହିଁ ପାଇଛୁ ସେ ଗୁଣନିଧି ମୁହିଁ ପାତକୀ ଦୁଃଖୀ ।
କୁମର ରୂପ ଧରି ଗନ୍ଧର୍ବ ମାୟାରେ ଆସିଥିଲା
ପ୍ରାଣବନ୍ଧୁକୁ ମୋ ପାଶୁ ହରି ଏହୁ ଚଣ୍ଡାଳ ନେଲା ।।୨୭।।

ଶୁଣି ସକଳ ସଜନୀଗଣ ଶୋକସାଗରେ ବୁଡ଼ି
ସବୁର ଶିର ଉପରେ କି ଏ ବଜ୍ର ପଡ଼ିଲା ମାଡ଼ି ।
ଏ ଷଷ୍ଠଦଶ ଛାନ୍ଦର ଶେଷ ଅନଙ୍ଗରେଖା ଗୀତ
ଯେବେ ଶୁଣିମେ ରସିକଜନେ ହେବେ ଏହା ଚିତ୍ତ ।।୨୮।।

ନୀଳାଦ୍ରିନାଥ ଚରଣ ଯୁଗ ପଙ୍କଜ ମନେ ଧ୍ୟାଇ
ନୃପତି ଧନଞ୍ଜୟ ଭଞ୍ଜର ମନ ଷଟ୍‌ପଦ ହୋଇ ।
ସୁଜନେ ଶୁଣି ନ ଧର ଦୋଷ କହିଲି ଏହି ରସ
ସନ୍ତୋଷଚିତ୍ତ ହୁଅ ତୁ ମୋରେ ସତତ ଗଣଈଶ ।।୨୯।।

●

# ସପ୍ତଦଶ ଛାନ୍ଦ

## ରାଗ—ଚକ୍ରକେଦାର

(ଚାଳ—କାଙ୍କଣ ବ୍ରତେକ)

(ଇଚ୍ଛାବତୀ ବାଣୀ)

ନିଦ୍ରା ଭଙ୍ଗି ଉଠିଲା କୁମର । ଚକ୍ଷୁମଳି ସେ ରହିଲା ଧୀର ।
ରତ୍ନକୂଟ ମଣିଧର ଅନ୍ତରକୁ । ଗୃହ୍ନି ଚକିତ ଚିତ୍ତ ଅଥିର ହେ ଦଇବ ।।୧।।

ବଢ଼ୁରଇ ଏ କି ଉପଘାତ । ଏହୁ ଅଚଳ ତ ଅଦ୍ଭୁତ ।
ନିଶ୍ଚେ ଜାଣିଲେ ଏ ବିଧାତାର କୁତ । କେଉଁ-ହେଲି ଏଥ ଅନ୍ତର୍ଗତ, ହେ ଦଇବ ।।୨।।

ମୋର ନବର ପୁର ତ ନାହିଁ । ପ୍ରିୟା ରତନ ହିଁ ଗଲା କାହିଁ ?
କେହୁ ଅବା ମୋତେ ଏଥକୁ ଆଣିଲା । କି ବା ସପନ ଚିତ୍ତ ଭାବଇ ହେ ଦଇବ ।।୩।।

ମୁଁ ତ ନୋହଇ ଚଞ୍ଚଳମନ । ଏହୁ କେମନ୍ତେ ଅବା ସପନ ।
ପ୍ରତ୍ୟକ୍ଷ ଯେତେକ ହୋଇଛୁ ଏମାନ । କେଉଁ ହୋଇବ ଏ ଅବା ଆନ ହେ ଦଇବ ।।୪।।

ମୁଁ ତ ନ କଲି କାହାରେ ଦୋଷ । କେହୁ ଖଣ୍ଡିଲା ମୋହର ଆଶ ।
ଗୁହାଁ ପ୍ରାଣପ୍ରିୟେ ଏକା ତ ହୋଇଲି । ବୋଲି ମୂର୍ଚ୍ଛିତ ସେ ଲଭି ଶ୍ୱାସ ହେ ଦଇବ ।।୫।।

ପୁଣି ଚେତନା ପାଇ ଉଠିଲେ । ପ୍ରିୟେ ବୋଲିଣ ରୋଦନ କଲେ ।
କଉଁ ଦୋଷେ ବିହି ଏସନ ବିହିଲା । କି କେ ଜୀବନେ ନାଶ ନ କଲା ରେ ଭାମିନି ।।୬।।

କଉଁ ଦିଗେ ଅଛୁ ମୃଗେକ୍ଷଣି । ତୁ ମୋ ହୃଦୟ ଆନନ୍ଦ ରାଶି ।
ନେତ୍ର ଚକୋର ଉତ୍ସୁକେ ଅହର୍ନିଶି । ଚାହୁଁଅଛି ତୋର ମୁଖ-ଶଶୀ ରେ ଭାମିନି ।।୭।।

ମୋତେ ହସି ଯେ କହୁ ବଚନ । କଣ ଶେଷେ ରମଣୀ ରତନ ।
ମିଛେ କେଁ ମୋତେ ଯେ ଦୋଷ ଲଗାଇଣ । ବହୁ ପ୍ରକାରେ କଲୁ ଯେ ମାନ ରେ ଭାମିନି ।।୮।।

ଜାଣୁଛି କି ଦିନେ ବରବାଳା । କେଳି କରୁଁ ତୋ ହାର ତୁଟିଲା ।
ଉରଜ ଯୁଗକୁ ଶୋଭା କରାଇଲା । ଶମ୍ଭୁ ଶିରୁ କି ଗଙ୍ଗା ଖସିଲା ରେ ଭାମିନି ।।୯।।

ଦିନେ ଯେ ମୋ କୋଳେ ବସିଥିଲୁ । ମନ୍ଦ ହସି ଡ଼ମାଳ କହିଲୁ ।
ମୁଁ ତୋର ଉରଜରେ କର ଦିଅନ୍ତେ । ମୋର ହୃଦରେ ଲୀନ ହୋଇଲୁ ରେ ଭାମିନି ।।୧୦।।

ଭାବୁଅଛି ମୁଁ ଏବେ ସେ ସୁଖ । ଦେଲା ଦାରୁଣ ଧାତା ଏ ଦୁଃଖ ।
ତୋ ବିନୁ ମାର ମାରଣ ମୋରେ ଶସ୍ତ୍ର । ଅବରତେ ଏ ହେଲା ବିମୁଖ ରେ ଭାମିନି ।।୧୧।।

ତୋର ମୁଖ ନ ଦେଖି ରେ ବାଳା । ଅଙ୍ଗେ କାମାନଳ କଲା ଜ୍ୱାଳା ।
ମାଳା ଦେଇ ଯାହା ବୋଲିଛୁ ଅବଳା । ତାହା ଶସ୍ତ୍ର ମୋ ମନ୍ତ ବହିଲା ରେ ଭାମିନି ।।୧୨।।

ଅତି ନିର୍ଦ୍ଦୟ ହୃଦୟେ ବିହି । ମୋର ସୁଖ ନ ପାରିଲା ସହି
ବିନା ଅପରାଧେ ବିଚ୍ଛେଦ ଦେଇ ଏ । ଜୀବ ବିନାଶେ ଖେଦ ବଢ଼ାଇ ରେ ଭାମିନି ।।୧୩।।

ପୂର୍ବେ କରିଅଛି ଖଣ୍ଡ ତପ । ବିହି ଦେଇଥିଲା ଅବା ଶାପ ।
କି ଅବା ସଞ୍ଚିତ ଥିଲା ବହୁ ପାପ । ଚିର ନ ଦେଖିଲି ଯହୁଁ ରୂପ ରେ ଭାମିନି ।।୧୪।।

ମୋର ନେତ୍ର ପ୍ରତିମା ତୁ ବାମା । ତୁ ମୋ ଆନନ୍ଦ ସିନ୍ଧୁ ଚନ୍ଦ୍ରମା ।
କେବଳ ମାରର ହାସ୍ୟ ରସଧାମା । ଜନମୋହନ ଲାବଣ୍ୟ ସୀମା ରେ ଭାମିନି ।।୧୫।।

ତୋତେ ଗୃହିଁ ହେଉଥାଇ ତୋଷି । ତୁ ମୋ କେଳି କଳା କଳହଂସୀ ।
ତୋ ବିନୁ ଆନ ମୋ ନୟନ ନ ଦିଶି । ମନ ନେଇଛୁ ଯହୁଁ ଆକର୍ଷି ରେ ଭାମିନି ।।୧୬।।

ତୋର ବିନୁ ମୁଁ ଜଗତେ ନାହିଁ । ସୁଖ ଲେଶ ଅବା ମୋର କାହିଁ ।
ତୁ ମୋର ଜୀବର ଜୀବନରେ ସହି । ମୋତେ ଦିଗେ ଅନ୍ଧାର ଦିଶଇ ରେ ଭାମିନି ।।୧୭।।

ପଲଙ୍କରେ ଯେବେ ଶୋଇଥାଉ । ମୋର ବଦନେ ବଦନ ଦେଉ ।
ବେନି ଜନ ଦେହ ଏକଇ ବୋଲିଣ । ମୋତେ ହସି କଥା କହୁଥାଉ ଗୋ ଭାମିନି ।।୧୮।।

ତେଡ଼େ ସୁଖ କଲା ମୋର ଦୂର । ଅତି ନିଷ୍ଠୁର ପ୍ରଜା ଈଶ୍ୱର ।
ନିମିଷେ ଯେ ନୋହୁ ନେତ୍ର ଅଗୋଚର । ଏବେ ଗିରି ସାଗର ଅନ୍ତର ରେ ଭାମିନି ।।୧୯।।

ପୁଣ ପୁଣ କରଇ ଖେଦନ । କହେ ବାତୁଳ ଜନ ଯେସନ ।
କାହିଁ ରହିଲୁ ରେ ମୋ ପ୍ରାଣରତନ । ଭାବୁଅଛି ତୋ ଚନ୍ଦ୍ରବଦନ ଗୋ ଭାମିନି ॥୨୦॥

ତୁ ରେ ନୃପତିଳକ କୁମାରୀ । ତନୁ ସହଜେ ତ ସୁକୁମାରୀ ।
ଏ ଘୋର ବିରହ ବାଧା ଲଭି ପ୍ରିୟେ । କେମନ୍ତେ ଥିବୁଟି ଜୀବନ ଧରି ରେ ଭାମିନି ॥୨୧॥

ଧିକ ଧିକ ଏ ହୋଉ ଜୀବନ । ଏହା ଚିନ୍ତୁ ସେ ଅଛି ମୋ ମନ ।
ଯାହାର ତନୁ ସଙ୍ଗୁ ଏହୁ ସଫଳ । ଆଜ ନ ଲଭିଲି ତା ବଦନ ହେ ଦଇବ ॥୨୨॥

ଯା'ର ନାହିଁ ତିଳେକେ ପ୍ରାଣସହି । ତାର ଜୀବ ସୁଖ ଲବ କାହିଁ ।
କଜମୁଖୀ ବିନୁ ଶଶୀ କି ଶୋଭଇ । ପ୍ରିୟା ବିନୁ ଚେତହୀନ ହେଲି ମୁହିଁ ହେ ଦଇବ ॥୨୩॥

ମୋର ପ୍ରାଣବନ୍ଧୁ ବରବାଳା । କରିଥିଲି ତାକୁ କଣ୍ଠମାଳା ।
କି ମୋ ଗାଢ଼ରସ ତରଙ୍ଗିଣୀ ଭେଳା । ଅଙ୍କେ କରୁଥାଇ ନାନା ଲୀଳା ହେ ଦଇବ ॥୨୪॥

ଯେବେ ମୋରେ ତାପ କରିଥାଇଁ । ଶତ୍ରୁ କହିଲେ ହେଁ ନ ଶୁଣଇ ।
ଦ୍ୱିରଦଗମନୀ ଚରଣେ ପଡ଼ନ୍ତେ । ହସି ମୁଖେ ଚୁମ୍ବନ ଦିଅଇ ହେ ଦଇବ ॥୨୫॥

ଦିନେ ଉପବନ ବଡ଼ଭିରେ । ଶୋଇଥିଲି ପଲଙ୍କ ଉପରେ ।
ମୁଁ ଯାଇ ପୟୋଧରେ କର ଦିଅନ୍ତେ । ବାଳା ପୁଲକ ହେଲା ଗଣ୍ଡରେ ହେ ଦଇବ ॥୨୬॥

ତାର ଏସନ ଇଙ୍ଗିତ ବୁଝି । ଚନ୍ଦ୍ର ବଦନେ ଚୁମ୍ବନ ଦେଇ ।

ଚିବୁକ ଧରି ଆଲିଙ୍ଗନ କରି ମୁଁ । ତାର ଆଗେ କହିଲି ବିନୋଦ୍ୟଂ ହେ ଦଇବ ॥୨୭॥

ନିମିଷ ବିଚ୍ଛେଦ ନ ସହେ ମୋର । ଏବେ ହୋଇଲି ଏତେକ ଦୂର ।
ପୁନର୍ବାର ତାର ମୁଖ ମୁଁ ଚୁମ୍ବିବ । ଯେବେ ପୂର୍ବଭାଗ୍ୟ ଥିବ ମୋର ହେ ଦଇବ ॥୨୮॥

ଏହା ବୋଲି ସେ ନୃପନନ୍ଦନ । ଚିନ୍ତେ ବାଳା ବଦନ ନଳିନ ।
ମାରି ବ୍ୟାଧ ମୂର୍ଚ୍ଛା ଆନେ କି ରହିବ । ଯେବେ ନ ଦେଖିବ ତୋର ଲପନ ରେ ଭାମିନି ॥୨୯॥

ମୋତେ ରଖ ହେ ଜଗନ୍ନିବାସ । ମୁଁ ଯେ ତୋ ଦାସ ଚରଣ ଦାସ ।
ନୃପ ଧନଞ୍ଜୟ ଏ ଗୀତ ଭଣିଲେ । ସପ୍ତଦଶ ଛାନ୍ଦ ହେଲା ଶେଷ ହେ ସୁଜନେ ॥୩୦॥

# ଅଷ୍ଟାଦଶ ଛାନ୍ଦ

## ରାଗ ବଙ୍ଗଡ଼

(ତାଳ—ବଡ଼ ଝୁମ୍ପା)

(ଆଷାଢ଼ ଶୁକ୍ଳ ବାଣୀରେ ଗାଇବ)

ଏମନ୍ତେ କେତେ ଦିନ ତହିଁ ଗଲା
ପ୍ରଥମ ପ୍ରାବୃଟ ପ୍ରବେଶ ହେଲା,
ସକଳ ଜୀବ ଉଲ୍ଲାସ ହୋଇଲେ
ଘନ ଗିରି ଦାବ ତାପ ତେଜିଲେ ।
　　କେବଳ ଭ୍ରମର
ପ୍ରିୟା ବିୟୋଗେ ତାପିତ ଆତୁର ॥୧॥

ବିକାଶ ରୂପ ହେଲେ ତରୁମାନ
ଭ୍ରମର ମାନ ହେଲା ରୂପହୀନ,
ଲତା କାନ୍ତାରେ ସେ ହେଲେ ମଣ୍ଡିତ
ନୃପ ସୁର ତହିଁ ପ୍ରିୟା ରହିତ ।
　　ସେହୁ ଫଳ ଯୁତ
ଭ୍ରମର ମାନ ଇଷ୍ଟଫଳ ଚ୍ୟୁତ ॥୨॥

ଦୁଃଖିତ ଚିତ୍ତ ସେ ଭ୍ରମରବର
ଦେଖିଲା ତହିଁ ନବ ପୟୋଧର,
ଗିରିଶୃଙ୍ଗକୁ କରନ୍ତି ଆଶ୍ଲେଷ
ପୁଣି ଦୃଷ୍ଟିପାଇ କରଇଁ ଶୋଷ ।
　　ସେହ୍ନ ସେ ରୁଚିର
ଖେଳ କୁଞ୍ଜର ସମ ମନୋହର ॥୩॥

କାହିଁ ବଳାହକେ କରନ୍ତି ଧ୍ୱନି
ମୂକ ହୋଇଲେ କଳକଣ୍ଠ ଶୁଣି,
କେତକ ଦିଶେ ଦିଶେ ପ୍ରକାଶିଲେ
ବିରହୀ ରହିତ ହିତ ହୋଇଲେ ।
　　ବିକଶିଲେ ନୀପ
ଚୁମ୍ବନେ କାମିନୀ ଗଣ୍ଡ ସ୍ୱରୂପ ॥୪॥

କେବଣ ମହୀଧାରେ ପଡ଼ି ଘନ
ଘନେ ଆଚ୍ଛନ୍ନ ହେଲେ ନଗମାନ,
ଇନ୍ଦ୍ର ସଖା ଇନ୍ଦ୍ର ଧନୁ ସଙ୍ଗତ
କାହିଁ ଚଞ୍ଚଳ ଚଞ୍ଚଳା ମଣ୍ଡିତ ।
    ଏତୁ ଜୀବନଦ
ବାଳା ମାନିନୀ ଗାଢ଼ ମାନ ଭେଦ ॥୫॥

ଶିଖରୀ ଶିଖେ ଥାଇ ଘନମାଳା
ଗଗନରେ ଲଗି କରନ୍ତି ଲୀଳା,
ପୁଣି କଣ୍ଟକ ଦେଶେ ବିହରନ୍ତି
ଅଚଳ ସକଳ ତନୁ ଲୁଚନ୍ତି ।
    ଯହୁଁ କାମରୂପୀ
ଏଣୁ କି ବରଷା ହୃଦୟତାପି ॥୬॥

ଗଗନାଙ୍କରେ ଦିଶିଲେ ସଘନ
କେଉଁଠାରେ ନୀଳ ନଳିନ ବର୍ଣ୍ଣ,
କାହିଁ ଦଳିତ ଅଞ୍ଜନ ସୁଷମ
.....................
    ଗମ୍ଭୀର ନିଃସ୍ୱନ
ଯେସଣେ ଉଚ୍ଛନ୍ନ କରେ ମୁନି ମନ ॥୭॥

କ୍ଷଣେ ଶୁଭଇ ଘଟ ଘଟ ଧ୍ୱନି
ପ୍ରକାଶେ ଚଡ଼ ଚଡ଼ ରବ ପୁଣି,
ଅମ୍ବର ଅନ୍ତେ କରନ୍ତେ ଭ୍ରମଣ
ଛବିରେ ଆଚ୍ଛାଦିଲେ ଦିଗଗଣ !
    ଘନ ଘନମାଳା
ଯେସଣେ ଚକିତ ଚିତ୍ତ ହୁଏ ବାଳା ॥୮॥

ଲୁଚିଲା ପଥ ବିପଥ ଆକୃତି
ବାରି ପୂରିତ ହେଲେ ବସୁମତୀ,
ନଦୀଙ୍କ ତପନେ ତାପିତ ହୋଇ
ମୀନ ଗର୍ତ୍ତେ କି ମଗ୍ନ ହେଲା ମହୀ ।
    ଭୁବନେ ଭୁବନ
ଦାନେ ଜୀବନଦ ହେଲେ ପ୍ରସନ୍ନ ॥୯॥

ଗଗନେ ଦେଖି ଜଳଦ ପ୍ରକର
ଶିଖି ଶିଖୀମାନେ କଲେ ବିହାର,
ସନ୍ତାପ ତେଜିଲେ ଧୃତକ କୁଳ
ପ୍ରଥମ ନୀର ବିନ୍ଦୁ ପାନେ ଭୋଳ ।
ଏହୁ ଘନ ଜାଳ
ଯୋଧା ନୃପ ସମ ଦିଶେ ମଞ୍ଜୁଳ ॥୧୦॥

ନବଘନ ଗଜ ଅଛି ଆବେଷ୍ଟି
ଅଶନ ଘନ ବାଦ୍ୟ ପ୍ରକାଶଇ,
ତଡ଼ିତ ଗୁଣ ଇନ୍ଦ୍ର ଚାପ ଧରି
ଜଳଧାର ବାଣ (ଗଣ) ପ୍ରହାରି ।
କଦମ୍ବ ମୁଦ୍‌ଗର
ବିରହୀ ପ୍ରତିପକ୍ଷ ଜବହର ॥୧୧॥

ବନେ ଫୁଟିଲେ ମାଳତୀ ସୁମନ
ବନଜ ତେଜିଲେ ମଧୁପଗଣ,
ଦିବା ନିଶି ତହିଁ ନୋହିଲା ବାରି
ଯହିଁ ଘନ ଘନ ଧାର ବିସ୍ତାରି ।
ବିରସ ଚକୋରୀ
ସାରଙ୍ଗ ସାରଙ୍ଗୀ ନ ଦେଖି ଝୁରି ॥୧୨॥

କୋକନଦରେ ଦେଖି କୁବଳୟ
ମଧୁପାନେ ମତ୍ତ ଅଳିନିଚୟ,
ସେ ରୂପ ସମ ବୃଷ୍ଟି ନବଘନ
ତମ ପଟଳେ ଲୀନ ଦିଗମାନ ।
ସେହୁ ନିଶାମଣି
କାତରେ ଭଜେ ଚନ୍ଦ୍ରିକ ତରୁଣୀ ॥୧୩॥

ପ୍ରମଦ ଡାହୁକ ରବ ପ୍ରକାଶ
କି ସେ କହଇ ଧାତାର ଆଦେଶ,
ଆଳୟ ବେଗେ କର ଖଗମାନେ
ନବଘନ କି ନ ଦେଖ ଗଗନେ ।
ଏଣୁ ଜୀବ ବର୍ଗ
ବନେ କି ବିହରନ୍ତୁ ହୋଇ ସୁଗ ॥୧୪॥

ତଟିନୀ ନାଶ ପ୍ରକଟ ହୋଇଲେ
ସାଗର ଜାରେ ଅଭିସାର କଲେ,
ଲଙ୍ଘିଲେ ବିପୁଳ ଉଭୟ କୂଳ
ପ୍ରବଳ ତରଙ୍ଗେ ହତ ଶାଖୀକୁଳ ।
ଫେନଗଣ ବାସ
ଯେଣେ ଆବର୍ତ୍ତ ନାହିଁ ଅବକାଶ ।।୧୫।।

ଏସନ ଦେଖି ସେ ନୃପନନ୍ଦନ
ଅନଙ୍ଗରେ ତରଳତ ତା ମନ,
ପ୍ରାଣ ପ୍ରିୟାକୁ ହୃଦେ କରି ଧ୍ୟାନ ।
ତା ରୂପ ବିନୁ ନ ଦେଖଇ ଆନ
ସେ ହାରିଲା ଜ୍ଞାନ
ବୋଲଇ ବାତୁଳ ଜନ ଯେସନ ।।୧୬।।

ହା ହା ମୋ ପ୍ରିୟ ସଖି ନବ ବାଳା
ତୁ ମୋ ଅମୂଲ୍ୟ କଣ୍ଠ ରତ୍ନମାଳା,
ନୟନେ ଦେଖିବୁ ଏ ଘନ ଲୀଳା
କେସନେ ସହିବୁଟି କାମଜ୍ୱାଳା ।
ସହଜେ ଅବଳା
ଶିରୀଷ ସଦୃଶ ତନୁ କୋମଳା ।।୧୭।।

ଅତି ଉନ୍ମାଦ ଏ ଘନ କାଳ
ସାଧ୍ୱୀ ଚିତ୍ତ ଯେ କରେ ତରଳ,
ତୁ ତ ନବବାଳା ନବ ବିରହୀ
ଏହା ଆରମ୍ଭ କ ପାରିବୁ ସହି ।
ରେ ବର ସୁନ୍ଦରି
ତୋତେ ନ ଲଭି ମୋ ଦିନ ନ ସରି ।।୧୮।।

ଏ ଘୋର ଗର୍ଜନ କର୍ଣ୍ଣେ ଶୁଣିବୁ
ତଥି ତରଳ ଚଞ୍ଚଳା ଦେଖିବୁ,
ସହଜେ ତୁ ଭୀରୁ ନୃପନନ୍ଦିନୀ
ନିଶ୍ଚେ ବିନ୍ଧି ମୋ ଆଶା କଲି ହାନି ।
ରେ ଜୀବନ ସଖି
କମା ଅଛି ଜୀବ ତୋତେ ନ ଦେଖି ।।୧୯।।

ଯେବେ ଜୀବନର ନାମ ଏହାର
ତେବେ ଏ ଦେଖାଉବ ମୁଖ ତୋର,
ଯହୁଁ ତୁ ମୋର ନିଜ ଜୀବସାର
କରୁ ଯେ ଥାଇଁ ତୋତେ ହୃଦହାର ।
      ରେ ଶଶୀବଦନି
ତୋ ଆଶେ ଅଛନ୍ତି ଜୀବନ ଘେନି ।।୨୦।।

ଯନେ ଘନ ଘୋର ରବ ଶୁଣିଲୁ
ଭୟେ ଯେ ମତେ ଆଲିଙ୍ଗନ କଲୁ ,
ଦମ ଦମ ଉର ଚମକ ତନୁ
ପୁଲକିତ ଗଣ୍ଡ କମ୍ପିତ ଜାନୁ ।
      ଯେ ପିବଇଁ ମନୁ
କେବଳ ଜାଣେ ତା କୁସୁମ-ଧନୁ ।।୨୧।।

ନିଶିରେ ତୁ ମୋର କୋଳରେ ଥିଲେ
ପୂର୍ଣ୍ଣଚନ୍ଦ୍ର ମୁଁ ନ ଚୁହିଁଇ ଭଲେ,
ଏଣୁ ସେ ଲଜେ ବେଷ ଭର ହୋଇ
ଅସ୍ତ ଛଳରେ ତମ ପ୍ରକାଶଇ ।
      ତୋ ବଦନ କାନ୍ତ
କରଇଁ ମୋ କାମ ତିମିର ହତ ।।୨୨।।

ତୋ ବିନୁ ଅବଳା ଏ ବଳାହକ
ଶୋକନଦର ହେଲା ଉଦ୍ଦୀପକ,
ଏ କାଳ କାଳ ସମ ମୋତେ ଦିଶେ
ତେଜୁ ଛି ଅଶନି ଅସ୍ତୁ ନିରଶେ ।
      ହେଲେ ହେ ମୋ ମନ
ବିଜୁରିକ ପାଶେ କଲା ବନ୍ଧନ ।।୨୩।।

କ୍ଷଣେ ହେ ମୋ ପାଶୁ ନୋହୁ ଅନ୍ତର
ଏବେ ନଗ ନଗ ହେଲା ମଧ୍ୟର,
ରଜନୀ ଚକ୍ରବାକୀ ସମ ହୋଇ
ଖାଡୁ ଯେ ଥିବୁ ତଳେ ଦୃଷ୍ଟି ଦେଇ ।
      ତୋ ଗଣ୍ଡ ମଣ୍ଡଳ
ଛାପି ଯେ ଥିବ ସ୍ୱଚ୍ଛ କରତଳ ।।୨୪।।

ନିଧୁବନୁ ନୀର ପଡୁଥିବ ଖସି
ମଳିନ ଦିଶୁଥିବ ମୁଖ-ଶଶୀ,
କେ ଅବା ସଖି ତୋ ଜାଣିମ ମନ
କରିବ ଏଥି ଉଚିତ ବିଧାନ ।
ରେ ରମଣୀବର
ଏହା ସେ ଚିନ୍ତୁଅଛି ଧିକ ମୋର ॥୨୫॥

ତୋ ବିନୁ ଏ ଜୀବ ବିଫଳ ମୋର
ରହିଛି ଯହିଁ ଏହୁ ବପୁଃ ସାର,
ଯହିଁ ତୋ ଅଧର ସୁଧା ଲଭିଲି
ଏଣୁ ଅବା କଏ ଅମର ହେଲି ।
ତୋର ରସଭାବ
କେସନେ ଚିନ୍ତ ଚିତ୍ତ ସ୍ଥିର ହେବ ॥୨୬॥

ଦିନେ ନିଶିରେ ଗବାକ୍ଷ ସନ୍ନିଧେ
ଶୋଇ ସେ ଥିଲୁ ମୋର କୋଳ ମଧ୍ୟେ,
ଦେଖି ତୋ ଅଙ୍ଗେ ରତି ଶ୍ରମ ନୀର
ବସନେ ବିଞ୍ଚି ମୁଁ କରନ୍ତେ ଦୂର ।
ଧଇଲୁ ମୋ କର
ଏ ରସ ଭଙ୍ଗି କି କେଉଁ ନିଷ୍ଠୁର ॥୨୭॥

ତୁ ମୋର ବାହୁ କରି ଉପାଧାନ
କୋଳେ ଯେ ଶୋଇ କରି ଆଲିଙ୍ଗନ,
ନିଜ ଚେଲାଞ୍ଚଳେ ମୋତେ ଶୁଆଇ
ନିଶି ପଲଙ୍କେ ନିଦ୍ରାସୁଖ ପାଇ ।
ଆରେ ପ୍ରାଣପ୍ରିୟା
କେବେ ହେଁ ନ ତେଜିବୁ ମୋରେ ଦୟା ॥୨୮॥

ଏମନ୍ତ ବହୁତ ଚିନ୍ତ ସ୍ୱାମୀର
ଗୁଣ-ସିନ୍ଧୁର ସେ ନ ଗଲା ପାର,
ଗଗନ ଦୃଷ୍ଟି ଯୋଡ଼ି ବେନିକର
କହଇ ଶୁଣ ଆହେ ପୟୋଧର ।
ବିନୟ ମୋ ହେନ
ଦେଖିଅଛ କି ସେ ପ୍ରିୟାରତନ ॥୨୯॥

ଶ୍ରବଣଚ୍ଛଲେ କ କହୁଛ ବାଣୀ
କସ ସନ୍ଦେଶ ତାର ଅଛ ଘେନି,
କାନ୍ତା ଦରଶନ ଆନନ୍ଦ ନୀର
ଜାଣିଲି ଢାଳୁଅଛ ଧୀର ଧୀର ।
ଘନ ଲୋଳ ନୂଢ଼
ସଖୀର କୁଶଳ କହନ୍ତ କହ ।।୩୧।।

ବକ୍ଷରେ ଏ କାମରୂପୀ ମାୟାଙ୍କ
ଅନ୍ତରେ ଏତୁ ଧରିଥାଏ ଘନ,
କେସନେ ଏ ମୋ ହନସ୍ତୁ ସୋଜନ
କେବଳ ବିଯୋଗୀ ବର୍ଗର ଯମ ।
ଏତୁ ଅନ୍ତ ଷୂର
ପ୍ରକଟ ଏହା ମଳନ ଆକାର ।।୩୧।।

ଏମନ ଚିନ୍ତି ଚହୁଁ ଦୃଷ୍ଟି ନେଲ
ପୁଣି ମତ୍ତ ମଧୁକର ଦେଖିଲ,
କୁସୁମିତ କୂପେ କରଇଁ କେଳ
ମଧୁର ରବ ଭୃଙ୍ଗ ସାଙ୍ଗେ ମିଳ ।
ତାରେ ନମ୍ର ହୋଇ
କୋମଳତର ବଚନ କହଇ ।।୩୨।।

ଶୁଣ ମୋ ବାଣୀ ହେ ମଧୁପବର
ଭ୍ରମୁ ଯେ ଥାଅ ଦେବଦଗନ୍ତର,
ଦେଖିଅଛ କି ମୋର ମନୋହାସ୍ତ
ଜଗତ ଜନ ଆନନ୍ଦ ଆକର ।
ସେ ମୋ ଜୀବବନ୍ଧୁ
ସକଳ କମନୀୟ ରସସିନ୍ଧୁ ।।୩୩।।

ଚାମୀକର ଗୁଚ୍ଛବରଣୀ ବାଳା
ଖଞ୍ଜନ ଗଞ୍ଜନ ନୟନ ଲୀଳା,
ମତ୍ତ ମରାଳ ମନ୍ଥରଗାମିନୀ
ସୁବିମ୍ବାଧରୀ ଶିଖରଦଶନୀ ।
ସେ ମଧୁରହାସୀ
ବିପୁଳ ନିତମ୍ବ କୁଟିଳକେଶୀ ।।୩୪।।

ମଦ କଳକଳ କଣ୍ଠ ଭାଷେଣୀ
ଘନଜଘନା ପୃଥୁତରସ୍ତନୀ,
କ୍ଷୀଣୋଦରୀ କୃଶ ତନୁ ସୁନ୍ଦରୀ
କିସ ବର୍ଣ୍ଣିବ ବଚନ ମାଧୁରୀ ।
ତା ଗମ୍ଭୀର ନାଭି
ଅଖଣ୍ଡିତ ତପେ ସେ ରମ୍ଭା ଲଭି ।।୩୫।।

ସଖୀଗଣ ମଧ୍ୟେ ଥିବ ସେ ବସି
ତାରକାବୃନ୍ଦେ ଯେହ୍ନେ ପୂର୍ଣ୍ଣଶଶୀ,
ପୁଣ୍ଡରୀକ ବନେ କି ରାଜହଂସୀ
ତେସନ ଶୋଭା ସେ ଥିବ ପ୍ରକାଶି ।
ବେଢ଼ି ପାଶେ ଦାସୀ
କେହୁ ଅବା କହୁଥିବେ ଆଶ୍ୱାସି ।।୩୬।।

ବିହନ ଅଳକାଳି ତମ
ସେ ଥିବ ତାର ମୁଖ ସୋମ,
ନଖର ଅଗ୍ରେ ଲେଖୁଥିବ ମହୀ
କେବଳ ହୃଦେ ନିନ୍ଦୁଥିବ ବହ୍ନି ।
ଅତି ସୁକୁମାରୀ
କେମନ୍ତେ ଅବା ଥିବ ଜୀବ ଧରି ।।୩୭।।

ତେଜୁ ଯେ ଥିବ ତପତ ନିଃଶ୍ୱାସ
ଯହିଁ କାମାନଳ ଅନ୍ତେ ବିଶେଷ,
ମୋ ନାମ ରୂପ ଜପୁଥିବ ହୃଦେ
ନ ଘେନିମ ସଖୀ ବାଣୀ ସେ ଖେଦେ ।
ଚିନ୍ତି ମୋର ଭାବ
ସୁତନୁ ଅତି ତନୁ ହୋଇଥିବ ।।୩୮।।

କହି କି ଆଜ୍ଞା ଦେଇଛୁ ସୁନ୍ଦରୀ
ଶୁଭେ ଅଛନ୍ତି କି ନୃପକୁମାରୀ,
ଏମନ୍ତେ ମରନ୍ଦ ପିଇ ସେ ଅଳି
ଝଙ୍କାର କରି ତହୁଁ ଗଲା ଚଳି ।
ତା ଶୁଣି କୁମର
ତୋଷ ହୋଇଲା ଜାଣି ସୀତକାର ।।୩୯।।

ହଉ ସୁତ ସୁତ ତାହାଙ୍କ ମିତ
ତାହାଙ୍କ ଜନକ ପାଦେ ମୋ ଚିତ୍ତ,
ସାରଙ୍ଗ ରଥୀ ଚରଣକୁ ଆଶ
ସ୍ୱୟମ୍ଭୁସୁତା ଚରଣରେ ଦାସ ।
ହେରମ୍ବ ଚରଣ
ନୃପ ଧନଞ୍ଜୟ ଭଞ୍ଜ ଶରଣ ।।୪୦।।

●

# ଊନବିଂଶ ଛାନ୍ଦ

## ରାଗ—ଦେଶାକ୍ଷ

(ତାଳ ରୂପକ)

(କେଳି ସଦନ ଚଉତିଶା ବାଣୀରେ)

ଏମନ୍ତ ବରଷା ବିରସ ହେଲା । ପ୍ରମଦ ଶରଦ ଋତୁ ରାଜିଲା ।
ନବୀନ ବିଧୁ କଳିତ ଦୃଷ୍ଟି । ନବୀନ ବଧୂକ ଅଧର କାନ୍ତି ।।୧।।

ସପତ ଶତଦଳରେ ମଣ୍ଡିତା । ମାଳତୀ କୁସୁମରେ ସୁବାସିତା ।
ପାଣ୍ଡୁର ନୀରଧରବାସିନୀ । ଅଖିଳ ଦିଶ ମୁଖ ପ୍ରକାଶିନୀ ।।୨।।

ବାହିନୀ କାମିନୀ ଛବି ଧଇଲେ । ରତ୍ନାକର ପ୍ରିୟେ ଧୀରେ ଚଳିଲେ ।
ବିକାଶ କାଶଚୟ ବସନା । ବିମଳ କମଳମୟ ଲପନା ।।୩।।

ନିନାଦିତ କଳହଂସ ରାବିଣୀ । ମତ୍ତଚକ୍ର ଯୁଗୁ କୁଚ ଧାରିଣୀ ।
ପୁଳିନ ପୃଥୁ ନିତମ୍ବବତୀ । ଅଙ୍ଗ ରସଭରେ କରନ୍ତି ରତି ।।୪।।

ଅମଳ ନଭ ସର ଅନ୍ତରୀକ୍ଷ । ତାରା କଇରବ ଗଣ ବିହାସ ।
ତୁଷାର କର ରାଜ ମରାଳ । ନିଶି ନିଶିକଲ୍ ଯୁବା ଉଲ୍ଲୋଳ ।।୫।।

ନୀରଦକାଳ ଶରଦର ଜାଣି । ବହ୍ନିକୃତ ଏ ଋତୁ ନାମ ଶୁଣି ।
ଏଣୁ କି ଲୋକଗ୍ରାସ ସେ ତେଜ । ଶୁଚିରୁଚିରେ ଅଛୁ ଏହା ଭଜ ।।୬।।

ହାହା ମୋ ବଜ୍ରମାଳା କେଣେ ଗଲା । ନଭ ପତାକା ପ୍ରାୟେ ଦିଶୁଥିଲା ।
ଅମ୍ବରେ କରୁଥିଲା ଯେ କେଳି । ଶ୍ୟାମ ଜଳଦ ଉଦରରେ ମିଳି ॥୭॥

ଗୁରୁ ଶବ୍ଦରୂପ ରୁଚି ଲୁଚିଲା । କଦମ୍ବ ଆମୋଦ ହିଁ ହୀନ ହେଲା ।
ଏସନ ଚନ୍ଦ୍ର ଡାହୁକ ଭେକ — । କଳାପୀ କଳାପ ହୋଇଲେ ମୂକ ॥୮॥

ଶେଫାଳିକା ନବ ପ୍ରକାଶ ହେଲେ । ସମୀରେ ସଉରଭ ବେଗ ଦେଲେ ।
ବଳାକା କୁଳ ମଦ ତେଜିଲେ । ବନରାଜ କିଶଳୟ ରାଜିଲେ ॥୯॥

ସରୋବରମାନେ ହେଲେ ରଞ୍ଜନ । ମାନ ତେଜି ନାରୀ ହୃଦ ଯେସନ ।
ନିର୍ମଳ ଶ୍ୱେତ ତୋୟ ଧଇଲେ । ସାରସମାନଙ୍କୁ ଆନନ୍ଦ କଲେ ॥୧୦॥

ନିଶି ବିଳାସୀ ଜନେ ଚନ୍ଦ୍ର ଗୁହିଁ । ସଉଧ ମନ୍ଦିରେ ସୁବେଶ ହୋଇ ।
ଲଜ୍ଜିତ ବାଳା କୋଳେ ବସାଇ । ଚିବୁକ ଧରି ବଦନ ଚୁମ୍ବଇ ॥୧୧॥

ଏସନ ସଖୀଙ୍କ କହି ବଚନ । ମୂର୍ଚ୍ଛାଗତ ହେଲା ରମା ରତନ ।
ତା ଦେଖି ସଖୀ ଆଶ୍ୱାସ କଲେ । ଅତି କଷ୍ଟରେ ଶରଦ କଟିଲେ ॥୧୨॥

ଏମନ୍ତେ ହେମନ୍ତ ଋତୁ ପ୍ରବେଶ । ତୁଷାର ଅଙ୍କୁର ଦର ପ୍ରକାଶ ।
ତେଜିଲେ ଜନେ ଚନ୍ଦ୍ର ଚନ୍ଦନ । ଶୀତଳ ବେଗେ ବିପରୀତ ମନ ॥୧୩॥

ଦହନରେ ଅତି ସୁଖ ଭଜିଲେ । ଜଗତ ପ୍ରାଣେ ନିରତେ ଖୋଜିଲେ ।
ଅଗୁରୁ ଧୂପରୁ ଶୁଚି ମଣିଲେ । ଘନ ସାରକୁ ଅସାର ଜାଣିଲେ ॥୧୪॥

ପୀନ ଜଘନୀ ସ୍ତନୀ ସଙ୍ଗ ରଙ୍ଗ । କ୍ଷଣେ ଯୁବା ମନୁ ନୋହିଲା ଭଙ୍ଗ ।
ଆତପତପ ଋତୁ କେ ଚିନ୍ତି । ଗୃହ ବାସରେ ହେଲେ ରତିପତି ॥୧୫॥

ଏ ଋତୁ ଦେଖି କମଳବଦନୀ । କାନ୍ତ ଗୁଣ ଗୁଣି ବଞ୍ଚେ ରଜନୀ ।
ବୋଲଇ ବିହି ତୁ ଏଡ଼େ ଚଣ୍ଡାଳ । ସେ ବିନୁ ମୋତେ ଏହୁ କାଳ କାଳ ॥୧୬॥

ଏଥେ ଯେ ପ୍ରିୟ ମୋର ପାଶେ ଥାଇଁ । ଆଶ୍ଲେଷ ବିନୁ ବିଶ୍ଳେଷ ନୁହଇ ।
ତା ରୂପ ଭାବି ଯାଉ ଏହି ଜୀବ । ଲୋକେ କି ଏ ହୀନ ସୁଖ ଲଭିବ ॥୧୭॥

ଏ ଋତୁ ଯେବେ କ୍ଷିତିରେ ଦେଖିବେ । ଯହିଁଥିଲେ ସେ ମୋତେ ସୁମରିବେ ।
ନୃପତି ଏକ ସୁତ ସେ ଦେଖି । ଅସମଶରେ ହେବେ ଅତି ଦୁଃଖୀ ॥୧୮॥

ପଲଙ୍କ ଅଙ୍କେ ଯେ ଶୋଇ କାମିନୀ । ସୁମରି ମଣନ୍ତି ଏହୁ ଯାମିନୀ ।
ମୋ ଲାଗି ଏତେ ଦୁଃଖ ଲଭିଲେ । ଏବେ ସେ ବିହି ବଶୁ କାହିଁ ଗଲେ ॥୧୯॥

ଏବେ ସେ ମୋ ଧବ ଜୀବନେ ଥିବେ । ମୋ ସୁଖ ମନୁ କ୍ଷଣେ ନ ତେଜିବେ ।
ତୁଟିଲା ହନେ ଯେ ମୁକୁତା ହାର । ତାହା ଚିନ୍ତିଲେ ପଡ଼ିବ ମନର ॥୨୦॥

ଏମନ୍ତେ ବାଳା କରଇ ବେଦନ । ଦେଖିଲା ଘନ ବର୍ଷାମିଷ ଘନ ।
ଘୋଟି ଯେ ଅଛୁ ଚଉ ଦିଗନ୍ତ । ରାଜୀବ କୁଳ ଶିଖି କଲା ଚ୍ୟୁତ ॥୨୧॥

ବିକଶିଲେ କୁନ୍ଦ କୋରକମାନ । ଭୃଙ୍ଗ ତେଜିଲେ ନଳିନୀ କାନନ ।
ବନ୍ଧୂକ ପୁଷ୍ପ ରୁଚିର ଦିଶେ । ମଧୁପ ଉଡ଼େ ମକରନ୍ଦ ଆଶେ ॥୨୨॥

ନଭ ମଣ୍ଡଳ ଅବକାଶ ହେଲା । ରଜନୀ କର ଛବହିଁ ଲୁଚିଲା ।
ଚକୋରଚୟ ହେଲେ କାତର । ବିଦେଶୀମାନେ ଚନ୍ଦ୍ରେ ମଦର ॥୨୩॥

ତରଣି କିରଣେ ଆଦର ହେଲା । ଶିରୀଷ ପୁଷ୍ପ ବିଜଳ ମଣ୍ଡିଲା ।
ମଧୂରେ ମତ୍ତ ମଧୁପକୁଳ । ହଂସ ମିଥୁନ ବିହରିଲେ ଜଳ ॥୨୪॥

ଏସନ ଋତୁ ଦେଖି ହରିଣାକ୍ଷୀ । କାନ୍ତ କେଳି ଚିନ୍ତି ହୋଇଲା ଦୁଃଖୀ ।
ହା ହା ମୋ ପ୍ରାଣବାନ୍ଧବ ଗଲେ । ମୋତେ ତେଜି ଏକା କାହିଁ ରହିଲେ ॥୨୫॥

ଜାଣୁ ଠିକ ନିଶି ଅନ୍ତରେ ଦିନେ । ହସି ଚୁମ୍ବନ ଦେଲୁ ମୋ ନୟନେ ।
ଲଗିଲା ଓଷ୍ଠେ ଅଞ୍ଜନ ସ୍ନେହ । ବୋଲଇ ପ୍ରିୟେ କି ଦିଶିଲା କହ ॥୨୬॥

ଏସନ ଭ୍ରମ ବଚନ ଶୁଣିଲି । ଭ୍ରମ ହୃଦେ ମୁଁ ମୁଖ ମ୍ଳାନ କଲି ।
ହସି ଯେ ମୋତେ ବୋଇଲା ଯାହା । ତାହା ଚିନ୍ତି ଅଛୁ ଏ ବପୁ ହିଆ ॥୨୭॥

ଏବେ ଋତୁକୁ ଯେବେ ଦେଖିବ । କେମନ୍ତ କରି ପଙ୍କଜ ନିନ୍ଦିବ ।
ହସିଣ ମୋତେ ଯେ କହ ବଚନ । ତୋ ମୁଖ ବଳତେ ପଦ୍ମ ବିମ୍ଳାନ ॥୨୮॥

ଏ[...]ଳ ଶଶୀ କି ଯେ ରହୁଁ ଥାଅ । ଦେଖ ସଜନ ବୋଲି ମୋତେ କହ
[...]ନେଖାସର ଏ ଯହୁଁ ନୋହିଲା । ତେଣୁଟି ତୁଷାର ଗର୍ଭେ ଲୁଚିଲା ॥୨୯॥

ଏବେ [...]ମସୀନାଥକୁ ଦେଖିବ । ତାହା ମୁଖ ରହିଁ ନିନ୍ଦା କରିବ ।
............... ବେଷ । ମିତ ହସ୍ତେ ମୋତେ କରିବ ନାଶ ॥୩୦॥

ଅନେକ କାରୁଣ୍ୟ ରମଣୀ କଲା । ପ୍ରିୟଗୁଣ ଗୁଣି ଢଳି ପଡ଼ିଲା ।
ସଜନୀ ବେଢି କହନ୍ତି ବାଣୀ । କମ୍ପା ଅଙ୍ଗ କ୍ଷୀଣ କରୁ ମିତଣି ॥୩୧॥

ଅତ୍ୟନ୍ତ କଷ୍ଟରେ ଶିଶିର ନେଲା । ବଲ୍ଲଭ ଆଶାରେ ଜୀବ ରଖିଲା ।
କ୍ଷୌଣୀଜାପତି ପାଦ କମଳ । ନୃପଧନଞ୍ଜୟ ମନ ଭ୍ରସଳ ॥୩୨॥

# ବଂଶ ଛାନ୍ଦ

## ରାଗ—ଭୈରବୀ

(ତାଳ—ଯତି)

ଶୁଣ ହେ ରସିକ ଜନେ ବଚନ ରସ
ରସିକ ସଙ୍ଗତେ ଥାଇଁ ନରେଶ ଶିଷ ।୧।

ଦେଖିଲ ଶିଶିର ଋତୁ ହୋଇଲା ଅନ୍ତ
ପ୍ରବେଶ ହୋଇଲା ଋତୁବର ବସନ୍ତ ।୨।

ଅଗ୍ରେସର ହୋଇ ତାର ମାର ହୋଇଲା
ପ୍ରଥମେ ବିଳାସୀ ଜନ ମନ ଭେଦିଲା ।୩।

ବିକାଶ କୁସୁମ ଶ୍ରେଣୀ କାର୍ମୁକ ଯେନ
ତହିଁ ଗତମତ୍ତ ଅଳି ମାଳ ଶିଞ୍ଜିନୀ ।୪।

ନବୋଦିତ ସହକାର ଅଙ୍କୁର ଶର
ଯେଣେ ବିରହୀର ବଧ କରେ ବିସ୍ତାର ।୫।

ମଞ୍ଜୁ ମଞ୍ଜରୀ ଧଇଲେ ରସାଳ ତରୁ
ସ୍ତବକ ମୁଖରେ ଲତା ହୋଇଲେ ଗୁରୁ ।୬।

ମଳୟାଚଳ ଭୂପତି ନନ୍ଦନ ହେଲା
ଜଗତପ୍ରାଣ ବୋଲିଣ ନାମ ତା ଦେଲା ।୭।

ବାରତା ଦେଇ ପେଷିଲା କୋକିଳଗଣ
ଯେ ଯାହା ଦେଲା ତାହାରେ କହିବା ଶୁଣ ।୮।

ବୃକ୍ଷ ଅଙ୍ଗ ଭୂଷଣ ଦେଇଣ ପୁଳକ
ନମ୍ରମୁଖ ହୋଇ ବର୍ଣ୍ଣା ଦେଲେ କୋରକ ।୯।

ମାନଧନ ଦେଲେ ତାଙ୍କୁ ପଙ୍କଜଦୃଶୀ
ପଥିକ ଜୀବନ ଦେଇ ହେଲେ ନଗ୍ନଶି ।୧୦।

ଗନ୍ଧ ଲୋଭେ ସଧୂଳିହିତଯୁ ଭ୍ରମିଲେ
ଝଙ୍କାର ଛଳେ ତା କାର୍ତ୍ତି ଗାୟନ କଲେ ।୧୧।

ଅଶୋକ କଲା ସ-ଶୋକ ବିଯୋଗୀ ଜନ
ରସାଳ ସମୟ ହେଲା ବିଳାସୀ ମନ ।୧୨।

ବିକାଶେ ଦେବବଲ୍ଲଭ କୁସୁମଚୟ
ଚୁମ୍ବନ୍ତି ମଧୁପକୁଳ ହୋଇ ନିର୍ଭୟ ।୧୩।

·········ଙ୍କ ସମ ବାସନ୍ତୀସୁତ
ଅଭିନ୍ନ ବୀର ସୁବୀର କି ସେ ଏକତ ।୧୪।

କୁସୁମିତ ହେଲେ ନବ ମାଳିକା ଲତା
କୁରୁବକ କୁସୁମେ ହସିଲେ ଶୋଭିତା ।୧୫।

ବିକଶି ଶୋଭନ୍ତି କର୍ଣ୍ଣିକାର କୁସୁମ
ଶୋଭିତ ମଲ୍ଲୀ ବଲ୍ଲୀ ସୁମନାର ସମ ।୧୬।

ଗର୍ଭ ତେଜି କେତକୀ ହୋଇଲେ ବାହାର
କି ତା ସେ ଅନଙ୍ଗ ରାଜ୍ୟ କୁନ୍ତ ଆକାର ।୧୭।

କସେ ଗୁରୁ ଗୁମୀକର ଦଣ୍ଡ ତାହାର
ଅଳିମାଳା ନୀଳ ପତାକାରେ ରୁଚିର ।୧୮।

ମଦନ ଅସିତ କ୍ଷେତ୍ର କିବା ତା ଜାଣ
ଯହିଁ କରନ୍ତି ମଣ୍ଡଳେ ଭୃଙ୍ଗ ଭ୍ରମଣ ।୧୯।

କେବଣ ଅଶୋକ ଫୁଟି ହସେ ଅରୁଣ
ବିରହୀ ହୃଦ ଭେଦ କି କାମ ମାର୍ଗଣ ।୨୦।

ବିକାଶିଲେ ଜାତି ତରୁ ପୁଷ୍ପ ସମୂହ
ଦେଖନ୍ତେ ନୟନ ମନ କରଇ ମୋହ ।୨୧।

କେବଣ ଲତାରେ ବସି ଭୃଙ୍ଗେ କ୍ରୀଡ଼ନ୍ତି
ଏକ ଆରକରେ ମେଳ କରି ଗଡ଼ନ୍ତି ।୨୨।

କେ କାହାକୁ ଗୋଡ଼ାଇ କରନ୍ତି ଝଙ୍କାର
କେ ବାସନ୍ତୀ ଲତାରେ କରନ୍ତି ବେହାର ।୨୩।

ଲୋଟନ୍ତି କୁସୁମ ଭରେ କେବଣ ଲତା
କାନ୍ତ ଦେଖି ଯେସନେ ମାନିନୀ ବନିତା ।୨୪।

ଶ୍ୟାମଳ ଲତା ବନିତା ଲଳିତ କାନ୍ତି
ଦରଶନେ ଯାର ଯୁବା ଉଦ୍ଭ୍ରମନ୍ତି ।୨୫।

ପ୍ରଫୁଲ୍ଲ କୁସୁମଗୁଚ୍ଛ ତାର ବଦନ
ନୟନଙ୍କ ମଧ୍ୟଗତ ଭୃଙ୍ଗ ମିଥୁନ ।୨୬।

ତଥିପରେ ଶୋହେ ଅଳି ଅବଳୀ ବେନି
ଚୁଚର ଭ୍ରୂଲତା ଛବି ସମତା ଘେନି ।୨୭।

ଶାଖା ବେନି ଭୁଜ ପ୍ରାୟେ ଶୋଭା ଦିଶଇ
ନବୀନ ପ୍ରବାଳ ପାଣି କି ଏ ରାଜଇ ।୨୮।

ପତ୍ରାବଳୀରେ କିରଣ ଶୋଭା ପାଉଛି
କେଶର କୁସୁମକୁ ଆଶ୍ଳେଷ କରୁଛି ।୨୯।

କୁହୁ କୁହୁ ଧ୍ୱନି କରେ ପିକ ନିକର
ଜୟ ନିଶାଣ ଦେଲା କି ରତିର ବର ।୩୦।

ଅଚ୍ୟୁତ ଚୂତ କୁସୁମ ରସେ ମଦାନ୍ଧ
କରନ୍ତି ବିରହୀ କର୍ଣ୍ଣ ଜ୍ୱରର ବନ୍ଧ ।୩୧।

ନିନାଦିତ ମତ୍ତଭୃଙ୍ଗ କାମ ଉପାଙ୍ଗ
ଶୁଣନ୍ତେ ବିଯୋଗୀ ଅଙ୍ଗ ଦହେ ଅନଙ୍ଗ ।୩୨।

ମଧୁ ମାର ପୁରେ ପୁରେ ଆରାମ ସ୍ଥଳୀ
ମନ୍ଦ ବାତ ହୃଷ୍ଟ କରେ ପରାଗ ଧୂଳି ।୩୩।

କପୋତ ଶୁକ ସାରିକା ମତ୍ତେ କ୍ରୀଡ଼ନ୍ତି
ନାନା ପକ୍ଷିଗଣ ପରସ୍ପରେ ରସନ୍ତି ।୩୪।

ସରୋବରେ ବିକଶିଲେ କମଳକୁଳ
ସ୍ପାହ୍ନିନ ଜନ ମନ ରସେ ଉଲ୍ଲୋଳ ।୩୫।

ବିଚ୍ଛେଦେ ବର ନାୟିକା ତେଜିଲେ ଜ୍ଞାନ
ମଧୁ ଋତୁ ତା ହେଲା ଶମନ ସମାନ ।୩୬।

ଶିଥିଳ ବସନ ଗାଃଢ କନ୍ଦର୍ପ ବଳେ
ଉତ୍କଣ୍ଠିତ ହୋଇଲେ ରମଣୀ ସକଳେ ।୩୭।

ତନୁ ପାଣ୍ଡୁ ଗମନ ହୋଇଲା ମନ୍ଥର
ମଦଯୁତ ପୁଲକିତ ଉର ଶରୀର ।୩୮।

ରତିପତି ନିଜ ରୂପ ଲାବଣ୍ୟ ନେଲା
ନେତ୍ରରେ ତାହାଙ୍କର ଯେ ଚଞ୍ଚଳ ଦେଲା ।୩୯।

ବର ବର୍ଣ୍ଣିମା ମଦନ ବିବୃଦ୍ଧି କଲା
ଅଧରରେ ରଙ୍ଗ ରସେ ଚିତ୍ତ ବାନ୍ଧିଲା ।୪୦।

ପ୍ରିୟଙ୍ଗୁ କଳନଚମ୍ପେ ବିଳାସବନ୍ତି
କୁଙ୍କୁମେ ବିହ୍ୱଳ ଭୃଙ୍ଗକୁଚ ସଙ୍ଗନ୍ତି ।୪୧।

ଚନ୍ଦ୍ର ଗନ୍ଧସାର ରସେ ବିକଳ ମନ୍ତି
ଚୀନ ବସନ ତନୁର ଅଭେଦ ପ୍ରୀତି ।୪୨।

ବିହାର ସ୍ଥଳରେ ହେଲେ ଉତ୍ସୁକ ମନ
ଅଗୁରୁ ଧୂପେ ସୁବାସ କଲେ ଭବନ ।୪୩।

ଏସନ ବିବିଧ ବଧୂ ଖଣ୍ଡିତ ଗହନେ
ଉଜାଗର ନୃପ ମନ ବ୍ୟାଧ ମଦନେ ।୪୪।

କୋକିଳ ଉଲ୍ଲୋଳ ଚୂତ ରସ ମଦରେ
ପ୍ରିୟା ବଦନ ଚୁମ୍ବନ୍ତେ ଅତି ସାଦରେ ।୪୫।

ନବମାଳିକା ବଲ୍ଲରୀ ଶୋଭା ପାଉଛି
ସହକାର ତରୁକୁ ଆଶ୍ଳେଷ କରୁଛି ।୪୬।

ପୁଲକ ବ୍ୟାଜରେ କି ମଞ୍ଜରୀ ଧରୁଛି
କାମୀଶ୍ରେଷ୍ଠ ପ୍ରାପ୍ତେ ତରୁ ଶୋଭା ପାଉଛି ।୪୭।

ଆମୂଳରୁ ବିଦ୍ରୁମ ଅଧର ଧରୁଛି
ପୁଷ୍ପିତ ପଲ୍ଲବେ କିବ ଶୋଭା ପାଉଛି ।୪୮।

ମନ୍ଦାନଳେ ଆକୁଞ୍ଚିତ ଗୁରୁ ପ୍ରବାଳ
ବିବିଧ କୁସୁମେ ଭୃଙ୍ଗେ କରନ୍ତି ହେଳ ।୪୯।

କାମୀ ମାନସ ଉଚ୍ଛନ୍ନ ଏଣୁ ହୋଇଲେ
ଅତିମୁକ୍ତ କଳିକାକୁ ଯହୁଁ ଦେଖିଲେ ।୫୦।

ଏମନ୍ତେ ବସନ୍ତ ହେଲା ଅତି ପ୍ରକାଶ
ଦେଖନ୍ତେ ନୃପ ତନୁଜ ପାଇଲା ତ୍ରାସ ।୫୧।

ପୁଷ୍ପଚାପ ଶରେ ଅଙ୍ଗ କ୍ଷୀଣତା କଲା
ମଳୟାନିଳକୁ ଶିଖୀ ସମ ମଣିଲା ।୫୨।

ଗୁରୁତର କିଂଶୁକ କୋରକ ଦେଖିଲା
ଯୁବା ଦ୍ୱିରଦ ଅଙ୍କୁଶ ନଭ ଦେନଲା ।୫୩।

ଏଣୁ ଚଳଚିତ୍ତ ହୋଇ ନୃପନନ୍ଦନ
ବାଳା ତନୁ ଯହୁଁ ଚାପ ମୀନକେତନ ।୫୪।

(ଶେଷ ଅଂଶ ପୋଥିରେ ଚିରି ଯାଇଛି ।)

# ଏକତ୍ରିଂଶ ଛାନ୍ଦ

× × × × × ।।୧।।

× × × × ×

ଚନ୍ଦ୍ର ଚନ୍ଦନ କର୍ପୂର ଇଚ୍ଛିଲେ, ଘନସାର ସାର

× × × × ×

× × × × ×

ହସି (ହର୍ମ୍ୟ ?) ତଳ ସୁବାସିତ କଲେ ।

ଉପାଙ୍ଗ କଂସାଳ ତାଳ ବେଣୁ ବୀଣା ସୁମର୍ଦ୍ଦଳ

ତୁଙ୍ଗପ୍ରମା ଯେନ ସେ ବଜ୍ୟଲେ ।।୨।।

ନିତମ୍ବ ଚୀନ ବସନ କୁଚରେ ହାର ମଣ୍ଡନ

ତନୁ ଲେପକଲେ ଶ୍ରୀଖଣ୍ଡରେ,

ଅଗୁରୁ ଧୂପ ସୁବାସ ସୁଲଳିତ କେଶ ପାଶ

ଲକ୍ଷା ରସ ରଞ୍ଜିଲେ ପାଦରେ ସେ ।

ନାରୀଗଣେ,

ହଂସକ ରଞ୍ଜିଲେ ତଥିପରେ ।

ହଂସ ରୁତ ସମ ନାଦ ଶୁଣନ୍ତେ ସ୍ଫୁରିତ ଆନନ୍ଦ

ଯେଣେ ଯୁବା ଜନ ଜ୍ଞାନ ହରେ ସେ ।।୩।।

ପୟୋଧରେ ତାର ହାର ନିତମ୍ବରେ ଗୃମୀକର

କାଞ୍ଚି ଦାମ ମଣ୍ଡନ ବନ୍ଧିଲେ,

ରମଣୀର ରମଣୀୟ ତନୁରୂପ ରସକୂପ

ଅନ୍ତେ ଯୁବା ଜନ ବନ୍ଦୀ ହେଲେ ହେ ।

ସଖୀଜନେ,

ରକ୍ତ ରଙ୍ଗେ ଇଷିତ ରଞ୍ଜିତ ।

ଜଳ ସନ୍ଦିତ ମନ୍ଦିର ସେବିଲେ ସେ ନିରନ୍ତର

ଯହିଁ ଖର କରେ ସନ୍ତାପିତ ସେ ।।୪।।

ଚନ୍ଦନରୁ କାଢ଼ି ବସନ          କେ କରେ ଅଙ୍ଗ ଲେପନ
ବ୍ୟଜନ ଯେମନ୍ତେ କେହୁ ବଞ୍ଚେ
ଘନ ସାର ରଜ ଚୂର          ଗନ୍ଧସାର ମିଶ୍ର କର
ଶରୀର ଉପରେ କେହୁ ସିଞ୍ଚେ ସେ
ରାମାବୃନ୍ଦ
କେହୁ ଗୀତ ଗାଇ ହରେ ଚିତ୍ତ ।
ସରସ୍ୱତୀ ହସ୍ତେ ଧରି          ପଞ୍ଚମସ୍ୱରେ ହୁଁକାରି
କାମଟିର କରନ୍ତି ଉଦିତ ସେ ।।୫।।

କେବଣ ବଡ଼ଖି ପୁରେ          ଯେବେ ପ୍ରିୟାକୁ କୋଳରେ
ସହଚରୀ କହଇ ଉତ୍ତର
ଶୁଣ ରେ ବନଜମୁଖି          ତୁ ମୋର ହୃଦୟସାକ୍ଷୀ
ନଶି କୋଳେ ଦେଖ ନିଶାକର ରେ
ପ୍ରାଣବନ୍ଧୁ
ସିନ୍ଧୁସୁତ ଦେଖ ଏ ଗଗନ ।
ତୋ ମୁଖ ସନ ନୋହିଣ          ମନରେ ହପା ଲକ୍ଷଣ
ନମିଷେ ସେ ତେଣୁ ପାଣ୍ଡୁ ବର୍ଣ୍ଣ ରେ ।।୬।।

ଯା ପାଶେ ନ ଥିବ ପ୍ରିୟ          ତାହାରେ ଏ ହୀନଦୟ
ଦୁଃସହ ପବନ ବାଧୁଥିବ
କାନ୍ତାରେ ଯେହୁ ବଞ୍ଚିତ          କାନ୍ତରେ ହୋଇ ଦୁଃଖିତ
ଏଣୁ କି ଜୀବନ ନ ଧରିବ ସେ
କହୁ କହୁ
ବିଭାବରୀ ହୋଇଲା ନିଃଶେଷ ।
ପକ୍ଷିଗଣ କୋଳାହଳ          ଖେଳେ ସେ ଦିଗ ମଣ୍ଡଳ
କଲେ ଚନ୍ଦ୍ରି ବଚନ ପ୍ରକାଶ ସେ ।।୭।।

---

୬ ପଦ ତୁଳନୀୟ : ସିତେଷୁ ହର୍ମ୍ୟେଷୁ ନିଶାସୁ ଯୋଷିତାଂ
ସୁଖ ପ୍ରସୁପ୍ତାନି ମୁଖାନି ଚନ୍ଦ୍ରମାଃ ।
ବିଲୋକ୍ୟ ନୂନଂ ଭୃଶମୁତ୍ସୁକଶ୍ଚିରଂ
ନିଶାକ୍ଷୟେ ଯାତି ହ୍ରିୟେବ ପାଣ୍ଡୁତାମ୍ ।।

ହର ହରିତ ବଦନ ଦେଖିଣ ଅରୁଣ ବର୍ଣ୍ଣ
ଶ୍ୱେତ ମଣି ଶଶୀ ଡମଦସ୍ଥ
ଭୟେ କି ଗଗନ ତେଜେ ପୁଣି ଖରକର ଓଜେ
ଗୃହାନ୍ତରେ ଲଭିଲେ ସେ ଲୟ ସେ
ବିଭାକର
କ୍ରମେ ହେଲେ ପ୍ରକାଶ ଆକାରେ
ଜଳଦସ୍ଥାନ୍ତି ଶିରୋମଣି କି ବା ସେ ହିମ ତରୁଣୀ
ସିନ୍ଦୂର ବିନ୍ଦୁକି ଲଲାଟରେ ସେ ।।୮।।

ତାପିତ ମୃଗ ପତଙ୍ଗ କେଶରୀ କୁଞ୍ଜର ପୁଙ୍ଗ
ତୃଷାଭରେ ହୋଇଣ ଆରତ
ମରୀଚିକା ଜଳ ମଣି ଧାମନ୍ତି ବେଗେ ହରିଣୀ
ପଥୁଁ ଶୁଷ୍କ କଣ୍ଠ ଜ୍ଞାନ ହତ ହେ
ପକ୍ଷୀଗଣେ
ଧରଣୀ ଚରଣେ ନ ଛୁଅଁନ୍ତି
ସିକତା ଅଗ୍ନି ସମାନ ନଦନଦୀ ନୀରହୀନ
ତୃଷାରେ ଭ୍ରମନ୍ତି ମତ୍ତଦନ୍ତୀ ସେ ।।୯।।

ତପତ ରେଣୁ ବାହାରୁ କୁଣ୍ଡଳୀ ଖରତାପରୁ
ଶିଖୀ ପୁଚ୍ଛ-ଗୁମ୍ଫାରେ ଲୁଚନ୍ତି
ଅହି-ମକରେ ସନ୍ତାପୀ ନ ଭଜେ ଯାହା କଳାପୀ
ପଥୁଁ ନିଜ ଜ୍ଞାନ ତେଜିଛନ୍ତି ସେ
ଭେକକୁଳ
ଶତପତ୍ର ସଲିଳୁ ବାହାର
ବକ୍ରିତ ବଦନରେ ............ପାଇ
ଶଶୀ ଭୟ ମନୁ କଲେ ଦୂର ସେ ।।୧୦।।

---

୯ ପଦ ତୁଳନୀୟ : ମୃଗାଃ ପ୍ରଚଣ୍ଡାତପ ତାପିତା ଭୃଶଂ ତୃଷା ମହତ୍ୟା ପରିଶୁଷ୍କତାଲବଃ ।
ବନାନ୍ତରେ ତୋୟମିତି ପ୍ରଧାବିତା ନିରୀକ୍ଷ୍ୟ ଭିନ୍ନାଞ୍ଜନସନ୍ନିଭଂ ନଭଃ ।। (ଋତୁ ସଂ ୧/୧୧)

୧୦ ପଦ ତୁଳନୀୟ : ରବେର୍ମୟୂଖୈରଭିତାପିତୋ ଭୃଶଂ ବିଦହ୍ୟମାନଃ ପଥି ତପ୍ତପାଂଶୁଭିଃ ।
ଅବାଙ୍ମୁଖୋ ଜିହ୍ମଗତିଃ ଶ୍ୱସନ୍ମୁହୁଃ ଫଣୀ ମୟୂରସ୍ୟ ତଳେ ନିଷୀଦତି ।। (ଋତୁ ସଂ ୧/୧୩)

ହୁତାଗ୍ନିକଳ୍ପୈଃ ସବିତୁର୍ଗଭସ୍ତିଭିଃ କଳାପିନଃ କ୍ଳାନ୍ତଶରୀର ଚେତନାଃ ।
ନ ଭୋଗିନଂ ଘ୍ନନ୍ତି ସମୀପବର୍ତ୍ତିନଂ କଳାପଚକ୍ରେଷୁ ନିବେଶିତାନନମ୍ ।। (ଋତୁ ସଂ ୧/୧୬)
ବିବସ୍ୱତା ତୀକ୍ଷ୍ଣତରାଂଶୁମାଳିନା ସପଙ୍କତୋୟାତ୍ ସରସୋଽଭିତାପିତଃ ।
ଉତ୍ପ୍ଲୁତ୍ୟ ଭେକସ୍ତୃଷିତସ୍ୟ ଭୋଗିନଃ ଫଣାତପତ୍ରସ୍ୟ ତଳେ ନିଷୀଦତି।। (ଋତୁ ସଂ ୧/୧୮)

ଯହୁଁ ସୂର ତେଜପାଇ ମସ୍ତକେ ମଣି ଜଳଇ
ଉଲ୍ଲୋଳ ରସନା ଚଞ୍ଚଚଞ୍ଚୁ
ହୋଇ ବିନତ ବଦନ କଲେ ଗରଳ ବମନ
ଯେଣୁ ଶାଳୂରେ ନ ଦେଲେ ଭସ୍ମ ସେ,
ସରୋବରରେ
ବିଗତ ହେଲେ ସାରସମାନେ
ମ୍ଳାନ ହୋଇଲେ ମୀନ ମୃଣାଳ ସମୂହ କ୍ଷୀଣ
ବାତେ ଉଲ୍‌କା ପ୍ରକାଶେ ଗଗନ ସେ ।।୧୧।।

ମୁଖରୁ ଫେନ ଉଦ୍‌ଗାର କରେ ମହିଷ ନିକର
ଶୋଣ ରସନା ପ୍ରକଟ କରି
ଦର୍ପ ଭଚରୁ ଆସନ୍ତ କେ ଯାଇ ଜଳେ ପଶନ୍ତ
ଏକ ଆରକରେ ମରମର ସେ
ଗବୟ ସ୍ୱେ
କର୍ଦ୍ଦମ କରନ୍ତ ସରୋବର
କେହୁ ଊର୍ଦ୍ଧ୍ୱମୁଖ ହୋଇ ଖର ନିଃଶ୍ୱାସ ତେଜଇ
ତାପ ଭରେ ହୁଅଇ ବାହାର ସେ ।।୧୨।।

ପ୍ରଚଣ୍ଡ ଦାବ ପାବକ କଲା ବନଜଙ୍କ ଶୋକ
ନଗ ବର୍ଗେ ବହ୍ନି ନିଧାନ
ପ୍ରଭଞ୍ଜନ ବୃକ୍ଷେ ବସି ଜୀବନେ ମନ ନିବେଶି
ମୂକମତ ହୋଇଲେ ମଉନ ସେ
ହରିମାନେ
ବନାନ୍ତରେ ଆକୁଳେ ରୋଦନ୍ତ
ଦଶରେ ପଶି ପବନ ପତଙ୍ଗ କରଇ ସ୍ୱନ
କାହିଁ ଶୁଷ୍କ ପଲଶ ଉଡ଼ାନ୍ତ ସେ ।।୧୩।।

---

୧୧ ପଦ ତୁଳନୀୟ : ରବିପ୍ରଭୋଦ୍ଭିନ୍ନଶିରୋମଣିପ୍ରଭୋ ବିଲୋଳଜିହ୍ୱାଦ୍ୱୟଲୀଢମାରୁତଃ ।
ବିଷାଗ୍ନିସୂର୍ଯ୍ୟା ତପତାପିତଃ ଫଣୀ ନ ହନ୍ତି କଣ୍ଡୂକକୁଳଂ ତୃଷାକୁଳଃ ।। (ଋତୁ ସ ୧/୨୦)

ତରୁବର କୋଳ କରୁ- ଥିଲେ ଯେତେକ ବଲ୍ଲରୀ
ଭସ୍ମ ହେଲେ ଇଷିତ ତେଜରେ
ତୃଣଗଣେ ଛଣେ ଲାଗି ବସେ ହୋଇ ଅନୁରାଗୀ
ବଜ୍ର ସମ ଧ୍ୱନି ବହ୍ନି କରେ ସେ,
ରୂପ ଗୃହ୍ନି,
ତେଜିଲେ ବିପିନ ମୃଗକୁଳ
ଶାଲ୍ମଳୀ ବୃକ୍ଷ କୋଟରେ ଶିଖୀ ଶାଖା ଶୋଭା ଧରେ
ଗୃମୀକର ସମ୍ଭ୍ରମପୁ ଚୂଳେ ସେ ।।୧୪।।

ଅରୁଣ ତପତ ଶାଖୀ ଆଲିଙ୍ଗନେ ବନେ ଶିଖୀ
ବାତାଘାତେ କରନ୍ତି ଭ୍ରମଣ
ଗଜ ଗବୟ କେଶରୀ ତାପେ ମିତ୍ରତା କି ଧରି
ଆଶ୍ରେ କଲେ ନିର୍ଝର ଗଣ୍ଡ ସେ
ଋତୁ ଦେଖି
ଅତି ଖିନ୍ନ ଋତୁ ନୃପ ସୁତ
ଚିନ୍ତଇ ହରିଣୀଦୃଶୀ କି କରୁ ସେ ଥିବ ବସି
ନ ପାଇଲି ସଖୀର ଉଦନ୍ତ ସେ ।।୧୫।।

ଚନ୍ଦ୍ରମୁଖୀ ପୀନସ୍ତନୀ ସୁଧା ମଧୁରହାସିନୀ
କରୁଥାଇ ମୋତେ ଆଲିଙ୍ଗନ
ଦେଖଇ ମୃଗ ଲାଞ୍ଛନ ପୁଣି ଦିଅଇ ଚୁମ୍ବନ
ଏବେ ପାଶେ ନାହିଁ ପ୍ରାଣଧନ ସେ
ମଦନାଗୀ
ଦେଖିବି ତାହାର ପଦ୍ମମୁଖ ।
ସରୋଜ ସମ ଚରଣ ଧରିବି ବେନି କରେଣ
ତେବେ ସେ ଲଭିବ ବହୁ ସୁଖ ସେ ।।୧୬।।

---

୧୪ ପଦ ତୁଳନୀୟ : ବହୁତର ଇବ ଜାତଃ ଶାଲ୍ମଳୀନାଂ ବନେଷୁ ସ୍ଫୁରତି କନକଗୌରକୋଟରେଷୁ ଦ୍ରୁମାଣାମ୍ ।
ପରିଣତଦଳଶାଖାନୁତ୍ପତନ୍ ପ୍ରାଂଶୁବୃକ୍ଷାନ୍ ଭ୍ରମତି ପବନଧୂତଃ ସର୍ବତୋଽଗ୍ନିର୍ବନାନ୍ତେ ।।

(ଋତୁ ସଂ ୧/୨୬)

ଏବେ ଏ ନିଦାଘ କାଳ     ନଷ୍ଟେ ହେଲା ମୋର କାଳ
ସେ ଶରଣ ପାଇଲେ ବଞ୍ଚିବ
କେଉଁ ଯିବ ରମାପୁର     କହିବ ଉଦନ୍ତ ମୋର
ତାର ବିନୁ ଏ ଜୀବ ତେଜିବ ସେ
ନୃପସୁତ,
ବନପ୍ରିୟେ ଦେଖି ବୋଲେ ବାଣୀ
ତୁମ୍ଭ ସ୍ୱରୁ ମଧୁରିମା     ବାଣୀ ଦେଖିଲ କି ରମା
କାହିଁ ଅଛି ମୋର ପ୍ରାଣମଣି ସେ ।।୧୭।।
ପୁଣି ଦେଖିଣ ଝଙ୍କାର     କହଇ ମଧୁର କର
ସଙ୍କେତରେ ବୁଲୁଥାଅ ଭାଇ
ଦେଖିଲ କି ରମାବର     ତୋ ରୁଚି ରୁଚି ଚକୁର
ପୀନସ୍ତନୀ ମତ୍ତା ସ୍ନେହୀ ସେହି ସେ ।
ବାଳାମଣି !
ଜଗତରେ ନିରୁପମ କାନ୍ତି
ସଦା ବିମଳ ଚନ୍ଦ୍ରମା     କମଳ ବଦନ ଧାମା
ଶର୍ମୀକରଚୟ ଜିଣି ଜ୍ୟୋତି ସେ ।।୧୮।।
ଏମନ୍ତେ କୁମର ମଣି     କହନ୍ତେ କାରୁଣ୍ୟ ବାଣୀ
ଚିନ୍ତିଲା ଏ ଋତୁ ହେଲେ ଶେଷ
ପୁଣି ତ ହେବ ଆସାର     କେହ୍ନେ ଧରିବ ଶରୀର
ନଷ୍ଟେ ଜୀବ ଯିବ ଯମ ବାସ ସେ ।
ଏତେ ବୋଲି
ମୂର୍ଚ୍ଛାଗତ କଲା ମହୀତଳେ
ଏସନ ସମୟେ ତହିଁ     ନାରଦ ପ୍ରବେଶ ହୋଇ
ଆଶ୍ୱାସିଲେ କମଣ୍ଡଳୁ ଜଳେ ।।୧୯।।
ଗ୍ରୀଷ୍ମ ବର୍ଣ୍ଣନା ଛାନ୍ଦ     ଶୁଣି ସୁଜନେ ଆନନ୍ଦ
ପଦେ ପଦେ ଅଛି ରସ ବନ୍ଧ
ସେବଣ ନୀଳାଦ୍ରି କନ୍ଦ     ହୋଇଛି ଅତି ଆନନ୍ଦ
ଛେଦ ପ୍ରଭୁ ମୋର ମାୟାବନ୍ଧ ହେ
ଆଦିକନ୍ଦ
ତୁମ୍ଭେ ମୋ ମନ ଚକୋର ଚନ୍ଦ୍ର
ନୃପ ଧନଞ୍ଜୟ କହେ     ଶୁଣ ହେ ଦେବାଧିରାୟେ
ସେବଥିବ ତୁମ୍ଭ ପାଦପଦ୍ମ ହେ ।।୨୦।।

# ଦ୍ୱାବିଂଶ ଛାନ୍ଦ

## ରାଗ—ବରାଡ଼ି

(ତାଳ—ଯତି)

(କଳସା ବାଣୀରେ ଗାଇବ)

ପଚ୍ଚରନ୍ତି ମୁନିବର ଶୁଣ ହେ କୁମର
କି କାରଣେ ଖେଦ ହୃଦ ହେଲି ନିରନ୍ତର ।
କେଉଣ ଦେଶେ ଜନମ କାହାର ନନ୍ଦନ
କପଟ ନ କରି କହ ସରୂପ ବଚନ ।।୧।।

ଅବିରତ ରୋଦନ କରୁଛ କିମ୍ପା ବସି
ବଡ଼ କୁଳେ ଜାତ ପରି ତୁମ୍ଭ ରୂପ ଦିଶି ।
ହୃଦୟ ବେଦନା ଯେତେ ଆମ୍ଭ ଆଗେ କହ
ଫେଡ଼ି ଅବା ପାରିବା ଯେ ତୁମ୍ଭର ସନ୍ଦେହ ।।୨।।

ଋଷିଙ୍କର ବାଣୀ ଶୁଣି ଉଠି ନୃପସୁତ
ପାଦେ ତାଙ୍କ ନତ ହୋଇ କହେ ଯେ ଡ଼ି ହସ୍ତ ।
ଏ କଷ୍ଟରୁ ମୋତେ ଯେ ଉଦ୍ଧର ମୁନିବର
ସେବା କରୁଥିବି ମୁହିଁ ତୁମ୍ଭର ପଯ୍ୟର ।।୩।।

ନୃପତି ନନ୍ଦନ ହୋଇ ହେଲି ମହାଦୁଃଖୀ
କେଉଁ ବିଧିବଶରୁ ଖଣ୍ଡିତ ଚନ୍ଦ୍ରମୁଖୀ ।
ଏବେ କେମନ୍ତେ ଲଭିବି ସେ ମୃଗଲୋଚନୀ
ଦୟା ଏବେ କର ମୋତେ ତୁମ୍ଭେ ତପୋଧନୀ ।।୪।।

ନ ଜାଣଇଁ କେହୁ ମୋତେ କଲା ଏତେ ଦୂର
ଛଡ଼ାଇଲା ସେ ପାବନୀ ଭଗୀରଥୀ ତୀର ।
ଯହିଁ ବିଜେ କରିଛନ୍ତି ସ୍ୱୟଂ ତ୍ରିଲୋଚନ
ସେ ଦେଶ ନରେନ୍ଦ୍ର ଚନ୍ଦ୍ରଚୂଡ଼ ତା ନନ୍ଦନ ।।୫।।

କର୍ଣ୍ଣାଟ ନୃପତି ଦୁହିତାକୁ ବିଭା ହେଲି
ନାନା କେଳି କରି ତାରେ କେତେ ଦିନ ନେଲି ।
ଦାରୁଣ ବିଧାତା ତାହା ସହି ନ ପାରିଲା
ସୁନ୍ଦରୀ ପାଶରୁ ମୋତେ ହରଣ ଆଣିଲା ।।୬।।

ନଷ୍ଟେ ଯେବେ ନ ଦେଖିବି ତା ଚନ୍ଦ୍ରବଦନ
ଏହି ନଗ ପରେ ଲୀନ ହେବ ମୋ ଜୀବନ ।
ଅକାରଣେ କେ ମୋତେ ଆଣିଲା ଏଥେ କହ
ତୁମ୍ଭ ଚରଣେ ଗୋସାଇଁ କହିଲି ସନ୍ଦେହ ॥୭॥

କୁମର ବଚନ ଯହୁଁ ଏସନ ଶୁଣିଲେ
ଜ୍ଞାନଚକ୍ଷୁ ଯେନ ମୁନି ଧ୍ୟାନପର ହେଲେ ।
ସମସ୍ତ ଚରିତ ତାଙ୍କୁ ହୋଇଲା ଗୋଚର
କୁମର ବଦନ ଚାହିଁ କହନ୍ତି ଉତ୍ତର ॥୮॥

ନ କର ସନ୍ତାପ ତୁ ହେ ନରପତି ସୁତ
କହିବା ଉପାୟେ ଯେଣେ ଲଭିବୁ ବାଞ୍ଛିତ ।
ଥିର ଚିତ୍ତ ହୋଇ ଶୁଣ ଆମ୍ଭର ବଚନ
ଅମର ନଗରର ସେ ରମଣୀ ରତନ ॥୯॥

ଅପସରା ବରା ସେହୁ ମନ୍ଦାଳସୀ ନାମ
ଶକ୍ର ଶାପରେ ମର୍ତ୍ୟରେ ହୋଇଲା ଜନମ ।
ପୂର୍ବ ଭାଗ୍ୟ ବଶୁ ତୋର ହୋଇଥିଲା ନାରୀ
ସେହୁ ପୁଷ୍ପଦନ୍ତ ଗନ୍ଧର୍ବର ସହଚରୀ ॥୧୦॥

ଏଣୁ ସେ ରୋଷରେ ତୋରେ ମୋହ ଆଶ୍ରା କଲା
ଅଚେତନ କରି ବଳେ ଏଥକୁ ଆଣିଲା ।
ତେଣୁ ଅବା ସୁନ୍ଦରୀ କି ନେଇ ଥାଇଁ ହରି
ଏଥୁ ବେଗେ ଯାଇ ଦେଖ ନୃପତି-କୁମାରୀ ॥୧୧॥

ଶୁଣି ସେ ଋଷିଙ୍କ ବାଣୀ କାତର କୁମର
ପ୍ରଣାମ କରି କହଇ ଯୋଡ଼ି ବେନି କର ।
ଯେବଣ ଥାନରେ ଅଛି ଏ ମୋ ଅଲକ୍ଷିତ
କେଉଁ ଦଗେ ମୋର ପୂରି ସେହି ଅବଦାତ ॥୧୨॥

ତୁମ୍ଭର ପ୍ରସାଦେ ମୋର ଏ ଦୁଃଖ ତରିବ
ଜୀବନ ସମାନ ପ୍ରାଣପ୍ରିୟାକୁ ଲଭିବ ।
ଧାନ ଜନେ ଦୟାଚିତ୍ତ ହୁଅନ୍ତି ମହତ
ମୋ ତହୁଁ ଦୁଃଖୀ ନ ଥିବ ଶୁଣ ବ୍ରହ୍ମସୁତ ॥୧୩॥

ଏସନ ବିନୟେ ତାର କହେ ମୁନିବର
ତୋତେ ଏଥୁ ନେବ ରାଜରାଜ ଅନୁଚର ।
ଏତେ କହି ଗଲେ ଋଷି ତିରୋହିତ ହୋଇ
ସରଗୁ କିନ୍ନର ବେଗେ ମିଳିଲେକ ଯାଇ ।।୧୪।।

ଦିବ୍ୟ ଗନ୍ଧ ସ୍ୱର୍ଗବାସ ଅଳଙ୍କାର ଯୁତ
କମନୀୟ ରୂପେ ସେ ହରୁଛି ନେତ୍ର ଚିତ୍ତ ।
ଦେଖିଣ ଆକାର ଯହିଁ କୁମାର ବିସ୍ମିତ
କହେ ମଧୁର ସୁରୁଚି ରୁଚିର ସସ୍ମିତ ।।୧୫।।

ତେଜ ହେ ବିଷାଦ ହୃଦୁ ନୃପତି ତନୟ
ତୋରେ ମହାମୁନି ହେଲେ ସଦୟ ହୃଦୟ ।
ତାଙ୍କର ଆଜ୍ଞାରୁ ତୋତେ ଏଥୁ ଯିବି ଘେନି
ଆଜ ଅବଶ୍ୟ ଦେଖିବୁ ନିଜ ରାଜଧାନୀ ।।୧୬।।

ମୋରେ ମିତ୍ର ମତି ଚିନ୍ତି କର ଆଗମନ
ପରମ ମଙ୍ଗଳ ହରି ରୂପ କରି ଧାନ ।
ଏତେ ବୋଲି ଗମନରେ ନିରତ କିନ୍ନର
ତାକୁ ଅନୁଗତ ହେଲ ବଜାର କୁମର ।।୧୭।।

ଶଙ୍ଖଚକ୍ର ଚତୁର୍ଭୁଜ ଦିଶଇ ସୁନ୍ଦର
କିରୀଟ ମୁକୁଟ କଣ୍ଠେ କଉସ୍ତୁଭ ହାର ।
ଏଥି ଶଚୀପତି ସର୍ବ ଅପସରୀ ସଙ୍ଗେ
କୁସୁମାକର ଉତ୍ସବ କରେ ଅତି ରଙ୍ଗେ ।।୧୮।।

ଅମର ଗନ୍ଧର୍ବଗଣ କେଳି ଗୃହି ନୋହି
ସୁରପୁର ସୁଖ ନ ଗଣନ୍ତି ଯହିଁ ରହି ।
ସ୍ଥାନେ ସ୍ଥାନେ ସୁରବଧୂ ବିହାର ପ୍ରକାଶି
କଉ ରାମା ମାନଭରେ ଥିଲି ଏଥେ ବସି ।।୧୯।।

କଜ୍ଜଳ ମଳିନ ନୀର ଧାର ନେତ୍ରୁ ଖସି
ଅତୁଳ ଅଳି ମାଳିକା ସମରୁଚି ଦିଶି ।
କୋପେ କେହୁ କରୁ ଅରବିନ୍ଦ ଅଛି ତେଜି
ଅବନୀରେ ପଡ଼ି ହୀନ ରୁଚି ଅଛି ଭଞ୍ଜି ।।୨୦।

ଦେଖ ଏ ନବୀନ ଘନ ପ୍ରବାଳ ଶୟନ
ପ୍ରକାଶୁଛି ଅମର ଯୁବତୀ ରତି ଚିହ୍ନ ।
ବନ୍ଧୁଳ କେଳି କଳାରେ ହୋଇ ବଦଳିତ
କର୍ଣ୍ଣ ଅବତଂସ ସଙ୍ଗ ଅତି ସୁଲଳିତ ॥୨୧॥

କୁଚତଟୁ ଛୁଟି ପଡ଼ିଅଛି ତାର ହାର
କୁଙ୍କୁମ ରଜରେ ଦର ଅରୁଣ ଆକାର ।
ସୁନ୍ଦର ସିନ୍ଦୂର ବିନ୍ଦୁ ଶ୍ରମଜଳେ ଗଳି
ଚନ୍ଦ୍ରେ ରବି ନ୍ତବ କି ସେ ଚନ୍ଦ୍ରେ ହଣି ଝଳି ॥୨୨॥

ଦେଖ କବରୀ ଗଳିତ ଏ କୁସୁମ ମାଳ
ସଉରଭ ଲୋଭେ ଭୃଙ୍ଗ ହୋଇଛି ତରଳ ।
ଚଉଦିଗେ ଚରେ ମୃଗ ମଦ ପରିମଳ
ଭ୍ରମନ୍ତି ଭ୍ରମର ବାର କରି କୋଳାହଳ ॥୨୩॥

ଅଲକ୍ତ ରସେ ପଦ ଚିହ୍ନ ପ୍ରକାଶଇ
ସୁସଞ୍ଚ ଚକ୍ଷୁଃସମରେ ଚିତ୍ତ ଆମୋଦଇ ।
କେ ଅଗୁରୁ ଧୂପେ କେଶ ବାସ ରଞ୍ଜିଥିଲା
ତେଣେ ଏ ଥାନରେ ଗୁରୁଗନ୍ଧ ପ୍ରକଟିଲା ॥୨୪॥

ଦେଖ ଏବେ ଅଗ୍ରତେ ଏ ସୁର ତରଙ୍ଗିଣୀ
ଯହିଁ ବିହରନ୍ତି ସୁର ସୁରତ ରଙ୍ଗିଣୀ ।
ଏହୁ ଏକଧାରେ ତୋର ନଗର ସଙ୍ଗିନୀ
ଦରଶନ ମାତ୍ରେ ତୋର ଦୁରିତଭଙ୍ଗିନୀ ॥୨୫॥

ଦିଗବାରଣ ଗଣରେ ସେବିତ ଏ ନୀର
ଦାନ ସଉରଭ ଲୋଭେ ଚୁମ୍ବନ୍ତି ଭ୍ରମର ।
ଏହି ତୀର ମାର୍ଗେ ତୋର ନଗର ପତନ
ଏବେ ଦତ୍ତ ଚିତ୍ତ ହୋଇ କର ଆଗମନ ॥୨୬॥

ଏ ଯେ ଦୂରଗତ କରି ମାଣିକ ଶିଖର
।ମେ ଧାମେ ଅରୁଣିତ ଗମ ଅମ୍ବର ।
ସନ୍ନିଧି ସଗରୁ ଯାର ସମରୁଚି ଦିଶେ
ସୁର କର ଲାଗି ଜ୍ୟୋତି ଦିଗନ୍ତ ପ୍ରକାଶେ ॥୨୭॥

ତପୋଧ  ବୃନ୍ଦେ ଏଥେ ଥାନ୍ତି ଅତି ସୁଖେ
ଅନୁଦିନ ଏକ୍ଷି ରଙ୍ଗ ପକ୍ଷୀ ଶତ ମଖେ ।
ମହତ ସଖୀଗଣରେ ସତତ ଆଶ୍ରିତ
ବିଟପ ତରୁଲତାରେ ଅତି ସୁଲଳିତ ।।୨୮।।

ଏତେ କହି କନ୍ଦର ସେ କୁମର ସହିତ
ହୋଇ ସେ ଅଚଳାଚଳ ନିଚଳା ପଗତ ।
ତହୁଁ ଗଲେ କିଛି ପଥ ଅତିକ୍ରମ କରି
ନୃପସୁତ ଶୁଣି ମୃଦୁ ବଚ  ବିସ୍ତାରି ।।୨୯।।

ଆଗେ ଅଛି ସରସ୍ୱତୀ ସୁରସୁତା ଧୁନୀ
ତହିଁ ସଙ୍ଗମୀ ହୋଇଛି ଏ ଜହ୍ନୁ ଦମା ।
ମହତ ତୀର୍ଥ ସେ ଦେବଗଣରେ ଦୁର୍ଲ୍ଲଭ
ତହିଁ ସ୍ନା  କରି ତୁ ଲଭିବୁ ବହୁ ଶୁଭ ।।୩୦।।

ତହିଁର ଉତ୍ତରପୂର୍ବ ଦିଗ ଅନ୍ତେ ଯିବୁ
ଅଚିରେ ତୋ ମ ।ରଥ ନିଧିକୁ ଲଭିବୁ ।
ଏତେ ବୋଲି ଅନ୍ତରିତ ହୋଇଲେ ସୁବ୍ରତ
ବିସ୍ମିତ ଚିତ୍ତ କୁମର ବଦ  ବିଚ୍ୟୁତ ।।୩୧।।

ବିଷାଦ ହୃଦ ହୋଇ ସେ କରଇଁ ବିଚାର
କାହିଁଗଲେ ଏଥୁ ପକ୍ଷପତି ପରସ୍ପର ।
ମୁନିର ଆଦେଶେ ଦୁର୍ଗ ମାର୍ଗ ସଖା ହେଲେ
ସୁଖ ସମ୍ଭାଷରେ ମୋର ଚିତ୍ତ ଆମୋଦିଲେ ।।୩୨।।

କହିଲେ ପଥରେ ତୋର କରିବ ଗମ
ଅନୃତ ନୁହଇ ଦେବଗଣର ବଚ  ।
ଏମନ୍ତ ଚିନ୍ତି ସେ ଯୁବା ତହୁଁ ବେଗେ ଗଲେ
କନ୍ଦର କଥିତମା  ମାର୍ଗରେ ଦେଖିଲେ ।।୩୩।।

ଏମନ୍ତେ ସେ ପ୍ରବେଶ ହୋଇଲେ ନିଜ ଦେଶ
ଦୂରୁହୁଁ କାଶୀନଗର ଶୁଣି ଚିତ୍ତ ତୋଷ ।
ଧୀର ଧୀର ଆଗମ  କରନ୍ତେ କୁମର
ସନ୍ନିଧେ ମିଳିଲେ 'ମକରନ୍ଦ' ସଖା ତାର ।।୩୪।।

ଚିରର ବିଚ୍ଛେଦ ବହ୍ନି ମଳିନ ତା ବର୍ଣ୍ଣ
ତେଜିଛି ବେଶ ବ୍ୟସନ ନିଦ୍ରା ସୁଭୋଜନ ।
ବିରସ ମାନସ ହୋଇଛନ୍ତି ପୁରଜନ
କାହାର ସଦନେ ନାହିଁ ପ୍ରସନ୍ନ ବଦନ ।।୩୫।।

ପୁଣି ପୁଣି ବାମନେତ୍ର ଫୁରଇ ତାହାର
ଅଶିବ ସୂଚକମାନ ଦେଖିଲା ଅପାର ।
ପ୍ରିୟାସଙ୍ଗ ଭଙ୍ଗ ଭୟେ ଅଥିର ତା ଚିତ୍ତ
ସତ୍ୱରେ ଗୃହଁ କରତେ ହୋଇ ଜଡ଼ମତ ।।୩୬।।

କ୍ରମେ ସେ ନଗରପୁରେ ପ୍ରବେଶ ହୋଇଲା
ପ୍ରାଣପ୍ରିୟା ବଦନ-ଚନ୍ଦ୍ରମା ନ ଦେଖିଲା ।
ବିଶେଷ ସନ୍ଦେଶ ତାର ନ ପାଇଲା ସହୁଁ
ଜ୍ଞାନ ହାରି କ୍ଷିତିତଳେ ପଡ଼ିଲା ସେ ତହୁଁ ।।୩୭।।

ସିନ୍ଧୁସୁତା-ପତି ବେନି ଚରଣ କମଳ
ଯେହୁ ଆଶ୍ରମିଲା ତିନି ଭୁବନ ମଣ୍ଡଳ ।
ନୃପ ଧନଞ୍ଜୟ ଭଞ୍ଜ ମନ ମଧୁକର
ଅବିରତେ ହେଲା ତହିଁ ଭାବ ମଧୁପର ।।୩୮।।

# ଏଓଣ୍ଡୋଶ ଛାନ୍ଦ

## ରାଗ—ଶ୍ରୀ

ତାଳ—ପରମାନ

ଏଥୁ ଅନ୍ତରେ ସାବଧାନ ଶୁଣ ହେ ରସିକ ଜନ
ନୃପସୁତା ମୋହ ଦେଖି ସକଳ ଦାସୀ,
ସସମ୍ଭ୍ରମ ହୋଇ ଗଲେ ସଖୀଙ୍କ ଆଗେ କହିଲେ
କେହୁ ଶୀତ ଉପଚାର କରେ ଆଶ୍ୱାସି ।
ମୁଖେ ସିଞ୍ଚି ପନୀର ନୀର
ପୁଷ୍ପ ଚାମର ଆଲଟ ବିଞ୍ଚନ୍ତି ଧୀର ॥୧॥

ଅଙ୍ଗେ ଲେପନ୍ତି ପଟୀର ଶିରାଣ ପୁଷ୍ପ ଚାମର
କମଳ କୋମଳ ଦଳ କେହୁ ଦିଅନ୍ତି,
ଅନ୍ତେ ବିରହ ଅନଳ ହୋଇଛି ସହୁଁ ପ୍ରବଳ
ପ୍ରବାଳ ଲାଗିଲେ ଅଙ୍ଗେ ଚୂର୍ଣ୍ଣ ହୁଅନ୍ତି ।
ଚନ୍ଦ୍ର ଚନ୍ଦ୍ର ଛୁଟଇ ନାହିଁ
ଚନ୍ଦ୍ରହାସୀ ଚନ୍ଦ୍ରମୁଖ ହୃଦେ ଶନ୍ତାଇ ॥୨॥

ମିଳି ସକଳ ସଙ୍ଘାତ ବୋଲନ୍ତି ମୃଦୁ ଭାଷିତ
କାହିଁ ନୃପ ତନୁଜ ହେଉ ଏସନ,
ଲଭିବୁ ବମାରତନ ନୋହ ତୁ ଅତି ଚମନ
ତୁ ଆମ୍ଭ ପ୍ରାଣପୁତ୍ତଳି ଜୀବ ଜୀବନ
ଏତେ ବୋଲି ଆଶ୍ୱାସ କଲେ
ନେତ୍ର ନୀର ନେତ୍ରେ ଧରି ମୃଦୁ ହସିଲେ ॥୩॥

ଘଡକେ ଚେତନା ପାଇ ଭବନ ଅନ୍ତକୁ ଚାହିଁ
ବୋଲଇ କୁମରରମଣି ବହିଲେ ବାଣୀ,
କାହିଁ ଅଛୁ ଚନ୍ଦ୍ରଗାମୀ କୁରଙ୍ଗ ଖଞ୍ଜନନେତ୍ରୀ
ନିପୁଣର ଅର କେଳି କଳର ଗତି
ଚନ୍ଦ୍ର ଦହେ ଶିବ ପକ୍ଷ
ଚନ୍ଦ୍ରହାସ ଦେଇ ଚନ୍ଦ୍ରହାସରୁ ରକ୍ଷ ॥୪॥

ଅତନୁ ମୋ ତନୁ ତନୁ କରୁଛି ଶୁଣ ସୁତନୁ
ତୋର ବିନୁ ହିମକର ହେଲା କୃଶାନୁ,
କୃଶୋଦରୀ କେଉଁ ଗଲୁ କି ଦୋଷେ ମୋତେ ତେଜିଲୁ
ପ୍ରମାଣ କରାଇଥିଲୁ ଛୁଆଁଇ ତନୁ ।
ମନ ବେନି ହୃଦେ ଲଗାଇ
ହସି ସେ ଚୁମ୍ବନ ଦେଉଁ ପଙ୍କଜ ମୁହିଁ ॥୫॥

ତୁ ମୋର ଜୀବ ଜୀବନ ତୁ ମୋର ଗୁପତ ଧନ
ତୁ ପ୍ରିୟ ହୃଦୟୁଚର ହର୍ଷ ସଦନ,
ତୁ ମୋର ଲୋଚନସ୍ନାନ ତୁ ମୋ ଅମୂଲ୍ୟ ମଣ୍ଡନ
ତୋ ବିନ୍ ଏ ରତ୍ନପୁର ବଣ ସମାନ ।
ତୋ ରୂପେ ମୋ ହୀନ ଜୀବନ
ଅବିରତ ଧ୍ୟାନ ପରେ ହୋଇଲା ଲୀନ ॥୬॥

ଦିନେ ସେ ରେ ଶଶିମୁଖି ଉପବନେ ହେନ ସଖି
ନୂତନ ବସନ୍ତ ଚୂତ ମୁକୁଳ ଦେଖି,
ମଦନେ ହୋଇଲୁ ଦୁଃଖୀ ସନ୍ନିଧେ ମୋତେ ନ ଦେଖି
ଆଳି ଆଶ୍ଳେଷ କରନ୍ତେ ତ୍ରପା ଉପେକ୍ଷି ।
ଏମନ୍ତେ ମୋ ପ୍ରବେଶ ହୁଣ୍ଟିଁ
ଯେତେ ରସ କଲୁ ସେ ମୋ ମନୁ ନ ଯାଇ ॥୭॥

କହୁ ସେ ମୃଦୁ ବଚନ ତୁମ୍ଭେ ମୋର ପଞ୍ଚ ପ୍ରାଣ
ଏବେ ତ ସେହୁ ହୋଇଲା ମିଥ୍ୟା ବଚନ,
ଦାରୁଣ କେବଣ ଜନ କଲା ତନୁ ଭିନ୍ନ ଭିନ୍ନ
ତେତେକ ସୁଖ ତେଜିଲୁ ରାମାରତନ ।
ମୋରେ ନାହିଁ ତୋରେ କୈତବ
କିଞ୍ଚିତ ଶଠେ ନ କଲୁ ସେ ରସ ଭାବ ॥୮॥

ପଲଙ୍କ ଅଙ୍କରେ ଶୋଇ ମୁଖକୁ ମୁଖ ଲଗାଇ
ଇଙ୍ଗିତ ଛିଦ୍ର ପାଇଲେ ବିମୁଖ ହେଉ,
ମୁହିଁ ଉଠି ବେନି ପାଣି ଧରି କହଇ ତରୁଣୀ
ତୋଷେ ପ୍ରାଣପ୍ରିୟେ ତୁ ଯେ ଚୁମ୍ବନ ଦେଉ ।
ଲଭଇଁ ମୁଁ କୋଟିଏ ନିଧି
ଏବେ କାହାକୁ କହିବି ରମଣୀନିଧି ॥୯॥

ଜାଣୁଛିକି ଚନ୍ଦ୍ରମୁଖି   ଚନ୍ଦ୍ର ଦେଖି ହେଲୁ ସୁଖୀ
ହର୍ମ୍ୟ ପ୍ରାଙ୍ଗଣେ ବସିଣ ହସି କହିଲୁ,
ଦେଖ ଏହୁ ଶଶଧର   ବୋଲଇ ଅମୀୟୁ କର
ବିରହୀ ଜୀବନ ହରେ ଅତି ନିଷ୍ଠୁର ।
ଏହୁ ଜାଣ ଅନଙ୍ଗ ମିତ୍ର
କାନ୍ତ କାନ୍ତ ରଜନୀରେ ହରଇ ଚିତ୍ତ ।।୧୦।।

କରବା ବିବିଧ କେଳି   ଆମ୍ଭେ ଦୁହେଁ ବନେ ମିଳି
ଶଶୀ କରେ କର ଧରି ଉଠିଲୁ ବାଳୀ,
କଲୁ ଯେ ବିବିଧ ଲୀଳା   ଚିତ୍ତ ମୋ ହରିଲୁ ବାଳା
ଏବେ କିମ୍ପା ଉପେକ୍ଷିଲୁ ନୃପ ଦୁଲାଳ ।
କାହାକୁ ମୁଁ କରିବି ବେଶ
କେ ମୋ ମନ ହରି ଦେବ ସୁରତି ରସ ।।୧୧।।

ମନ ମନୋଜ ଦହଇ   ମନ୍ଦବହ୍ନି କର ସହି
ମଧୁର ବଚନ କେବେ ନୋହଇ ଆନ,
ମୋତେ ଯେ କହୁ ବଚନ   ଗାଢ଼େ ଦେଇ ଆଲିଙ୍ଗନ
ଫୁଲ କାର୍ମୁକେ ତିଳେକ ଖାନ୍ତି ନ ହେନ ।
ମୁଁ ତୁମ୍ଭର ପଦ୍ମରେ ଦାସୀ
ତୁମ୍ଭେ ମୋ ନେତ୍ର ପ୍ରତିମା ହୃଦୟବାସୀ ।।୧୨।।

ହା ହା ପ୍ରାଣପ୍ରିୟେ ମୋର   ଚନ୍ଦ୍ରମୁଖ ଦେଖା ତୋର
ତାପ ତିମିର ମୋହର ହୋଇଲା ଦୂର,
ଦଣ୍ଡେ ତୋତେ ନ ମୁଞ୍ଚଇ   କଣ୍ଠେ ଯେ ଲମ୍ବାଇଁ ଥାଇଁ
ତୋ ବିନୁ ଦହଇ ଏବେ କୁସୁମଶର ।
କୁଳିଶ ସଦୃଶ ମୋ ହିଆ
ନ ଫାଟି ନିମିଷେ କି କେ ଅଛିରେ ପ୍ରିୟା ।।୧୩।।

ଭୁଜେ ଭିଡ଼ାଭିଡ଼ ହୋଇ   ପଲଙ୍କେ ଯେ ଥାଉ ଶୋଇ
ଦୀର୍ଘ ହେମନ୍ତ ଯାମିନୀ ଲଷିତେ ନେଇ,
ତନୁର ବିଚ୍ଛେଦ ପାଇ   ବିମୁଖ ଯେ ନୋହୁ କୁହି
ମୋର ଉରସେ ମଞ୍ଜିଥାଉ ପଙ୍କଜ ମୁହିଁ ।
ସେ ସୁଖ କେମନ୍ତେ ତେଜିଲୁ
ବହୁ ବିଶୁ ପ୍ରିୟା ଏଡ଼େ ନିଷ୍ଠୁର ହେଲୁ ।।୧୪।।

ତୋର ଯେତ୍ତୁ ଲୀଳାମାନ      ଶମ୍ଭଲେ ଅଥିର ପ୍ରାଣ
ଅତନୁ ମୋ ତନୁଶରେ କରେ ନିଧନ,
ସ୍ୱର୍ଣ୍ଣବର୍ଣ୍ଣୀ ସୁଧାହାସୀ      ମାର ଧୀବର ବଡ଼ଶୀ
ମନ ମୀନ ହୃଦଜଳୁ ନେଉ ଆକର୍ଷି ।
ଦେଖା ବାରେ ସୁଖ ଶ୍ରୀମୁଖ
ମୋ ନେତ୍ର ଚକୋର ବେନି ଲଭନ୍ତୁ ସୁଖ ।।୧୫।।

ପାଶୁ କ୍ଷଣେ ନୋହୁ ଦୂର      ଏବେ ତ ହେଲୁ ଅନ୍ତର
ନିର୍ଦ୍ଦୋଷ ଜାଣିଲୁ 'ମୋର ପ୍ରାଣ ଈଶ୍ୱର',
ନେଲା ଗନ୍ଧର୍ବ ପା-ର      ତୋ ମୁଖ କରି ବଧୂର
ମୋତେ ଦେଖାଇଲା ରତ୍ନକୂଟ ଶିଖର ।
ମୁନିବର ସଙ୍ଗ ଲଭିଲି
ତାଙ୍କ କୃପାବଶୁ ନିଜ ପୁର ଆଇଲି ।।୧୬।।

ତୋର ସଙ୍ଗ ଇଚ୍ଛା କରି      ସତ୍ୱରେ ଆଇଲି ପୁଷି
ଯୁଗ ଯୁଗ ସମ ଭୋଗ ହେବା ନିବସି,
ତୁ ମୋର ଜୀବ ଜୀବନ      କାହିଁକୁ ଦେଖା ବଦନ
କି ଦୋଷକୁ କଲୁ ତାପ ବର ସୁନ୍ଦରୀ ।
ଶୁଣ ଆଗୋ ପଙ୍କଜମୁଖି
ପରିଜନ ଦୋଷ ମନେ ନ ଘେନ ସଖି ।।୧୭।।

ଏସନ ବୋଲି କୁମର      ବାତୁଳ ଚିତ୍ତ ଅଥିର
ଖୋଜଇ ଉଦ୍ୟାନପୁର ହର୍ମ୍ୟ ଭୁବନ,
କ୍ରୀଡ଼ା ସରୋବର ତୀର      ନ ଦେଖିଲା ରାମାବର
ଅବନୀରେ ପଡ଼ି ପଡ଼ି କରେ ରୋଦନ ।
ଆହା ବିଧି କଲୁ ଏସନ
କେଣେ ମୋର ହରି ନେଲୁ ରାମାରତନ ।।୧୮।।

ପୁଣି ଶୁଣି ପିକବାଣୀ      ଉଠିଲା କୁମରମଣି
ଚିତ୍ତରେ ମଣିଲା କି ତା ପ୍ରିୟାର ବାଣୀ,
ଚୂତ ତରୁ କୋଳ କରି      ବୋଲଇ ଶୁଣ ଚତୁରୀ
ମୋତେ ଭଣ୍ଡି ଯାଇଥିଲୁ ମୃଗଲୋଚନୀ ।
ଘନ ଘନ ଚୁମ୍ବନ ଦେଲା
ସଧୀର ହୃଦୟେ ମୂର୍ଚ୍ଛି ତଳ ପଡ଼ିଲା ।।୧୯।।

ଏସନ ଦେଖି ତାହାର          ଦୁଃଖୀ ଅମାତ୍ୟ କୁମର
କରୁଣା କରନ୍ତି ବେଢ଼ି ସଖା ନିକର,
କହନ୍ତି ମଧୁର କରି          ଲଭିବ ସେହୁ ସୁନ୍ଦରୀ
ପ୍ରସନ୍ନ କରିବା ଯୁକ୍ତ ଦେବ ଶଙ୍କର ।
ଶୁଣି ବୀର କହେ ବଚନ
କେଣେ ଗଲା ସେହୁ ମୋର ରମାରତନ ।।୨୦।।

ଶୁଣି ହରିବ ନନ୍ଦନ          କହେ ମଧୁର ବଚନ
ଏକମନେ ଶୁଣ ନରନାଥ ନନ୍ଦନ,
ତୁମ୍ଭଙ୍କୁ ନ ଦେଖି ତାତ          ଲଭିଲେ ତାପ ବହୁତ
ବଧୂ ଘେନି ପୁରେ ନୃପ କଲେ ଗମନ ।
ସର୍ବ୍ବଦିଗେ ଚର ପେଷିଲେ
ଅତି କଷ୍ଟେ ନରାଧିପ ଜୀବ ରଖିଲେ ।।୨୧।।

ଏମନ୍ତେ କେତେ ହେଁ ଦିନ          ହୁଅନ୍ତେ ସେ ଅବସନ୍ନ
ଶୁଣିମା ହେ ନୃପସୁତ ଏକ ବିଧାନ,
ଦିବସ ହୋଇଲା ଶେଷ          ରଜନୀ ହେଲା ପ୍ରବେଶ
କେହୁ ହରିନେଲା ତୁମ୍ଭ ରମାରତନ ।
ଶୁଣି ବୀର ମୋହେ ପଡ଼ିଲା
ଚେତ ଉଠି କି ନର କନ୍ଦର ଚଳିଲା ।।୨୨।।

ମନେ ନିଶ୍ଚଳେ ଚିନ୍ତିଲା          ପୁଷ୍ପଦନ୍ତ ଏହା କଲା
ଯାହା କହିଥିଲେ ମୋତେ ବ୍ରହ୍ମାନନ୍ଦନ,
ସେ କଥା କି ହେବ ଆନ          ଯେସନ ବିଧି ଲେଖନ
କମ୍ପାଇ କରିବ ମୋର ତନୁ ନିଧନ ।
ତାଙ୍କ ବୋଲ ମିଥ୍ୟା ନ କରି
ବୋଲିଛନ୍ତି ଲଭିବୁ ତୁ ବର ସୁନ୍ଦରୀ ।।୨୩।।

ଯିବି ମୁଁ ସେ ହେତୁ ଧରି          ଦେଖିବି ଅମରେଶ୍ୱର
ନମ୍ରଶିର ହୋଇ ତାଙ୍କୁ ବର ମାଗିବି,
ତୋଷ ହୋଇ ସୁନାସୀର          ଦେବେ ସେ ସୁନ୍ଦରୀବର
ମୁନିବର ଆଜ୍ଞା ପାଳି ଇଷ୍ଟ ଲଭିବି ।
ସେ ମୋ ବାଳା ହୃଦୟ ହାର
ତା ବିନୁ ଜଗତ ମୋତେ କାରା ଆକାର ।।୨୪।।

ଏମନ୍ତ ଚିନ୍ତଣ ବୀର    ଉଠିଲା ତହୁଁ ସତ୍ୱର
କନ୍ଦର କଥିତ ପଥ ସୁମରି ଗଲା,
ଅନେକ ଦୁର୍ଗମ ଦ୍ୱାର    ଅଛନ୍ତି ଗିରି କନ୍ଦର
ଗମି ରତ୍ନକୂଟ ଅନ୍ତେ ପ୍ରବେଶ ହେଲା ।
ଦାନମାନ ନ ସରେ ବସି
ଚିନ୍ତଇଁ ବ୍ରହ୍ମ ତନୁଜ ମନ ନବେଶି ।।୨୫।।

ଦେଖଇ ଗିରି ଶୋଭନ    ନୟନ ମନରଞ୍ଜନ
ବିଚିତ୍ର ମୃଗପତଙ୍ଗ କ୍ରୀଡ଼ନ୍ତି ତହିଁ,
ଧୀରେ ବହେ ମନ୍ଦବାତ    ହରଇ ସକଳ ଚିତ୍ତ
ମଧ୍ୟରେ ହୋଇଛି ବନଶ୍ରେଣୀ ମଣ୍ଡିତ ।
ମଧୁଋତୁ ହୁଏ ପ୍ରକାଶ
ମଧୁକର କୋଳାହଳ କରେ ବିଶେଷ ।।୨୬।।

ଡାକନ୍ତି କୋକିଳକୁଳ    ଚୂତ ମଧୁପାନେ ଭୋଳ
ମତ୍ତେ କରନ୍ତି କପୋତେ ବିଚିତ୍ର ଧ୍ୱନି,
ଏସନ ଦେଖି କୁମର    ଅଙ୍ଗ ହୁଏ ଥରହର
ଏସନ ସମୟେ ତହିଁ ପ୍ରବେଶ ମୁନି ।
ଦେଖି ବୀର ହର୍ଷିତ ହୋଇ
ପ୍ରଣାମ କରିଣ ଶିରେ କର ଯୋଡ଼ଇ ।।୨୭।।

ଚିର ବିରହିଣୀ ବଧୂ    ଦେଖି କି ପ୍ରିୟା ମୁଖେନ୍ଦୁ
ମହାନିଧି ଲଭିଲା କି ଦୁର୍ଗତ ଜନ,
ତେସନ ଆନନ୍ଦ ଲଭି    ହୋଇଲା ନୃପ ନନ୍ଦନ
ଧାତା ସୁତ ତୋଷ ଚିତ୍ତେ କହେ ବଚନ ।
ଯେନ ସୁରି କୁସୁମ ସ୍ନେହ
ଶଙ୍କକୁ ଦେଖିବୁ ମୋହ ନୋହିବ ଯହୁଁ ।।୨୮।।

ଏସନ ପ୍ରସାଦ ଧରି    କୁମରେ ସେ ଦଣ୍ଡଧାରୀ
ତକ୍ଷଣେ ଲୋଚନ ପଥ ଅତିକ୍ରମିଲେ,
ନୃପ ସୁତ ଚିତ୍ତ ତୋଷି    ଅନ୍ତରୀକ୍ଷ ଅନ୍ତେ ମିଶି
ଦୂରୁ ସୁରବର ଆଗମନ ଦେଖିଲେ ।
ମୁନି ବିନୁ କୁମରବର
କ୍ଷଣେ ଉତ୍କଣ୍ଠିତ ଚିତ୍ତ ଅତି ଅଥିର ।।୨୯।।

ଶେଷ ତ୍ରୟୋବିଂଶ ଛାନ୍ଦ ଶୁଣି ରସିକ ଆନନ୍ଦ
ଅନଙ୍ଗରେଖା ଚରିତ୍ର ବିଚିତ୍ର ବନ୍ଧ,
ସେବଣ ପରମାନନ୍ଦ ଚିତ୍ତ ମୋହର ଆନନ୍ଦ
କୃପାକର ପ୍ରଭୁ ମୋତେ ଆନନ୍ଦକନ୍ଦ ।
ନୀଳାଦ୍ରିନାୟକ ଚରଣ
ନୃପ ଧନଞ୍ଜୟ ଭଞ୍ଜ ପଶେ ଶରଣ ।।୩୦।।

●

# ଚତୁର୍ବିଂଶ ଛାନ୍ଦ

## ରାଗ—ନଳିନୀ ଗୌଡ଼ା

(ତାଳ—ବର୍ତ୍ତମାନ)

ଏମନ୍ତରେ ଏ ମତରେ ସେ ଭୂଧର ଶିରେ
ଏକାନ୍ତରେ ଏକାନ୍ତରେ ସୁମରଣା କରେ ସେ ।୧।

ସୁମନା ସୁମନାବୃନ୍ଦ ଆକାଶରେ ବୃଷ୍ଟି
ସେ ଆସାରେ ସେ ଆଶାରେ ଥିରଚିତ୍ତ ହୋଇ ସେ ।୨।

ସୁରବର ସୁରବର ଆଗମ ଦେଖିଲା
ଚିତ୍ର ନେତ୍ର ଚିତ୍ର ନେତ୍ର ଲକ୍ଷି ତୋଷ ହେଲା ସେ ।୩।

ଅମ୍ବରେ ଅମ୍ବରେ ରୁରୁଧାମା ସୁରରମା
ବିମାନ ବିମାନ ଗଣେ ଅତି ଅଭିରାମା ସେ ।୪।

ଘନ ଘନ ସ୍ୱନ ସମ ଦୁନ୍ଦୁଭିର ଘୋଷେ
ଗନ୍ଧର୍ବ ଗନ୍ଧର୍ବ ରବ ଶୁଭେ ଚଉପାଶେ ସେ ।୫।

ଗୋତ୍ର ଗୋତ୍ରବରଶିରେ ହୋଇଲେ ପ୍ରବେଶ
ବନ ବନ ରାଜି ରୁଚି ଦେଖିଲେ ବିଶେଷ ସେ ।୬।

ସୁରଭି ସୁରଭି ପୁଷ୍ପ ପ୍ରଥମେ ଦର୍ଶିଲା
ରସାଳ ରସାଳ ସେ ମାନସ ବନ୍ଦୀ କଲା ଯେ ।୭।

ଅଶୋକ ଅଶୋକ ଜନ ମନମୋଦ ହେଲା
ଗଣିକାଗଣ ଗଣିକା ଗଣରେ ରସିଲା ଯେ ।୮।

ମଧୁପ ମଧୁପରାଗେ ହୋଇଛି ଶୋଭିତ
ପ୍ରବାଳ ପ୍ରବାଳ ଦଳେ ଲତା ଅରୁଣିତ ଯେ ।୯।

ଚୂତ ଚୂତ ବକୁଳ କୋକଳ ଚଞ୍ଚୁ ଲାଗି
ମାର ମାରଣେ ସନ୍ଧେ ତା ମଣିଲା ବିଯୋଗୀ ଯେ ।୧୦।

ବିପିନ ବିପିନ ଫୁଲ ବାସ ପୁଷ୍ପେ ରସି
ପର ପରଭୃତ ରୁତ କରେ ବୃକ୍ଷେ ବସି ଯେ ।୧୧।

ବନପ୍ରିୟ ବନପ୍ରିୟ ଋତୁବର ରହିଁ
କାମେ କାମେ ସକଳର ଚିତ୍ତ ହେଲା ମୋହି ଯେ ।୧୨।

କେହୁ କହେ ସହି ଦେଖ ପୁନ୍ନାଗ ପୁନ୍ନାଗ
ଏଥେ କେତେ ଚିତ୍ତେ ତୋର ଅନୁରାଗ ରାଗ ଗୋ ।୧୩।

ଏ ଯେ ଧାଜେ ଫୁଲତନୁ ଅଭିରାମା ରାମା
ଏଣେ କି ନୋହିବୁ ସତେ ସକାମା ସକାମା ଗୋ ।୧୪।

କରଜଲେ କରଜଲେ ଗତି ଶାନ୍ତିକର
ମାନସ ମାନସରସ ପ୍ରିୟେ ତୁ ନ ଧର ଗୋ ।୧୫।

ଏ ତନୁ ରୁଚି ଅତନୁ ରୁଚି ପ୍ରିୟମ୍ବଦ
ବଦନ ତୋଳି ବଦ ନ ତୋଳି କର ଖେଦ ଗୋ ।୧୬।

ଦେଖ ଏ ରସାଳ ସାଳ କୁସୁମ ଗନ୍ଧରେ
ଧୀରେ ପୂରିତ ପବନ ଜନ ମାନସରେ ଗୋ ।୧୭।

ଏ ଯେ ତପ ତପନର କରଣେ ଅଖିନ୍ନ
କ୍ଷୀଣ ବିରହୀ ଜନର ନ ରଖେ ଜୀବନ ଗୋ ।୧୮।

ଏଥେ ସର୍ବ ପଥେ ଦାବେ (?) ରାବେ ସୁ ×
ଏ × × × ରଙ୍ଗ ଯେ ।୧୯।

ନର ନରନ୍ତରେ ଏଥେ ଇଚ୍ଛଇ ଶରୀର
ଚନ୍ଦ୍ର ଚନ୍ଦ୍ର ରତ ସୁଖସାର ଘନସାର ଗୋ ।୨୦।

ରନ୍ତର ତିଳକ ସୁଖ ଜନ ମନ ରଞ୍ଜେ
ରବର ବରମ କାମେ ହୃଦମୋଦ ଭଜେ ଗୋ ।୨୧।

ରନ୍ତିପନ୍ତ ମଦେ କେହୁ କହେ ଆଳ ଆଳ
ନଭେ ଶୋଭେ ଦେଖ ସାମଧାମ କାମ କାଳ ଯେ ।୨୨।

କଦମ୍ବ କଦମ୍ବ ପରେ ମତ୍ତଭୃଙ୍ଗ ସଙ୍ଗ
ମଧୁର ମଧୁର ଲୋଭେ କରେ ଭୃଙ୍ଗ ରଙ୍ଗ ଯେ ।୨୩।

ଶିଳୀମୁଖ ଶିଳୀମୁଖ ସମ ପ୍ରାଣସହ
ମନ ମନସିଜ ମନ ଏଣେଟି ଦହଇ ଗୋ ।୨୪।

କାନ୍ତ କାନ୍ତ ମୁଖ ଦେଖ ବୋଲେ କଉଁ ସଖୀ
ମଦନ ମଦ-ନଦୀରୁ ଉଦ୍ଧର ଏ ଦୁଃଖୀ ଗୋ ।୨୫।

ଏକ ଏ କଦମ୍ବେ ତାର ଶୋଭା କର କର
ଘନ ଘନ ତମେ ସଖି ଅଭିସାର ସାର ଗୋ ।୨୬।

ଶରଦେ ଶର ଦେଖି ତୋ ନୋହେ କ ଆନନ୍ଦ
ତାର ତାରକାରେ ଗଗନରେ ପୂର୍ଣ୍ଣଚନ୍ଦ୍ର ଗୋ ।୨୭।

ଭୃଙ୍ଗ ଭୃଙ୍ଗ ରଙ୍ଗ ସଙ୍ଗୀ ସାରସ ରସରେ
ତରଳ ମରାଳ ଦେଖ ସୁରତରେ ଖରେ ଗୋ ।୨୮।

ହିମ ଆଗମନେ ମନେ ପ୍ରିୟ ସହଚରି
ରଶତ ତୋର ସେ ଭାବେ ଭାବେ ସୁଖଧାରା ଯେ ।୨୯।

ଏ ହିମାନୀ ଏହି ମାନୀ ଏଥେ ତେଜ ରୋଷ
ସରସ ରତରେ ଶିଶିରରେ ଶତ୍ରୁ ତୋଷ ଯେ ।୩୦।

ଅତନୁ ସୁଖୀରମଣ କି ତୋ ସୁରନ୍ତରେ
ଅତନୁ ସୁଖୀ ରମଣ କ ତୋଷ ରନ୍ତରେ ଗୋ ।୩୧।

ସେ ଅତ କପଟୀ ସଖୀ ନବ ସୁରନ୍ତରେ
ଜାଣଇଁ ମୁଁ ତାଙ୍କୁ ଏଥେ ନବ ସୁରନ୍ତରେ ।୩୨।

ଏହୁ ନୂତନ ନତନୁ ସରୂପ ପୁ ରୁଷ
ସରସ ସେ ତୋର ତହିଁ ସାର ହିତତୋଷ ଗୋ ।୩୩।

ବିଳାସିନ ବିଳାସିନ ନକଟେ କେ ରହେ
ଭାବନା ଭାବନା ରତ କାନ୍ତଙ୍କୁ କେ କହେ ଯେ ।୩୪।

ଧବ ନଦ ଅଙ୍ଗ ସଙ୍ଗ ଭୃଙ୍ଗ ରଙ୍ଗ ଆଶେ
ନିକୁଞ୍ଜ ପୁଞ୍ଜରେ କେଉଁ କଞ୍ଜନେତ୍ରୀ ପଶେ ଗୋ ।୩୫।

କେହୁ ବହୁ ବାମା କାମା କଳିତ ହୃଦୟା
ଦୟା କଲ ସେ ଏକାନ୍ତେ କାନ୍ତେ ସୁବିନୟା ଯେ ।୩୬।

କେବଣ ତରୁଣ ରସବନ୍ତ ତୋଷ ଆଶେ
ପଟୁ ଚାଟୁ ବଚନ ରଚନ କରିବ ସେ ଯେ ।୩୭।

କୁସୁମ କୁସୁମ ଯେହ୍ନ କ × ×
× × ରମଣୀ ମଣିଧର ଶିରେ ଗୋ ।୩୮।

ଦେଖ ପ୍ରିୟେ ବନତର ଏ ତମାଳମାଳ
ଏ ପାଶେ କୁସୁମାକୁଳ ସୁବିଶାଳ ଶାଳ ଗୋ ।୩୯।

ଏ ଚୂତ ଦୁଃସହ ସହକାର ବନରୁଚି
ରୁଚିର ପୃଷ୍ଠରେ ପରେ ପିକ ଅଛି ଲୁଚି ଯେ ।୪୦।

ଏ ଯେ ନବ ନବ ଛବି ବିଛନ୍ନ କରଇ
ଚରଚର ଲୀଳା ଲୋଳ ଲାଳସା ବଢ଼ାଇ ଗୋ ।୪୧।

ଅଭିରାମ ରାମାବଳୀ ଦେଖି ସର୍ବ ବାଳୀ
ଦୁର୍ଲଭ ବଲ୍ଲଭ ଲୋଭେ ଇଚ୍ଛେ ଜଳକେଳି ଯେ ।୪୨।

ତଟିନୀ ତଟନୀରେ କେ ମଣ୍ଡିଲେ ଅବଳା
ଭୃଙ୍ଗ ଭଙ୍ଗ ରଙ୍ଗରେ କେ ହୋଇଲେ ତରଳା ଯେ ।୪୩।

କେସରେ କେସରେ ମୃଣାଳରେ ଧୃତି ଖେଳା
ଧାରି ସାରସ କଳିକା ଯେହ୍ନ କରେ ଲୀଳା ସେ ।୪୪।

କେଣେ ବିଗତ ବିଳାସ ହେଲ କୋକନଦେ
କେଣେ ଭୃଙ୍ଗ ମଧୁସଙ୍ଗ ଭୃଙ୍ଗ କୋକନଦ ଯେ ।୪୫।

କୁସୁମ କୁସୁମ ଭରେ ପ୍ରିୟା କରୁ ନେଲ
ସେ ବାମା ସେବା ମାନସେ କେ ଶିରେ ଧଇଲ ଯେ ।୪୬।

କେ ପ୍ରିୟାକୁ ମାରେ କରେ ଯେହ୍ନ ଗନ୍ଧସାର
କାନ୍ତ କାନ୍ତା କୁଚେ ସିଞ୍ଚେ ପିଚକାରି ମାରି ଯେ ।୪୭।

ଘନ ଜଘନେ ତା ଚୀନ ବସନ ନଳୀନ
ହେମ ରାଜି ରାଜି ବିରାଜିତ ନିଜ ସ୍ଥାନ ଯେ ।୪୮।

ସାରସ ବରଷ ଶତ୍ରେ ପ୍ରଥମେ ଉଚ୍ଛନ୍ନ
ସାରସ ସମ୍ପଦ ତହିଁ ହୋଇଲା ନିଧନ ଯେ ।୪୯।

ପ୍ରିୟା ପରିହାସେ ହସେ ଅମର ସୁନ୍ଦରୀ
ବାହାର ହେଲେ ସକଳେ ଜଳକେଳି ସାରି ଯେ ।୫୦।

ଘୃଷ୍ଟ ଉଚ୍ଚ କୁଚ କୁମ୍ଭ ପରେ କର ଦେଇ
କାନ୍ତକୁ ପୃଷ୍ଟ କରି କେ ନମ୍ରମୁଖେ ରହି ଯେ ।୫୧।

କେ ଜଘନ ଦରଶନ ହୁଅନ୍ତେ ଲଜ୍ଜିତ
ପ୍ରିୟ ସହଚରୀବୃନ୍ଦେ ପଶିଲା ତୁରିତ ଯେ ।୫୨।

କେହୁ ସଖୀ କରୁ ବାସ ନେଲା ଅଯାଗରେ
ବେନିବାଳା ଏକଚେଲ ପିନ୍ଧନ୍ତି ଭ୍ରମରେ ଯେ ।୫୩।

ସେ ନିଖିଳ ତନୁ ତନୁ ମାର୍ଜନା ସାରିଲେ
ବାସ ବାସନ୍ତ କୁସୁମ ଗନ୍ଧେ ଶୋଭା କଲେ ଯେ ।୫୪।

ନିଜ ବପୁ ଲାବଣ୍ୟେ ସେ ଅତି ଅଭିରାମା
ଶୁଚି ରୁଚି ମଣି ଗଣେ ହେଲେ କାମ ଧାମା ଯେ ।୫୫।

ଏସନ ଗଗନେ ରବି ନବ ହିଁ ବନ୍ଦନ
ଅସ୍ତ ମହୀଧର ଶିର ଜବାର ସମାନ ଯେ ।୫୬।

କ୍ଷୀଣ ହିନମଣି ମନେ ବସି ମାରମଣି
ନତ ମୁଖୀ ଶତ୍ରେ ଦୁଃଖୀ ଚିର ବିରହିଣୀ ଯେ ।୫୭।

ସୁର ସୁର ବାଳୀ ନେତ୍ରାବଳି ବଳି ଗଲେ
ହରି ହରିତ ବଦନ ଶଶୀ ଶୋଭା କଲେ ଯେ ।୫୮।

ଆକାଶେ ବିକାଶେ ପୂର୍ଣ୍ଣ ସୁଧାକର କର
ଗୃହିଁ ଗୃହିଁ ଚିର ବିରହୀ ଚିତ୍ତ କାତର ଯେ ।୫୯।

ବିଧୁ ଦରଶନେ ବଧୂମାନେ ମଧୁପାନେ
ଶଚୀପତି ଶଚୀ ବରେ ହେଲେ ଲୋଳ ମନେ ଯେ ।୬୦।

ବହୁବିଧ ସିନ୍ଧୁ ରସେ ରସେ ମତ୍ତ ଚିତ୍ତ
କେହୁ ରତି ସ୍ୱରରେ ଗାଇଲେ ରମ୍ୟଗୀତ ଯେ ।୬୧।

ସହଜେ ସେ କମନୀୟ ରୂପ ନବବାଳା
ସ୍ଖଳିତ ଗତି ବନ୍ଧନ କଲେ ବହୁ ଲୀଳା ଯେ ।୬୨।

ପ୍ରିୟ ମୁଖେ ସୁଖେ ଏକ ଚଷକ ନବେଶି
କଉ ବାଳା ହାଳା ସେବା କରେ କୋଳେ ବସି ଯେ ।୬୩।

ସୁରସୁରଙ୍ଗନା ମୁଖଁ ଙ୍କେ ବର ତରୁଣ
ପାନ କରେ କରେ ତାର ଚିବୁକ ଧରଣ ଯେ ।୬୪।

କେ ବୋଲେ ସୁନ୍ଦର ଦର ତେଜ ଭଜ ମୋରେ
-ତା ବିନୁ ମୋ ଧୃତ ରତ୍ତପତ୍ତ ଅନ୍ତ ହରେ ଯେ ।୬୫।

କେବଣ ପ୍ରମଦା ମଦାଳସେ କରେ ସଖି
ସହଚର ବର ବିନୁ ହେଲିଟି ମୁଁ ଦୁଃଖୀ ଗୋ ।୬୬।

ନର୍ଦ୍ଦୟ ହୃଦୟ ସେ ମୋ ଗ୍ରଙ୍ଗିଲ ସଙ୍କେତ
ପୁଣି ପୁଣି ସେ ରସିକେ ବଳଇ ମୋ ଚିତ୍ତ ଗୋ ।୬୭।

କହେ କଉଁ ଯୁବା ଦୁଷ୍ଟ ଯେନ ମୋ ବନନ୍ତ
ରତ୍ତ ଖଣ୍ଡରେ ଚକ୍ଷୁସି ଆନ ସେ ଯୁବନ୍ତ ଗୋ ।୬୮।

କେ ବୋଲେ ରେ ବାଳା ତୁ ମୋ ଗଳା ରତ୍ନମାଳା
ରହ ରହ ସଖି ତୁ ମୋ କୋଳେ କର ଲୀଳା ଗୋ ।୬୯।

ଏମନ୍ତେ ଦୟିତ ଚିତ୍ତ ହାସ୍ୟ ନାରୀଗଣ
ବାସବ ସେବାରେ ଗଲେ ଆସବ ତେଜଣ ଯେ ।୭୦।

ରଙ୍ଗଭୂମି ସଙ୍ଗମାନେ ଅଳଂକୃତ କଲେ
ସଖୀଚନ୍ଦ୍ର ଯେନ ଶଙ୍ଖ ପଦେ ନତ ହେଲେ ଯେ ।୭୧।

ଦେଶ ଲଭି ସୁଲଳିତ ଲଳନା ସକଳ
ନୃତ୍ୟ ଗୀତ ରସେ ଅନ୍ତ ହୋଇଲେ ତରଳ ଯେ ।୭୨।

ଲଳିତେ ଲଳିତ ରାଗେ ସରାଗେ ବହିଲେ
ଆରମ୍ଭରେ ଯୁବା ଦମ୍ଭ ହୃଦୟ ଭେଦିଲେ ଯେ ।୭୩।

ବେଣୁ ବୀଣା ମର୍ଦ୍ଦଳ କଂସାଳ ତାଳ ରବେ
ଏକ ଲୟ ନୃତ୍ୟ ହୁଏ ଗୀତ ରସ ଭାବେ ଯେ ।୭୪।

ରମ୍ଭା ରମ୍ଭା ସମା ରାମା ତିଳୋତ୍ତମା ବାମା
ହରିଣି ହରିଣୀ ବିଲୋଚନା ସୁମଧ୍ୟମା ଯେ ।୭୫।

ସୁବେଶୀ ସୁବେଶୀ ମଦାଳସୀ ମଦାଳସୀ
ଏଣେ କଲ ଉରୁ ବଶୀ ସେ ଉର୍ବଶି ବସି ଯେ ।୭୬।

ସେ ଅମର ନଗର ନାଗରୀ ନାରୀକୁଳ
ନୃପତି ନନ୍ଦନ ମନ ବନ୍ଧିଲେ ତରଳ ଯେ ।୭୭।

ଉଲ୍ଲାସ ଲାସ୍ୟ ଅନ୍ତରେ ସେ କୁମରବର
ପ୍ରବେଶ ସୁବେଶ ବୀଣା ବାଣୀରେ ସୁଧୀର ଯେ ।୭୮।

ଆଶେ ଆସାବରୀ ରାଗ ସଙ୍ଗେ ବଜାଇଲ
ପଞ୍ଚମ ସ୍ୱର ଆଳାପେ ପିକ ମୂକ କଲ ଯେ ।୭୯।

ଶୁଣି ବୃନ୍ଦାରକ ବୃନ୍ଦ ଭୁଲେ ସ୍ୱରେ ସ୍ୱର
ତୋଷ ମାନସରେ ଆଜ୍ଞା ଦେଲେ ଧେନ ବର ହେ ।୮୦।

ରସେ ବଶେ ସୁଧା କର୍ଣ୍ଣପୁଟେ କରି ପାନ
ମୋଦମନେ ମଗ୍ନ ମନ କୁସୁମ କେତନ ଯେ ।୮୧।

ହରଷ ବାଷ୍ପ ତା କଣ୍ଠେ ବଚନ ରୁନ୍ଧିଲ
ପ୍ରିୟା ମୁଖଚନ୍ଦ୍ରେ ନେତ୍ର ଚକୋର ରମିଲ ଯେ ।୮୨।

ଏସନ ମନ ତା ଜାଣି ସେ ବର ରମଣୀ
ଏ ତନୁରେ ଏ ତନୁରେ ଶୁଚି ଲଭ ଭଣି ଯେ ।୮୩।

ପାର୍ଥିବ ଶରୀର ତେଜ ଭୋଗ ଅନ୍ତେ ଯିବୁ
ଏ ମୋର ପ୍ରସାଦେ ଦେବ ଲୋକରେ ରହିବୁ ହେ ।୮୪।

ଏତେ ବୋଲି ମହା ବାସେ ହେଲେ ତିରୋହିତ
ନିଜପୁରେ କଲ ଯୁବା କାନ୍ତାରେ ସହିତ ଯେ ।୮୫।

ନୃପ ଧନଞ୍ଜୟ ଚିତ୍ତ ହରଷ ହରଷ
ନିରନ୍ତରେ ଧରେ ମାଳ ଗିରୀଶ ଗିରୀଶ ଯେ ।୮୬।

# ପଞ୍ଚବିଂଶ ଛାନ୍ଦ

## ରାଗ—ଶଙ୍କରାଭରଣ

(ତାଳ—ସରିମାନ)

(ବନ୍ଧୁ ଚଉତିଶା ବାଣୀରେ ଗାଇବ)

ଏମନ୍ତରେ ନିଜପୁରେ ରସିକ ରମଣୀ
ନମିଷେ ମଣିଲେ ରସେ ବାସର ରଜନୀ ।
କାନ୍ତ ଅଲକ୍ଷିତ ହାସ
ନାହିଁ ବରରମା ହେଲ ସମାନ ମାନସ ॥୧॥

କ୍ରୋଧ ଭରେ ଅରୁଣିତ ନେତ୍ର ବେନି ତାର
ଅଧର କମ୍ପଇ ବାଣୀ ନୁହଇ ବାହାର ।
ବଧୂ ଶୁଣି କୋପଚିନ୍ତ
ଦେଖି ଯୁବାମଣି ଗୃହ୍ଟ କରଇ ଭୁରିତ ॥୨॥

ବେନି ପାଣି ଯୋଡ଼ି ତାରେ କହଇ ବଚନ
କ୍ଷମା ଗୋ ମୋତେ ବ ଖ ହେଉ ପ୍ରାଣ ଧନରେ ।
ବନ୍ଧୁ କର ତା ପ୍ରକାଶ
ଶୁଣରେ ସୁନ୍ଦରି ମୁଁ ତୋହର ନିଜ ଦାସ ॥୩॥

ଅନୁଗତ ଜନେ ସଖି ନୋହ ଗୋ ବିମନ
ଦୋଷକୁ ଉଚିତ ଦଣ୍ଡ କରସି ବିଧାନରେ ।
ବନ୍ଧୁ ଅତି କଷ୍ଟେ ମୁହିଁ
ଭାବି ତୋର ରୂପ ସତ ରଖିଛୁ ଏ ଦେହୀ ॥୪॥

ତୋର ପାଶୁ ହରି ମୋତେ ନେଲା ଯେ ଦଇବ
ମୋର ଦୋଷ ନାହିଁ ପ୍ରିୟା ମନେ ତୋରେ ଭାବରେ ।
ବନ୍ଧୁ ଦୁଃଖେ ନେଲି ଦିନ
ମୃଗ ମିଥୁନ ଦେଖିଲେ ହାରଇ ମୁଁ ଜ୍ଞାନ ॥୫॥

ତୋର ରତି ଲୀଳା ମାନ ମନେ ଗୁଣୁଥାଇ
ପ୍ରତିନିଶି ଯମ ସମ ପବନେ ତାପଇ ରେ ।
ବନ୍ଧୁ ଯେନ ମୋ ବିନତି
ଶରଣାଗତେ ଉଚିତ ନୋହେଁ ରୋଷମତି ॥୬॥

ସୁରତରେ ମୋତେ ଯେତେ ହସି ବୋଲୁଥାଉ
ସେ କଥା କି ଚନ୍ଦ୍ରମୁଖି ଏବେ ନ ଚେତୋଉ ରେ ।
ବନ୍ଧୁ ନୋହୁ ତୁ ନିର୍ଦ୍ଦୟ
ମୋ ବିରହେ ହେଉ ତୁ ଯେ ସଦୟ ହୃଦୟ ।।୭।।

ବେଣିଭୁଜ ପାଶେ ମୋତେ କର କିଁ ବନ୍ଧନ
ସ୍ତନ ଦ୍ୱିରଦ କୁମ୍ଭରେ କର ଗୋ ତାଡ଼ନ ରେ ।
ବନ୍ଧୁ କରଜ କୁନ୍ତରେ
କ୍ଷତ କର ଅସ୍ଥି କଟୀ କଣ୍ଠ ସନ୍ଧିରେ ।।୮।।

ପ୍ରେମ ରଜ୍ଜୁ ଲତାରେ ମୋ ମନ ବନ୍ଦୀକର
ମଦନ ମହର କାରାପୁରେ ଦୃଷ୍ଟି ଧର ରେ ।
ବନ୍ଧୁ ତୁ ମୋ ହୃଦଦ୍ୱାରୀ
ତୋ ବିନୁ ଏ ରତ୍ନପୁର ମଣୁଥିଲି କାରା ।।୯।।

ମଧୁକାଳ ଅନ୍ତ କଷ୍ଟେ ବଞ୍ଚିଲି ମିତଣି
ନିରନ୍ତରେ ତୋର ଭାବହାବ ହୃଦେ ଗୁଣି ରେ
ବନ୍ଧୁ କେତେ ଦିନ ନେଲି
ଦୁଃସହ ବରଷା ଋତୁ ମନ୍ଦିରେ ଦେଖିଲି ।।୧୦।।

ତୋ ପାଶେ ମୁଁ ଯାହା ଏକ ପଲକ୍କ ମଣଇଁ
ସେ ମୋର ନୟନ ମନ ଆନନ୍ଦ ବଢ଼ାଇ ରେ ।
ବନ୍ଧୁ ସେ ନୂତନ ଘନ
କ୍ଷଣକ କିଁ ଯୁଗ କଲା ତୋର ଦରଶନ ।।୧୧।।

ବଞ୍ଚିଲି ମୁଁ ଷଡ଼ ଋତୁ ଏମନ୍ତ ଦୁସ୍ତର
ପୂର୍ବ ପୁଣ୍ୟ ବଶୁ କୃପା କଲେ ମୁନିବର ରେ ।
ଆଜ୍ଞା ଦେଲେ ଚନ୍ତ୍ର ଜାଣି
ବିମନ ନୁହ ଲଭିବୁ ତୋ ନିଜ ରମଣୀ ।।୧୨।।

ବର ଦେଇ ବ୍ରହ୍ମସୁତ ହେଲେ ଅନ୍ତର୍ଦ୍ଧାନ
ସକ୍ଷପତି ଦକ୍ଷଦୂତ ପ୍ରବେଶ ବଦନ ରେ ।
ବନ୍ଧୁ ସେ ରୁଚିର ରୂପ
କୋମଳ ବଚନେ ମୋ ହରିଲା ତନୁ ତାପ ।।୧୩।।

ଋଷିର ପ୍ରସାଦୁ ଆଜ୍‌ ଗଲା ଦୁଃଖ ତୋର
ଦେଖିବୁ ନିଜ ଭୁବନ ଗଲେ ତୁ ସତ୍ୱର ରେ ।
ବନ୍ଧୁ ଶୁଣି ତା ବଚନ
ସୁଧା ସମ ମଣି ଏଥେ କଲି ଆଗମନ ରେ ।।୧୪।।

ପୁରେ ପଶି ଯହୁଁ ତୋର ମୁଖ ନ ଦେଖିଲି
ଅତି କଷ୍ଟେ ବଜ୍ରସାର ଏ ଜୀବ ରଖିଲି ରେ ।
ବନ୍ଧୁ କିଛି ଦିନ ଅନ୍ତେ
ପୁଣି ରତ୍ନକୂଟକୁ ମୁଁ ଚଳିଲି ତୁରିତେ ।।୧୫।।

ତହିଁ ଆସି ପ୍ରବେଶ ହୋଇଲେ ବ୍ରହ୍ମସୁତ
ଅତି ଦୟା ଭରେ ମୋରେ ଦେଲେ ପାରିଜାତ ରେ ।
ବନ୍ଧୁ ହୋଇ ସେ ପ୍ରସନ୍ନ
ବୋଇଲେ ଲଭିବୁ ତୋର ତରୁଣୀରତନ ।।୧୬।।

ତାଙ୍କ ଆଜ୍ଞା ଶିରେ ଘେନିଥିଲି ପ୍ରାଣପ୍ରିୟେ
ଏମନ୍ତରେ ମଧୁଋତୁ ହେଲା ସମୁଦୟେ ରେ ।
ବନ୍ଧୁ ଶଚୀର ରମଣ
ଅପସରା ସଙ୍ଗେ ତହିଁ କରନ୍ତେ ଭ୍ରମଣ ।।୧୭।।

ମୋର ଛନ୍ଦ ଶୁଣି ସେହୁ ହେଲେ ତୋଷମତି
ବରଦାନ ଦେଲେ ଲଭେ ତୋ ବର ଯୁବତୀ ରେ ।
ବନ୍ଧୁ ଏବେ ତୁ ନିଷ୍ଠୁର
ପ୍ରଭୁ ପରଗୃହରେ କାହିଁ ବସୁରେ ଅନ୍ତର ।।୧୮।।

ତୋ ଚରଣ କାମବାଧା ବାରଣ ଶରଣ
ଏବେ ସେ ମୋ ତାପ ପ୍ରିୟୁ କରତ ହରଣ ରେ ।
ବନ୍ଧୁ ମୃଦୁବାଣୀ ଭାଷ
ଅଧରୁ ପୀୟୂଷ ଦେଇ ଜୀବନ ମୋ ତୋଷ ।।୧୯।।

ଦୃଷ୍ଟି ସୁଧା ସିଞ୍ଚି କାମ ମୋହକର ଦୂର
ବଚନ ସମୀରେ ଦୁଃଖ ମେଘ ଦୂରକର ରେ ।
ବନ୍ଧୁ ଟେକ ମୁଖ ସଖି
ନିବିଡ଼ ତାପତାମସୀ ପକାଅ ବିନାଶି ।।୨୦।।

ଏସନ ବଚନଯ ବାଣୀ କହ ସେ କୁମର
ତାର ଚରଣକୁ କର ବଢ଼ାନ୍ତେ ସତ୍ୱର ରେ ।
ସୁନ୍ଦରୀ କାନ୍ତର ବଚନ
ଜାଣି ତୋଷଚିତ୍ତେ ତାରେ ବନ୍ଦିଲା ପ୍ରଣତ ॥୨୧॥

× × × ×

ପ୍ରିୟା ଆଲିଙ୍ଗନ କରି ମୁଖ ତା ଚୁମ୍ବିଲା,
ପ୍ରିୟା ନୟନେ ଚୁମ୍ବନ
ପୁଣ ପୁଣ ଦେଲେହେଁ ସେ ନୋହେ ତୋଷମନ ॥୨୨॥

ଅଧର ଅମିୟ ଜୁର କଲା ସେ ବଲ୍ଲଭ
ସିତ୍କାର ବଚନ ରମା ଭାଷଇ ଦୁର୍ଲଭ,
ତାଙ୍କ ଗାଢ଼ ଆଲିଙ୍ଗନେ
ଏକ ତନୁ ପରି ସେ ଦିଶିଲେ ବେନି ଜନେ ॥୨୩॥

ନାନା ରସ କଉତୁକେ ଦିବା ନିଶା ନେଲେ
ଉପବନ ବଉଳରେ କ୍ରୀଡ଼ା ଆରମ୍ଭିଲେ,
ତାଙ୍କ ହେଲା ଯେଉଁ ରସ
ଶତେ ଯୁଗ କହି କେହୁ କରିପାରେ ଶେଷ ॥୨୪॥

ନୀଳାଚଳ ପ୍ରଭୁପାଦ କଞ୍ଜ ବେନି ଧ୍ୟାୟୀ
ନୃପ ଧନଞ୍ଜୟ ଭଞ୍ଜ ଏତୁ ରସ କହି ।
ପୂର୍ଣ୍ଣ ପଞ୍ଚବଂଶ ପଦ
ଅନଙ୍ଗରେଖା ଚରିତ ପଞ୍ଚବଂଶ ଛାନ୍ଦ ॥୨୫॥

●